# ଜଣେ ବନ୍ଧୁଙ୍କୁ ଚିଠି



ଅଚ୍ୟୁତ ଦାସ
ସଙ୍କଳକ : ପ୍ରଫୁଲ୍ଲ ବେହେରା



# ଜଣେ ବନ୍ଧୁଙ୍କୁ ଚିଠି

*ଲେଖକ :*
ଅଚ୍ୟୁତ ଦାସ

*ସଂକଳକ :*
ପ୍ରଫୁଲ୍ଲ ବେହେରା

*ପ୍ରକାଶକ :*
ବୁକ୍ସ ଇଣ୍ଟରନ୍ୟାସନାଲ
ବାଙ୍କା ବଜାର, କଟକ – ୭୫୩୦୦୨

*ଡି.ଟି.ପି. :*
ବି.ପି.ଏସ୍. ଗ୍ରାଫିକ୍ସ,
ଆଲାମଚାନ୍ଦ ବଜାର, କଟକ

*ପ୍ରଚ୍ଛଦ :*
ମାନସ ଜେନା

*ପ୍ରଥମ ପ୍ରକାଶ : ୨୦୧୨*

ମୂଲ୍ୟ : ଟ. ୧୪୫.୦୦

# JANE BANDHUNKU CHITHI

*Written by* :
**Achyut Das**

*Compiled* by :
**Prafulla Behera**

*Published by* :
**Books International**
Banka Bazar, Cuttack – 753002

**ISBN – 81-89543-07-5**

***First Edition* : 2012**

*D.T.P.* :
**B.P.S. Graphics,**
Alamchand Bazar, Cuttack

***Price* : ₹ 145.00**

# ଭୂମିକା

ଜୀବନସାରା ଆମେ ଯେଉଁମାନେ ଭୟଙ୍କର ସ୍ୱପ୍ନବାଦୀ ଓ କେବେ କେବେ ଅସ୍ତିତ୍ୱବାଦୀ 'ବନ୍ଧୁ ଓ ଭଲପାଇବା' ସମ୍ପର୍କରେ ଅନେକ କିଛି ପ୍ରଶ୍ନ ପଚାରିଛୁ ଓ ଉତ୍ତର ଖୋଜିଛୁ । ବ୍ରାହ୍ମଣୀ ନଦୀ କୂଳର 'ହାୱାମହଲ' ହେଉ, ରେଭେନ୍ସା କଲେଜର ସିମେଣ୍ଟ ବେଞ୍ଚ ହେଉ ଅଥବା ବାଣୀବିହାରର କୃଷ୍ଣଚୂଡ଼ା ଗଛତଳେ ହେଉ ଆମର ଅନ୍ତରଙ୍ଗ ବନ୍ଧୁ ଗହଣରେ ଏ ବିଷୟରେ ଅନେକ ଆଲୋଚନା, ସମାଲୋଚନା, ପର୍ଯ୍ୟାଲୋଚନା କରି ଆସିଛୁ । ସବୁ ପଛରେ ଏକ ଅନ୍ୱେଷଣ ରହିଆସିଛି । ଭଲପାଇବା ଓ ବନ୍ଧୁତାକୁ ନେଇ ଅଗଣିତ ପୁସ୍ତକ ମଧ୍ୟ ଆମେ ପଢ଼ିଛୁ । ଏ ଦୁଇଟି ବିଷୟର ଅସୀମ ବିସ୍ତୃତି ମଧ୍ୟ ଆମକୁ ସବୁବେଳେ ଆକର୍ଷଣ କରି ଆସିଛି । ଆପଣାର ନିଜସ୍ୱ ବାଟରେ ଓ ମାଧ୍ୟମରେ ଆମେ ପରସ୍ପର ସହ ଯୋଡ଼ି ହେବାପାଇଁ ଅନବରତ ଚେଷ୍ଟା କରି ଆସିଛୁ ।

ପୃଥିବୀର ବିଶିଷ୍ଟ ଚିତ୍ରକର ଭାନଗଗ୍ ତାଙ୍କର ଭାଇ 'ଥିଓ'ଙ୍କୁ ଲେଖିଥିବା ଚିଠି 'Letters to Theo' ପଢ଼ିଲାପରେ ଆବେଗରେ ଭଲପାଉଥିବା ମଣିଷ ପାଖକୁ ଦି'ପଦ ଲେଖିବାକୁ ମନ ଅଥୟ ହୁଏ ।

'ପାସ୍‌କଲ୍'ଙ୍କ 'Provincial Lettets' ଅଧ୍ୟୟନ କଲାପରେ ଚିଠିରେ ଦର୍ଶନ ଓ ତାତ୍ତ୍ୱିକ ବିଷୟବସ୍ତୁ ଲେଖିବାକୁ ଆହ୍ୱାନ ଆସେ । ଜଣାତରେ ହେଉ ବା ଅଜାଣତରେ ହେଉ ତାରୁଣ୍ୟର ଉଦ୍ଦାମତା ଅଥବା ଆତ୍ମପ୍ରକାଶନର ଆବେଗମୟ ମୁହୂର୍ତ୍ତଗୁଡ଼ିକୁ ଭାଷା ଦେବାକୁ ଆମେ ସବୁବେଳେ ଚାହିଁଛୁ । ଏଥିରେ କୌଣସି ଉପଚାର ଅବା ଢାଞ୍ଚା ନ ଥିଲା । ସବୁ ଚିଠିର ଉତ୍ତର, ପ୍ରତ୍ୟୁତ୍ତର ନ ଥିଲା । ଏହା ସତୁରୀଦଶକରେ ଏକ ନିର୍ଦ୍ଦିଷ୍ଟ ରୂପନେଲା । ଯିଏ ଯେଉଁଠି ଥାଉ ନା ପଛକେ, ସ୍ଥାନ, କାଳ, ପାତ୍ରର ନିର୍ଦ୍ଦିଷ୍ଟ ବର୍ଣ୍ଣନା ରହୁଥିଲେବି, ଲେଖିବାର ସ୍ରୋତ ଅବାରିତ ଥିଲା । କେହି କେହି ବନ୍ଧୁ ତାରିଖ, ସ୍ଥାନ ଓ ଘଟଣାପ୍ରବାହ ଯତ୍ନଶୀଳ ଓ ଜୀବନ୍ତ ଭାବରେ ଉପସ୍ଥାପନା କରୁଥିଲେ, ମୁଁ କିନ୍ତୁ କେଜାଣି କାହିଁକି ଲେଖିଲାବେଳେ ତାରିଖ ଓ ସ୍ଥାନ ଉଲ୍ଲେଖ କରିବାକୁ ଉଚିତ ମନେକରୁ ନ ଥିଲି । ସବୁବେଳେ ବିଶୃଙ୍ଖଳ ଓ ଦିଗ୍‌ଭ୍ରଷ୍ଟ ହୋଇ ଲେଖିବାକୁ ଚାହୁଁଥିଲି । ଅବଶ୍ୟ ଜଣେ ଦି'ଜଣ

ବନ୍ଧୁଙ୍କ ସାଙ୍ଗରେ ନିୟମିତ ପତ୍ରାଳାପ ଚାଲିଥିଲା । ଆଉ କେତେଜଣଙ୍କ ସାଙ୍ଗରେ କେବେ କିମିତି ଚିଠି ଆଦାନପ୍ରଦାନ ହେଉଥିଲା । ଦେଖାସାକ୍ଷାତ ବେଳେ ଆମେ କିଏ କ'ଣ ଓ କାହିଁକି ଏହିଭଳି ଚିଠି ଲେଖୁଛୁ, ସେ ବିଷୟରେ ଆଳାପ ଆଲୋଚନା ହେଉଥିଲା ।

ଚିଠିଗୁଡ଼ିକ ସବୁବେଳେ ବ୍ୟକ୍ତିଗତ ଓ ଏକାନ୍ତ ନିଜସ୍ୱ । ଜଣେ ବନ୍ଧୁ ମତାମତ ଦେଇଥିଲେଯେ ଆମେ ଜୀବିତାବସ୍ଥାରେ ଏ ଚିଠିସବୁ ପ୍ରକାଶିତ ହେବା ଯୁକ୍ତିଯୁକ୍ତ ନୁହଁ । ଅନ୍ୟ କେତେକ ବନ୍ଧୁ କହିଥିଲେ ଯେ ଆମର ବ୍ୟକ୍ତିଗତ ଜୀବନ ଅନାବିଳ ଓ ଅଦୂଷିତ । ତେଣୁ ଚିଠିଗୁଡ଼ିକ ପ୍ରକାଶ ପାଇବାରେ କିଛି ଭୁଲ ହେବ ନାହିଁ । ପାଠକମାନେ ଏହା ବିଚାର କରିବେ ।

ଏ ଚିଠି ପ୍ରିୟ ବନ୍ଧୁଙ୍କଠାରୁ ସଂଗ୍ରହ କରିଲାପରେ ମୁଁ ବନ୍ଧୁ ପ୍ରଫୁଲ୍ଲ ବେହେରା, ପ୍ରଫେସର ଯତୀନ୍ଦ୍ର କୁମାର ନାୟକ, ପ୍ରଫେସର ଚିତ୍ତରଞ୍ଜନ ଦାସଙ୍କୁ ଦେଖିବାକୁ ଦେଇଥିଲି ଓ ପଚାରିଥିଲି ଏହା ପ୍ରକାଶନ ଯୋଗ୍ୟ କି ନୁହେଁ । ସମସ୍ତେ ଏସବୁ ଶୀଘ୍ର ପ୍ରକାଶିତ ହେଉବୋଲି ମତ ଦେଇଥିଲେ । ଦଶବର୍ଷ ଅତିବାହିତ ହୋଇଗଲା; କିନ୍ତୁ ସୁଖର କଥା ବନ୍ଧୁ ପ୍ରଫୁଲ୍ଲ ବେହେରାଙ୍କ ଉଦ୍ୟମ ଯୋଗୁଁ ବହିଟି ପ୍ରକାଶିତ ହେଲା । ଲୋକନାଥ ପଣ୍ଡାଙ୍କ ଆଗ୍ରହ ଉଲ୍ଲେଖଯୋଗ୍ୟ । ସେମାନଙ୍କୁ ଧନ୍ୟବାଦ ।

ବିଶେଷ ଧନ୍ୟବାଦ ଦେବି ସେହି ବନ୍ଧୁଙ୍କୁ ଯିଏ ମୋ ଲିଖିତ ଚିଠିଗୁଡ଼ିକୁ ସାଇତି ରଖିଥିଲେ ଓ ପ୍ରକାଶନ ପାଇଁ ମାଗିଲା ମାତ୍ରକେ ବିନା ଦ୍ୱିଧାରେ ଫେରାଇ ଦେଇଥିଲେ ।

ଏ ଚିଠିଗୁଡ଼ିକ ନିର୍ବାଚିତ ଚିଠିର ଏକ ସଂକଳନ । ଚିଠିଗୁଡ଼ିକୁ ନିର୍ବାଚିତ କରିଛନ୍ତି ସଂକଳକ । ପ୍ରକାଶକ ବନ୍ଧୁ ଶୁଭାନ୍ୱେଷ ମିଶ୍ରଙ୍କୁ ସାଧୁବାଦ ଜଣାଉଛି କମ୍ ସମୟ ମଧ୍ୟରେ ବହିଟି ପ୍ରକାଶିତ କରିଥିବା ଯୋଗୁଁ ।

ଅଚ୍ୟୁତ ଦାସ

# ଚିଠି ସମ୍ପର୍କରେ ସମ୍ୟକ୍ ସୂଚନା

We are the bees of the invisible, we madly gather the honey of the visible to store in the great golden hive of the invisible.

***Letter to Hulewiez : Rilke***

'ଜଣେ ବନ୍ଧୁଙ୍କୁ ଚିଠି' (୧୯୭୨-୮୨)ର ଲେଖକ ଅଚ୍ୟୁତ ଦାସ ଏଯାବତ୍ ମୋର ଆବାଲ୍ୟ ବନ୍ଧୁଟିଏ ହୋଇ ରହିଛନ୍ତି । ଆମର ଜନ୍ମ ତାଳଚେର ସହରରେ । ଦୁଇଜଣଙ୍କର ବିଦ୍ୟାରମ୍ଭ ଏକ ସମୟରେ ଓ ବିଭିନ୍ନ ଶିକ୍ଷାନୁଷ୍ଠାନମାନଙ୍କରେ । ଜୀବନର ପ୍ରଥମ ସକାଳଗୁଡ଼ିକ କଟିଛି ଧୂଳିଖେଳ, ମନମଉଜିଆ ଖେଳକୁଦ, ବିଲ, କାନ୍ତାର, ବ୍ରାହ୍ମଣୀ ନଈକୂଳ ନିକଟସ୍ଥ ଜଙ୍ଗଲ ଆଦିରେ ଦିଗଭ୍ରାନ୍ତ ଭାବରେ ବୁଲିବାରେ । ସେହି ପିଲାଦିନର ଏହି ବନ୍ଧୁତ୍ୱର ବନ୍ଧନ ଆମକୁ ବାନ୍ଧି ରଖିଛି ସ୍ନେହସରାଗରେ ଦୀର୍ଘ ୪୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି । ଏହି ଚାଳିଶିବର୍ଷ ମଧ୍ୟରେ କେତେ ମିଳନ ବିଚ୍ଛେଦର ଘଟଣା ଘଟିଛି; କିନ୍ତୁ ଆମେ ନିର୍ବାତ ଦୀପ ଭଳି ଏଯାବତ୍ ରହିଆସିଛୁ !

ଅଚ୍ୟୁତ ଦାସଙ୍କ ଯୌବନ କଟିଛି ରେଭେନ୍‌ସା କଲେଜ୍, ବାଣୀବିହାରରେ । ତାଙ୍କୁ ଘେରି କେତେଜଣ ବନ୍ଧୁ ସର୍ବଦା ଆତଯାତ ହେଉଥିଲେ । ସମସ୍ତେ ବୁଦ୍ଧିଦୀପ୍ତ ଛାତ୍ର ଥିଲେ । ଭଲ ପାଠ ପଢୁଥିଲେ । ପାଠପଢ଼ା ସହିତ ବୌଦ୍ଧିକ ଆଲୋଚନା, ତର୍କବିତର୍କରେ ସମୟ ମଧ୍ୟ କାଟୁଥିଲେ; ଦୁଃସାହସିକ ଜୀବନଯାତ୍ରା ପାଇଁ ଆଡ୍‌ଭେଞ୍ଚର୍ କରୁଥିଲେ । ପ୍ରାୟତଃ ଅଧିକାଂଶ ସେହି ଛାତ୍ରଜୀବନରୁ ଚିନ୍ତାଜୀବୀ ହୋଇଯାଇଥିଲେ । ଦେଶ ବିଦେଶର ନାମକରା ବିଖ୍ୟାତ ଲେଖକ ଲେଖିକାମାନଙ୍କ ଲିଖିତ ବିଭିନ୍ନ ପ୍ରକାରର ବହି ପଢୁଥିଲେ ଓ ଏହା ସହିତ ଜୀବନରେ ପ୍ରତିଷ୍ଠିତ ହେବାର ଏକ ଲୁକ୍କାୟିତ ଇଚ୍ଛାରେ ସଂସକ୍ତ ରହୁଥିଲେ ଓ ପାଠପଢ଼ା ପରେ ବିଭିନ୍ନ ପରୀକ୍ଷା ଦେଇ 'କ'ଣ କିଛି ଗୋଟାଏ କରିବାର' ସ୍ୱପ୍ନ ଦେଖୁଥିଲେ ! ଏହିପରି ଏକ ବାତାବରଣ, ଭାବାବେଶ ଓ ବିଚରଣଭୂମିରେ ଅଚ୍ୟୁତ ଦାସ

ସେମାନଙ୍କ ମଧ୍ୟରେ ଥିଲେ ଜଣେ 'ପଥଭୁଲା ରାଜହଂସ', 'ଝଡ଼ର ଇଗଲ' କି ସତେଅବା ଗୋଟିଏ 'ସି-ଗଲ୍'; ସେ ବି ଥିଲେ ଆମ ଭିତରେ ଜଣେ 'Incurable Romantic' ।

୧୯୭୩-୭୪ ମସିହାରେ ଜଣେ ଭାରତୀୟ ଯୁବମାନସର ଉଦ୍‌ବେଳନ କ'ଣ ହୋଇପାରେ, ମଣିଷର ସାମାଜିକ ସ୍ଥିତି ସେ ସମୟରେ କେଉଁ ପହଞ୍ଚି ପାରିଥିଲା, ବୌଦ୍ଧିକ ଜଗତରେ ଦେଖା ଦେଉଥିବା ନାନାଦି ପ୍ରକାରର ସଂଘାତ ସହିତ ସତେଅବା ସେ ମୁହାଁମୁହିଁ ହୋଇଥିବାବେଳେ ଜୀବନ, ଜଗତ, ଜୀବିକାକୁ ନେଇ ସେ ଅନେକ କିଛି ପ୍ରଶ୍ନର ସମ୍ମୁଖୀନ ହେଉଥିଲେ । ସେ ଠିକ୍ କରିନେଲେ ତାଙ୍କ ସମୟର ସମାଜକୁ ସେ କିପରି ଭାବରେ ଗ୍ରହଣ କରିନେବେ? ଜଣେ ବୃତ୍ତିଜୀବୀ ମଣିଷ ହିସାବରେ ନା ଅନ୍ୟ କିଛି କାର୍ଯ୍ୟକ୍ରମ ମାଧ୍ୟମରେ ଗୋଟିଏ ବୃହତ୍ତର ସମାଜର ସେବା କରିବାରେ? ଶେଷକୁ 'ସମାଜ'ର ଗୋଟିଏ ବିଶେଷ ପଛୁଆ ଗୋଷ୍ଠୀର ସେବା କରିବାକୁ ସିଦ୍ଧାନ୍ତ ନେଇ ଧୀରେ ଧୀରେ ସେହି ଦିଗକୁ ଅପସାରିତ ହେଲେ । କେଉଁ ଏକ ଅଜଣା ଆହ୍ୱାନରେ ଚାଲିଗଲେ ଓଡ଼ିଶାର ଆଦିବାସୀବହୁଳ କାଶୀପୁର ନାମକ ଗୋଟିଏ ଇଲାକାକୁ; ନିଜକୁ ନିୟୋଜିତ କଲେ ବିଭିନ୍ନ ପ୍ରକାରର ଗଠନମୂଳକ କାର୍ଯ୍ୟରେ । ସହଯୋଗୀ ରୂପେ ତାଙ୍କୁ ମିଳିଯାଇଥିଲେ କେତେଜଣ ନିଃସ୍ୱାର୍ଥପର ବନ୍ଧୁ । ସମସ୍ତେ ମିଳିମିଶି କାମରେ ମାତିଗଲେ! ବର୍ଷ କେତେଟାରେ ବଦଳିଗଲା ମାଟିର ରଙ୍ଗ, ଭରିଦେଲା ସେଥିରେ ମହକ; ଜୀବନରେ ଫୁଟି ଉଠିଲା ଟିକିଏ ହସ ସେହିମାନଙ୍କଠି, ଯେଉଁମାନେ ଥିଲେ ଅବହେଳିତ, ଲାଞ୍ଛିତ, ଅତ୍ୟାଚାରିତ । ସେଇଥିପାଇଁ ଅଚ୍ୟୁତ ଦାସ ଓ ଅନ୍ୟ ସାଥୀମାନେ କମ୍ କଷ୍ଟ ସହି ନାହାନ୍ତି, କମ୍ ନିର୍ଯ୍ୟାତନା ପାଇ ନାହାନ୍ତି, କମ୍ ଅତ୍ୟାଚାର ଭୋଗିନାହାନ୍ତି । କିନ୍ତୁ ଅନ୍ଧକାର ପରେ ଆଲୋକର ପ୍ରତିଶ୍ରୁତି ଭଳି ଅନେକ ପ୍ରକାରର ଝଡ଼ଝଞ୍ଜା ପ୍ରଶମିତ ହେଲା । କ୍ରିୟାଶୀଳ 'ଲୋକଶକ୍ତି'ର ସଚେତନତାରେ ସଂଗଠନ ଶକ୍ତ ହେଲା । ଜଣେ ଯୁବକ ନିଜର ତାରୁଣ୍ୟକୁ ଜଳାଞ୍ଜଳି ଦେଲେ କେବଳ ସେବାରେ ଅନ୍ୟମାନଙ୍କର ଅଭାବ, ଦୁଃଖର ବୋଝକୁ ମୁଣ୍ଡରେ ବୋହି ବାଟ ଚାଲିବାରେ । ସମୟର ସ୍ରୋତରେ ବନ୍ଧୁମାନେ କିଏ କେଉଁଠି ରହିଲେ, ପ୍ରତିଷ୍ଠିତ ହେଲେ, ଅନେକ ବିସ୍ମୃତ ହେଲେ । ଜୀବନ ଜଞ୍ଜାଳରେ ଅଧିକାଂଶ ମଜ୍ଜିଗଲେ । କେବଳ ସ୍ମୃତିର ଶ୍ରାବଣ ମନର ମୈନାକରେ ଝଙ୍କାର ତୋଳେ ବେଳ ଅବେଳରେ ।

ଏହି ଚିଠିଗୁଡ଼ିକ ଜଣେ ବନ୍ଧୁଙ୍କୁ ଅନେକ ବର୍ଷ ତଳେ ଲେଖା ହୋଇଥିଲା । ଜଣେ ତରୁଣର ମନଗହୀର ତଳେ ରହିଥିବା ଅନେକ ପ୍ରକାରର କଥାକୁ 'ପଦ୍ୟ'ର ଭାଷାରେ ଲିଖିତ ଏହି ଗଦ୍ୟମୟ ଚିଠିଗୁଡ଼ିକ ଦେଶ, କାଳର ସୀମା ସରହଦ ଟପି କେଉଁଆଡ଼େ

ଚାଲିଯାଇଛନ୍ତି ତା'ପାଇଁ ଗଛର ପତ୍ର, ଶିଶିର ଋତୁର ଜହ୍ନରାତି, ଜଙ୍ଗଲରେ ଫୁଟୁଥିବା ଜାତିଅଜାତିର ଫୁଲ, ଦୂର ପାହାଡ଼ ତଳେ ମନମତାଣିଆ ଭାବରେ ଅଧରାତିରେ ମାଦଳ ବଜାଉଥିବା ଆଦିବାସୀ ସଙ୍ଗୀତର ତାନ ଆଣିଦେଇଛି ଏକ କାବ୍ୟିକ ଭାବ ! ସେ ହୋଇଯାଇଛନ୍ତି କବିଟିଏ, ଜୀବନ ପଥିକଟିଏ, ପରାର୍ଥ ପଥିକଟିଏ... ।

ଚିଠିରେ ନାମିତ ଅନେକ ନାମ ରକ୍ତ ମାଂସର, ଅନେକ ନାମ କଳ୍ପନାସମ୍ଭୂତ । ଘଟଣାବଳୀ ବାସ୍ତବ ! ସ୍ଥାନ, କାଳ, ପାତ୍ର କିଛିଟା ସତ୍ୟ, କିଛିଟା କଳ୍ପନାର ବିନ୍ୟାସ । ସେଥିରେ ଯାଏ ଆସେ କେତେ ! ଜୀବନ ଏକ 'ଅନ୍‌ଫିନିସ୍‌ଡ୍ ଜର୍ଣ୍ଣି', ରାଗ ଅନୁରାଗର ମିଶ୍ରିତ ତାନ !! 'ଚିଠି'ଗୁଡ଼ିକ ସେସବୁର କଥା ଅବିକଳ ଭାବରେ ଆମକୁ କହିଯାଉଛନ୍ତି ବିଭିନ୍ନ ଲୟ, ବିଭିନ୍ନ ସ୍ୱରରେ...

ଓଡ଼ିଆ ସାହିତ୍ୟରେ 'ପତ୍ର ସାହିତ୍ୟ' ବିଭାଗଟି ଆଦୌ ସମୃଦ୍ଧ ନୁହେଁ । ପତ୍ର ମାଧ୍ୟମରେ ପ୍ରତିମାଟିଏ ଯେ ଗଢ଼ିହୁଏ, ଏହି ପତ୍ରଗୁଡ଼ିକ ତା'ର ଦୃଷ୍ଟାନ୍ତ । ଅଚ୍ୟୁତ ଦାସଙ୍କ 'ଜଣେ ବନ୍ଧୁ'ର ବନ୍ଧନୀ ମଧ୍ୟରେ ଆମେ ସମସ୍ତେ ଅଛନ୍ତି ! ଅଚ୍ୟୁତ ଦାସ ଆମ ସମସ୍ତଙ୍କ ପାଇଁ ଦରଦୀ ବନ୍ଧୁଟିଏ ହୋଇ ରହନ୍ତୁ, ଆଗାମୀ କାଳପାଇଁ ।

**ପ୍ରଫୁଲ୍ଲ ବେହେରା**
ସଂକଳକ

# ଉତ୍ସର୍ଗ

ମୋ ଜୀବନରେ ବନ୍ଧୁତା ଓ

ଭଲ ପାଇବାର ନୂତନ ଦିଗନ୍ତ

ଦେଉଥିବା **ବିଦ୍ୟାଙ୍କୁ....**

**ଅଚ୍ୟୁତ**

ପ୍ରିୟ ବନ୍ଧୁ,

ଗତକାଲି ତମ ଚିଠି ପାଇଛି ।

ତମେ ଲେଖିଛ ଯେ ବନ୍ଧୁତାର ସଂଜ୍ଞା ପରିବେଶ ସହ ବଦଳେ । ବନ୍ଧୁତାର ଆରମ୍ଭ ଗୋଟାଏ ଅନବଦ୍ୟ ପରିବେଶରୁ ହୁଏ । କିନ୍ତୁ ସୁଦୃଢ଼ ହେଲେ ଅନ୍ୟ ପରିବେଶ ବା ପରିସ୍ଥିତି ତାକୁ ବଦଳାଇ ପାରେନା । ତମେ ଅବଶ୍ୟ ଲେଖିବା ଛଳରେ ଏକଥା ଲେଖିଛ ବୋଲି ମୁଁ ଭାବିବି । ସତରେ ଯଦି ତମେ ଏହା ହିଁ ସତ୍ୟ ବୋଲି ଭାବୁଥାଅ, ତେବେ ତମ ସହ ଅନ୍ୟ ପରିବେଶରେ ସମ୍ଭବତଃ ମୁଁ ଆପଣାର ହୋଇ ପାରିବିନି । (କିନ୍ତୁ ତମେ ପୁଣି ଲେଖ ବନ୍ଧୁତା ମାନେ ଏକାତ୍ମ ହୋଇଯିବା)

ମୋ ଜୀବନକୁ ତମେ ଗୋଟେ ନିର୍ଦ୍ଦିଷ୍ଟ ଛାଞ୍ଚରେ ପକାଇ ଅନୁଶୀଳନ କରୁଛ । ଏହି systemରେ ତ ମଣିଷ ବଞ୍ଚିବାକୁ ମୁଖ୍ୟ ବ୍ୟବସାୟ ବୋଲି ଭାବିଛି । ଏହାକୁ ସମର୍ଥନ କରି ଏ ମଣିଷ ଗୋଟାପଣେ ଇତିହାସ ଲେଖିଛି । ଦର୍ଶନ ଶାସ୍ତ୍ର ମଧ୍ୟ ଏଥିପାଇଁ ରଚନା କରିଛି । ମାନୁଛି, ମଣିଷର ବଞ୍ଚିବା ପାଇଁ ବିଦ୍ରୋହ ଘୋଷଣା କରିବା, ଏପରିକି ଅପରାଧ କରିବା କିଛି ସୃଷ୍ଟି ଛଡ଼ା କାମ ନୁହେଁ । ଏହି କଥାକୁ ହିଁ ସ୍ୱୀକାର କରିନେବାଟା ଗୋଟେ religious acceptance; ଗୋଟାଏ ମସ୍ତବଡ଼ ସାଲିସ୍ । ବଞ୍ଚିବା ନାଁରେ ଆମେ କାହିଁକି ସବୁକୁ ଗ୍ରହଣ କରିଯିବା । ଏକଥା ମୁଁ ଭାବି ପାରୁନାହିଁ । ଭଲ ପାଇବାର କଥା ଆମ ପାଖରେ ମୁଖ୍ୟ ହେଉଥିବାରୁ ଏସବୁ ତ କିଛି ହେଲେ ଗୁରୁତ୍ୱ ରଖନ୍ତି ନାହିଁ ।

ବିଶ୍ୱାସ କର, ଜୀବନକୁ ମୁଁ ମୋର ନିଜର ମୁଣ୍ଡ ଭିତରର କିମ୍ଭୂତକିମାକାର ଭାବଧାରାରେ ବଞ୍ଚାଇ ରଖିଛି । ମୋର ଘନୀଭୂତ ଯନ୍ତ୍ରଣା ବଳରେ ମୋର ଶ୍ୱାସକ୍ରିୟା ଚାଲିଛି । ମୁଁ ଅନୁଭବ କରୁଛି ଯେ ଏହି ଯନ୍ତ୍ରଣାର ଶେଷ ପରିଣତି ପାଇଁ ଆଉ ସମ୍ଭବତଃ ଅନେକ ଅନ୍ଧକାରର ବଳୟ ଆହୁରି ସୁଦୂରପ୍ରସାରୀ ହେଉଛି; ଆହୁରି ନିବିଡ଼ ହେଉଛି । ସେଇଥିପାଇଁ world of terror କୁ ମୁଁ ବେଶ୍ ଅନୁଭବ କରିପାରୁଛି । ଗୋଟିଏ ବୌଦ୍ଧିକ ମୃତ୍ୟୁ ବୋଧେ ଯଥେଷ୍ଟ ପାଖରେ ।

ଅନ୍ୟ କିଛି ଲେଖିଥାଆନ୍ତି । ହେଲେ ପାରୁନି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଅନେକ ଦିନ ପରେ ଚିଠି ପାଇଲି । ତମକୁ ଗୋଟାଏ ଚିଠି ଦେବାକୁ ମୋର ଯଥେଷ୍ଟ ଆଗ୍ରହ ଓ ଆକାଂକ୍ଷା ଥିବା ସତ୍ତ୍ୱେ ଲେଖିପାରିନି; ନିଷ୍କ୍ରିୟତା ଓ ଜଡ଼ତାର ଶିକାର ହେବା ପରେ ମଣିଷର ଆଗ୍ରହ ବୋଧହୁଏ ନ ଥାଏ । ତମ ଭଳି ମୋର ଅତି ଏକାନ୍ତର ଜଣେ ବନ୍ଧୁ ପାଖକୁ ଚିଠି ଲେଖିବାର ଅନାଗ୍ରହ କି ପ୍ରକାର ମନସ୍ତତ୍ତ୍ୱ ମୁଁ ନିଜେ ହିଁ ବୁଝିପାରୁନି ।

ମୁଁ ଏକାନ୍ତ ଭାବେ ସ୍ୱାର୍ଥପର ହୋଇଯାଉଛି । ତମମାନଙ୍କ ପ୍ରତି ମୋର କିଛିଟା କର୍ତ୍ତବ୍ୟ ଅଛି, ସେକଥା ମୁଁ ପୂରାପୂରି ଭୁଲିଯାଉଛି । ମୋର ଭାବପ୍ରବଣତାକୁ ନେଇ ବେଳେବେଳେ ଗର୍ବ କରିଥାଏ ଯେ ମୋର best friend circle ଅଛି । ଏଇଟା ଏକାବେଳକେ ଭୁଲ୍ ଓ illusion ବୋଲି ମୁଁ ଭଲଭାବେ ହୃଦୟଙ୍ଗମ କରିପାରିଛି । ବନ୍ଧୁତ୍ୱ ଉପରେ ବୋଧହୁଏ environmental influences ପଡ଼ି ନ ଥାଏ ଯଦି ବନ୍ଧୁତ୍ୱ ସତ୍ୟତା ଉପରେ ପ୍ରତିଷ୍ଠିତ ହୋଇଥାଏ । ଏଣୁ ମୁଁ ସାହସ ସଞ୍ଚୟ କରି କହିପାରେ ଯେ ତମେ, ଗୋପବନ୍ଧୁ ଓ ପ୍ରଫୁଲ୍ଲ ବର୍ତ୍ତମାନର ପରିପ୍ରେକ୍ଷୀରେ ବିଶେଷ ଭାବେ ବଦଳି ନାହିଁ । ମୁଁ ଏଥିପାଇଁ ଯେ ଅତ୍ୟଧିକ ଭାଗ୍ୟବାନ, ଏକଥା ନିଶ୍ଚୟ ହିଁ ସ୍ୱୀକାର କରିବି । ଅବଶ୍ୟ ଦୁଃଖ କରିବାର କିଛି ନାହିଁ । କିନ୍ତୁ ମଣିଷ ମାତ୍ରେ ହିଁ ଦୁର୍ବଳତାର ଏକ ସମାହାର । ପ୍ରଫୁଲ୍ଲ ମୋତେ 'ଶିଳାତୀର୍ଥ' ବହି ଦେଇଛି । ମୁଁ ସମ୍ଭବତଃ ତାକୁ ସାକ୍ଷୀ କରି ସେଥିରୁ ସମସ୍ତ ପ୍ରେରଣା ପାଇ ପୁରୀରେ ଅବଶିଷ୍ଟ ଦିନ କାଟି ଦେବାକୁ ସମର୍ଥ ହେବି । ମୋର ମନେହୁଏ ବଞ୍ଚିବାର ସତ୍ତା ଓ ପ୍ରେରଣା ସେଥିରୁ ହିଁ ମିଳିବ । ତମେ ନିଶ୍ଚୟ ହିଁ ଏକମତ ।

ଘରକୁ ଯାଇଥିଲି ଓ ବାବାଙ୍କ ସାଙ୍ଗରେ କିଛି ଖୋଲାଖୋଲି କଥାବାର୍ତ୍ତା କରିପାରିଲି । ମୋର ଶାରୀରିକ ଅବସ୍ଥାରେ ସେମାନେ ସମ୍ଭବତଃ କିଛିଟା ଉଦ୍‌ବେଗ ପ୍ରକାଶ କରିଥିଲେ ଓ ମୋର economically stable ହେବାରେ ସାହାଯ୍ୟ କଲେ । ଏହି ପରିପ୍ରେକ୍ଷୀରେ ମୁଁ ଖୁବ୍ ଭଲ ମନରେ ଅଛି ବୋଲି ଭାବିବାକୁ ହେବ ।

ଧନ୍ୟବାଦ ଦେଉଛି ତମେ ମୋତେ scholarship ବିଷୟରେ information ଦେଇଥିବାରୁ । କିନ୍ତୁ ଷ୍ଟ୍ରାଇକ୍ ଯୋଗୁଁ କାଳେ ବିଳମ୍ବ ହେବ ଏହା ଆଶଙ୍କା କରି ମୁଁ ଯାଇପାରିନି । ଗଲେ ମୁଁ ତମପାଖକୁ ହିଁ ପ୍ରଥମେ ଯିବି । You can take it as a surprise visit ବାଣୀବିହାରକୁ ଯିବାକୁ ମୋର ବେଳେବେଳେ ଭୟ ହୁଏ; ଆଉ ତାହା ଅନ୍ୟ ଏକ କାହାଣୀ । Sentiments ଥିଲେ ସାକ୍ଷାତରେ କହିବି । ଆଶା ତମେ ଭଲ ଅଛ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ପୁରୀ ଛାଡ଼ି ଦେଇ ସାରିବା ପରେ ମୁଁ ଯେମିତି ଅନେକ କିଛି ପାଇଯାଇଛି ଓ ଅନେକ କିଛି ହରେଇ ବସିଛି ମଧ୍ୟ । ତମେ ଲେଖିଥିଲ ଏଇଠି ଝାଉଁବଣର ନିର୍ଜନତା, ସମୁଦ୍ର କୂଳ ଓ ଜଗନ୍ନାଥ ମନ୍ଦିର ଯେଉଁଠି ଗୋଟାଏ ଜାତିର ବିଶ୍ୱାସ ରହିଛି ମୋତେ କିଛି ଦିନ ଧରି ବିହ୍ୱଳ କରିବ; ପ୍ରଶାନ୍ତି ଦେବ । କିନ୍ତୁ ମୁଁ ପାଇଲିନି କିଛି । ମୁଁ ବରଂ ଆସକ୍ତ ହୋଇପଡ଼ି ଜଗନ୍ନାଥଙ୍କ ପଦତଳେ ନିଜକୁ ହଜେଇ ଦେଇଥିଲେ ଭଲ ହୋଇଥା'ନ୍ତା । କିନ୍ତୁ ଆଜି ତାହା ଅନ୍ୟ ଏକ କାହାଣୀ । ଘରେ ମୋର କିଛି ଅସୁବିଧା ହେବନି । ନିର୍ଜନତାକୁ ଖୁବ୍ ଭଲ ଭାବେ ସେଠି ଅନୁଭବ କରିହୁଏ । 'ବାବା' ବୋଲି ଯେଉଁ ମଣିଷଟି ମୋତେ ତମମାନଙ୍କ ଭଳି ଖୁବ୍ ଭଲ ଭାବେ ବୁଝିଛି, ମୋତେ ଖୁବ୍ ଭଲ company ଦେବ । ତେଣୁ ମୁଁ ଘରକୁ ଫେରିବା ପାଇଁ ବ୍ୟଗ୍ର ହୋଇପଡ଼ିଛି ।

ବନ୍ଧୁ, ଅନେକ ଥର କହିଥିବି ମଣିଷର helplessness କଥା । କାଫ୍‌କାଙ୍କର METAMORPHOSIS ବହିର ନାୟକ ଭଳି ମୋର ମଧ୍ୟ କିଛି ରୂପାନ୍ତର ହୋଇଯାଇଛି । ଏହି ପରିପ୍ରେକ୍ଷୀରେ ମୁଁ କେବଳ ପାଷାଣ ଓ ଅଜଣା ହୋଇଯିବାକୁ ଶ୍ରେୟସ୍କର ମନେକରେ । ତମେ ଚିଠି ଲେଖିବ ମୋ ପାଖକୁ ଆବଶ୍ୟକତା ଅନୁଭବ କଲେ । ଆଶା, ମୋର ଘରଠିକଣା ତମେ ଜାଣ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଏଠାକୁ surprise visit କଥା ବାବାଙ୍କଠୁ ଆଜି ଶୁଣିଥିଲି । ସେ ତମକୁ ଠିକ୍‌ଭାବେ entertain କରିପାରି ନାହାନ୍ତି ବୋଲି ଦୁଃଖପ୍ରକାଶ କରୁଥିଲେ । ଏହାର ପ୍ରଧାନ କାରଣ ଅସୁସ୍ଥତା ଓ ସେଥିପାଇଁ ତମକୁ ବିଶେଷ ଭାବେ ଲେଖିବାକୁ ମୋତେ କହିଛନ୍ତି ।

ମୁଁ ନିଜେ ଥିଲେ କିନ୍ତୁ ଖୁବ୍ ଭଲ ହୋଇଥାଆନ୍ତା । ମୋର ପରିବାର ତଥା ମୋର ଜନ୍ମମାଟି ସହିତ ତମକୁ ମୁଁ ନିଜେ ପରିଚୟ କରାଇବାର ସୁଯୋଗ ନିଶ୍ଚୟ ପାଇଥାଆନ୍ତି । ତେବେ ସେଦିନକୁ ଅପେକ୍ଷା କରୁଛି । ସମସ୍ତଙ୍କୁ ମୋର ନିମନ୍ତ୍ରଣ ।

ଏଠି କେମିତି ସମୟ କଟୁଛି, ସେକଥା ତମେ ଅନୁମାନ କରିପାରୁଥିବ । ପ୍ରଫୁଲ୍ଲର ଅତ୍ୟଧିକ ବ୍ୟସ୍ତତା ଯୋଗୁଁ virtually ମୁଁ friendless ହୋଇପଡ଼ିଛି । ଘରୁ ବାହାରିବାର ଆଗ୍ରହ ନାହିଁ । ଚର୍ଚ୍ଚିଲ୍‌ଙ୍କର World War II ଆରମ୍ଭ କରିଛି । କିନ୍ତୁ ଅନେକ ସମୟରେ

distraction ଯୋଗୁଁ ବେଶୀ ଆଗେଇ ପାରୁନି । 'ଦି ଷ୍ଟେଟ୍‌ସ୍‌ମ୍ୟାନ୍' ପଢୁଛି ଓ କେବେ କେମିତି ପୁରୁଣା Reader's Digest ଓଲଟାଉଛି । Radio ଶୁଣୁଛି; specially ceylon । ଘରେ ସମସ୍ତଙ୍କର ଦେହ ଖରାପ ରହୁଥିବାରୁ ମୁଁ ସେମାନଙ୍କ ଦୁଃଖ ସହ ସମଭାବାପନ୍ନ ହେଉଛି । ବାବା ଆଜି କଟକ ହସ୍‌ପିଟାଲ୍‌ରୁ ଫେରିଛନ୍ତି । ଜୁଲାଇ ୧୫ ବେଳକୁ ମୋର ଜଣେ ଭାଉଜଙ୍କର କଟକରେ ଅପରେସନ୍ ହେବ ।

ନାରାୟଣ ବାବୁର ବାହାଘରକୁ ଲଳିତ ଓ ତମେ ଯାଇଥିବ ବୋଲି ଆଶାକରେ । ମୋର friend ମାନଙ୍କ ଭିତରୁ ତାହାର ପ୍ରଥମ ବାହାଘର । ଅଥଚ ମୁଁ ଯାଇ ନ ପାରିବାଟା କେତେ ବଡ଼ ନିରୁପାୟତା, ତମେ ବୁଝିପାରୁଥିବ । ତାହା ବ୍ୟତୀତ ପି.କେ.ର ବଡ଼ଭାଇଙ୍କର ବିବାହ । ସେ ଲେଖିଛି ତମେମାନେ ଆସୁଛ ଓ ମୋର ଆସିବା ମଧ୍ୟ ଦରକାର । ତା'କୁ ଏପର୍ଯ୍ୟନ୍ତ ମୋର ବ୍ୟର୍ଥତା କଥା ଲେଖିନି ।

ପରୀକ୍ଷାର ଭୂତ ଏପର୍ଯ୍ୟନ୍ତ ମୋତେ ଛାଡ଼ିନି । ବେଳେବେଳେ ଏହାର ଭୟାବହତା ମୋତେ ଆଚ୍ଛନ୍ନ କରିପକାଉଛି । ବାବା ମୋତେ Employment Exchange ରେ enrolment ହେବାକୁ କହିସାରିଛନ୍ତି । ମୁଁ ମଧ୍ୟ escape କରିବାକୁ ଚାହେଁ । ଘରେ ସମସ୍ତେ ନିଜ ନିଜର ସମସ୍ୟା ନେଇ ଏତେ ବ୍ୟସ୍ତ ଅଛନ୍ତି ଯେ ମୋ କଥା ଭାବିବାକୁ ବା ବେଳ କାହିଁ !

ବାବାଙ୍କ ସହ ତମର କଥାବାର୍ତ୍ତା text ସେ କିଛି କହିପାରିଲେନି ! ତମେ ଲେଖିବ ତାଙ୍କ ସହ ତମର accidental ଦେଖା ଓ ତାଙ୍କରେର ସମ୍ପର୍କରେ ତମର ମତାମତ । ଆଜି ଏତିକିରେ ରହିଲି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଶା କରିଥିଲି ଠିକ୍ ଏଇଭଳି ଚିଠି ପାଇବାକୁ । ଧନ୍ୟବାଦ ଦେଉଛି । ତମର ଏଠାକୁ ଆସିବା ଏକ ଶୁଭ ଓ ଆଶାଜନକ ଖବର ମଧ୍ୟ । ତମେ ଓ ଲଳିତ ଉଭୟଙ୍କୁ ନିମନ୍ତ୍ରଣ । ତମ ଦୁଇଜଣଙ୍କୁ ଛାଡ଼ିଦେଲେ ଅନ୍ୟ ଯଦି କେହିଆସେ, ତମର ଗସ୍ତର ମହତ୍ତ୍ୱ ବୋଧହୁଏ ରହିବନି । କାରଣ ଆମେ ନିର୍ଜନରେ ଆମର ଆବେଗକୁ ପ୍ରକାଶ କରିପାରିବାନି । ତମେ ଆସ । ତମ ଅପେକ୍ଷାରେ ।

ଭାବିଥିଲି ଗତବର୍ଷ ଭଳି ତମେ ବାଣ ଫୁଟାଇଥିବ, ଦୀପାବଳୀକୁ ଉପଭୋଗ କରିଥିବ । କିନ୍ତୁ ଅନୁମାନ କରିଛି ତମେ ମୋ ଭଳି ଏକାକୀ ଅନୁଭବ କରିଥିବ । ଏଇଠି ଗୋଟିଏ candle ଜାଳିଥିଲି ।

ଶାରଦୀୟ ବିଶେଷାଙ୍କ (ନବରବିକୁ ଛାଡ଼ିଦେଲେ) ଅନ୍ୟ କିଛି ପଢ଼ିନି । ସେଥିରେ ଚିତ୍ତରଞ୍ଜନ ଦାସ ଓ ମନୋଜ ଦାସଙ୍କର ଲେଖାପଢ଼ି ଆନନ୍ଦ ପାଇଛି । ହେଲେ ସୁରେନ୍ଦ୍ର ମହାନ୍ତିଙ୍କର 'କାଳାନ୍ତର' impressing ହୋଇଛି । ତମେ ଆସିଲେ ଅନ୍ତତଃ ମୋତେ ଦି'ଟା ଭଲ ଗପ ନିଶ୍ଚୟ ଶୁଣାଇବ ।

ଶେଷରେ, 'ଏଖନଇ' ବୋଲି ଗୋଟାଏ ବଙ୍ଗାଳୀ ଛବି ଦେଖିଛି । ସେଥିରେ ଆମକୁ ପ୍ରଭାବିତ କଲା ଭଳି ଯଥେଷ୍ଟ ବସ୍ତୁ ଅଛି । ଆଶାକରେ, ତମେ ଦେଖିବାର ସୁଯୋଗ ପାଇବ । ସେଥିରୁ ଉଦ୍ଧାର କରି କହୁଛି – "ଉଦ୍ଦେଶ୍ୟହୀନ ଜୀବନର ଶେଷ କେଉଁଠି ? ଏକ ପ୍ରଶ୍ନବାରକ ଚିହ୍ନରେ ।" ମୋର ଜୀବନ ଉଦ୍ଦେଶ୍ୟହୀନ; ଆଉ ମୋର ଶେଷ – ଠିକ୍ ସେଇଭଳି ଏକ ପ୍ରଶ୍ନବାଚକ ଚିହ୍ନରେ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଶେଷରେ ଘରକୁ ହିଁ ଫେରିବାକୁ ପଡ଼ିଲା । ଅନ୍ୟ କିଛି ରାସ୍ତା ନ ଥିଲା । ବାବା ମଧ କଟକ ଯାଇଥିଲେ । କିନ୍ତୁ ସେତେବେଳକୁ ମୁଁ ବସ୍‌ରେ ବସି ସାରିଥିଲି । ସେ ଆବଶ୍ୟକ ହେଉଥିବା ଟଙ୍କା ଧରି କଟକ ସାରା ଖୋଜୁଥିଲେ । ଭାଗ୍ୟକୁ ଦେଖା ହୋଇଗଲା । ତାଙ୍କର ବ୍ୟକ୍ତିଗତ ଉଦ୍ୟମ ପଛରେ ମୋ ପ୍ରତି ସଦିଚ୍ଛାର ପରିମାଣ ଜାଣିପାରୁଥିବ । ବହୁତ ବୁଝାଇଲେ ରହିବାକୁ । ମୁଁ ସବୁ ଦୃଷ୍ଟିକୋଣରୁ ବିଚାରକୁ ନେଇ ଏହି ନିଷ୍ପତ୍ତି ନେଲି ।

ଘର ଭିତରୁ ବାହାରକୁ କିଛି ଦିନ ପାଇଁ ଚାଲିଯାଇ ପୁଣି ଫେରି ଆସିଲେ ମୋତେ ସବୁକଥା ନୂଆ ନୂଆ ଲାଗେ; ଗୋଟାଏ ଭିନ୍ନ ପରିସରର ମୁକାବିଲା କରିବାକୁ ହିଁ ପଡ଼େ । ପରୋକ୍ଷ ଭାବେ ମୁଁ ଫେରି ଆସିବାଟାକୁ ସମସ୍ତେ ଚାହୁଁଥିଲେ । ଘରର ଆର୍ଥିକ ଅବସ୍ଥା କେମିତି ଶୋଚନୀୟ ତମକୁ ତ କହିସାରିଛି । ମୋର କ୍ରମାଗତ ବ୍ୟର୍ଥତା ପରେ ତଥାପି ମୁଁ ଯେ ହଠାତ୍ କିଛି ଗୋଟେ ପାଇଯିବି (fortune) ଏକଥା ତମମାନଙ୍କ ଭଳି ମୋର ଆତ୍ମୀୟମାନେ ବିଶ୍ୱାସ କରନ୍ତି । ବିଭିନ୍ନ ଅନୁଶୋଚନା ଓ ଅନୁଶୀଳନ ପରେ ଏହି କଥା ମୋର ହୃଦ୍‌ବୋଧ ହୋଇଚି ।

ଦେଖ, ଗୋଟାଏ କିଛି ପାଇଯିବାକୁ ମୁଁ ମୋର ତଥାକଥିତ ନିର୍ବାଣ ବୋଲି ଗ୍ରହଣ କରିପାରିନି । ଏତେ ବାଟ ଆଗେଇ ସାରିବା ପରେ ହଠାତ୍ ଯଦି ଜୀବନଯାତ୍ରାଟା ଅନ୍ଧକାରାଚ୍ଛନ୍ନ ହୋଇଯାଏ ପଛକୁ ଫେରିଯିବାଟା ଠିକ୍ ହେବ ନାହିଁ । ଏତେ ଦିନର ଅଧବସାୟ ଓ ଆନ୍ତରିକତା ଅଯଥାରେ ମୂଲ୍ୟହୀନ ହୋଇଯିବ । ମୁଁ ଜାଣେ ମୋର ଗତି

କେଉଁ ଆଡ଼କୁ । ଅତି ନିବିଡ଼ ଭାବରେ ଆପଣାକୁ ଅନୁଭବ କରିପାରିଲେ ମୋର ହଠାତ୍ କିଛି ଜୀବନଦର୍ଶନକୁ ବଦଳେଇ ଦେବାଟା ଚରମ ଭଣ୍ଡାମି ହେବ ।

ଏଇଭଳି ଜୀବନଟା କଟିଯିବ । ସବୁ ମାୟା ମରୀଚିକା ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସଂଗ୍ରାମ ଅବିରତ ରଖିବେ । ଅର୍ଥ, ଶକ୍ତି ଏବଂ ସମ୍ମାନର ମୋହ ତଥା ଆପେକ୍ଷିକ ଆବଶ୍ୟକତା ବାରମ୍ବାର ଜୀବନର ଯାତ୍ରାପଥରୁ ହଟାଇ ଆଣିବାକୁ ଚାହିଁବେ । ମୁଁ କିନ୍ତୁ ହାରିଯିବା ମଣିଷ ନୁହେଁ । ହତାଶ ହୋଇଯିବା ମଣିଷ ନୁହେଁ । ତମେ ବୁଝୁଥିବ । ଠିକ୍ Theo ତା'ର ଭାଇ Vincentକୁ ବୁଝିବା ଭଳି; ଠିକ୍ Jean Baptistକୁ ତା'ର Monseur ବୁଝିବା ପରି । ବାପା ମାଆ ତ ମୋ ପାଇଁ ଅମୃତର ମଣିଷ । ତମ ଭଳି ସାଙ୍ଗମାନେ ତ ମୋ ଜୀବନର ସବୁକିଛି । ଆଉ ମୋର କ'ଣ ଅଭାବ ରହିଗଲା ?

ଗୋପବନ୍ଧୁ ଓ ପୀତବାସ ଗୋଟାଏ ରାତି କଟକ ଛାଡ଼ିବାର ଅବ୍ୟବହିତ ପୂର୍ବରୁ ମୋ ପାଖରେ କାଟିଥିଲେ । ଗୋପବନ୍ଧୁ ହଠାତ୍ ଅତି ଅସଂଲଗ୍ନ ଭାବେ ସଦ୍ୟ ଅନୁଭବ କରୁଥିବା ଜୀବନଯନ୍ତ୍ରଣାକୁ ବଖାଣିବାକୁ ହିଁ ଚାହିଁଥିଲା । "ବ୍ୟାଙ୍କ୍ ଚାକିରୀ ଭଲ ଲାଗୁ ନାହିଁ", "ମୁଁ ସ୍ୱପ୍ନ ଦେଖିଥିଲି great ହେବାକୁ, ଅଥଚ ହେଲି କ'ଣ ?", "ସତରେ କ'ଣ ମୁଁ ବଦଳିଯାଇଛି ?" ଆଦି କଥା ତା'ଠାରୁ ଶୁଣୁଥିଲି । ଅତି ଚିରାଚରିତ ପନ୍ଥା ଅବଲମ୍ବନ ନ କରି ମୁଁ ତାକୁ ସହଜ ହୋଇଯିବା ପାଇଁ ହିଁ କହିଥିଲି । ସିଏ ଗୋଟାଏ frequencyରେ କହୁଥିଲା । ଆମର ଭିନ୍ନ ମତାମତର ସାମାନ୍ୟ ଆଭାସ ମିଳିବାରୁ common friend (ତମ ଭଳି)ଙ୍କ ବିଷୟରେ ହିଁ ଆଲୋଚନା କରିବାକୁ ପଡ଼ିଲା । ଗୋପବନ୍ଧୁ ସାଲେପୁରରେ ଯୋଗ ଦେବ । ତମ ବିଷୟରେ କ'ଣ ସେ ଶୁଣିବାକୁ ଚାହୁଁଥିଲା କେଜାଣି ! ତମେ ଭଲ ଅଛ ବୋଲି ମୁଁ ତା'କୁ କହିଥିଲି ।

ଅମ୍ଳାନ ପାଖକୁ ଲେଖିବି । ହଠାତ୍ ମୋଠାରୁ ସେ କିଛି ସାହାଯ୍ୟ ନ ପାଉଥିବା କଥା ସତ୍ୟ ହୋଇଥିବାରୁ ମୁଁ ତା'ର ଚିଠିକୁ ହିଁ ଗ୍ରହଣ କରିବାକୁ ବାଧ୍ୟ ହେଲି । ମୁଁ ତ ଅମ୍ଳାନ ନୁହେଁ ଯେ ସବୁକଥାରେ ଅଭିମାନ କରିବି । ଏ ବନ୍ଧୁତ୍ୱଟିକକ ଯେଉଁ ରୂପରେ ମିଳୁପଛେ, ହାତ ପାହାନ୍ତାରେ ଥାଉ ।

ଚିଠି ଲେଖିବ । Interview କଥା ମଧ୍ୟ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଜି ଚନ୍ଦ୍ର ବଡ଼ ନିଷ୍ପ୍ରଭ ଓ ନିଷ୍ପନ୍ଦ ମନେହେଉଛି । ସବୁ ଦିନର ମଧ୍ୟରାତ୍ରିର ନୀରବତାକୁ ଭେଦକରି ପାଖ ଅଶ୍ୱତ୍ଥ ଗଛରୁ କିଛିନାକିଛି ସଙ୍ଗୀତ ମୁଁ ଶୁଣେ । ଏ ବିନିଦ୍ର

ରଜନୀଗୁଡ଼ିକ ପାଇଁ କିଛି ହେଲେ ଔଷଧ ମିଳିଯାଏ । ଆଜି ବଡ଼ ଅସ୍ଥିର ଲାଗୁଛି । ଉତ୍ତାପର ମାତ୍ରା ଯଥେଷ୍ଟ । ପତ୍ରଟିଏ ମଧ ହଲୁ ନାହିଁ । ରାସ୍ତା ସେପାଖରେ ଏକ ପରିବାରରେ ମାଆପୁଅଙ୍କ ଭିତରେ ସାମାନ୍ୟ କେତୋଟି ଟଙ୍କା ପାଇଁ କଳିଗୋଳ ଲାଗିରହିଛି । ସଂସାରର ସବୁ ଅଖଚକ ଯେମିତି ଏଇ ମୁହୂର୍ତ୍ତରେ ଅଟକି ଯାଇଛି । ଏ ପରିବେଶଟା ଶ୍ମଶାନ ଭଳି ମନେହେଉଛି । ମୋତେ ମୋର ଭୂତ ଖାଇ ଗୋଡ଼ାଉଛି ।

ତମେ କ'ଣ କରୁଥିବ ଏଇକ୍ଷଣି ? ଶୋଇପଡ଼ିଥିବ ନ ହେଲେ ଆପଣା ଚିନ୍ତାରେ ବିଲୀନ ହୋଇ ଯାଇଥିବ । ନିଜର ସମସ୍ୟାଗୁଡ଼ିକର ଆଶୁସମାଧାନ ପାଇଁ ଯୋଜନା କରୁଥିବ ବା ଆପଣାର ପ୍ରିୟଜନମାନଙ୍କୁ ସ୍ମରଣ କରୁଥିବ । ବାଲେଶ୍ୱରର ଗହଳି ହୁଏତ ଭାଙ୍ଗିଯାଇ ସାରିବଣି । ଏଇ ମୁହୂର୍ତ୍ତରେ ସିନେମା ଛକ ଆଡ଼େ ଘେରାଏ ବୁଲି ଆସିବାକୁ କେହି ପ୍ରସ୍ତାବ ପକାଇଲେ ତମେ ପଛଘୁଞ୍ଚା ଦେଉ ନ ଥିବ । ଅସ୍ଥିର ଯଦି ହୋଇ ପଡୁଥିବ, କେହି ଜଣେ ଆପଣାର ମଣିଷ ପାଖକୁ କିଛି ଲେଖିବାକୁ ମସୁଧା କରୁଥିବ । କିଛି ନ ହେଲେ କେତେ ଦିନରୁ ଲେଖି ନ ଥିବା ଆତ୍ମଲିପିରେ କେଇଧାଡ଼ି ଗାରେଇ ଦେଉଥିବ ।

ମୁଁ ତ କହିଛି, ଅସ୍ଥିର ହୋଇପଡ଼ିଲେ ମୁଁ ଏକା ଏକା ବୁଲି ବାହାରେ । କେଉଁ ଏକ ପୋଲ ପାଖରେ ବା ଗଛ ତଳେ ହଜିଯିବାକୁ ଚାହେଁ । କିଛି ଗୋଟାଏ cosmic ବା divine ମୁଁ ଖୋଜିବସେ । ବିଦଗ୍ଧ ପ୍ରାଣ ପାଇଁ ମୁଁ ସ୍ୱଗତୋକ୍ତି ବେଶ୍ ଉପଯୁକ୍ତ ଉପଚାର ବୋଲି ଗ୍ରହଣ କରିନେଇଛି । ସେହି ସ୍ୱଗତୋକ୍ତି ବା ଆତ୍ମାବଲୋକନକୁ ତମେ nostalgia ବୋଲି କହିପାର । (ଗତ ଚିଠିରେ nostalogiaକୁ indulgence ସହ ତମେ ଯୋଡ଼ିଥିଲ) ମୁଁ ଜାଣେ ଅସ୍ଥିର ହୋଇପଡ଼ିଲେ ଭବିଷ୍ୟତର ଶୀତଳସ୍ପର୍ଶ ଦେହ ଭିତରେ ଶିହରଣ ଖେଳାଇଦିଏ । ଦ୍ୱନ୍ଦ୍ୱ ସମାହିତ ଜୀବନ ଭିତରେ ବୁଢ଼ିଆଣୀ ଜାଲ ଆଉ କିଛି ଅଂଶ ବ୍ୟାପିଯାଏ । ହଠାତ୍ ଉନ୍ମାଦ ହୋଇଯିବାର ବେଦନା ଆପଣାର ମନକୁ ବଡ଼ ବିଷାକ୍ତ କରିପକାଏ । ମୁଁ ନିଜତ୍ୱ ହରାଇ ବସିଲା ଭଳି ଲାଗେ ।

ଏ ଅସ୍ଥିରତାକୁ ତମେ ଗୋଟିଏ chaos ବୋଲି କହିପାର, ଗୋଟେ ବିଶୃଙ୍ଖଳ ଚରିତ୍ରର ଆତ୍ମକଥା ବୋଲି ମଧ ଗ୍ରହଣ କରିପାର । ଏ ଅସ୍ଥିରତାର ଏକ ନିଜସ୍ୱ ପରିଚୟ ଅଛି, ଏକ ସୀମାରେଖା ମଧ । ଆପଣାର being ସହ ସେ ସାଲିସ୍ କରିବାକୁ ଆଦୌ ପ୍ରସ୍ତୁତ ନୁହେଁ । ବରଂ ଜୀବନର ମେରୁଦଣ୍ଡକୁ ବାରମ୍ବାର ଦୋହଲାଇ ଦିଏ । ଏହାକୁ ନେଇ କିଛି axiom ଭାବିହୁଏନି, କିଛି ସମାଧାନ ମଧ ଚିନ୍ତା କରିହୁଏନି । ସ୍ଥିରତା ଭଳି ଅସ୍ଥିରତା ଏକ ସତ୍ୟ । ସବୁ ସ୍ୱୀକାରୋକ୍ତି କୁଆଡ଼େ ଅସ୍ଥିର ହୋଇପଡ଼ିଲେ ଲେଖିବାକୁ ହୁଏ । ସବୁ ଧର୍ମ ଏବଂ ନୈତିକତାର ଉଦ୍‌ଭବ ହୋଇଛି ଏ ଅସ୍ଥିରତା ମଧରୁ । ମଣିଷକୁ ଯେପର୍ଯ୍ୟନ୍ତ ଶାନ୍ତ ଜୀବନର ଲୋଡ଼ା ଥିବ, ସେ ପର୍ଯ୍ୟନ୍ତ ସେ ଅସ୍ଥିର ହୋଇ ପଡୁଥିବ ।

ଅସ୍ଥିରତାର ଜନ୍ମ ହିଁ ଯେଉଁଠି, ମୃତ୍ୟୁ ମଧ୍ୟ ସେଇଠି । ମୋ ଜୀବନ ସହ ସମାନ୍ତରାଳ ଗତିରେ ଯାଉଥିବା ଏହି ଗୁଣଟିକୁ ମୁଁ ଆପଣା ଭିତରେ ସ୍ଥାନ ଦେଇଛି । ସମ୍ଭବତଃ ମୁଁ ଏହାକୁ ନେଇ ବିମୁଖ ହୋଇପଡୁନି; ବୀତସ୍ପୃହ ହୋଇପଡୁନି । ଗୋଟାଏ ନିର୍ଦ୍ଦିଷ୍ଟ ପରିଧି ଭିତରେ ଯଦିଓ ମୁଁ ଲୁଚକାଳି ଖେଳ ଖେଳୁଛି ତଥାପି ଏହା କବଳରୁ ତ୍ରାହି ନାହିଁ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏ ଅସ୍ଥିରତା ମୋତେ ବାରମ୍ବାର ଗୋଟାଏ ଅନିଶ୍ଚିତତାର ସ୍ରୋତରେ ଭାସିଯିବାକୁ ବାଧ୍ୟ କରୁଥିବ । ଏଥିରେ କିଛି ହେଲେ ସନ୍ଦେହ ନାହିଁ ।

କେତେ ଦିନ ହେବ ତମେ ଆଉ ମୋତେ ଅନୁଭବ କରିପାରୁ ନାହଁ । ତମେ ମଧ୍ୟ ଅନ୍ୟମାନଙ୍କ ଭଳି ଆମ ସମ୍ପର୍କରେ କିଛିଟା କ୍ଳାନ୍ତି ନିଶ୍ଚୟ ଅନୁଭବ କରୁଥିବ । ତମ ପାଇଁ ଯେତେବେଳେ ଅନେକ ରାସ୍ତା ଉନ୍ମୁକ୍ତ, ତମେ ବରଂ ନିଜର ସ୍ୱାଧୀନତା ସମ୍ପର୍କରେ ଏଭଳି ସଚେତନତାକୁ ମୁଁ ଗ୍ରହଣ କରିବି । ତମର ଆଉ ଏବେ ଯୋଜନା କ'ଣ ? ଅମ୍ଳାନ କିଛି ଲେଖି ନାହିଁ ।

ଅଚ୍ୟୁତ

***ଦ୍ରଷ୍ଟବ୍ୟ :*** ଅମ୍ଳାନ ଚିଠି ଲେଖିଛି । ତମେ ତା' ପାଖକୁ ଲେଖି ନାହଁ ବୋଲି ସେ ବ୍ୟସ୍ତ ହେଉଛି । ଏ ଭିତରେ ତମେ ତା' ପାଖକୁ ଲେଖିସାରିଥିବ । ଏ ଚିଠିରେ ଅମ୍ଳାନ ମୋର metaphysical analysisକୁ ବର୍ଣ୍ଣନା କରିଛି ।

▯ ▯ ▯

ପ୍ରିୟ ବନ୍ଧୁ,

ତମେ ଲେଖି ନାହଁ । ଯଦି ଘରଠିକଣାରେ ଲେଖିଥାଅ ତେବେ ତାହା ମୋର ହସ୍ତଗତ ହେବାରେ ବିଳମ୍ବ ହେବ ।

ଆଜି ଅଠର ତାରିଖ । ପରୀକ୍ଷାଫଳ ବାହାରିବା ପରଠାରୁ ମୁଁ ତାଳଚେର ଛାଡ଼ିବା ଯୋଜନା କରିସାରିଥିଲି । ଆଜି ଚାଲି ଆସି ଏଇଠି କଟକରେ ସୁଧାକର ପାଖରେ ରହୁଛି । କିଛି ଦିନ ପାଇଁ ଆତ୍ମଗୋପନ କରିବାକୁ ସ୍ଥିର କରିଛି । ଅନେକ ଶୁଭେଚ୍ଛୁଙ୍କର ନିଷ୍ପତ୍ତିକ୍ରମେ ମୋତେ ଏଇଠି ଚାରିମାସ ଖଣ୍ଡେ ରହି ଅନ୍ୟ କିଛି ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ଏହାପୁଣି ଏକ ଦୂର ପାହାଡ଼ର ଚୂଡ଼ା ଛୁଇଁବାକୁ ହାତ ବଢ଼େଇବା ଓ ସ୍ୱପ୍ନ ଦେଖିବା କଥା ଘରେ ଯେଉଁ ପ୍ରକାର ପରିସ୍ଥିତି ସୃଷ୍ଟି ହୋଇଛି, ସେଇଠି ଆଉ ମୋ ପାଇଁ ସ୍ଥାନ ନ ଥିଲା । ବଡ଼ ଯନ୍ତ୍ରଣାରେ ମୁଁ ଦିନ କାଟୁଥିଲି । ଆପଣାର ଧ୍ୱଂସ କଥା ଦେଖୁଥିଲି । ଘରେ ମୋର ଫଳାଫଳ ଯଥେଷ୍ଟ ପ୍ରଭାବ ପକାଇଛି । ସମସ୍ତେ ଦୟା କରୁଛନ୍ତି । ମୋର ଭାଗ୍ୟର ବିଡ଼ମ୍ବନା କଥା ଆଲୋଚନା କରୁଛନ୍ତି ।

ତଥାପି ବି ଅବଚେତନ ମନରେ ମୋର ଏହିଭଳି ଚାଲି ଆସିବାଟା ଗୋଟାଏ ଝଡ଼ ସୃଷ୍ଟି କରିଛି । ବାବାମାଆ ଭାରି ଦୁଃଖରେ କାଳ କାଟିବେ । ମୋର ଅନୁପସ୍ଥିତି ତାଙ୍କୁ ଭାରି ବାଧିବ । ସେମାନେ ଯେତେହେଲେ ବି ମୋର ଦୁଃଖକୁ ନିଜର କରିବାକୁ ସବୁବେଳେ ଚାହାନ୍ତି । ତାଙ୍କ ପାଖରେ ମୁଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପରାଙ୍ଗପୁଷ୍ଟ ହୋଇ ରହିଗଲି ।

କେତେ ଦୁଃଖର କଥା ଏସବୁ । ଗର୍କୀ କେତେ ଭାଗ୍ୟବାନ୍ ଥିଲେ । ସଂସାରର ସମସ୍ତ ଝଡ଼ଝଞ୍ଜାକୁ ଅତିକ୍ରମ କରି ସାରିବା ପରେ ହିଁ ସେ ୟୁନିଭର୍‌ସିଟିକୁ ଯାଇଥିଲେ ପଢ଼ିବାକୁ । ୟୁନିଭର୍‌ସିଟିରୁ 'My World'କୁ ଏଇମିତି ଛିଟିକି ପଡ଼ିବା ମୋ ପାଇଁ ଅଭିଶାପ ନୁହେଁ ତ ଆଉ କ'ଣ ? ଜୀବନର ଏହା ଶେଷ କାଳ ବୋଲି ମୁଁ ଧରିନେଇଛି । ଏହାକୁ ଶେଷ ସଂଗ୍ରାମ ବୋଲି ଭାବୁଛି । ତମେ ବୁଝୁଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କିଛି ଦିନ ଧରି ପାଗ ଭଲ ନ ଥିଲା । ତୁହାକୁ ତୁହା ବର୍ଷା ହେଉଥିବାରୁ ବଡ଼ ଖରାପ ଲାଗୁଥିଲା । ଆଜି ସକାଳୁ ପତଳା ମେଘର ଆସ୍ତରଣ ତଳୁ ସୂର୍ଯ୍ୟାଲୋକ କିଛିକାଂଶରେ ମୋ ପାଖକୁ ପହଞ୍ଚିପାରିଛି । କେତେ ଦିନ ହେବ ମୁଁ ସୂର୍ଯ୍ୟ ଉଇଁବାର ଦୃଶ୍ୟ ଦେଖି ନାହିଁ, ସୂର୍ଯ୍ୟାସ୍ତର ରଙ୍ଗରେ ମଧ୍ୟ ଆତ୍ମବିହ୍ୱଳ ହୋଇଯିବାର କଥା ଅନୁଭବ କରିପାରି ନାହିଁ । ଏହିଭଳି ଘଟିବାକୁ ମୁଁ ଗୋଟାଏ ପ୍ରକାରର ମୃତ୍ୟୁ ବୋଲି ଭାବିଥାଏ । ଅବେଳରେ ବିଗତ ଦିନଗୁଡ଼ିକ ପାଇଁ ମଧ୍ୟ ମୁଁ ମୋର ପ୍ରାଣର କିଛି ଭାଗ ଅଜାଡ଼ି ଦେଉଛି । ତଥାପି ତମେ ତ ଜାଣ, ଭବିଷ୍ୟତର ସ୍ୱପ୍ନ ଭଳି ଅତୀତର ରୋମାଞ୍ଚକ ବା 'nostalogia'କୁ ନେଇ ବଞ୍ଚି ହୁଏ ନାହିଁ । ମୋ ଭଳି ମଣିଷଟିଏ ବୋଧେ ବର୍ତ୍ତମାନରେ ବିଶ୍ୱାସ କରେ ନାହିଁ । ସେ ସ୍ୱପ୍ନ ବିଭୋର ହୋଇଯିବାକୁ ଯେତିକି ଭଲ ପାଏ ଅତୀତକୁ ସେତିକି ନିଜସ୍ୱ ବୋଲି ଗ୍ରହଣ କରେ ।

ବର୍ତ୍ତମାନକୁ ଗୁରୁତ୍ୱ ଦେବାଟା ବୋଧେ ମୋ ପାଇଁ ଠିକ୍ ହେବ ନାହିଁ । ବର୍ତ୍ତମାନ କହିଲେ ତ ହାତ ପାଖର ବହିସ୍ତୂପ ଛଡ଼ା ଆଉ କ'ଣ ହୋଇପାରେ ? ସଂସାରରେ ଆପଣାର ସ୍ଥାନ ନିର୍ଦ୍ଧାରଣ କରିବାଠାରୁ ଆଉ କ'ଣ ଜଘନ୍ୟ ଅପରାଧ ଏ ମଣିଷ କରିପାରେ, ମୁଁ ଜାଣିପାରୁ ନାହିଁ; ସମସ୍ତଙ୍କର ଆଶା ଭରସାକୁ ମଧ୍ୟ ଯିଏ କାନକୁ ନିଏ, ସିଏ ମଧ୍ୟ ମୋ ପାଇଁ ଭଲ ମଣିଷ ନୁହେଁ ।

କେଜାଣି କାହିଁକି ଅନେକ ବୋଝ ଲଦି ମୁଁ ଯେମିତି ଏ ସଂସାରର ରାଜରାସ୍ତାରେ ଚାଲିଛି । ଏଇଠି ସମୟ ଓ ସୁଯୋଗ ଅନେକ ରୂପରେ, ଅନେକ ମାୟାରେ ଲୋଭ

ଦେଖାଉଛନ୍ତି । ଏଇଠି ପାଖ ମଣିଷ ସହ ସମ୍ବନ୍ଧ ନାହିଁ । ଭଲ ପାଇବା କଥା କେହି ବୁଝନ୍ତି ନାହିଁ । ମୁକ୍ତି ପାଇବା କଥା ଆପଣାର ହାତରେ ନାହିଁ ବୋଲି ଧରିନିଅନ୍ତି । ଏହି ରାଜପଥରେ ଯିଏ ଚାଲିଛି ସିଏ ସରଳ ମଣିଷ ହୋଇପାରେ, ହେଲେ ସହଜ ମଣିଷ ନୁହେଁ । ଭାବବିହ୍ୱଳତା ଏଇଠି ଅଛି, ସବୁ ପୁଞ୍ଜିଭୂତ ବେଦନାର ସୁପରିପ୍ରକାଶ ଅଛି । ତଥାପି ସେହି ବୋଝ ବୋହି ମଣିଷ ଆତ୍ମପ୍ରତାରଣା କରୁଛି; ସମସ୍ତଙ୍କୁ ଦୋଷୀ ସାବ୍ୟସ୍ତ କରୁଛି । (ଏକଥା ତମର ଅଗ୍ନାଅଗ୍ନି ବନସ୍ତର ପଥିକକୁ ଲକ୍ଷ୍ୟ କରି ମୁଁ ଲେଖୁଛି ।)

ଏଇ ଗତ କେତେ ଦିନର ମୋର ଚିଠିରୁ ମୁଁ କିପରି ଶୁଷ୍କ ହୋଇ ଯାଉଛି, ତମେ ସମ୍ଭବତଃ ଅନୁଭବ କରିପାରୁଛ । ଏସବୁ ଏକ ଭୀଷଣ ଆତ୍ମପ୍ରତାରଣାର ଫଳ ବୋଲି ମୁଁ ସ୍ୱୀକାର କରୁଛି । ମୁଁ ଜାଣେ ମୋର କେଉଁଠି ଭୁଲ୍ ରହିଯାଇଛି । ତଥାପି ପରିସ୍ଥିତିର ଚାପରେ ମୁଁ ତାହା ସୁଧାରି ପାରୁ ନାହିଁ । ଏହା ଭାଗ୍ୟର ଏକ ବିଡ଼ମ୍ବନା ।

ଚିଠି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କିଛି ସମୟପାଇଁ ଏଇଠି ବିଜୁଳି ସରବରାହ ବନ୍ଦ ଥିଲା ।

ଏ ସମଗ୍ର ଜନପଦ ଅନ୍ଧକାର ଭିତରେ ହଜିଯାଇଥିଲେ ଭଲ ହୋଇଥାଆନ୍ତା । ମୁଁ ଅନ୍ତତଃ କିଛି ସମୟ ପାଇଁ ଆପଣାର ମନର ମଣିଷ ସହ ସଂଳାପ ରଚି ପାରିଥାଆନ୍ତି । ରାତି ଦଶଟା ପାର ହୋଇଯିବଣି । ତଥାପି ଏ ସହର ଶୋଇପଡୁନି । ମଣିଷ ଆଲୁଅ କଟିଗଲେ ମଧ୍ୟ ଖାତିର କରୁନି । ପ୍ରତି ଘରୁ ଜିକି ଜିକି ହୋଇ ଡିବିରି ହେଉ ପଛକେ କ'ଣ ଗୋଟାଏ ଜଳି ଉଠୁଛି । ବଡ଼ ଭୌତିକ ଜଣା ପଡୁଛି । ଅଥଚ ଭୟ ଲାଗୁନି । ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ଏ ମଣିଷର ପ୍ରକୃତିକୁ ଲକ୍ଷ୍ୟ କଲେ । ଅନ୍ଧକାରକୁ ତା'ର କେତେ ଭୟ, କେତେ ଘୃଣା ! ଆଲୁଅକୁ ତା'ର କେତେ ଶ୍ରଦ୍ଧା, କେତେ ଆଦର ! ଜୀବନର ସବୁ ପଦକ୍ଷେପରେ ସେ ଆଲୁଅ ଓ ଅନ୍ଧକାରକୁ ତୁଳନା କରୁଛି । ତପସ୍ୟାକୁ ସେ କହୁଛି ଆଲୋକାଭିମୁଖରେ ଯାତ୍ରା କରିବା; ସିଦ୍ଧିଲାଭକୁ କହୁଛି ଆଲୋକ ପାଇବା । 'ତମସୋ ମା ଜ୍ୟୋତିର୍ଗମୟ' କି 'lead kindly light' କଥା ବାରମ୍ବାର ଉଚ୍ଚାରଣ କରୁଛି । ବଞ୍ଚିବାଟାକୁ ଏ ମଣିଷ ଆଲୁଅ ସହ ମିଶାଇ ଦେଇଛି । ଜ୍ଞାନାଲୋକ କହିଲେ ମଣିଷ ଉତ୍‌ଫୁଲ୍ଲ ହେଉଛି ।

କିନ୍ତୁ ଅଜ୍ଞାନର ଅମାଅନ୍ଧକାରକୁ ମଣିଷ ପଦାଘାତ କରୁଛି । ଅନ୍ଧାରରେ ରହିଲେ ଯାହା, କୁଆଡ଼େ ନର୍କରେ ରହିଲେ ବି ସେଇଆ । ପାପକୁ ବି ଅନ୍ଧାର ବୋଲି କୁହାଯାଇଛି । ନିକିତିରେ ତଉଲି ମଣିଷ ଅନେକ ଜିନିଷକୁ ଅନ୍ଧାର ବୋଲି ଗ୍ରହଣ କରିନେଇଛି ।

ମୋତେ କିନ୍ତୁ ଅନ୍ଧାର ଭଲ ଲାଗେ । ନିର୍ଜନତା ସହ ଏ ଅନ୍ଧାର ଉପଭୋଗ କରିହୁଏ । ମୁହୂର୍ତ୍ତକ ପାଇଁ ହେଉ ପଛକେ ମୁଁ cosmosର ଏକ ସଙ୍ଗୀତ ଶୁଣେ । ଏଇଠି ଏ ବ୍ରହ୍ମାଣ୍ଡର ଅସୀମତା ଭିତରେ ହଜିଯିବାକୁ ପଡ଼େ । ଏଇଠି ଉପତ୍ୟକା ଏବଂ ପାହାଡ଼ ଏକାକାର ହୋଇଯାଆନ୍ତି । ଏଇଠି ମଣିଷକୁ ତା' ମୁହଁରୁ ନ ଚିହ୍ନି ତା' ପଦଶବ୍ଦରୁ ବାରିହୁଏ । ଏତେବେଳେ being ସ୍ଥାଣୁ ହୋଇଯାଏନି । ଏ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଆପଣାର ବସ୍ତୁଗୁଡ଼ିକୁ ସ୍ପର୍ଶ କରିହୁଏ । ଅନ୍ଧକାର ଭିତରେ ଆଖିବୁଜି ବସି ରହିଲେ ଗୋଟାଏ ଭିତରେ ଆତ୍ମଗୋପନ କରିହୁଏ । ଗୋଟାଏ ନିର୍ବାତ ସମୟ ଆସିଯାଏ । ରାଶିରାଶି ଅନ୍ଧାର ଏ ପିଣ୍ଡକୁ ଗ୍ରାସ କରେ ।

ଯାହା ସହ communicate କରିବାର ଇଚ୍ଛା ତା' ପାଖକୁ ଏ ଅନ୍ଧକାରର ସ୍ରୋତରେ ପହଁରି ଯାଇହୁଏ । ଏତିକିବେଳେ ହିଁ ଆପଣାର ଖୋଳ ଭିତରୁ ଜୀବାତ୍ମା ବାହାରିପଡ଼େ । ଅନ୍ଧକାର ଭିତରେ ବୁଡ଼ି ରହିଲେ ଆଲୁଅ କ'ଣ ସିନା ଜାଣିହୁଏନି, କିନ୍ତୁ ବେଶ୍ ଅନୁଭବ କରିହୁଏ ।

ତମେ କେବେ ଏହିଭଳି ଅନ୍ଧାରରେ କୌଣସି ଏକ ବହମାନ ସ୍ରୋତକୁ ଆବିଷ୍କାର କରିଛ କି ? ଏ ପୃଥିବୀ ସତ୍ତାହୀନ ହୋଇ ଯାଉଥିବା ବେଳେ, ସମୟ ସ୍ଥିତିହୀନ ହୋଇ ପଡୁଥିବାବେଳେ ଜଳଧାରଟିଏ ହଠାତ୍ ଅନ୍ଧକାର ଗର୍ଭରେ ହୀରା ଭଳି ଚିକ୍‌ଚିକ୍ କରିଉଠେ । ଗୋଟାଏ ମହାଜାଗତିକ ଦୃଶ୍ୟ ଉଦ୍‌ଭାସିତ ହୋଇପଡ଼େ । କେଜାଣି କେମିତି ଏ ଅନ୍ଧାର ଭିତରେ ଏତେ ଆଲୁଅ ଜମାଟ ବାନ୍ଧେ, ଆଦୌ ହୃଦୟଙ୍ଗମ କରିହୁଏନି । ଯଦି existence ଟା ଗୋଟାଏ cosmic phenomenon, ତେବେ ମୁଁ ନିଜକୁ ଅନ୍ଧାର ଭିତରେ ଲୁଚାଇ ଦେଇ ସେହିଭଳି ଏକ ଆଲୁଅକୁ ପ୍ରତିଫଳିତ କରିବାକୁ ଚାହେଁ । ଆପଣାର ହୃଦୟ ଭିତରେ ସ୍ଥାନ ଦେବାକୁ ଚାହେଁ । ତେଣୁ ଅନ୍ଧାର ମୋତେ ଭଲଲାଗେ । "ଆଲୁଅ ତା'ର କି ମନୋହର, ଅନ୍ଧାକର ତା'ଠାରୁ ଭଲ" ମୋ ପାଇଁ ଯଥାର୍ଥ ହୁଏ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ମୋର ଏମ୍.ଏସ୍.ସି. ପରୀକ୍ଷାର ପରୀକ୍ଷାଫଳ ବାହାରିଛି । ବିନା ଆବେଗରେ ମୁଁ ଏହାକୁ ମୁଁ ଗ୍ରହଣ କରିନେଇଛି । ଏହି କଥା ଘଟିବ ବୋଲି ମଧ୍ୟ ମୁଁ ଆଗରୁ ଆଶଙ୍କା କରିଥିଲି । ଏମ୍.ଏସ୍.ସି. ପରୀକ୍ଷାର ଫଳାଫଳ ଉପରେ ପ୍ରାୟ ମୋର ଭବିଷ୍ୟତ ନିର୍ଭର କରୁ ନ ଥିଲା । ତଥାପି ତାଳଚେର କଲେଜରେ lecturership ମିଳିଯିବାର ଯଥେଷ୍ଟ ସମ୍ଭାବନା ଥିଲା । ଏହିସବୁ କାରଣ ନେଇ ଘରେ ସମସ୍ତେ ଦୁଃଖରେ ଭାଙ୍ଗି ପଡୁଥିବାର

କଥା ମୁଁ ଅନୁଭବ କରିପାରୁଛି । ସେମାନଙ୍କୁ ମୁଁ ବୁଝେଇବା ଅବସ୍ଥାରେ ନାହିଁ ବା ମୋତେ ସେମାନେ ମଧ୍ୟ କିଛି ପ୍ରେରଣା ଦେଇ ପାରୁ ନାହାନ୍ତି ।

ଏହି failureରୁ ମୁଁ କିଛି ଦାର୍ଶନିକ ଯୁକ୍ତି ବାଢୁ ନାହିଁ । କିଛିଟା fatalistic ହୋଇପଡ଼ିଛି । ଯିଏ ସମ୍ଭବତଃ ଯେଉଁଥିପାଇଁ ଗଢ଼ା ହୋଇଛି ସିଏ ସେଇଆ ହିଁ ହୋଇଯିବ, ନିଜ ଜାଣତରେ ଏବଂ ଅଜାଣତରେ ମଧ୍ୟ । ତମେ କେତେ ଦିନ ତଳେ ଦଇବ ଦଉଡ଼ି କଥା ଲେଖିଥିଲ, ମୁଁ ସେତେବେଳେ ବିଶ୍ୱାସ କରୁ ନ ଥିଲି । କେତେଜଣ ଅବସ୍ଥାଚକ୍ରରେ ପଡ଼ି 'tryst with destiny' କଥାରେ ଉଦ୍‌ବୁଦ୍ଧ ହୋଇ ପଡ଼ନ୍ତି, ଏକଥା ମୁଁ ଜାଣିପାରୁନି । ବଡ଼ ଅସହାୟ ଲାଗୁଛି ।

ଏହାପରେ କ'ଣ କରିବି କିଛି ଠିକ୍ କରିପାରୁନି । ଘରର ବାତାବରଣ ମୋତେ ଆଦୌ ଭଲ ଲାଗୁନି । ତାଳଚେରରେ ଆଉ ଗୋଟେ ମୁହୂର୍ତ୍ତ ରହିବାକୁ ଇଚ୍ଛା ନାହିଁ । ଘରେ ସମସ୍ତଙ୍କୁ ରାଜି କରାଇଥିଲି ଆଉ ଚାରିମାସ ପାଇଁ ମୋତେ support କରିବାକୁ । ଏବେ ସେଭଳି ସାହସ ନ ଥିବା ଭଳି ମନେହେଉଛି ।

ତମେ ଦୁଃଖ କରୁ ନ ଥିବ । ତମେ ତ ବୁଝୁଥିବ ମୋତେ । ଆଜି ଆଉ କିଛି ଲେଖୁନି ।

ଚିଠି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଚିଠି ପାଇଲି, ସାମାନ୍ୟ ବିଳମ୍ବ ହେଲେ ମଧ୍ୟ । ଗୁମ୍‌ରୁ ଅନେକ କଥା ଲେଖିବି ବୋଲି ଭାବି ଆସିଥିଲେ ମଧ୍ୟ ଏଇ ପୋଷ୍ଟ ଅଫିସରେ ସେସବୁ ପାଶୋରି ଦେଲିଣି । ମୋର ଟଙ୍କା ଦରକାର ଥିଲେ ମଧ୍ୟ ସେତେ ଜରୁରୀ ନ ଥିଲା । ସ୍ୱାଧୀନଠୁ ମାଗିନେଇଛି । ତମେ ଆଦୌ ବ୍ୟସ୍ତ ହେବନି, ହେବାର କିଛି ନାହିଁ । ତମେ ଦିଲ୍ଲୀ ନ ଯିବାଟା ଉଚିତ ହୋଇନି । Economics ଛାତ୍ର ହିସାବରେ ତମର ଲାଭକ୍ଷତିକୁ ଭଲ ଭାବେ ବିଚାର କରିଥିଲେ ତମେ ନିଶ୍ଚୟ ଯାଇଥାଆନ୍ତ । ତେବେ ବର୍ତ୍ତମାନ ସେସବୁ ଅତୀତ । ତମେ କାହିଁକି ଯେ restless ଅନୁଭବ କରୁଛ ମୁଁ ବୁଝିପାରୁନି । ତମକୁ ଅନ୍ତତଃ ସର୍ବଦା balanced mindରେ expect କରାଯାଇପାରେ । ଆଶା, ଏ ଚିଠି ପାଇଲାବେଳକୁ ତମେ କିଛି ସେମିତି ଅସ୍ଥିରତା ଅନୁଭବ କରୁନ ନିଶ୍ଚୟ । ବାଣୀବିହାର ଓ ରମାଦେବୀ ମହିଳା କଲେଜ୍‌କୁ ନେଇ ତମେ ସାଧାରଣଙ୍କ ଭଳି ବିଶେଷ curiously watch କରୁଛ । ଏହା ଗୋଟେ କିମ୍ଭୂତକିମାକାର ସମସ୍ୟା ହେଲେ ମଧ୍ୟ ତମେ ବା ମୁଁ ମୁଣ୍ଡ ଖେଳେଇବା ଠିକ୍ ହେବନି ।

ଦୁଇ ଦିନତଳେ (୧୪, ୧୫, ୧୬) ସ୍ୱାଧୀନ ଆସି ମୋ ପାଖରେ ଥିଲା । ସ୍ୱାଧୀନକୁ ତମେ ଜାଣ । ସେ ସେତେ emotional ନୁହେଁ, ଖୁବ୍ straight forward । ମୋ ଜୀବନର ବିକ୍ଷିପ୍ତ କାହାଣୀକୁ ମୁଁ ତାହା ସହିତ share କରିବାକୁ ସାହସ କରିନି । ସେ କେମିତି ସମୟ କାଟିଛି, ମୁଁ ଠିକ୍ ଭାବେ ଜାଣିପାରିନି । ଆଚାର୍ଯ୍ୟ ତମକୁ company ଦେଉଥିବାରୁ ମୁଁ ଭାବୁଛି ତମେ ସେତେଟା ବୋର୍ ଅନୁଭବ କରୁ ନ ଥିବ । କିନ୍ତୁ ତା'ର affair କେବେହେଲେ ନିଜକୁ ସଂଶ୍ଲିଷ୍ଟ କରିବ ନାହିଁ । ଏଥିପାଇଁ ମୁଁ ତମକୁ ସତର୍କ କରିଦେଉଛି । ସେସବୁ ତମର ତଥାକଥିତ isolation ଠୁ ନିଶ୍ଚୟ ଦୂରରେ । ତମେ ନିଜକୁ ଆହୁରି integrate କରିବାର ସୁଯୋଗ ପାଇବ disintegrationର ମାଧ୍ୟମରେ । ତେଣୁ ବର୍ତ୍ତମାନର ଘଟଣା ପ୍ରବାହକୁ ତମକୁ ସାଦରେ ଗ୍ରହଣ କରିବାକୁ ପଡ଼ିବ । (ଯଦିଓ ଏହାର manifestation restlessness ହୋଇପାରେ, ହୋଇପାରେ ବି ଆଚାର୍ଯ୍ୟ ସଙ୍ଗେ friendship)

ଏତେ ସମୟ ଧରି ଲେଖିଲା ପରେ ମୋ କଥା ଲେଖିବାକୁ ସାହସ ହେଉନି । ଏତିକି କହିପାରେ ଯେ ଚେତନାଶୀଳତା ଓ ଦାୟିତ୍ୱବୋଧ ସମ୍ପର୍କରେ ମୁଁ ଯେତିକି ସଚେତନ ହୋଇପଡୁଛି, ସେତିକି ପଛେଇ ଯାଉଛି; ସେତିକି dull ଅନୁଭବ କରୁଛି । ହୁଏତ ମୁଁ ଏକ ଧରାବନ୍ଧା ଜୀବନରେ ଆଉଥରେ failure ବୋଲି ପ୍ରମାଣିତ ହୋଇଯିବାର ଭୟ ଅଛି ।

ଆସନ୍ତା X-masରେ ତମେ ଏଇଠି ଆସି ଛୁଟି କଟାଅ । ମୁଁ ଜାଣେ ତମର ଘର ପ୍ରତି ଯଥେଷ୍ଟ ମମତା ଅଛି ଯାହା ସ୍ୱାଭାବିକ । କିନ୍ତୁ ଏଥର କିଛି ଅସ୍ୱାଭାବିକ କାମ କରିବାକୁ ସାହସ କର । ଲଳିତ କେବେ ଫେରୁଛି ? ଚିଠିଦେବ । ତମକୁ ମୋର ଗୋଟାଏ ସୁଖମୟ ଜୀବନର ଶୁଭେଚ୍ଛା ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଚିଠି ପାଇଛି । ଦାବୀ ନ କଲେ ମଧ୍ୟ ତମର ସବୁ illusions ତଥା ସମସ୍ତ ଅସଫଳତା (ଲିପ୍ତ ହୋଇଯିବା ଜନିତ)କୁ ମୁଁ ବୁଝିପାରେ । ଅନେକବାର କହିଛି ଯେ ଏ ବୟସ ଆମର ଶତ୍ରୁ ହୋଇଯାଉଛି । ନା' ଆମେ ଆଗକୁ ଯାଇପାରୁଛେ, ନା' ପଛକୁ ଫେରିଆସୁଛେ । ଏ ଦୁଃସମୟରେ ଆମର ନିର୍ଜନତା ଆମକୁ ପ୍ରଲୋଭିତ କଲେ ମଧ୍ୟ ଉଦ୍‌ଭାସ ଆଣିଦିଏନି । ଏ ଆମର ଯାତ୍ରାପଥ ଅନିଶ୍ଚିତତାର ସଫଳ ହୋଇଯାଏ । ଏ

ମନପକ୍ଷୀ କେଉଁ ଏକ ଅଗ୍ନାଗ୍ନି ବନସ୍ତରେ ଉଡ଼ି ବୁଲିବା ପାଇଁ ବ୍ୟାକୁଳ ହୋଇପଡ଼େ। ଆମେ କିନ୍ତୁ ସ୍ଥାଣୁ ପାଲଟିଯାଉ, ଭୟରେ ନ ହେଲେ ଆତ୍ମପ୍ରବଞ୍ଚନାରେ ଆପଣାର ଉଦ୍‌ଗତ କୋହକୁ ଅତି ନିଷ୍ଠୁର ଭାବେ ଚାପି ରଖୁ। ଶୋପେନ୍‌ହାଉଅର୍ (Schpenhauer) କୁଆଡ଼େ କହୁଥିଲେ, "The world as will an idea" । ଆମ ପାଇଁ କେତେ ଅସତ୍ୟ; କେତେ ଅପ୍ରାକୃତିକ ଏହା। ହୋଇପାରେ, ସୂର୍ଯ୍ୟୋଦୟ ଅତୀବ ସୁନ୍ଦର। କିନ୍ତୁ ଅନୁଭବ କରିହୁଏ ନାହିଁ ତାହାକୁ। ଝରାପତ୍ରର ମର୍ମର କୁଆଡ଼େ ଭାରି ସଙ୍ଗୀତମୟ; ଅଥଚ ଆମର କାନ ବୁଜି ହୋଇଯାଏ। ଏ ପୃଥିବୀରେ ସମ୍ପର୍କସବୁ କେତେ ମଧୁର। କିନ୍ତୁ ଆମ ପାଇଁ କେତେ ଦୁଷ୍ପ୍ରାପ୍ୟ !

ଆଜି ପର୍ଯ୍ୟନ୍ତ ଏ ପୃଥିବୀରୁ ଆମେ କ'ଣ ସାଉଁଟି ପାରିଛେ, କ'ଣ ଆପଣାର କରିପାରିଛେ ? ଯିଏ ବା ପାଇଛି, ଯିଏ ସବୁ କିଛି ହାସଲ କରିପାରିଛି, ସିଏ କେଉଁ ଅତିମାନବ ହୋଇଯାଇଛି ? ସବୁ ଯେମିତି ବୁଢ଼ିଆଣୀ ଜାଲ ଭଳି ଛନ୍ଦି ହୋଇଯାଏ। To involve or not to involveର ଦ୍ୱନ୍ଦ୍ୱ ଆପେ ଗ୍ରାସ କରେ। ଆରଣ୍ୟକ ହୋଇଯିବା ପାଇଁ ଯେତିକି ଇଚ୍ଛା ହୁଏ, ମହାତ୍ମା ପାଲଟିବାର ସେହି ଗର୍ହିତ ଚିନ୍ତା ସେତିକି ପ୍ରବଳ ହୁଏ।

ସେଇଥିପାଇଁ ମୁଁ କହୁଥିଲି ଏ ପୃଥିବୀଟା ଆମ ପାଇଁ ଦ୍ୱନ୍ଦ୍ୱସମାହିତ ଆଶ୍ରୟସ୍ଥଳ। ଆମର ଜୀବନଟା ନିପଟ ମିଥ୍ୟା। ତମକୁ ତ ଲେଖିଥିଲି ଏହି ସବୁକୁ ଅତି ବିକୃତ ଭାବେ ଅନୁଭବ କରି। ମୁଁ ଜଡ଼ିତ ହୋଇପାରୁ ନାହିଁ ବୋଲି ତ ମୁକ୍ତ ମଣିଷ ହୋଇପାରୁ ନାହିଁ। ମୁକ୍ତ ମଣିଷ ନୁହେଁ ବୋଲି ତ ଯେଉଁଠି ପହଞ୍ଚିଯାଉଛି ସେଇଠି 'outsider' ହୋଇଯାଉଛି। ଆଉ... ଗୋଟିଏ 'outsider'ର କ'ଣ ପରିଚୟ ଅଛି ?

ଆଜି ଏଇଠି ଖୁଦୁରୁକୁଣୀ ଓଷା ହେଉଛି। ସାହିଯାକର ସବୁ ଝିଅ ଆମ ପଡ଼ିଶା ଘରେ ଏକାଠି ହୋଇଛନ୍ତି। ମୋର ୯/୧୦ ବର୍ଷର ଝିଅାରୀମାନେ ନିଜ ଭାଇ ପାଇଁ ଆଜି ଓପାସ କରିଛନ୍ତି। ଏହା ପୁଣି ଏକ ଅଭିନବ ସମ୍ପର୍କ, ମୋ ପାଇଁ ଅଭେଦ୍ୟ। ଭଲ ପାଇବାର ଏହାଠୁ ବଳି ଆଉ କ'ଣ ନିଦର୍ଶନ ରହିଛି ! ଘରେ ଛୋଟ ଭାଇ ସହ କଳିଗୋଳ କଲେ ମଧ୍ୟ ପୁଣି ଆଧ୍ୟାତ୍ମିକତାର ସହ ତା' ପାଇଁ କେତେ ମନାସ କରୁଛନ୍ତି।

ସତରେ କି ଭଲ ମଣିଷ ଏମାନେ ! କାଲିର ସମ୍ପର୍କ କ'ଣ ହେବ ନ ଜାଣିପାରି କେତେ ଖୁସି ଅଛନ୍ତି। କେତେ ନିଷ୍ପାପ ହୋଇ ପାରୁଛନ୍ତି। ସତରେ କ'ଣ ଏଇଥିପାଇଁ ମଣିଷ ସ୍ୱର୍ଗରୁ ଓହ୍ଲାଇ ଆସିଛି ?

ମୁଁ ଆଉ ପାରୁ ନାହିଁ। ଯଦି ସମ୍ପର୍କ ଏତେ ମଧୁର, ଦେବାନେବାର ଭାବ ଏଥିରେ ରହୁଛି କାହିଁକି ? ତା'ହେଲେ ତ ମୁଁ ଏ ପୃଥିବୀରେ କାହାକୁ କିଛି ଦେଇ ପାରୁ ନାହିଁ। ତମେ ସବୁ କେତେ ଭଲମଣିଷ, ମୋ ପାଇଁ କେତେ ବଡ଼ ଆଶୀର୍ବାଦ। ମୋଠାରୁ ଆଶାକରି

କ'ଣ ତମେ ବନ୍ଧୁତା ବାନ୍ଧିଛ ? କ'ଣ ପାଇଁ ବାବାମାଆ ମୋତେ ଏତେ ସହଜରେ କ୍ଷମା ଦେଇପାରନ୍ତି ? କି ଉଦ୍ଦେଶ୍ୟରେ ମୋତେ ଏ ପୃଥିବୀ ଆପଣାର କ୍ରୋଡ଼ରେ ସ୍ଥାନ ଦେଇଛି ? କିଛି ମୁଁ ବୁଝିପାରୁନାହିଁ, କିଛି ମୁଁ ଅନୁଭବ କରିପାରୁ ନାହିଁ ।

ଅଚ୍ୟୁତ

***ବି.ଦ୍ର. :*** କଟକରେ ତ ରହିବାକୁ ହେବ । ଭାବିଥିଲି ଅନ୍ୟକିଛି ବ୍ୟବସ୍ଥା କରିବାକୁ । କିନ୍ତୁ ଲଜ୍ ଛଡ଼ା ଅନ୍ୟ ଆଶ୍ରୟସ୍ଥଳ ମିଳୁ ନାହିଁ । ତମେ ଭୁବନେଶ୍ୱରରୁ ଯାଇଆସି ପରୀକ୍ଷା ଦେଇ ପାରିବକି ନାହିଁ ଜାଣିନି । ଗତଥର ଶ୍ରୀକୃଷ୍ଣ ଲଜ୍‌ରେ ରହିଥିଲ ବୋଧେ । ତମେ ଲେଖିବ ଏ ବିଷୟରେ ।

▯ ▯ ▯

ପ୍ରିୟ ବନ୍ଧୁ,

ଗଦାଧର ଉମରକୋଟ୍‌ରୁ ଚିଠି ଲେଖିଛି । ବେଳେବେଳେ ସେ କାହିଁକି କେଜାଣି ମୋ ପାଖକୁ ମୋର କେତେକ ନିର୍ଦ୍ଦିଷ୍ଟ ଘଟଣାକୁ ଉଲ୍ଲେଖ କରି ମୋତେ ସଚେତନ କରିଦେଇଥାଏ ତା'ପାଇଁ ମଧ୍ୟ ଏ ପୃଥିବୀ ଯେତିକି ରହସ୍ୟମୟ, ଏ ଜୀବନ ମଧ୍ୟ ସେତିକି ବିଚିତ୍ର । ଅତି ନିଷ୍ଠାପରତାର ସହ ତା' ଜୀବନର ସମସ୍ତ ସମସ୍ୟାକୁ ସମାଧାନ କରିବାକୁ ସେ ମଧ୍ୟ ଅଣ୍ଟା ଭିଡ଼ିଛି । ସେ ସୁଖ ଚାହେଁ । ସେ ମଧ୍ୟ ଆତ୍ମାକୁ ନୌକା କରି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଅସୀମତାକୁ ପାରି ହୋଇଯିବାକୁ ଇଚ୍ଛା କରେ ।

ଏଇ 'ସୁଖଲାଭ'କୁ ନେଇ କିଏ କ'ଣ ବୁଝେ ମୁଁ ଜାଣି ନାହିଁ । Lin Yutang ତାଙ୍କ ବହି 'The Importance of Living'ରେ ସୁଖୀ ହେବା ପାଇଁ ଚାଇନିଜ୍ ଦର୍ଶନଶାସ୍ତ୍ରରୁ ପଇଁତିରିଶଟି ପନ୍ଥାକୁ ଉଦ୍ଧାର କରିଛନ୍ତି । (ତା' ଭିତରୁ ମୋତେ ଭଲ ଲାଗିଥିବା ପନ୍ଥାଟି ହେଉଛି, "ହଠାତ୍ ତମ ପାଖକୁ ବହୁ ଦିନ ଧରି ସମ୍ପର୍କ ନ ଥିବା ବନ୍ଧୁଟିଏ ପହଞ୍ଚିଗଲା ଏବଂ ତମେ କିପରି ଆସିଲ" ନ ପଚାରି ଯଦି କହିଲା, "Is it time for tea ?" ତେବେ ନିଶ୍ଚିତ ରୂପେ ତମେ ସେ ସମୟରେ ଅତିଶୟ ଆନନ୍ଦିତ ହୋଇଯାଇଛ ।) ଆହୁରି ମଧ୍ୟ ସେ କହନ୍ତି ଯେ ପେଟ ପୁରିଗଲେ ଯେଉଁ ଆନନ୍ଦ ଅନୁଭବ କରାଯାଏ, ସ୍ୱର୍ଗରେ ମଧ୍ୟ ତାହା ମିଳେ ନାହିଁ । ଅତି ବଳିଷ୍ଠ ଯୁକ୍ତିଦ୍ୱାରା ସେ ପ୍ରମାଣ କରିଛନ୍ତି ଯେ material spiritual pleasure ତୁଳନାରେ spiritual pleasure କିଛି ନୁହେଁ । (Happiness for me is a matter of digestion) Thoreau ଏ ସୃଷ୍ଟିରେ କେବଳ ଶିଶରକଣିକା ପିଇ ବଞ୍ଚୁଥିବା ଝିଣ୍ଟିକାଟି ସବୁଠାରୁ ସୁଖୀ ଜୀବ ବୋଲି ଗ୍ରହଣ କରିଛନ୍ତି । କବି Walt Whitman କୁଆଡ଼େ ଆକାଶକୁ ଲକ୍ଷ୍ୟ କରି ପାଗଳ ହୋଇଯାଉଥିଲେ ।

ପେଟ ପୁରିଗଲେ କି ମଣିଷର ବୌଦ୍ଧିକ ତଥା ସ୍ୱର୍ଗୀୟ ପିପାସା ମେଣ୍ଟିଗଲେ ମଣିଷର ସବୁ ଦୁଃଖ ଅନ୍ତର୍ହିତ ହୋଇଯାଏ, ଏକଥା ଯେଉଁ ଲୋକ ପରୀକ୍ଷା କରୁଛି କେବଳ ସେ ହିଁ ଜାଣିପାରିବ । ଏହାକୁ ଆପେକ୍ଷିକ ତତ୍ତ୍ୱ ମଧ୍ୟ କୁହାଯାଇପାରେ । ମଣିଷର ଦୁଃଖ ବିନାଶ ପାଇଁ କୌଣସି ଦେବଦୂତ ଲୋଡ଼ା ନାହିଁ । ନିଜ ଭିତରର ଆଗ୍ନେୟ ଉଦ୍‌ଗୀରଣ କେବଳ ମଣିଷ ନିଜେ ହିଁ ନିର୍ବାପିତ କରିପାରିବ ।

ଆଜି ଆମେ କେତେ ମାତ୍ରାରେ ଖୁସି ଅଛୁ କେବଳ ଆମେ ହିଁ ଜାଣିଛୁ । ଦୁଃଖ ଆମକୁ ଆପଣାର ମଣିଷ ସହ ଯେତିକି ପରିଚିତ କରିପାରିଛି ଏ ସଂସାରର ସବୁ ସ୍ୱର୍ଗ ଓ ନର୍କକୁ ମଧ୍ୟ ଅନୁଭବ କରାଇପାରିଛି । ଆମର quest କୁହ, ଆମର fare forward କୁହ, ସବୁ ଭିତରେ ଦୁଃଖ ଏକ ନିର୍ଦ୍ଦିଷ୍ଟ ପରିମାଣର ସାହଚର୍ଯ୍ୟ ଦେଇଛି । ସେଇଥିପାଇଁ ଦୁଃଖରେ ରହିଯିବାକୁ ମୁଁ ମଧ୍ୟ ମହାଜାଗତିକ ଆଶୀର୍ବାଦ ବୋଲି ସ୍ୱୀକାର କରୁଛି । ଆମ ଜୀବନରେ ତଥାକଥିତ ସୁଖ ମିଳିବ ନାହିଁ ଯଦିଓ, ଅତି ନଗଣ୍ୟ ଏ ପୃଥିବୀର ସଫଳତାମାନେ ଆମକୁ ବେଳେବେଳେ ବିଭ୍ରାନ୍ତ କରୁଥିବେ । ତେଣୁ ଆମେ କାହିଁକି ବୁଦ୍ଧଙ୍କ ଭଳି କହିବା ଯେ, "ଦୁଃଖର ବିନାଶରେ ମୋକ୍ଷଲାଭ ।"

ସେଇଥିପାଇଁ ଆମେ ଆମର ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ଓ ଆଭିମୁଖ୍ୟ ନେଇ ଏ ପୃଥିବୀର ସବୁ ସତ୍ୟାସତ୍ୟକୁ ଭଲ ପାଇଛେ । ଭଲ ପାଇବା ପାଇଁ ସ୍ୱପ୍ନ ଦେଖିଛେ । ବାରମ୍ବାର ଯନ୍ତ୍ରଣାଗ୍ରସ୍ତ ହୋଇ ପଡୁଥିଲେ ମଧ୍ୟ, ବାରମ୍ବାର ଘାତ ପ୍ରତିଘାତରେ ଭାଙ୍ଗି ପଡୁଥିଲେ ମଧ୍ୟ କେବେହେଲେ ଏଥିରୁ ବିରତ ହୋଇଯାଇନେ ।

ସୁଧାକର ମୋ ପାଖକୁ ଲେଖିଥିବା ଚିଠିରୁ ତମ ବିଷୟରେ (ପଢ଼ାପଢ଼ି) କିଛି ଜାଣିଲି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ନୂଆବର୍ଷରେ ତମକୁ ଶୁଭେଚ୍ଛା ଜଣାଉଛି । ଅବଶ୍ୟ ଡେରିରେ ।

ତମ ପାଖକୁ ଅନେକ ଦିନରୁ ଚିଠି ଲେଖି ନାହିଁ । ପ୍ରତିଶ୍ରୁତି ଭଙ୍ଗ କରିଥିବାରୁ ଦୁଃଖିତ । କ'ଣ ବା ଲେଖିବାର ଥିଲା ? ଭଞ୍ଜକୁ ଆମେ ସମସ୍ତେ ୨୪ରେ ବିଦାୟ ଦେଲୁ । ୨୬ରେ ଅମ୍ଲାନ ବାଣୀବିହାର ଛାଡ଼ିଲା । ସେ ବଡ଼ କଷ୍ଟରେ ଏଠାରୁ ଗଲା । ଭାସ୍କର ତା'ର caution money ନ ଦେବା ଯୋଗୁଁ କଳି କରିବାକୁ ବାହାରିଥିଲା । କିନ୍ତୁ

ଅସଲ ବେଳକୁ ଭାସିଆର ଦେଖା ମିଳିଲା ନାହିଁ । ସେ କିଛି ବହିନେବାକୁ ଚେଷ୍ଟା କରିଥିଲା; ମାତ୍ର ଭଲ ବହି କିଛି ମିଳିଲା ନାହିଁ । ୨୭ରେ ଗୁରୁ ଓ ରାସ ଏଠୁ ଗଲେ ଓ ସେଦିନ ମୁଁ ତାଳଚେର ଗଲି ।

ଏ ଭିତରେ ସତ୍ୟନଗରରେ ତମର ବହି ଓ ପ୍ରଫୁଲ୍ଲଠୁ ଖାତା ପଠେଇ ଦେଇଛି । ପାଇ ସାରିଥିବ । ପ୍ରମୋଦ କିଛି ଖାତା ଦେଲା ନାହିଁ । ସେ କହିଲା ଯେ ତମକୁ ଦେଖାହେଲେ ଫେରାଇବ । ମୁଁ ଜାଣି ନାହିଁ ସେ ଖାତା ତମର କେତେ ଜରୁରୀ । ସେ ଭଲ କାମ ନିଶ୍ଚୟ କରି ନାହିଁ ।

ଘରକୁ ମୋର ଆଗରୁ ଯିବା ଉଚିତ ହୋଇଥାଆନ୍ତା । ମୁଁ କ୍ରମଶଃ ସଂସାର ଭିତରକୁ ଟାଣି ହୋଇଯାଉଛି । ମୋ ବୟସରେ ବର୍ତ୍ତମାନ କୌଣସି ଗୋଟାଏ ବିଷୟରେ ପରିପକ୍ୱତା ଓ ଦକ୍ଷତା ଆସିବାର କଥା । କିନ୍ତୁ ମୁଁ ଅତି କରୁଣ ଭାବେ ତା'ର ଏକ ବ୍ୟତିକ୍ରମ । ଆଜି ମୋର କ'ଣ ବା ପରିଚୟ ଅଛି ଯେ ଏ ପୃଥିବୀରେ ଦମ୍ଭର ସହ ମୁଣ୍ଡ ଟେକି ପାରିବି ? ଘରର ଅବସ୍ଥା ଶୋଚନୀୟ । ଏ ଏକ ଅଭିଶାପ । ମୋତେ ଗୋଟେ କିଛି job ମିଳିଗଲେ ମୁଁ ଘରର କିଛି ଉପକାରରେ ଆସିପାରନ୍ତି । ମୁଁ କିନ୍ତୁ ଅନ୍ୟପକ୍ଷରେ ସ୍ୱପ୍ନ ଦେଖିଚାଲିଛି । ମୋର ଉଭୟ ମନ ଓ ଦେହ ରୋଗଗ୍ରସ୍ତ ହୋଇଯାଇଛି । ଏଠାରେ ଯେଉଁ ପ୍ରକାର ଯୁଦ୍ଧ ଚାଲିଛି, ମୁଁ ବରଂ ଶିକାର ହୋଇପଡ଼ିଛି । ମୋର ଯାହା ବା କିଛି ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ଥିଲା ସବୁ ହରାଇବସିଛି । ଏଇ ଆଉ କେଇମାସ ଏଠାରେ ଦୁଃଖକଷ୍ଟରେ କାଟି ଦେଲେ ମୁକ୍ତ ।

ମୋର ହଷ୍ଟେଲ୍ କିଛି finalise ହୋଇ ନାହିଁ । Superintendent ନାହାନ୍ତି । Wardenଙ୍କର ଦେଖା ନାହିଁ । କ'ଣ ହେବ କିଛି କହି ହେଉ ନାହିଁ । ମୋର ମାନସିକ ଶାନ୍ତି ବରଂ ବିପନ୍ନ ହେଉଛି । ଏଠି ଆଜି ୨ ତାରିଖରେ କ୍ଲାସ୍ ଆରମ୍ଭ ହେଲା । କେହିହେଲେ ସାଙ୍ଗ ନାହାନ୍ତି । ସବୁ କେମିତି ଗୋଟେ ଫାଙ୍କାଫାଙ୍କା ଲାଗୁଛି । ସବୁ ନୂଆ ଓ ବିକ୍ଷିପ୍ତ ଜଣାପଡୁଛି ।

ଏଠାରେ କିଏ କ'ଣ greetings ପଠାଇଥିଲା ଜାଣି ନାହିଁ । ମୁଁ କିନ୍ତୁ କିଛି ପାଇ ନାହିଁ । ହଜିଯାଇଛି । ନିଜ ରୁମ୍‌କୁ ବାବୁଲି ଫେରି ନାହିଁ । ଯଦି କିଛି mail ଆଏ ତମ ପାଖକୁ ପଠେଇଦେବି ।

ଗୋପବନ୍ଧୁ ଆଜି ଚିଠି ଲେଖିଛି । ସେ ଏବେ ବାଣୀବିହାର ଆସିଥିଲା; କିନ୍ତୁ ମୁଁ ଘରକୁ ଯାଇଥିଲି । ମୋତେ ୫ ତାରିଖ ସନ୍ଧ୍ୟାକୁ ଯିବାକୁ ଆମନ୍ତ୍ରଣ କରିଛି । ମୁଁ ଯିବା ଅବସ୍ଥାରେ ନାହିଁ ।

ତମେ କେମିତି ଅଛ ? ପଢ଼ାପଢ଼ି କରୁଛ କି ନାହିଁ ? କ୍ରିକେଟ୍ ମ୍ୟାଚ୍ ଶୁଣୁଥିବ ଓ କିଛି ସମୟ କଟିଯାଇଥିବ । ସବୁ ଲୋକଙ୍କୁ ଯେତେବେଳେ ଏକାକୀ ଚାଲିବାକୁ ହୁଏ, ସେତେବେଳେ ତମେ ଗୋଟେ କିଛି reconciliation କରୁଥିବ । ଏ ନୂଆବର୍ଷ (୧୯୭୫) ତମର prosperity ଓ happinessର ବର୍ଷ ହୋଇ ରହୁ ବୋଲି କାମନା କରି ରହୁଛି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଜି ‘chance’ ଓ ‘genius’ କଥାକୁ ମୋର ଦୃଷ୍ଟିକୋଣରୁ ବିଚାର କରିବି । ଟଲ୍‌ଷ୍ଟୟ ଇତିହାସର ମହାନ୍ ଉକ୍ତିକୁ ଉଦ୍ଧାର କରି ଲେଖିଛନ୍ତି : “Chance created the position, genius took advantage of it” । କାହାକୁ ଆମେ chance କହିବା ? ସଂସାରରେ ଜନ୍ମନେବାଟା ହିଁ ଗୋଟାଏ ସୁଯୋଗ । ତମେ ଏହି କଥା କେତେଥର ପର୍ଯ୍ୟାଲୋଚନା କରିସାରିଛ । କିପରି ମରଜଗତରେ ଜନ୍ମନେବାଟା ଦେବତାମାନଙ୍କର ଅଭିଳାଷ, ଏକଥା ଶାସ୍ତ୍ରରେ ଛବିଳ ଭାବେ ବର୍ଣ୍ଣନା କରାଯାଇଛି । ଏହି ଜନ୍ମଠାରୁ ମଣିଷ ତା’ର ଛକାପଞ୍ଝା ଖେଳ ଆରମ୍ଭ କରିଦିଏ । ମୃତ୍ୟୁ ପର୍ଯ୍ୟନ୍ତ ଦୌଡ଼ରେ ଜିତିବାକୁ ସେ ସୁଯୋଗ ଖୋଜୁଥାଏ, survivalକୁ ସେ ଅପୂର୍ବ ସୁଯୋଗ ବୋଲି ଗ୍ରହଣ କରେ । ସବୁକୁ chance ବୋଲି ଆଖ୍ୟାୟିତ କଲେ ଯେକୌଣସି ସଫଳତା, ଅବସ୍ଥା ଏବଂ ପରିସମାପ୍ତି ଆଉ ଦୁର୍ବୋଧ ଜଣା ପଡ଼େ ନାହିଁ । ସବୁ ତାରତମ୍ୟ, ସବୁ transitionକୁ ମଧ chance ବୋଲି ଧରାଯାଇପାରେ ।

କାହାକୁ genius ବୋଲି କୁହାଯାଇପାରେ ? ଟଲ୍‌ଷ୍ଟୟ ଏ ସମ୍ପର୍କରେ କିଛି ସଠିକ୍ ଦିଗ୍‌ଦର୍ଶନ ଦର୍ଶାଇ ନାହାନ୍ତି । ମୁଁ genius କହିଲେ ମୋ ଭଳି ମଣିଷମାନଙ୍କୁ ବୁଝିଥାଏ । ସଂସାରରେ କୀର୍ତ୍ତି ଅର୍ଜନ କରୁଥିବା ମଣିଷଠାରୁ ଆରମ୍ଭ କରି ମନ୍ଦିର ଭାଙ୍ଗୁଥିବା ମଣିଷ ପର୍ଯ୍ୟନ୍ତ କେହି ଜଣେ ହେଲେ genius ନୁହଁନ୍ତି । ସଂସାରରେ ତପଜପ କରୁଥିବା ମଣିଷ ଛାତିରେ ହାତ ରଖି ଯଦି ଦାବୀ କରେ ଯେ ଭଗବାନ ତାହାକୁ ଆଶୀର୍ବାଦ ଢାଳି ଦେଇଛନ୍ତି, ତାକୁ ମଧ ମୁଁ genius ବୋଲି ସ୍ୱୀକାର କରିବି ନାହିଁ । ଆଉ ମଧ ସାଧାରଣ ମଣିଷର ଦୃଷ୍ଟିରେ prodigy ବୋଲାଉଥିବା ବ୍ୟକ୍ତିବିଶେଷ ମଧ ମୋ ପାଇଁ genius ପଦବୀର ଅଧିକାରୀ ନୁହଁନ୍ତି ।

ନିଜକୁ genius ବୋଲି କହିବାଟାକୁ ମୁଁ ମୋର ବୃଥା ଅହମିକା ବୋଲି ଭାବୁ ନାହିଁ । ମୋ ଜୀବନ ରୂପ ନେବାଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ମୁଁ ସୁଯୋଗକୁ କେବଳ

ଅପେକ୍ଷା କରିଆସିଛି । ତମେ ତ ମୋ ଜୀବନ ସହ ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ । ଘାଣ୍ଟିଚକଟି ତମେ ମୋ ଜୀବନର ସୁଯୋଗମାନଙ୍କ ସହ ତମେ ପରିଚିତ କରାଇପାରିବ କି ? (ମୋ ଦୃଷ୍ଟିରେ ତମମାନଙ୍କ ସହ ବନ୍ଧୁତା ଗୋଟାଏ ସୁବର୍ଣ୍ଣ ସୁଯୋଗ । ହେଲେ ମୁଁ ଏହାର ସଦ୍‌ବ୍ୟବହାର କରିପାରିଛି କି ନା ତମେ ବେଶ୍ ଭଲ ଭାବେ ଜାଣ ।) ଆଜି ଆପଣାର position କଥା ମୁଁ ଭାବୁଛି । ପାଇଥିବା chance କଥା ମୁଁ ବେଶ୍ ଲକ୍ଷ୍ୟ କରିପାରୁଛି । କିନ୍ତୁ ଏସବୁକୁ ନା position କହିହେବ ନା chance କହିହେବ । ତଥାପି ମୁଁ ଏ ସଂସାରରେ ଅନେକ ମଣିଷଠାରୁ ଏପୃଥିବୀକୁ ବେଶ୍ ଭଲଭାବେ ବୁଝେ ଓ ଭଲ ପାଇପାରେ । ମୋ ପାଖରେ ତଥାକଥିତ parameter ଗୁଡ଼ିକ ସମ୍ପୂର୍ଣ୍ଣଭାବେ ଅଚଳ ଓ ଅପଦାର୍ଥ । ମୋ ପାଖରେ ଦିବ୍ୟାଲୋକ କିଛି ନୂଆ କଥା ନୁହେଁ । ମହାତ୍ମା ହୋଇଯିବା ମୋ ପାଖରେ କିଛି ଆଶ୍ଚର୍ଯ୍ୟର କଥା ନୁହେଁ । Ethical code of conduct ମୋତେ କେବେ ତା'ର ବାଧ୍ୟ ଛାତ୍ର କରି ଦେଇ ନାହିଁ । ମୋର ସମସ୍ତ ଅସହାୟତା, ସମସ୍ତ ପରାଜୟ ସତ୍ତ୍ୱେ ଯଦି ମୁଁ କାହା ପାଖରେ ଆପଣାର ବୋଲି ପରିଚିତ ହୋଇପାରିଥାଏ ତେବେ ଆଉ କ'ଣ genius ହେବା ପାଇଁ ଅଧିକ ଯୋଗ୍ୟତା ଆବଶ୍ୟକ ?

ଯିଏ ଭଲ ପାଇପାରେ (କେବଳ ମୋରି 'ଭଲ ପାଇବା'ର ଲକ୍ଷଣକୁ ପ୍ରତିପାଦିତ କରୁଥିଲେ) ସିଏ ମୋ ଦୃଷ୍ଟିରେ genius । ଯିଏ ଉତ୍ତେଜନାରେ ଭଲ ପାଉଥିବା ମଣିଷ ପାଇଁ କାନ କାଟି ଦେଇପାରେ, ସେ ମଧ୍ୟ ଗୋଟାଏ ଅଦ୍ୱିତୀୟ ମଣିଷ । ଯେଉଁ ମଣିଷ ଆପଣାର ମନ ଭିତରେ ଥିବା ସବୁ କୋଠରିକୁ ବୁଜି ଦେଇ ଏକ ହଜାର ଏକ ରାତ୍ରିର ଝନତ୍‌ଝଙ୍କାର ଶୁଣିପାରେ, ସିଏ ଗୋଟାଏ genius । ଯିଏ ପାଗଳଗାରଦର ସବୁ ଝର୍କା ଭାଙ୍ଗିଦେଇ ଉନ୍ମୁକ୍ତ ଓ ଉନ୍ମାଦ ହୋଇଯିବାକୁ ବଦ୍ଧପରିକର ସିଏ ମଧ୍ୟ ପୃଥିବୀରେ ସର୍ବଶ୍ରେଷ୍ଠ ନ ହେଲେ ମଧ୍ୟ ଅନ୍ୟତମ genius । (ଟଲ୍‌ଷ୍ଟୟ ଇତିହାସକୁ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରି ପ୍ରମାଣ କରିଛନ୍ତି ଯେ ନେପୋଲିୟନଙ୍କୁ genius କହିବା ଅନ୍ୟାୟ ଓ ଅସଙ୍ଗତ ହେବ । ଆପାତତଃ ଏକଥା ତାଙ୍କର ସଂକୀର୍ଣ୍ଣ ଜାତୀୟତା ହେଲେ ମଧ୍ୟ ମୁଁ ତାଙ୍କ ସହ ଏକମତ ।)

*ଦ୍ରଷ୍ଟବ୍ୟ :*

ଚିଠି ପାଇଛି ।

ଏ ଚିଠିଟି ତମର ମୋ ପ୍ରତି ଅନୁରାଗର ଚରମ ନିଦର୍ଶନ । କେତେ ଦିନ ଧରି ତମେ ଏହିଭଳି ଲେଖି ନ ଥିଲ । ମୋର ଚିଠି ପାଇଥିବ । ଅମ୍ଳାନ ପାଖକୁ ମଧ୍ୟ ତମର ଯୋଜନା ଲେଖିଥିବ ।

ମାଆ ଦେହ ଆଜି ଭଲ ଥିଲେ କାଲିକି ଖରାପ ହୋଇଯାଉଛି । ତା'ର ସମସ୍ତ ଯତ୍ନ ନିଆଯାଉଛି । କେତେ ଦିନ ହେବ ମୁଁ ଅସ୍ଥିର ହୋଇପଡୁଥିବା କଥା ତମେ ଅନୁଭବ

କରିପାରିଛ । ଅନେକ ମାନସିକ ଅସହାୟତା ସହ ମୁଁ ଆଦୌ ସନ୍ଧି କରିପାରୁନି । ଏବେ Graham Greeneଙ୍କର "The power and the glory" ଶେଷ କରିଛି । ଆସନ୍ତା ଚିଠିରେ ଲେଖିବି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ବିଶେଷ କିଛି ଲେଖିବାର ନାହିଁ । ଚିଠି ମୋତେ ନିଶ୍ଚୟ ଉତ୍ସାହ ଦେଇଛି । ଘରକୁ ଯାଇ ପାରି ନାହିଁ; ଆଗ୍ରହ ନାହିଁ । ମୋର ସ୍ଥିତି ସମ୍ଭବତଃ ସମୟ ସ୍ଥିର କରିବ । ମୁଁ ପୁଣି ଯେ ମୋରି ପୂର୍ବ ମାନସିକ ଅବସ୍ଥା ଫେରାଇଆଣିବି, ଏଥିରେ ମୋର ଭରସା ନାହିଁ । ତାଳଚେରରୁ ପୁରୀ ପର୍ଯ୍ୟନ୍ତ ପଡ଼ିଥିବା ଦୀର୍ଘ ବାଇଶି ବର୍ଷର ଜୀବନପଥରେ ଥରେ ଯଦି ମୁଁ ସଫଳ ହୋଇଥାଆନ୍ତି, ତେବେ ଅଭିମାନ କରିବାର କିଛି ନ ଥିଲା ।

ମୋର ନୈରାଶ୍ୟ ତମକୁ ବ୍ୟଥିତ କରୁ, ଏକଥା ମୁଁ କେବେ ଚାହେଁ ନାହିଁ । ତମେ ହଠାତ୍ ପୁରୀ ଆସି ମୋତେ ଆଶ୍ୱାସନା ଦେବାଟା କେବଳ ଦୁର୍ବଳତା । 'ଗୋବିନ୍ଦ' ପଛରେ ପଡ଼ିଗଲା ବେଳେ 'ସିଦ୍ଧାର୍ଥ' ଆଉ ପଛକୁ ଚାହିଁ ନାହିଁ । 'ଶିଳାତୀର୍ଥ'ରେ ଚିତ୍ତରଞ୍ଜନ ଦାସ ଏହି କଥା ସ୍ୱଷ୍ଟ ଭାବେ ଲେଖିଛନ୍ତି । ତମେ ପଛକୁ ଫେରିପାରିବନି । ଆଗେଇ ଚାଲ ଜୀବନର ଅନେକ ସ୍ୱପ୍ନ ଏବେ ମଧ୍ୟ ସ୍ୱପ୍ନ ହୋଇରହିଛି । ମୁଁ ଯେମିତି ଝଡ଼ ଭଳି ଆସିଥିଲି, ସେମିତି ଝଡ଼ ଭଳି ନିଷ୍କ୍ରାନ୍ତ ହୋଇଯାଉଛି । ଏଥିରେ ବରଂ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

"My God Died Young"ର କେତେକାଂଶ ଅମ୍ଳାନର ଜୀବନ ସହ ମିଶିଯାଇଛି । ସମ୍ଭବତଃ social traditions ବିରୋଧରେ Sasthi Brata ଛିଡ଼ା ହୋଇ ନ ପାରି ବିଦ୍ରୋହ କରିଛି ଓ ପଳାୟନପନ୍ଥୀ ହୋଇଛି । ଆମେ ବୋଧେ ସେହିଭଳି ହେବା । ଅମ୍ଳାନକୁ ବରଂ ଏ ବହି ଦେବା ଯଥେଷ୍ଟ ପ୍ରଯୁଜ୍ୟ ।

ଆମର practical ପ୍ରଥମେ ଆରମ୍ଭ ହେଉଛି । Math formally ଦେବି ବୋଲି ଆଗରୁ ତ ଜଣାଇଥିଲି । କାହାକୁ ଆଉ approach କରିବା ପରେ ଯେଉଁ ପ୍ରକାର ବିବେକର ଦଂଶନ ହେବ ତାହା ମୁଁ ସହ୍ୟ କରିପାରିବିନି । ତେଣୁ ସେଥିରୁ ବିରତ ହେଲି । I am preparing for the worst. Sasthi Brata କହିଛନ୍ତି, "One can tolerate life only when one is disillusioned by it."

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଜି Chemistry ପରୀକ୍ଷା ସରିଲା । ଚିଠି ଲେଖି ନ ଥା'ନ୍ତି । ବର୍ତ୍ତମାନର ଆଲୋଡ଼ନକୁ ତମ ପାଖକୁ ଲେଖିବାକୁ ବାଧ ହେଲି । ଜାଣେ ତମେ ଆଘାତ ପାଇବ । ବିଶ୍ୱାସ କରିପାରିବନି କିନ୍ତୁ ମୁଁ Chem. Theoryରେ fail ହୋଇଯିବା ଏକ ନିଶ୍ଚିତ କଥା । ମୁଁ ପାଶ୍ କରିବାର କୌଣସି ଆଶା ଦେଖୁ ନାହିଁ ।

ଜୀବନଦର୍ଶନକୁ ଲେଖିବାର ଅବକାଶ ନାହିଁ । ଦୀର୍ଘ ତିନିବର୍ଷ ଧରି ମୁଁ କେବଳ ଯନ୍ତ୍ରଣା ସହିଛି । ଜାଣେନି କେତେ ବର୍ଷ ଧରି ଏ ଯନ୍ତ୍ରଣା ଲାଗି ରହିବ । ତମମାନଙ୍କ ପାଖରେ ଆଉ କିଛି ସମୟ କଟାଇବାକୁ ଚେଷ୍ଟା କରିଥିଲି । କିନ୍ତୁ ଭାଗ୍ୟର ବିଡ଼ମ୍ବନା ବ୍ୟତୀତ ଏହା କ'ଣ ହୋଇପାରେ ! ଭବିଷ୍ୟତ ମୋ ପାଇଁ ସେହିଭଳି ଅନିଶ୍ଚିତ ହୋଇ ରହିଛି ଓ ରହିବ । ମୁଁ ନିଜେ ନିଜକୁ ଧ୍ୱଂସ କରିଦେବାକୁ ଚାହିଁଥିଲି ଓ ଧ୍ୱଂସ ହୋଇଯାଉଛି ମଧ୍ୟ । ତମମାନଙ୍କ ସହିତ ଆଉ ବ୍ୟକ୍ତିଗତ ସମ୍ପର୍କ ରଖିବା ବୋଧେ ସମ୍ଭବ ହେବ ନାହିଁ । ବାବାମାଆଙ୍କୁ ମୋର ମୁହଁ ଦେଖାଇବା ବୋଧହୁଏ ଏକ ଅସମ୍ଭବ କଥା । ଏହିଭଳି କରୁଣ କଥା ଭାବିଲେ ମୁଁ ଭାବପ୍ରବଣ ହୋଇଯାଉଛି ଓ ଆଖିକୁ ସ୍ୱତଃ ଲୁହ ଆସିଯାଉଛି । ତେବେ ଏସବୁ ବାସ୍ତବତାକୁ ମୁଁ କେବଳ ଗ୍ରହଣ କରିବାକୁ ବାଧ୍ୟ; ତମେମାନେ ମଧ୍ୟ । ଏହାପରେ ପରୀକ୍ଷା ଦେବା ଏକ formality ହୋଇପଡ଼ିବ ।

ମୋର ଆଶା ଓ ବିଶ୍ୱାସ ତମେ ଏ ଚିଠିପାଇ ଆଦୌ ଦୁଃଖିତ ହେବ ନାହିଁ । ତମ ପାଖରେ ମୋର କିଛି ଦିନର ସ୍ମୃତି ଛାଡ଼ିଦେଇଛି ଓ ତମକୁ ମୋର ଶେଷ ଉପହାର ମଧ୍ୟ । ମୋ ପାଖରେ ତମେ ମଧ୍ୟ ସ୍ମୃତି କିଛି ଛାଡ଼ି ଦେଇଛ ଓ ତାହା ମଧ୍ୟ ମୋର ଅବଶିଷ୍ଟ ଦିନମାନଙ୍କର କାହାଣୀ ହେବ । ତମେ ମୋତେ ଅବଶ୍ୟ ଆଉ ପାଖରେ ପାଇବ ନାହିଁ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମ ଚିଠି ପାଇଲି । ତମ ମନର ସବୁ ଦ୍ୱନ୍ଦ୍ୱ, ଆନ୍ଦୋଳନ ଏବଂ introspection ସବୁକୁ ଅନୁଭବ କରୁଥିଲି । ଏଇମିତି ଅନେକ ସମୟରେ ନିଜ ଉପରୁ ବିଶ୍ୱାସ ତୁଟିଯାଏ । "ମୋର ଗତି କେଉଁ ଆଡ଼କୁ ?" ସମ୍ପର୍କରେ ନାନା ପ୍ରଶ୍ନ ପଚାରିବାକୁ ପଡ଼େ । ଅଜଣା (ଜଣା ସ୍ଥାନରୁ ମଧ୍ୟ) ସ୍ଥାନରୁ ପ୍ରେରଣା ପାଇବାକୁ ଏ ମନ ବ୍ୟାକୁଳ ହୋଇପଡ଼େ । ଆମେ ଏତେ ଅସହାୟ ହୋଇପଡୁ ଯେ ନିଜକୁ ଆହୁରି ସଙ୍କୁଚିତ କରିଦେବାକୁ ବାଧ ହେଉ । ବାଲେଶ୍ୱରରେ ତମର ଯେଉଁ ପ୍ରକାର 'ପରୀକ୍ଷା' ମୁଁ ତାକୁ ଦୂରରୁ ଥାଇ ଲକ୍ଷ୍ୟ

କରୁଥିଲି । ତମର 'ଘର' ଓ 'ସଂସାର' ଆରମ୍ଭ କରିବାଠାରୁ ଅରୁଣ ସହ ସାଲିସ୍‌କୁ ମୁଁ ମଧ୍ୟ ଗ୍ରହଣ କରିନେଇଛି । କିନ୍ତୁ ଯେଉଁ ଦିନ ତମେ କହିଲ ଯେ, 'ଚଳିଯାଉଛି', ତମେ କେମିତି ସବୁ କଥାକୁ ଗ୍ରହଣ କରି ନେଉଛ, ତାହା ମୋତେ ଆଶ୍ଚର୍ଯ୍ୟ କରିଦେଲା । ଆମର ଜୀବନରେ ଅଟକିଯିବା କଥା କେବେ ଭାବିବାର ନୁହେଁ । କିଛି ହୋଇନି । ମୋର ଆଶା ଓ ବିଶ୍ୱାସ ତମେ ନିଜକୁ ବାନ୍ଧି ପକାଇବ ନାହିଁ । ଯେକୌଣସି ପରିସ୍ଥିତିରେ । ନିଜ ଭିତରର ଚିରନ୍ତନ ଉତ୍ସ ଯେମିତି ନ ମରିଯାଏ ।

'ଜୀବନଯାତ୍ରା' ଆମର ଏଇଠାରୁ ଆରମ୍ଭ ହେବ । ତମେ ଲେଖିଥିବା କବିତା (ସେହି ମର୍ମରେ) ମୋର ଝାପ୍‌ସା ମନେଅଛି । ସମୟ ଓ ସ୍ଥାନ ଆମକୁ ଜୟ କରିପାରିବ ନାହିଁ । ଆମର ଯାତ୍ରା ତ ଦିନେ ଶେଷ କରିବାକୁ ହେବ । ତେଣୁ ଆରମ୍ଭ କରିବାକୁ ଆଉ ବିଳମ୍ବ କାହିଁକି ? ତମେ, ମୁଁ, ଆମେ ସମସ୍ତେ ସମ୍ଭବତଃ ଭିନ୍ନ ଭିନ୍ନ ମାନସିକ ସ୍ତର, ଅନୁଭୂତି ଓ ଦର୍ଶନ ନେଇ ଏ ଯାତ୍ରା ଆରମ୍ଭ କରିବା । କିନ୍ତୁ ଆମର ଲକ୍ଷ୍ୟ ଏକା । ଆମ ଆଗରେ "Jonathan Livingstone Seagul" ଏକ ମାତ୍ର ସମ୍ବଳ । "Speed is no perfection" ଆମର ଏକମାତ୍ର motto । 'To break the barrier' ଆମର ଶେଷ ମାଇଲ୍‌ଖୁଣ୍ଟ ।

ଆଜି ସକାଳୁ ଏଇଠି ମେଘ ଯୋଗୁଁ ଶୀତ କମିଯାଇଥିଲେ ମଧ୍ୟ ଘୋଡ଼ିଘାଡ଼ି ହୋଇ କବିତା ପଢ଼ିବାକୁ ଇଚ୍ଛା ହୋଇଥିଲା । ମୁଁ ପୁଣି 'Four Quartets' କିଛି ସମୟ ପାଇଁ ପଢୁଥିଲି । ଉପଭୋଗ କରୁଥିଲି ଛନ୍ଦକୁ । (ସବୁ ବୁଝିପାରିବା ସମ୍ଭବ ହୋଇପାରୁନି । କାରଣ image ସମ୍ପର୍କରେ ମୋର ବିଶେଷ ପ୍ରବେଶ ନାହିଁ ।) ଏଇଠି ଆଶା ଓ ନିରାଶାକୁ ଚିହ୍ନି ହୁଏ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ପର୍କରେ କିଛିଟା ଜ୍ଞାନ ମିଳେ । ସବୁ କଥା (ଆମରି କଥା) କିନ୍ତୁ ହୃଦୟ ଭିତରେ ପହଞ୍ଚି ପାରେନି । କେଉଁଠି ଯେମିତି କିଛି ଅଭାବ ରହିଯାଏ । ଶୁଣିଛି, ଏହା T.S. Eliotଙ୍କର Religious Questର ଶେଷ ଅଧ୍ୟାୟ । ସବୁ ଜ୍ଞାନଭଣ୍ଡାରକୁ ସେ ଏଇଠି ଉପସ୍ଥାପିତ କରିଛନ୍ତି, ମୋର ମଧ୍ୟ ସେଇଆ ବିଶ୍ୱାସ । ମୁଁ ଡେରିରେ ପଢୁଥିବାରୁ ବରଂ କେମିତି ଦୋଷ ଦେଉଛି ନିଜକୁ । ଆମର 'ଅପେକ୍ଷା', ଆମର 'ଆଶା'କୁ ମଧ୍ୟ ଏଇଠି ଠିକ୍ ଭାବେ ଲେଖା ହୋଇଛି ।

"I said to my soul be still and wait without hope/For hope would be hope for the wrong thing;/wait without love./For love would be love of the wrong thing; there is yet faith/ But the faith and the love and the hope are all waiting/, Wait without thought, for you are not ready for thought./So the darkness shall be the light and the stillness the dancing." (Four Quartrets)

ଆଜି ଏଣୁ ଆମକୁ ସବୁ ଅନ୍ଧକାର, ସବୁ trials and tribulationsକୁ ନିଜର କରିବାକୁ ପଡ଼ିବ । ଆମକୁ କା' ପାଇଁ ଅପେକ୍ଷା କରିବାକୁ ହେବ ନାହିଁ । ଆମକୁ କା'ର ପଦଧ୍ୱନି ଶୁଣିବାକୁ ପଡ଼ିବ ନାହିଁ ।

ମୋର ବେଳେବେଳେ ଭୟ ହେଉଛି ମୋର ଦୁଃଖ କଥା । ମୋର ବିକ୍ଷିପ୍ତ ଜୀବନ କଥା ତମକୁ ଗ୍ରାସ କରିଦେଉଛି । ତମେ ଶାନ୍ତ, ସହଜ ମଣିଷଟିଏ । ତମେ ମଧ୍ୟ ଏବେ ଏ ସଂସାରର ସବୁ କଥା ଅନୁଭବ କରିନାହିଁ । ମୁଁ ମଧ୍ୟ ନୁହେଁ । ମୋର ଭଗ୍ନଜୀବନ ତମକୁ affect କରୁନାହିଁ ତ ? ଦେଖ, ଯେଉଁ ମଣିଷ ସବୁ questକୁ ହୃଦୟ ଭିତରେ ରଖି ଆଗେଇବାକୁ ବଦ୍ଧପରିକର, ସିଏ ହୁଏତ ସବୁକୁ ଜଳାଞ୍ଜଳି ଦେଇଦେବାଟା ତା'ପାଇଁ ଏକାନ୍ତ ଆବଶ୍ୟକ । ତମେ ଏ ବିଷୟରେ ମୋ ସହ ଏକମତ ହେବ । ଖୋଲାଖୋଲି ଭାବେ ଏକଥା ଲେଖିବ ମଧ୍ୟ । ମୁଁ ଚାହେଁନି ତମର expression of freedom କମିଯାଉ । ତମର ଅତିମାନସ ସ୍ତରରେ ଝଡ଼ ଉଠିବାକୁ ମୁଁ କେବେହେଲେ ଦେବିନାହିଁ ।

Rumanian picture "A Bomb was Stolen" ଦେଖିଲି । ଏହା Western gangsterism କୁ ତାଚ୍ଛଲ୍ୟ କରିବା ପାଇଁ ଯେମିତି ତିଆରି ହୋଇଛି । ଖୁବ୍ ହସିବାକୁ ପଡ଼ିଲା । ୧୯୬୨ରେ ତିଆରି ହୋଇଥିଲେ ମଧ୍ୟ ଏହାକୁ ଜାଣିଶୁଣି silent କରାଯାଇଛି । Atomic explosion ର ସବୁ ସମାଧାନ କେମିତି ଶୁଖିଲା ମରୁଭୂମିରେ ଫୁଲ ଫୁଟାଇ ପାରିଛି ଏହା ବୋଧେ ନିର୍ଦ୍ଦେଶକ Gopoଙ୍କର ଏକମାତ୍ର ଉଦ୍ଦେଶ୍ୟ ।

ଅମ୍ଳାନ ଅତି ସଂକ୍ଷିପ୍ତ ଚିଠିଟିଏ ଲେଖିଛି । ଖାଇବା ଓ ରହିବାରେ ତା'ର ଅସୁବିଧା ଯୋଗୁଁ ସେ ମୋ ପାଖକୁ ଲେଖିପାରି ନାହିଁ । (କେତେ ସହଜ ଉପାୟରେ ସେ ଖସିଯିବାକୁ ଚାହେଁ?) ମୁଁ ବୋଧେ ତା'କୁ ଲେଖିବି । ତମ ପାଖକୁ ସେ ଲେଖୁଛି ବୋଲି ଏଥିରେ ଜଣାଇଛି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଏଇଠି ଗତ କୋଡ଼ିଏ ଘଣ୍ଟା ଧରି ବର୍ଷା ହେଉଛି । ଶ୍ରାବଣ ବିତିଗଲା ପରେ ଏଭଳି ଅହେତୁକ ବର୍ଷା ଆଦୌ ଯଥାର୍ଥ ନୁହେଁ । ତଥାପି ଏହା କ୍ଷେତକାମରେ ଯଥେଷ୍ଟ ସାହାଯ୍ୟ କରିବ ।

ତମେ ଜାଣ, ବର୍ଷା ହେଲେ ମୋ ପାଇଁ ସବୁ କେମିତି ବଦଳିଯାଏ । ଗୋଟିଏ ସୀମିତ ସମୟ ଭିତରେ ଅନେକ କିଛି ଅନୁଭବ କରିହୁଏ । ଆକାଶପାତାଳ ଭାବି ହୁଏ । ଝାପ୍‌ସା ଦେଖାଯାଉଥିବା ପୃଥିବୀ ଭାରି ସୁନ୍ଦର ଦେଖାଯାଏ । ଏହି ବର୍ଷା ଆମକୁ ଆମ

ସହିତ ଯେତିକି ଅନ୍ତରଙ୍ଗ କରାଏ, ଆପଣାର ମଣିଷ ସହ ସେତିକି ପରିଚିତ କରାଏ । ରେଭେନ୍ସା କଲେଜ୍ ଦିନଗୁଡ଼ିକରେ ଲଳିତ ବର୍ଷା ହେଲେ ଭିଜି ଭିଜି ବୁଲିଯିବାକୁ ମୋତେ ଡାକୁଥିଲା । ତମେ ଏ ବର୍ଷାରେ ଭାରି nostalogic ହୋଇପଡ଼ । Violin ବଜାଇବାକୁ ଭଲ ପାଅ । ଅଳ୍ପ ଶୀତ ସତ୍ତ୍ୱେ ଝର୍କା ପାଖେ ଛିଡ଼ା ହୋଇ ଧାରଧାର ବର୍ଷାପାତକୁ ଦେଖ । ଅମ୍ଳାନ ଏ ସମୟରେ କିଛି 'hot' ଚାହିଁଥାଏ । ଅଳ୍ପ ବେଶୀ ହୋଇପାରେ । କିନ୍ତୁ ବର୍ଷା ଗୋଟାଏ ଅପ୍ରାକୃତିକ ପ୍ରଭାବ ଆମ ଉପରେ ହିଁ ପକାଇଥାଏ ।

ଏହି ବର୍ଷା ସହ ଆମର ଲିପ୍ତ ହୋଇ ଯିବା କେତେ ଭଲ କଥା । (ଏବେ କ'ଣ ଆଉ ବର୍ଷାରେ ଭିଜିବାକୁ ଆଗ୍ରହ ଅଛି? କିଏ କ'ଣ ଭାବିବ ବୋଲି ଭୟ କରି ମୁଁ କେବଳ ଘର ଚାରିକୋଣରେ ନିଜକୁ ବନ୍ଦୀ କରିଛି ।) ଛୋଟ ଝିଅଟିଏ (ମୁଁ ତାକୁ ଭଲ ପାଏ, ଖୁବ୍ ଭଲ ପାଏ!) ହାତ ବଢ଼ାଇ ଚାଳରୁ ପଡୁଥିବା ପାଣିକୁ ହାତ ପାପୁଲିରେ ଅଟକାଇ ରଖୁଛି । ପାଣିଛିଟିକାରେ ଶିହରି ଉଠୁଛି । ସଜଫୁଟା ଫୁଲ ଭଳି ଭାରି ଉଜ୍ଜ୍ୱଳ ଦେଖାଯାଉଛି । କେତେ ସରାଗରେ ସେ ନିଜକୁ ହଜାଇଦେଉଛି, ଗୋଟାଏ ବହମାନ ସ୍ରୋତକୁ ଅଟକାଇବାର ବ୍ୟର୍ଥପ୍ରୟାସ କରୁଛି । ଆମେ ବି ତ ଏହିଭଳି ଏକ ବହମାନ ସ୍ରୋତକୁ ଅଟକାଇବାକୁ କ'ଣ ଚାହିଁ ନ ଥିଲେ? ଆମ ଭିତରେ ଥିବା ସେହି ବହମାନ ସ୍ରୋତକୁ ସବୁଦିନ ପାଇଁ ବନ୍ଧ ବାନ୍ଧିବାକୁ ତ ଅଣ୍ଟା ଭିଡ଼ିଥିଲେ । ସମ୍ଭବତଃ ସବୁ ବିଧିନିର୍ଦ୍ଦିଷ୍ଟ । ଲଳିତ କୁଆଡ଼େ ଗଲା! ଭଞ୍ଜ କୁଆଡ଼େ ଗଲା! ଅମ୍ଳାନ ଏବେ କେଉଁ ଆଡ଼କୁ ଯାଉଛି? ତମେ ଓ ମୁଁ କେଉଁ ଆଡ଼କୁ ଯାତ୍ରା କରୁଛେ? କେତେ ଦିନ ଏଭଳି ଆମର ସମ୍ପର୍କ ସ୍ୱପ୍ନ ଦେଖିବାର ବାସ୍ନାରେ ଭରି ରହିଥିବ? ମୋତେ ତ ଭୀଷଣ ଡର ଲାଗୁଛି । ଏ ବର୍ଷା ଭିତରୁ ଗୋଟାଏ void ମୋତେ ଯେମିତି ତୁହାକୁତୁହା ଭିଜାଇ ଦେଉଛି, ମୋର ସବୁ ସ୍ମୃତିକୁ ଭସାଇ ନେଉଛି ।

ଗତ ୭ ତାରିଖରେ ଭୁବନେଶ୍ୱର ଯାଇଥିଲି । ନାନୀ ସଙ୍ଗେ ତମ ବିଷୟରେ କଥାବାର୍ତ୍ତା କରୁଥିଲି । ସେ କହୁଥିଲା ଯେ ପରୀକ୍ଷା ପର୍ଯ୍ୟନ୍ତ ତମେ ଶାନ୍ତିନିକେତନରେ ରହିବ । ତମେ ଯେ 'ପ୍ରସ୍ତୁତି'କୁ ଗୁରୁତ୍ୱ ଦେଇ ନିଜକୁ ଆତ୍ମଗୋପନ କରୁଛ ଏ ଧାରଣା ମୋର ହୋଇଥିଲା । ତମେ ଅନେକ ଦିନ ଧରି ଲେଖି ନ ଥିଲ । ଏ ପଢ଼ାପଢ଼ି ତମର ଚାଲୁ ରଖିବା ଠିକ୍ ହେବ । ତମେ କେମିତି ଭାଙ୍ଗି ଯାଇଥିଲ ନାନୀ କହୁଥିଲା । ତମେ ଏକଥା ମୋତେ ଲେଖି ନ ଥିଲ । ଅତି ବାସ୍ତବ ଦୃଷ୍ଟିକୋଣରୁ ତମେ ଯେ ଜୀବନକୁ ବିଚାରକୁ ନେଇପାରୁଛ, ଏହାତ ତମର ଖୁବ୍ ବଡ଼ achievement । ତମ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେବ ।

ଅମ୍ଳାନ ବମ୍ବେରେ ପହଞ୍ଚି ଚିଠି ଲେଖିବ ବୋଲି ଲେଖିଥିଲା । ଏହା ଭଞ୍ଜର ପ୍ରତିଶ୍ରୁତି ଭଳି । ତମ ସହ ତା'ର ସମ୍ବନ୍ଧ ତୁଟିଯାଇଛି ବୋଲି ମୋର ମନେହେଲା ।

ନ ହେଲେ ଏତେ ଭଲ ଖବରଟା ତମକୁ ସେ ନିଶ୍ଚୟ ଜଣାଇଥାଆନ୍ତା । ଯୋଗୀଭାଇନା କହୁଥିଲା ଯେ ସେ ଭୁବନେଶ୍ୱର ଆସିଥିଲା । ନାନୀ କହୁଥିଲା ଯେ ସେ ସତ୍ୟନଗର ଆସି ନାହିଁ ।

ତମେ ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଅମ୍ଳାନଠାରୁ ଏକ ଦୀର୍ଘ ଚିଠି ପାଇଛି ।

ନିଜ ଅଜାଣତରେ ସେ କେମିତି ଆଉ ଆପଣାକୁ ବିଶ୍ୱାସ କରୁ ନାହିଁ, ଏକଥା ଲକ୍ଷ୍ୟ କରୁଥିଲି । ସ୍ମିତା ତରଫରୁ ଅନେକ ବିଷୟରେ ମଧ ଚାପ ପଡୁଥିବ । ଘରର ଅବସ୍ଥାକୁ ମଧ ସେ ଅନୁଧାନ କରିପାରୁଥିବାର ଯନ୍ତ୍ରଣାରେ ଛଟପଟ ହେଉଛି । ଏହି ସବୁର ପରିପ୍ରେକ୍ଷୀରେ ତା' ପାଇଁ 'ଟଙ୍କା' ଯେ ଅଦ୍ୱିତୀୟ ଅସ୍ତ୍ର ଏକଥା ସେ ଏହି ଚିଠିରେ ଅତି ସରଳ ଭାବେ ଲେଖିଛି । ସମ୍ଭବତଃ ଏହା ତା'ର ଦୀର୍ଘ ଦିନର ପରୀକ୍ଷାର ଫଳ । ସେ ଯାହା ନିଜର ସହଜାତ ଗୁଣଗୁଡ଼ିକ ଦ୍ୱାରା କରିପାରୁ ନାହିଁ ତାହାକୁ ଟଙ୍କା ଜରିଆରେ ହାସଲ କରିବାକୁ ଚାହେଁ । ଏଇଥିପାଇଁ ସେ ଗୋଟାଏ କାରଖାନା ବସାଇବାର ସପକ୍ଷରେ ଯୁକ୍ତି ବାଢ଼ି ତମପାଖକୁ ଗତ ଚିଠିଟି ଲେଖିଛି ବୋଧହୁଏ । ମୋର ମତାମତ ମାଗିଛି । ତମେମାନେ ଯେତେଥର ଏହି କଳକାରଖାନା ସମ୍ପର୍କରେ ତର୍କ କରିଛ, ମୁଁ ଜାଣିଜାଣି ନୀରବ ରହିଯାଇଛି । ରହିବା ଆବଶ୍ୟକ ବୋଲି ଧରିନେଇଛି । ତେଣୁ ତା' ପାଖକୁ ସେମିତି ନିର୍ଦ୍ଦିଷ୍ଟ ମତ ମୁଁ ଲେଖି ପାରି ନାହିଁ ।

ଆମ ତିନିଜଣଙ୍କୁ ଲକ୍ଷ୍ୟ କଲେ ଆମେ କିପରି ଗୋଟାଏ ଗୋଟାଏ ମୃଗତୃଷ୍ଣା ପଛରେ ଦୌଡ଼ିବାରେ ଲାଗିଛେ ସହଜରେ ଅନୁଭବ କରିହେବ । (ଏହି ଆଲୋଚନାଟି ମୋର ନିଜସ୍ୱ । ତମେ ଏହାର ସତ୍ୟତାକୁ ସନ୍ଦେହ କରିପାର ।) ସମ୍ଭବତଃ ମୁଁ ଏ ପୃଥିବୀରେ ଟିକିଏ ଭଲ ପାଇବାକୁ ଜୀବନର ସର୍ବଶ୍ରେଷ୍ଠ କୃତୀ ବୋଲି ଗ୍ରହଣ କରିନେଇଥିଲା ବେଳେ ଏହି ଭଲ ପାଇବା ମୋ ପାଇଁ ସ୍ୱପ୍ନ ହୋଇପଡୁଛି । ଅମ୍ଳାନ କିନ୍ତୁ ମୋଠାରୁ ସମ୍ପୂର୍ଣ୍ଣ ଅଲଗା । ଭଲ ପାଇବା ତା' ପାଇଁ ସମସ୍ୟା ନୁହେଁ । ଏହାକୁ ପୃଥିବୀର ସବୁଠାରୁ ଶ୍ରେଷ୍ଠ ଶକ୍ତି ବୋଲି ସେ ଗ୍ରହଣ କରିପାରେନି । ଭଲ ପାଇବା ତାକୁ କେବେ ଯନ୍ତ୍ରଣା ଦିଏନି । ଭଲ ନ ପାଇବାର ଯନ୍ତ୍ରଣା ମଧ ସେ ଅନୁଭବ କରିପାରିନି । ତା'ର ଲୋଡ଼ା ଟଙ୍କା । କିନ୍ତୁ ଜୀବନରେ ସେ ଏହି ଟଙ୍କା ପାଇବ କି ନାହିଁ ଘୋର ସନ୍ଦେହ ଅଛି । ନିଜକୁ ଟଙ୍କାର ବଳରେ ବଳୀୟାନ କରିବା, କରିବାକୁ ଚାହିଁବା, ତା' ପାଇଁ ଏକ କଣ୍ଟକମୟ ଯାତ୍ରା ।

ଶେଷରେ ତମର କଥା । ଅମ୍ଳାନ ଭଳି ତମର ଟଙ୍କା ବିଷୟରେ କିଛି ଉଦ୍‌ବେଗ, କିଛି ଲକ୍ଷ୍ୟ ନାହିଁ । ସମ୍ଭବତଃ ପ୍ରାଚୁର୍ଯ୍ୟ ଭିତରେ ବଢ଼ି ତମେ ଏହି କଥା ଅନୁଭବ କରିପାରିନ । ତମର ସଫଳତା ଲୋଡ଼ା । Success in absolute sense ମୋର ଭୟ ହୁଏ ତମେ ମଧ୍ୟ ଏହି ମରୀଚିକା ପଛରେ ଜୀବନଟି କାଟିଦେବ ।

ମୁଁ ଆଜି ଯେତିକି ନିଜକୁ ସନ୍ଦେହ କରୁଛି, ତମମାନଙ୍କୁ ମଧ୍ୟ କରୁଛି । ଆମେ ସବୁ ଆପଣାର ନିଜସ୍ୱ ସ୍ୱପ୍ନକୁ ନେଇ ବ୍ୟଥିତ ଓ ବ୍ୟସ୍ତ । ସ୍ୱପ୍ନ ଆମ ପାଇଁ ସାର୍ଥକ ନ ହେବାଟା ଆମ ସମ୍ପର୍କରେ ଏକମାତ୍ର common denominator । ତଥାପି ଏହାକୁ ନେଇ ଆମେ ଯଦି କିଛି ଭିନ୍ନ ରାସ୍ତାରେ ବିନିଯୋଗ କରିପାରନ୍ତେ, ତେବେ ତ miracle ସୃଷ୍ଟି କରୁଥାଆନ୍ତେ । ଆମେ କେହି କାହାର ସଫଳତା, ବିଫଳତା, ସ୍ୱପ୍ନ ଓ ସତ୍ୟ, ଉତ୍‌ଥାନ ଓ ପତନକୁ ଗୁରୁତ୍ୱ ନ ଦେଇ ଆମର ସମ୍ପର୍କକୁ ପ୍ରାଧାନ୍ୟ ଦେବା । ଅନ୍ତତଃ ମୁଁ ଏହି କଥାରେ ବିଚ୍ୟୁତ ହେବି ନାହିଁ । ତମମାନଙ୍କ ସହ ସମ୍ପର୍କ ମୋ ପାଇଁ ଅପରିହାର୍ଯ୍ୟ । ମୋର ଭଲ ପାଇବାର ଏକ ମାତ୍ର ସଫଳତା ! ତମେ ଏହାକୁ ବାସ୍ତବ ଦୃଷ୍ଟିକୋଣରୁ ମୋର ଅନ୍ୟ ଏକ ସ୍ୱପ୍ନ ବୋଲି ଭାବିପାର ।

ଜନ୍ମଦିନରେ କ'ଣ ସବୁ ହେଲା ? ସତ୍ୟବାବୁ କେମିତି ଅଛନ୍ତି ?

ଅଚ୍ୟୁତ

*ଆଉପଦେ :* କେତେ ଦିନ ଧରି 'Story of Philosophy' ପଢୁଥିଲି । ଆସନ୍ତା ଚିଠିରେ କିଛି ଲେଖିବି ବୋଲି ଆଶା କରେ ।

□ □ □

ପ୍ରିୟ ବନ୍ଧୁ,

ଜନ୍ମ ନେବାଟା ବୋଧହୁଏ ଗୋଟେ cruel mistake । ସଂସାରର ସବୁ ଶାସ୍ତ୍ର ଓ ନିୟମ ତ ଏହାକୁ ନେଇ ଗଢ଼ାଯାଇଛି । ସବୁଠି ବଞ୍ଚିବାର ପ୍ରେରଣା ଦିଆଯାଇଛି । ମୁଁ କିନ୍ତୁ ସେକଥା ବୁଝେ ନାହିଁ । ପର୍ବତର ଶୀର୍ଷସ୍ଥାନକୁ ପଡ଼ିଉଠି ଯିବା କ'ଣ ଏକାନ୍ତ ଦରକାର ? ଜୀବନକୁ ସରଳ ଓ ଶାନ୍ତ କରି ଗଢ଼ିବାର ପରିକଳ୍ପନା ମୁଁ ଯେତିକି କରୁଛି, ସେତିକି କ୍ରମେକ୍ରମେ ଜଟିଳ ହୋଇପଡୁଛି । ଏବେ ତ ମୋର ମାନସିକ ଭାରସାମ୍ୟକୁ ସ୍ଥିତାବସ୍ଥାକୁ ଫେରାଇ ଆଣିବା ଗୋଟେ ବଡ଼ ଧରଣର statistical problem । ମୋର ଜୀବନକୁ ମୁଁ ମୋ ହାତରେ ଗଢୁଥିବାରୁ ସମ୍ଭବତଃ ନିଜକୁ ମାଙ୍କଡ଼ କରିଦେଉଛି । ତଥାପି ବି ମୋତେ ଦୋଷ ଦେଇ ହେବ ନାହିଁ । ମୁଁ ଅପଦାର୍ଥ ବୋଲି ଘୋଷିତ ହେଲାବେଳେ ନିଜକୁ ସେ ସମ୍ପର୍କରେ ପ୍ରଶ୍ନ ପଚାରୁଛି । ସବୁ ମଣିଷ ଯେଉଁ ରାସ୍ତାରେ ଚାଲୁଛନ୍ତି, ସେ ରାସ୍ତାରେ ବାଟ ନ ହରାଇ ଚାଲିଯିବାଟା ଯେ କୌଣସି ବ୍ୟକ୍ତି ପାଇଁ ମହାନ୍ ସଫଳତା ଯେ ନୁହେଁ, ତମେ

ଏକଥା ସ୍ୱୀକାର କରିବ । ତଥାପି କାହିଁକି ମୋ ବିରୋଧରେ ଏ ପୃଥିବୀର ଅଭିଯୋଗ ଯେ ମୁଁ ଅପଦାର୍ଥ, ମୁଁ ଅମଣିଷ ?

ଏ ସଂସାରରେ କାହାକୁ ମୁଁ ଭଲ ମଣିଷ କହିବି ? କା' ଆଗରେ ବିନମ୍ର ହୋଇ ଶରଣ ନେବି ବା କାହାର ଆପଣାର being କୁ dissect କରିବି ? କାଲି ସନ୍ଧ୍ୟାରେ ପ୍ରଫୁଲ୍ଲକୁ ତମପାଖକୁ ଲେଖିଥିବା ଚିଠିର ମୁଖ୍ୟବସ୍ତୁ କହୁଥିଲି । (ମୁଁ ସ୍ଥିରନିଶ୍ଚିତ ଯେ ମୋ କଥା ଏ ପୃଥିବୀର କୌଣସି ଲୋକ ବୁଝିବାକୁ ସମ୍ପୂର୍ଣ୍ଣ ଅସମର୍ଥ ।) ସତରେ ଆମେ ଜୀବନ ସହ ଚୁକ୍ତି କରୁଛେ । ସଂସାର ଯେମିତି ଆମ ବିପକ୍ଷରେ hostile ନହୁଏ ଏଇଥିପାଇଁ ବନ୍ଧୁତା ବାନ୍ଧୁଛେ । ଆମର କାପୁରୁଷତା, ଦୁର୍ବଳତାକୁ ଘୋଡ଼ାଇବାକୁ ଯାଇ ଗୋଟାଏ 'flock philosophy'କୁ ଅନୁସରଣ କରୁଛେ । ଯିଏ ଛାଞ୍ଚରେ ପଡ଼ିଯାଇଛି, ତା'କୁ ଆମେ ସାବାସ୍ ବୋଲି କହୁଛେ ବା ତା'କୁ ଛୁଇଁବାକୁ ଚେଷ୍ଟା କରୁଛେ । ସଂସାର ଭିତରେ ରହିଲେ ଅସହାୟ ହୋଇଯିବାଟା ଗୋଟେ virtue, ଆଦୌ ଯନ୍ତ୍ରଣା ନୁହେଁ । ସବୁ ମଣିଷଙ୍କୁ ନିକିତିର ସେପାଖେ ରଖି ମୁଁ ଓଜନ କରୁଛି । ମୋର ବୌଦ୍ଧିକ ଜାଗରଣ ଯଦି କିଛି ହୋଇଥାଏ, ତେବେ ମୁଁ ନିଜକୁ superhuman ବୋଲି ଭାବୁଛି ।

ଏ ସଂସାରରେ ମୋର ବଞ୍ଚିବା ଠିକ୍ ହେଉନି । ଯଦିଓ ବଞ୍ଚିବାକୁ ମୁଁ ଗୋଟେ third grade business ବୋଲି ଭାବୁଛି । ଅନ୍ୟ କାହା ଆଗରେ ଏକଥାକୁ ଉପସ୍ଥାପିତ କରିବା ମୋର ଅଧିକାର ନାହିଁ । ତମେ ମୋ କଥା ବୁଝୁଥିବାରୁ ତମପାଖକୁ କେବଳ ଲେଖିପାରୁଛି ।

ପ୍ରଭାତ ପାଖକୁ ମୁଁ ଯାଇପାରିନି । ସୁକାନ୍ତ ସହ ଦେଖା ହୋଇଥିଲା । ସେ ପ୍ରଭାତ ସହ ଏକଥା ଆଲୋଚନା କରିଥିବ । ଏବେ କ'ଣ ଆଉ ଭାବୁଛ ?

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଅମ୍ଳାନ ଏବେ କେମିତି ଗୋଟିଏ ଭିନ୍ନ ପ୍ରାଣୀ ବୋଲି ମନେହେଉଛି । ମୁଁ ସମ୍ଭବତଃ ଆପଣାର ମନକୁ ଏ ସମ୍ପର୍କରେ ପ୍ରଶ୍ନ ପଚାରୁଛି । ତମେ ତ ଭଲ ଭାବେ ଜାଣିଥିବ ଯେ ଅମ୍ଳାନ ସହ ବନ୍ଧୁତ୍ୱକୁ ସବୁ ଝଡ଼ଝଞ୍ଜା ଦେଇ ଅତିକ୍ରମ କରିନେବା ପାଇଁ ମୁଁ କେମିତି ଅହରହ ଓ ଅବିରତ ଚେଷ୍ଟା କରିଛି । ମୁଁ ତାକୁ ଆପଣାର ଛାଞ୍ଚରେ ଗଢୁ ନ ଥିଲି; ବରଂ ସମୟକୁ ସୁହାଇଲା ଭଳି ସବୁକଥାରେ ଅନେକ ପ୍ରୋତ୍ସାହନ ଦେଇଆସିଛି । ଭାବିଥିଲି, ଅମ୍ଳାନ ଆପଣା ଭିତରର ମନକୁ ବିଶୁଦ୍ଧ କରିବ । ମୋ ସହ ତା'ର ବନ୍ଧୁତ୍ୱ ତା' ଜୀବନରେ ବାରମ୍ବାର ଉତ୍‌ପ୍ରେରକ ଭାବେ କାମ କରୁଥିବ ।

ଗତ ଚିଠିରେ ସେ ଲେଖିଛି ଯେ, "You probably know that I had decided to get married before this summer, but this IAS results upset it all. She is... (illegible) about marriage. But I don't think it is any gallantry to marry a girl whom you cann't keep. I need a firm ground for myself. But unfortunately the ground is slipping under my legs."

ଆଜି ପ୍ରଥମ୍ ଥର ପାଇଁ ମୋର intellectuall stand ହଜିଯିବା କଥା ଅନୁଭବ କରୁଛି । ସତରେ କ'ଣ କିଏ ବାହାହୁଏ ନିଜ ସ୍ତ୍ରୀକୁ ପୋଷିବାକୁ ? (ରାଜକୁମାର ଅର୍ଥରେ ନୁହେଁ) ସଂସାର ପାତିବାକୁ ଗଲେ 'ସ୍ତ୍ରୀ'ର ସାହଚର୍ଯ୍ୟ ଲୋଡ଼ାହୁଏ । ଭଲ ପାଇବାର ଚରମ ପରିଣତି ପାରିବାରିକ ଜୀବନରେ ଫୁଟିଉଠେ । ଅମ୍ଳାନ ଏକଥା ତ ଭୁଲି ନ ଥିବ । ସ୍ମିତା ସହ ତା'ର ସମ୍ପର୍କ କେମିତି ଖାପଛଡ଼ା ମନେହେଉଛି । ସେ ତ ଆପଣାର ଭାବାବେଗ ବା ସମ୍ପର୍କଜନିତ ଅନୁଭୂତି ଆମକୁ ତ ମନଖୋଲି କହିନାହିଁ । ତଥାପି ଭଲ ପାଇବା ମାନେ ଭଲ ପାଇବା, ଛଳନା ନୁହେଁ କି ଆତ୍ମପ୍ରତାରଣା ନୁହେଁ । ଏହିଭଳି ଅର୍ଥରେ ମୁଁ ବୁଝୁଥିବାରୁ ଅମ୍ଳାନକୁ ବୁଝିବାକୁ ଚେଷ୍ଟା କରେ । ଆଜି ମୋ ମନରେ ଏହାକୁ ନେଇ ପ୍ରଶ୍ନ ଉଠୁଛି ଯେ ଅମ୍ଳାନ ସ୍ମିତା ସହ କ'ଣ ସମ୍ପର୍କ ରଖିଥିଲା କେବଳ ପୋଷିବାକୁ ?

ତମେ ତ ଜାଣ, ଅମ୍ଳାନକୁ ମୁଁ କେତେ ଆପଣାର ବୋଲି ଭାବେ । କେତେ ଜିନିଷ ମୋ ଦେଇ ହେଉ ନ ଥିଲାବେଳେ ବରଂ ସେ ମୋତେ ସଚେତନ କରି ଦେଇଛି ସେ ସମ୍ପର୍କରେ । ମୋତେ ପ୍ରେରଣା ଦେଇଛି ମଧ୍ୟ । ମୁଁ ତା' ପାଖରେ କୃତଜ୍ଞ ନିଶ୍ଚୟ । କିନ୍ତୁ ଏଭଳି କଥାରେ ମୁଁ ତାକୁ ଆଦୌ ସମର୍ଥନ କରିପାରୁନି କି ବୁଝିପାରୁନି । ଆଉ ମଧ୍ୟ ସେ ଲେଖିଛି ଯେ ତା'ର ଅନ୍ୟତ୍ର ପୋଷ୍ଟିଙ୍ଗ୍ ହେବା ଦରକାର । ଆଣ୍ଡାମାନ୍‌ରେ ସେ ଗୋଟେ offer ପାଇଲେ ଚାଲିଯିବ । ଲେଖିଛି ଏହା ତାହାର escape ନୁହେଁ, ପୁଣି ଆଉ ଗୋଟେ ଯୁଦ୍ଧକ୍ଷେତ୍ର; ସେ ସେଇଠି ନିଜକୁ ପ୍ରସ୍ତୁତ କରିବ । ଅମ୍ଳାନ ପଳାତକ କେବେହେଲେ ନୁହେଁ ବା ଆପଣାକୁ ନିର୍ବାସିତ ବୋଲି ସେ ଭାବିବ, ଏହା ମଧ୍ୟ ମୋର କଳ୍ପନାର ବାହାରେ । ସିଏ ସମ୍ଭବତଃ ଚାହେଁ ଯେ ସମସ୍ତେ ତାକୁ ବୁଝନ୍ତୁ ।

ତମେ ତାକୁ dead ବୋଲି ଭାବ ନାହିଁ । ନିଜ ପରିଧି ଭିତରର କେତୋଟି ମଣିଷ (ଚିହ୍ନା)ମାନଙ୍କ ଭିତରେ ସେ ଜଣେ । ତମେ ତା' ପାଖକୁ inspire କରି ଚିଠିଟିଏ ଲେଖ । ଆମ ସମସ୍ତଙ୍କଠାରୁ ଏହି ସମୟରେ moral support ସେ ଯଥେଷ୍ଟ ଚାହେଁ । ମୁଁ ଅନ୍ୟତ୍ର ଥିଲେ ତ ସଙ୍ଗେ ସଙ୍ଗେ ତା' ପାଖକୁ ଯାଆନ୍ତି । କିନ୍ତୁ ଏଠାରେ ଟଙ୍କା ପାଇଁ ହାତ ପାତିବାକୁ ପଡୁଥିବାରୁ ମୁଁ ବଡ଼ ସଙ୍କୁଚିତ ହୋଇପଡୁଛି ।

ଏ ଚିଠିରେ ମୁଁ ମୋର ବଡ଼ଭଉଣୀର ସଂସାର କଥା ବା ଟଲ୍‌ଷ୍ଟୟଙ୍କ କଥା ଲେଖିବାର ଥିଲା । ଅମ୍ଳାନର ଚିଠି ପାଇବା ପରେ ମୁଁ ଖୁବ୍ ହତୋତ୍ସାହ ହୋଇପଡ଼ିଛି । ଏଥର କିନ୍ତୁ

ସେଇ ପୁରୁଣା କଥା (leave no stone unturned)କୁ ପୁଣି ମନ ଭିତରେ ରଖିବାକୁ ହେବ । ଓଡ଼ିଆରେ କେତେ ରହିଲା ଲେଖି ନାହିଁ । ସବୁ ମାର୍କକୁ ମୋ ପାଖକୁ ଖୋଲାଖୋଲି ଲେଖିବା ତମର ଉଚିତ ହେବ । ଏହିଭଳି ଦୁର୍ଭାଗ୍ୟ ତ Hons ବେଳୁ ଗ୍ରହଣ କରାଯାଇଛି । ଏବେ ଦୁଃଖ ଆଉ କ'ଣ କରିବାର ଅଛି ?

ଯତୀନ୍ କ'ଣ ଲେଖିଛି ମୁଁ ଜାଣିବାକୁ ଯଥେଷ୍ଟ ଇଚ୍ଛୁକ । ତମେ ତ ଜାଣ, ସେଇଠି ଅନେକବାର ମୁଁ ହଜିଯାଇଛି । ସଙ୍ଗମସ୍ଥଳରେ ପହଞ୍ଚି ମୁଁ ଆପଣାକୁ infinite being ସହ ପରିଚିତ କରିବାକୁ ଚେଷ୍ଟା କରିଛି । ଅବଶ୍ୟ ଯତୀନ୍‌ର ଚିନ୍ତାଧାରା refined ହୋଇଥିବ ।

ଏଇଠି ମୁଁ ଅବଶ ହୋଇଯାଉଥିବାର ଲକ୍ଷ୍ୟ କରୁଛି । ସ୍ଥିର କରୁଛି ଯେ War and Peace ପରେ ଏବର୍ଷ ପାଇଁ ଆଉ କିଛି ପଢ଼ିବି ନାହିଁ । କ'ଣ କରୁଛ ତମେ ? ଆଜିକାଲି କ'ଣ ପଢୁଛ ? ଅରୁଣବାବୁ, ବିଧୁ, ଫନିବାବୁ, ରାଜେଶ ଆଦି ଭଲ ଥିବେ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମ ଚିଠି ମୁଁ ଅପେକ୍ଷା କରୁଥିଲି ।

ଅନେକ ଥର ମୁଁ ତମର ପଦଶବ୍ଦ ଏଇ କରିଡରରେ ଶୁଣୁଛି । ୨୦୮ ଖୋଲିଲେ ତମେ ମୋ କବାଟ knock କରିବ ବୋଲି ଯେମିତି ମୁଁ ଆଶାୟୀ ହୋଇପଡ଼ିଛି । ସବୁ hallucination ଭଳି ପରମୁହୂର୍ତ୍ତରେ ମିଳାଇଯାଉଛି । ବନ୍ଧୁ, ସତରେ ମୁଁ ଏଠି ଏକୁଟିଆ ହୋଇଯାଇଛି । ବେଳେବେଳେ ଏଭଳି choked ହୋଇଯାଉଛି ଯେ ମୁଁ ସହିପାରୁନି । ନିଜକୁ ଠିକ୍ ଭାବେ ମୁଁ ଚିହ୍ନି ପାରୁନି; sense ରେ ଅଛି କି ନାହିଁ ଜାଣିପାରୁନି । ମୁଁ ମଣିଷତ୍ୱରୁ ପଶୁତ୍ୱକୁ ଚାଲିଯାଉଛି । ମୁଁ ମୋର ନିଜତ୍ୱ ହରାଇବସୁଛି ।

ସବୁ ଆବେଗକୁ ତମମାନଙ୍କ ପାଖକୁ ଲେଖିଦେବାକୁ ଇଚ୍ଛା ହୁଏ । ସବୁ ମନର କଥା କେଉଁଠି କହିଦେବାକୁ ଚାହିଁ ବସେ । କିନ୍ତୁ ନିସ୍ତବ୍ଧ ରୁମ୍ ଭିତରେ ସବୁ spirit ମରିଯାଏ । Solitude ମୋ ପାଇଁ ତମ ଭାଷାରେ ଏକ ନୂଆ ଅନୁଭୂତି ନୁହେଁ । ମାନୁଛି, କିନ୍ତୁ ଏଠି ପୁରୀ ଅପେକ୍ଷା ମୁଁ ବେଶୀ ଏକାକୀ ଅନୁଭବ କରୁଛି; ବେଶୀ ହତାଶ ଓ defeated ମନେକରୁଛି । Libraryରେ Encyclopedia ଦେଖୁଛି । କିଛି ଦିନ Marx ପଢୁଥିଲି । Marxଙ୍କର sense of involvement ଅପେକ୍ଷା intellectual pursuit ବେଶୀ ଥିଲା ବୋଲି ସେ ନିଜେ କହିଛନ୍ତି । ଯେତେବେଳେ ସେ ଯଥେଷ୍ଟ ସୁଯୋଗ ପାଇନାହାନ୍ତି, ସେତେବେଳେ ସେ ଅନୁତାପ କରିଥିବା କଥା ସ୍ୱୀକାର କରିଛନ୍ତି । ସେ

ଯାହାହେଉ ପଛେ, Marxଙ୍କର Scholastic adventure କୁ ମୁଁ ଅଧିକ ଗ୍ରହଣ କରେ । କିନ୍ତୁ ତାଙ୍କର theory ସହ ସମ୍ପୂର୍ଣ୍ଣ ଭିନ୍ନ ମତ । ଏବେ Mumfordଙ୍କର 'Technics and civilization' ଏବଂ Radhakrishnanଙ୍କ ଦ୍ୱାରା edited 'The concept of Man' ପଢୁଛି । ମୋର comparative religion ଓ Greenଙ୍କ philosophy ଉପରେ କିଛି ହେଲେ ପ୍ରବେଶ ନାହିଁ । ଏହାଛଡ଼ା philosophy ରେ ଏହା ଏକାବେଳକେ ନୂଆ । ମଣିଷର ସଂଜ୍ଞା Greenଙ୍କ philosophy ଠୁ ଆରମ୍ଭ କରି Marxist philosophy ପର୍ଯ୍ୟନ୍ତ ସବୁର comparative study ଏ ବହିରେ କରାଯିବା କଥା introductionରେ ଲେଖାଯାଇଛି ।

'Nepoleon'କୁ ତମେ ନିଶ୍ଚୟ enjoy କରିଥିବ । ବିଶେଷଭାବେ ଏହାର style of writing । ମୁଁ Nepoleonଙ୍କୁ ଏ ପୃଥିବୀର ସର୍ବଶ୍ରେଷ୍ଠ ପ୍ରେମିକ ଭାବେ ଗ୍ରହଣ କରିଛି । ଏ ପୃଥିବୀରେ ନେପୋଲିୟନ୍ ଯାହା ଚାହିଁଛନ୍ତି, ତାହା ପାଇଛନ୍ତି – by sheer willpower । କିନ୍ତୁ ପ୍ରେମ ପାଖରେ ସେ ଦେବତା ହୋଇଯାଇଛନ୍ତି । 'Brothers Karamazov' ମୁଁ ନିଜେ ପଢ଼ିନି । ତେବେ Dostoevskyଙ୍କର ଏହା ସର୍ବଶ୍ରେଷ୍ଠ ଉପନ୍ୟାସ । ତମେ ବରଂ ଯଦି ମୋ ପାଖକୁ ଲେଖ; ମୁଁ କିଛି ଭଲ ବହି ପଢ଼ି ପାରୁ ନାହିଁ । Math ପଢ଼ିବାକୁ ଇଚ୍ଛା ନାହିଁ । Class ନାହିଁ । ପ୍ରଫେସର୍ ଏବଂ ରିଡ଼ର୍ ଉଭୟେ ନାହାନ୍ତି । ବଡ଼ ବୋର୍ ଲାଗୁଛି । ହଷ୍ଟେଲ୍ ବ୍ୟବସ୍ଥା କିଛି ହୋଇ ନାହିଁ । ଗୋଟାଏ ପରେ ଗୋଟାଏ problem ଆସୁଛି । ତେଣୁ ଗୋଟେ ହେଲେ କିଛି systematic କରିହେଉନି । ଉଦୟ କ୍ୟାଣ୍ଟିନ୍‌ର ଖାଉଛି । ଜଳଖିଆ ବେଳେବେଳେ ମିଳୁନି । ଚଳେଇ ନେଉଛି । ଏଇଠି ଆଉ କେହି ସାଙ୍ଗ ନାହାନ୍ତି । ଗୁରୁ ଗୋଟେ ଚିଠି ଦେଇଥିଲା । ମୁଁ ତାକୁ ଲେଖିଛି । ଅମ୍ଳାନ ବିଷୟରେ ମୋର ମତାମତ କିଛି ନାହିଁ । ସେ ବରଂ ଦିନେ ବୁଝିପାରିବ ଯଦି କିଛି Love ଏବଂ Friendship ବିଷୟରେ ସେ ଭୁଲ୍ କରୁଥାଏ । ଆମର ସମସ୍ତ acceptance ସହ ତାକୁ ସହଜ ଭାବେ ଗ୍ରହଣ କରିବା କଥା । ଅନ୍ତତଃ ମୁଁ ସେଇଆ ଆଜି ପର୍ଯ୍ୟନ୍ତ କରିଆସିଛି । ତମେ ତା' ପାଖକୁ ଲେଖ ।

ତମେ ଆସ ଏଠିକି । ଲାଇବ୍ରେରୀରେ ଏବେ ପୂର୍ବଭଳି ଆଉ ପାଟିତୁଣ୍ଡ ନାହିଁ । Time ପାଇଁ ମଧ୍ୟ Identity card ଦରକାର । Printed material କିଛି ହେଲେ allowed ନୁହେଁ । ତଥାପି ଲାଇବ୍ରେରୀ ତମକୁ ଯଥେଷ୍ଟ ସାହାଯ୍ୟ ଦେବ । ଚିଠି ଦେବ ।

ବାପା, ମାଆ ଆଦିଙ୍କୁ ମୋ କଥା କହିଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କଟକରେ ଗୋଟାଏ ରାତି କଟେଇ ଘରେ ପହଞ୍ଚିଲି । କେଉଁଠାରୁ ଆରମ୍ଭ କରିବି ? ତମକୁ କିଛି ସମୟ ଧରି ଅନୁଧ୍ୟାନ କରୁଥିଲି ।

ବାଣୀବିହାରର ନିର୍ଜନତାରେ ଭାବବିହ୍ୱଳ ହୋଇ ମୁଁ ନିଜ ସହ କିଛି ସମୟ ପାଇଁ କଥାବାର୍ତ୍ତା କରିବାକୁ ଭାବୁଥିବାବେଳେ ଦେଖୁଥିଲି ତମେ କିପରି ଉଦାସ ହୋଇ ପଡୁଛ । ଆଘାତ ପାଇଲି ତମର ଏ ପ୍ରକାର ବିମର୍ଷତା ଦେଖି । ମୋର ମନେହେଲା ତମେ ଯେପରି ତମର ଅନେକ ନିଜର ଲୋକଙ୍କୁ ଆଉ ପୂର୍ବଭଳି ଭାବୁ ନାହଁ । ତମର passion, ତମର ସବୁକୁ ନିଃସନ୍ଦେହରେ dominate କରିଛି । ଏହି ସମୟରେ ଯେପରି ଆମେ ଆମର common goalରୁ ମଧ୍ୟ ବିଚ୍ୟୁତ ହୋଇଯାଉଛେ । ଆଗରୁ କହିଛି ମୁଁ ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଓ ନିଜସ୍ୱ ଜୀବନ ଉପରେ ଅଧିକ ଭାଗ ନେବାକୁ ଇଚ୍ଛୁକ ନୁହେଁ । ଏହା ଯଦି ମୋର ଏକ abnormality ହୋଇଥାଏ ତେବେ ମୁଁ କ୍ଷମଣୀୟ । ବନ୍ଧୁ ! ତମେ କେବଳ ଜୀବନରେ established ହେବା କଥା କହିଅଛ; ହେଲେ କ'ଣ ହେବାକୁ ଚାହଁ, ତା'ର କୌଣସି ରୂପରେଖ ଦେଇ ନାହଁ । ମୁଁ ଚାହେଁ ନାହିଁ prophetic ମତାମତ ଦେବାକୁ । ତମକୁ ମୋର ବିନମ୍ର ଅନୁରୋଧ ଯେ ତମେ ଯେପରି ଚରୈବେତି ଦ୍ୱାରା ମନ୍ତ୍ରମୁଗ୍ଧ ହୁଅ । ମୋର ବିଶ୍ୱାସ, ତମେ ତମର ସଂବିତ୍ ହରେଇବନି ଏବଂ ମୁଁ ଜଣେ ଉତ୍ତମ ବନ୍ଧୁର କର୍ତ୍ତବ୍ୟ କରିଛି ।

ମୋର କଥା କିଛି ଲେଖିବାର ନାହିଁ । ଘରେ ସବୁକଥା ଜଣେଇଲି । ଘରେ କ'ଣ କରୁଛନ୍ତି ତା'କୁ ସେମାନେ ହିଁ ଜାଣନ୍ତି । ଏକଥା ସତ ଯେ ମୁଁ ଆଉ ହାରିଯିବା ଲୋକ ନୁହେଁ । ଏକଥା ତମ ମନରେ ନିଶ୍ଚୟ କିଛି ଆତ୍ମବିଶ୍ୱାସ ଜନ୍ମେଇବ ।

ମୁଁ ପିଲାଦିନରୁ ଇତିହାସର logical consistency ରେ ବିଶ୍ୱାସ କରେ ନାହିଁ । ଲଳିତ ବିଷୟରେ ମୁଁ ଅଧିକ ଲେଖିବାକୁ ସାହସ କରେ ନାହିଁ ।

ମୋର ବିଶ୍ୱାସ, ଆଗାମୀ Competitive Exam. ପାଇଁ ତମେ ପୁଣି ନିଜକୁ revive କରିପାରିଛ । ଏହା ଯେପରି ପଛରେ waste plan ବୋଲି ବିବେଚିତ ନ ହୁଏ । ମୋର index ଓ intimation କଥା ସମୟ ମିଳିଲେ ବୁଝୁଥିବ । ତମେ ଭଲ ମନରେ ଅଛ ।

ଏତିକିରେ ଶେଷ କରୁଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଚିଠି ଓ ପ୍ରଫୁଲ୍ଲର Regd. No. ପାଇଛି । ପ୍ରଫୁଲ୍ଲ ତମକୁ ଧନ୍ୟବାଦ ଜଣାଇବା ପାଇଁ ମୋତେ କହିଛି ଓ ତମେ ନିଶ୍ଚୟ ଗ୍ରହଣ କରିବ ।

ଚିଠିରୁ ଜାଣିଲି ଯେ ଆମ ପରୀକ୍ଷାଫଳ ବୋଧହୁଏ ଏ ଭିତରେ ବାହାରିବାର ସମ୍ଭାବନା ନାହିଁ । କେଜାଣି କେତେ ଦିନ ପର୍ଯ୍ୟନ୍ତ ଏ ଅସାଧାରଣ ଓ ଦୁର୍ବିସହ ଦିନଗୁଡ଼ାକୁ କାଟିବାକୁ ପଡ଼ିବ ! ତମେ special paper ସମ୍ପର୍କରେ ମୋର ମତାମତ ଜାଣିବାକୁ ଚାହିଁଛ । Sociology ଯେତେବେଳେ mark fetching, ତାହାକୁ priority ଏବଂ purpose basis ରେ ପ୍ରଥମେ ନେବାକଥା । ଏତଦ୍‌ବ୍ୟତୀତ Competitive ରେ Sociology ଅସମ୍ଭବ ଭାବେ mark fetching । ତମେ ଅବଶ୍ୟ wisely ସେ ବିଷୟରେ ଚିନ୍ତା ନିଶ୍ଚୟ ହିଁ କରୁଛ । ଏଥିରେ ଦ୍ୱନ୍ଦ୍ୱର ପ୍ରଶ୍ନ ନାହିଁ । success ଏବଂ failure ଭିତରେ ତଫାତ୍ ଏତେ ବିରାଟ ଓ ଭୟଙ୍କର ଯେ ମୁଁ ବୋଧେ ଅତିମାତ୍ରାରେ ଡରିଯାଉଛି । ସମୟ ମୋ ପାଇଁ ଏତେ ମୂଲ୍ୟବାନ୍ ଅଥଚ ମୁଁ ଶୋଇ ଶୋଇ ଏଠାରେ କାଟିଦେଉଛି । ଭାବୁଥିଲି English କିଛି develope କରିବି ବୋଲି । କିନ୍ତୁ ସେଇ ପରୀକ୍ଷା ଫଳର ଭୂତ ମୋତେ ପଛକୁ ଟାଣି ନେଉଛି । ଛାଡ଼, ଜୀବନରେ ଅନୁତାପ କରି ଯଦି ଶାନ୍ତି ମିଳୁଥାଆନ୍ତା ! Establishmentକୁ ଯଦିଓ ତମେ ଭିନ୍ନ ରୂପରେ ଓ ଦୃଷ୍ଟିରେ ଦେଖୁଥାଅ, ତଥାପି ଆମେ ଯେ ସମ୍ପୂର୍ଣ୍ଣ ଭାବେ ପରିପକ୍ୱ ଦୃଷ୍ଟିକୋଣ ନେଇ ଆଗାମୀ ଜୀବନ କଥା ଚିନ୍ତା କରୁଛେ, ସେକଥା ନିଶ୍ଚିତ ଭାବରେ ଏବଂ ଜୋର ଦେଇ କହିହେବ ନାହିଁ ।

ଚର୍ଚ୍ଚିଲ୍‌ଙ୍କର World War Vol-VI ଆଉ ଅଳ୍ପ କିଛି ସରିଯିବାକୁ । ଗୋଟାଏ excellent brain ଓ strategy ମୁଁ ପଢୁଥିଲି । ତାଙ୍କର personal letters ଓ directives ବହିର ସମସ୍ତ charmକୁ ନଷ୍ଟ କରିଦେଇଛି । ସବୁ ବହିର ଆରମ୍ଭରେ ସେ Moral of the Work ଲେଖିଛନ୍ତି; ଯାହା ତୁମକୁ ନିଶ୍ଚୟ inspire କରିବ ।

"In war : Resolution
In Defeat : Defiance
In Victory : Magnanimity
In Peace : Goodwill"

ଆଉ 'ଚିତ୍ରଲେଖା'ର ଇଂରାଜୀ ଅନୁବାଦ ପଢୁଥିଲି । ତମେ ପଢ଼ିଥିବ (ଓଡ଼ିଆ) । ଗୋଟାଏ sound intellect ନେଇ ସେ ବହି ପଢ଼ିଲେ ବୋଧହୁଏ ଆମର immature mindରେ ଆସୁଥିବା ଅନେକ ପ୍ରଶ୍ନ ଉତ୍ତର ମିଳିଯିବ । ଅମ୍ଲାନକୁ ମୋର good wishes

ଜଣାଇଦେବ । ତା'ର competative ପାଇବା ନିତାନ୍ତ ଦରକାର । ସେ ପରିସ୍ଥିତିର କ୍ରୀତଦାସ । ନୁହେଁ କି ?

*ଦ୍ରଷ୍ଟବ୍ୟ :*

ଦୀର୍ଘ ୩୬ ଘଣ୍ଟା ଧରି ବର୍ଷା ଲାଗିରହିଛି । ଟ୍ରେନ୍ କିମ୍ବା ବସ୍ ଚାଲୁ ନାହିଁ । ଏ ଚିଠି ତମେ ଠିକ୍ ସମୟରେ ପାଇବନି ବୋଧହୁଏ । ନଦୀରେ ୩୩ ଫୁଟ ପାଣି ଆସିଛି । ଏଠାରେ ବିପଦସଂକେତ ୨୦ ଫୁଟ ବୋଧହୁଏ । ଏବନ୍ୟା ଯୋଗୁଁ ଚାଷକାର୍ଯ୍ୟରେ ଅନେକ ବାଧା ଆସିବ ।

▯ ▯ ▯

ପ୍ରିୟ ବନ୍ଧୁ,

ଆଜି ଏଠାକୁ ମାନେ କନ୍ୟାକୁମାରୀକୁ ଆସିଲି । ଏହାପୂର୍ବରୁ ବାଙ୍ଗାଲୋର୍‌ରେ ପ୍ରାୟ ୪/୫ ଦିନ ଥିଲି । ମାଡ୍ରାସ୍‌ରୁ ଧନଞ୍ଜୟ ଦୁଇଦିନ ପାଇଁ ମୋ ସହ ଆସିଥିଲା । ଆମେ ମହୀଶୂର ଓ ଶ୍ରୀରଙ୍ଗପଟନମ୍ ଆଦି ଦେଖିଥିଲୁ । ତମେ ବୋଧେ ଜାଣିଥିବ, ଏ ଅଞ୍ଚଳ ଖୁବ୍ ଚମତ୍କାର । ସବୁ ଦୃଷ୍ଟିରୁ । ଜଳବାୟୁ ଖୁବ୍ ସ୍ୱାସ୍ଥ୍ୟକର । ସବୁଆଡ଼େ ବଗିଚା ଓ ଫୁଲ । ଏବେ ମଧ୍ୟ ବସନ୍ତ ଋତୁର ଫୁଲମାନଙ୍କର ସମ୍ଭାର । ଲୋକମାନେ ମଧ୍ୟ ଅନ୍ୟ ସହର ଭଳି ଏତେଟା ଅଭଦ୍ର ନୁହନ୍ତି । ଟୁରିଷ୍ଟମାନଙ୍କର ସଂଖ୍ୟା ଖୁବ୍‌ବେଶୀ ।

ବାଙ୍ଗାଲୋର୍‌ରେ ମୁଁ ଅନେକ ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା କଲି । ଆଗରୁ ଦେଖାସାକ୍ଷାତ ହୋଇ ନ ଥିବା ନାରାୟଣ ପ୍ରସାଦ ମୋ ଖାତିର୍‌ରେ ଅନେକ କିଛି କରିଥିଲା । Tata Institute of Social Sciencesରୁ M.A. କରି ମଧ୍ୟ ଏବେ ଚାକିରୀ ଅନ୍ୟତ୍ର ଦେଖୁ ନାହିଁ । Indian Institute of Managementରେ Senior Steno ହିସାବରେ ସେ ବର୍ତ୍ତମାନ ଜୀବିକା ନିର୍ବାହ କରୁଛି । ତିନିଦିନ ଧରି ମୋ ସାଙ୍ଗରେ ଥିଲା । ସେ Trade Union କାମରେ ଜଡ଼ିତ ହୋଇଥିବାରୁ ମୋତେ ଭିନ୍ନଭିନ୍ନ ସ୍ତରର ଲୋକଙ୍କ ସହ ପରିଚିତ କରି ଦେଇଥିଲା ।

ନନ୍ଦନା ରେଡ୍‌ଡୀ (ସ୍ନେହଲତା ରେଡ୍‌ଡୀଙ୍କ ଝିଅ)ଙ୍କ ସହ କିଛି ସମୟ ପାଇଁ କଥାବାର୍ତ୍ତା ହୋଇଥିଲା ସାଙ୍ଗଠନିକ ବ୍ୟାପାର ସମ୍ପର୍କରେ । ହଠାତ୍ ରୂପଲୋକ ଭିତରୁ ସେ ଯେମିତି ଆସିଯାଇଛି ! କ'ଣ କାମ କରୁଛି, ମୁଁ ହୁଏତ ପଚାରି ନାହିଁ । କିନ୍ତୁ ସମାଜବାଦୀ ହିସାବରେ ଏବେ ମଧ୍ୟ ତା'ର ଖାତିର୍ ଏଠାରେ ଅଛି । ଭଲ ଝିଅଟିଏ ବୋଲି ମନେହେଲା ।

କର୍ଣ୍ଣାଟକର CPM secretary M.K. Bhattଙ୍କ ସହ ଦୀର୍ଘ ସମୟ ଧରି କଥାବାର୍ତ୍ତା ମୁଁ କରିଥିଲି । ଛାତ୍ର ଜୀବନରେ ସେ ଅସାଧାରଣ ଥିଲେ । ଆମେରିକାରୁ Nuclear Physicsରେ PhD. କରିଥିଲେ ମଧ୍ୟ ମାର୍କସ୍‌ଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ।

କର୍ଣ୍ଣାଟକର କେତେକ ଗାଁରେ ବିକାଶମୂଳକ କାମ ସଫଳ ଭାବେ କରିଥିଲେ । ଆଗାମୀ ରାଜନୈତିକ ଦିଗ୍‌ବଳୟରେ ସେ ଦେଖା ଦେଇ ସାରିଛନ୍ତି ବୋଲି ଅନେକ କହୁଛନ୍ତି । ସେ ଯାହାହେଉ, ସଙ୍ଗଠନ ସମ୍ପର୍କରେ ତାଙ୍କ ସହ ମୋର ଯୁକ୍ତି ହେଲା । ସେ କହୁଥିଲେ, ସବୁ କିଛି କାର୍ଯ୍ୟର ଲକ୍ଷ୍ୟବିନ୍ଦୁ କେବଳ ରାଜନୈତିକ ଡାଞ୍ଚାକୁ ଜୟ କରି ଆପଣାର ହସ୍ତଗତ କରିବା । ଭବିଷ୍ୟତରେ ଆମେ ଆମର ସମ୍ପର୍କ ସୁଦୃଢ଼ କରିବାକୁ ଚେଷ୍ଟା କରିବା ପାଇଁ ସେ ମତ ଦେଉଥିଲେ ।

ମୁଁ ଭବତୋଷକୁ ଏଠାରେ ଆଶା କରୁ ନ ଥିଲି । କାରଣ ସେ ଏକମାସ ଧରି ଅନୁପସ୍ଥିତ୍ ରହିବ ବୋଲି ତିଲୋନିଆକୁ ଲେଖିଥିଲା । Indian Institute of Science ରେ ଅନ୍ୟ ଜଣେ ବନ୍ଧୁଙ୍କୁ ଦେଖା କରିବାକୁ ଯାଇଥିଲି । ହଠାତ୍ ତା' ସହ ଦେଖାହେଲା । ସେଦିନ ମୋର ଶେଷ ଦିନ ଥିଲା ସେଠାରେ । ମୁଁ ରହିବା ଅବସ୍ଥାରେ ନ ଥିଲି । ଫେଲୁ ବି ସେଠାରେ ପଢୁଥିବା କଥା ତମେ ଜାଣିଥିବ । ଭବତୋଷ ବିଶେଷ କିଛି ବଦଳି ନାହିଁ । ବରଂ ଆହୁରି ମୁଁ ଲକ୍ଷ୍ୟ କଲି ତାହାର ଆତ୍ମବିଶ୍ୱାସ ଖୁବ୍ ସୁଦୃଢ଼ ହୋଇଛି । ଦେଖାହେଲେ ସବିଶେଷ କହିବି । ଆମେ ଖୁବ୍ କମ୍ ସମୟ ଏକାଠି କାଟିଥିଲୁ । ଫେଲୁ ଭୁବନେଶ୍ୱର ଫେରି ଯାଇଥିବା କଥା । ତମକୁ ଫୋନ୍ କରି ମୋର ଆସିବା କଥା ସେ କହିବ । ମୁଁ ପନ୍ଦର ତାରିଖକୁ ଟିକଟ ପାଇଁ ଧନଞ୍ଜୟକୁ କହିଆସିଛି । ସେ କହିଥିଲେ ୧୬ ତାରିଖ ସନ୍ଧ୍ୟାରେ ତମ ପାଖରେ ମୁଁ ପହଞ୍ଚିବି । କିନ୍ତୁ ଏ ସମୟ ଛୁଟି ପଡୁଥିବାରୁ ତମେ ହୁଏତ ନ ଥାଇପାରେ । ତମକୁ ଏବେ ମଧ୍ୟ ଘର ମିଳି ନାହିଁ ବୋଲି ମୁଁ ଜାଣିପାରିଲି । ଏପ୍ରକାରର ସ୍ଥିତି ଉଦ୍‌ବେଗଜନକ ନୁହେଁ ତ ଆଉ କ'ଣ !

ତମ ସହ ଅନେକ ଦିନ ହେବ ଦେଖା ହୋଇ ନାହିଁ । ଶାସନକଳର ହାତବାରିସୀ ହୋଇ ତମେ ଏବେ କେମିତି ମାନସିକ ଓ ବୌଦ୍ଧିକ ସ୍ଥିତିରେ ଅଛ ମୁଁ ତାହାର ମୂଲ୍ୟାଙ୍କନ କରିବାର କଥା । ଏହାଛଡ଼ା ତମର ବ୍ୟକ୍ତିଗତ ଜୀବନରେ କେତେ ମାତ୍ରାରେ ଶାନ୍ତି ଅଛି, ତାହା ମଧ୍ୟ ତମଠାରୁ ମୁଁ ଶୁଣିବି ।

ଆଉ ସବୁ ଭଲ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଜିକୁ ଦଶ ଦିନ ହେଲା ମୁଁ ବହି ଧରି ନାହିଁ । ମୁଁ ଯେମିତି ଆଉ ଏକ ମଣିଷ ହୋଇପଡୁଛି । ଭଞ୍ଜ ଭୁବନେଶ୍ୱର ଛାଡ଼ିବା ପୂର୍ବରୁ ମୋତେ କେତେ ଉତ୍ସାହ ଦେଇ ନ ଥିଲା ! ତମମାନଙ୍କୁ ଆଖି ଆଗରେ ରଖି ମୋତେ ନିଜ ଭିତରେ ମଣିଷଟି ବାରମ୍ଭାର ଯୁଦ୍ଧ

କରିବାକୁ ପ୍ରତିଜ୍ଞା କରିଥିଲା । ଆଜି ସବୁ ଯେମିତି ଓଲଟପାଲଟ ହୋଇପଡୁଛି । ମୁଁ ଆଶ୍ଚର୍ଯ୍ୟ ହେଉଛି ଯେ ମୋର କ'ଣ ହୋଇଯାଇଛି ! ଆଜିକୁ କୋଡ଼ିଏ ଦିନ ହେବ ଘରକୁ ଚିଠି ଦେଇ ନାହିଁ । ପ୍ରଫୁଲ୍ଲକୁ ମଧ ଲେଖି ନାହିଁ । ବାବା ଯେଉଁଭଳି ମୋତେ ଚିଠି ଲେଖିଥିଲେ, ମୁଁ ନିଜେ ବିଶ୍ୱାସ କରି ପାରୁନି ଯେ ମୁଁ ସୁସ୍ଥ ମସ୍ତିଷ୍କରେ ଅଛି ବୋଲି । ହୋଇପାରେ, ଏ ପୃଥିବୀରେ ମୁଣ୍ଡ ଟେକି ଛିଡ଼ା ହେବାର ଗୌରବରୁ ବଞ୍ଚିତ; ତଥାପି କ'ଣ ମୋର ମଣିଷପଣିଆ ମରିଯାଇଛି ? ତଥାପି କ'ଣ ମୋର ନିଜ ବାଟରୁ ମୁଁ ଖସିଯାଇଛି ? ମୋତେ କେହି ବୁଝୁ ନାହାନ୍ତି ବୋଲି ମୋର ଭୟ ହେଉଛି । ମୁଁ ସଂସାରରେ ଏକୁଟିଆ ହୋଇ ରହିଗଲେ ଚଳିପାରିବି ତ ! କ୍ଷଣିକ ପାଇଁ ବଞ୍ଚିପାରିବି ତ ! ମୋର ସବୁ ନିଜର ବିକୃତ ( ! ) ଚିନ୍ତାଧାରା ମୋତେ ମୋର ପରିବେଶକୁ ଓ ପରିବେଶ ସହ interactionକୁ ବିଷାକ୍ତ କରିଦେଲାପରେ ମୁଁ ମୋ ଉପରୁ, ଏ ପୃଥିବୀ ଉପରୁ ବିଶ୍ୱାସ ହରାଇବସୁଛି । (ସେଇଥିପାଇଁ ତ ତମମାନଙ୍କ ସହ ଯେକୌଣସି ପରିପ୍ରେକ୍ଷୀରେ ମୁଁ ନିଜକୁ ସାମିଲ୍ କରିବାକୁ ଚାହିଁଛି ।) ମୁଁ ଆଉ ସମ୍ଭବତଃ ଆସୁଥିବା ଅନିଶ୍ଚିତତାର ଉତ୍ତାଳ ତରଙ୍ଗକୁ ଅଟକାଇପାରିବି । ସେଦିନ ତମମାନଙ୍କୁ ମୋତେ ବିଦାୟ ଦେବାକୁ ପଡ଼ିପାରେ । ଅନେକ ସମୟରେ ମୁଁ ଚାହିଁଛି ମୋର ନିଜ ଲୋକମାନଙ୍କ ପାଖରେ ମୁଁ ସବୁ ଖୋଲି କହିଦିଅନ୍ତି । ଅଥବା ଲେଖିଦିଅନ୍ତି ଯେ ମୁଁ କେଉଁ ଦିନରୁ ମରିହଜି ଗଲିଣି, ମୋତେ ତମେମାନେ ସବୁ ଭୁଲିଯାଅ ବୋଲି । କିନ୍ତୁ ସେଇଠି ନିଜ ଭିତରର ସ୍ୱପ୍ନଗୁଡ଼ିକ ସକ୍ରିୟ ହୁଅନ୍ତି । ସବୁକୁ ଜୀବନ୍ତ ଓ ରସାଳ କରିଦିଅନ୍ତି । ମୁଁ ହଠାତ୍ ଜୀବନର ଆସକ୍ତି କାହିଁକି ଅଛି ବୁଝିପାରେ ଓ ଶିକାର ମଧ ହୋଇଥାଏ । ତମମାନଙ୍କ ଆଗରେ ମୁଁ କେତେବାର କହିଥିବି, ମୋ ଜୀବନର ଏକାନ୍ତ ଇଚ୍ଛା ଭଲମଣିଷଟିଏ ହେବାର । ଆଜି ଯେମିତି ମୁଁ ସେସବୁ କଥା ଭୁଲିଗଲିଣି । ଯେମିତି ମୋ ପାଖରେ ଆଉ ଗୋଟେ set of values ସବୁକିଛି ।

ଛାଡ଼ ଏସବୁ କଥା । ମୁଁ ତମ ଚିଠିକୁ ଶନିବାର ଦିନଠାରୁ ଅପେକ୍ଷା କରୁଥିଲି । ତମ ସହ ଦିନଟିଏ କଟେଇବା ମୋର ଏକାନ୍ତ ଇଚ୍ଛା । ତମ ପାଖରେ ମୁଁ ହୁଏତ କିଛି ହାଲୁକା ହୋଇପାରିବି, କିଛି ସମୟ ପାଇଁ ନିଜ ଖୋଳ ଭିତରୁ ବାହାରିପଡ଼ିବି । ତମକୁ ମୁଁ ନିର୍ଜନତା ସମ୍ପର୍କରେ କହିଥିଲି । ତମେ ମଧ ବେଶ୍ ଅନୁଭବ କରୁଛ । ତମେ ଚାହିଁଲେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିପାରିବ । ତେଣୁ ଲେଖିବାର ପ୍ରେରଣା ଦେବା ମୋର କର୍ତ୍ତବ୍ୟ । ନିଜ ସହ ନିଜକୁ ପରିଚିତ ତମେ କରାଇଛ ଏଥିରେ ସନ୍ଦେହ ନାହିଁ । କିନ୍ତୁ ସତରେ କ'ଣ ଆମେ ନିଜ ସହ ନିଜକୁ ପରିଚିତ କରାଇପାରୁଛୁ ! ତେବେ ହାରିଯାଉଛୁ କାହିଁକି ? ଏକୁଟିଆ ହୋଇପଡୁଛୁ କାହିଁକି ? ଗଣେଶ ପୂଜାରେ ତମମାନଙ୍କ କଥା ମନେ ପକାଉଥିଲି । ବାହାରକୁ ସେଦିନ ବାହାରି ନାହିଁ । 'The Plague' ଯୋଗାଡ଼ କରିଥିଲି; ପଢ଼ିପାରିଲିନି ମାଇକ୍ ବାଜିବା ହେତୁ । ଯେତିକି ପଢ଼ିଛି, ସେ ଭିତରୁ ମୋତେ ତଳେ ଲେଖିଥିବା passageଟି ଭଲ ଲାଗିଛି ।

"It was undoubtedly the feeling of exile – that sensation of a void within which never left us, that irrational imaging to wark back to the past. Or else speed up the march of time and those keen shafts of memory that stung lide fire. Sometimes we toyed with an imagination composing ourselves to wait for a ring at the bill announcing somebody's return, or the sound of a familiar footstep on the stairs, but though we might deliberately stay at home at the hour when a traveller coming by the evening train would have normally arrived, and though we might contrive to forget that game of make-believe, for obvious reason, could not last. Always a moment came when we had to face the fact that no trains were coming in. And then we realize that the separation was destined to continue, we had no choice but to come to the terms with the days ahead, In short, we return to our prison-house, we had nothing left us but past, and even it some were tempted to live in future, they had speedily to abandon. The idea any how, as soon as it could be – are they felt the wounds that the imagination inflicts on those who yields themselves to it."

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ମୋର ଅହେତୁକ ଓ ଅଯୌକ୍ତିକ ବିଳମ୍ବରୁ ମୁଁ କେତେ ନିଷ୍କ୍ରିୟ; ସମୟ ସହ ଅତିଷ୍ଠ ଓ କିପରି କକ୍ଷଚ୍ୟୁତ ହୋଇ ପଡ଼ିଛି, ତମେ ନିଶ୍ଚୟ ଅନୁମାନ ଓ ଅନୁଭବ କରିପାରୁଛ ।

ଦେଖ, ଏଇ ମୁହୂର୍ତ୍ତରେ ମୋ ପାଖରେ Dr Zhivago, Conquest of Happiness (Russell), Let People Think (Rousell) Moon & Six Pense (Maughm), Rommel (Desmond Young), Indian Struggle (Subhas Bose), Maneaters of Kumaun, Great Short Stories of Maupassan ଓ ଜୀବନ ବିଦ୍ୟାଳୟ ଆଦି ବହି ଅଛି । ସେ ଭିତରୁ 'ଜୀବନ ବିଦ୍ୟାଳୟ'କୁ ଟାଣି ଆଣି ପଢ଼ିବାର ଆଗ୍ରହକୁ ମୁଁ ଚପାଇ ପାରୁ ନାହିଁ । ସତରେ, ଏତେ ବହି ପଢ଼ିବାରେ କି ଲାଭ ଅଛି ! ହୁଏତ ସମୟ ଆସିବ, Zorba ଭଳି ମୋତେ ବିହ୍ୱଳ ହେବାକୁ ପଡ଼ିବ । ଚିତ୍ତରଞ୍ଜନ ଦାସ ତ ଏହିଭଳି 'ଶିଳାତୀର୍ଥ'ରେ ବିହ୍ୱଳ ହୋଇ କେତେ କଥା ଲେଖିଛନ୍ତି, ତାହା ତମେ ଜାଣ । ତମକୁ ଯେତେବେଳେ ତେଇଶ ବର୍ଷ ହୋଇଯିବ ତମେ କି କଥା ଭାବିବ ମୁଁ କହିପାରୁନି । ତମର ସେତେବେଳେ ପରିପକ୍ୱତା ଆସିଥିବ କି ନାଁ ସେକଥା ମୁଁ ମଧ୍ୟ କହିପାରିବିନି । ତମର ଯଦି ଗର୍ବ ଥାଏ, ଥାଏ ଆତ୍ମପ୍ରତାରଣା, ସେ ବିଷୟରେ ତମେ କି

କଥା ଭାବିବ ତାହା ମଧ୍ୟ ମୋତେ ଜଣାନାହିଁ । ଏକତିରିଶ ବର୍ଷ ବେଳେ ଚିତ୍ତରଞ୍ଜନ ଦାସ ଯାହା ଲେଖିଛନ୍ତି, ଏହି ଦିନରେ ନିଶ୍ଚୟ ଉଦ୍ଧାର କରିବି ।

"ଆଜି ଜନ୍ମଦିନରେ ଆପଣାକୁ ଶିଶୁଟି ପରି ଲାଗୁଛି । ତିରିଶ ବର୍ଷର ସବୁ ଉପାର୍ଜନ ଓ ଅଭିମାନ ଆଜି ଦେହରୁ ଖସି ପଡ଼ିଲା ପରି ଲାଗୁଛି । ଜୀବନଟା ବଡ଼ ହାଲୁକା ମନେ ହେଉଛି ।... ଆଜି ବାରବାର ଶିଶୁର କ୍ଷୁଧା, ଶିଶୁର ଜିଜ୍ଞାସା ଓ ଶିଶୁର ସ୍ନେହଶୀଳତାରେ ଅନ୍ତର ମନ ପୁରିଉଠୁଛି ।... ଆମର ବୟସ ବା ଆମର ବୁଢ଼ା ହେବା ଆମ ଜୀବନର ସମସ୍ତ କଥା ନୁହେଁ । ଆମର ବିକାଶ ଓ ଆମର ଆନନ୍ଦ, ଆମର ଜିଜ୍ଞାସା ଓ ଆମର ଶ୍ରଦ୍ଧା ଆମର ବାଳ ପାଚିବା ସତ୍ତ୍ୱେ ଯେ ଆମକୁ ପିଲାଟି ଭଳି ସରସ କରି ରଖେ, ଆମ ସମସ୍ତଙ୍କୁ ଏହି ସତ୍ୟଟି ଅନୁଭବ କରିବାକୁ ହେବ । ଏହି ଅନୁଭବ ଲାଭ କରିବାରେ ଆମକୁ ଅଧିକ ପ୍ରେରଣା ଦେବାକୁ ସମାଜର ଅଭିଜ୍ଞ ମଣିଷ ଜନ୍ମଦିନ-ଉତ୍ସବର ସୃଷ୍ଟି କରିଛି ।" ଗତ ବର୍ଷ ତମେ ଚିଠିରେ ଲେଖିଥିଲ ଜନ୍ମଦିନ ପ୍ରତ୍ୟେକ ଦିନ ପାଇଁ ଅନେକ happy returns ଆଣୁ । ଏକଥା ମଧ୍ୟ ଚିତ୍ତରଞ୍ଜନ ଦାସ ଲେଖିବାକୁ ଭୁଲି ନାହାନ୍ତି ।

ଆଜି ମୋର ଜନ୍ମ ଦିନ । ଆଉ କେତେ ଘଣ୍ଟା ପରେ ଏହା ଅତୀତ ହୋଇଯିବ ନିଶ୍ଚୟ । ଆଜି ତ ଅନେକ resolution, ଅନେକ ଶପଥ ନେବାର ଦିନ । ଆଜି ପଛକୁ ଫେରିଯିବା କଥା ନିଶ୍ଚିତ । ମୁଁ କିନ୍ତୁ ଅତୀତର ବିଶ୍ୱାସ କରେ ନାହିଁ । ଆଗେଇ ଚାଲ (ଚରୈବେତି) ଦ୍ୱାରା ମୁଁ ମନ୍ତ୍ରମୁଗ୍ଧ ।

ତମେ ବୋଧେ ଜାଣିଥିବ ଯେ ଏ ପୃଥିବୀରେ ଦୁଇଟି ସହଜତମ ବସ୍ତୁ ହେଉଛି 'ପରକୁ ଉପଦେଶ ଦେବା' ଓ 'ମିଛ କହିବା' । ମିଛ କହିବା ଭିତରେ ମୁଁ ପ୍ରତ୍ୟେକ ମଣିଷର ଅହଙ୍କାର, ଆତ୍ମପ୍ରତାରଣା ଓ ଅଭିନୟକୁ include କରିଛି । ଆଜି ମୁଁ ଯେପରି ମୋର egocentrism ବିଷୟରେ ସବୁକଥା ଖୋଲି ଦେଇପାରୁଛି । ତମକୁ ତ ଲେଖୁଛି, କ୍ରମଶଃ ମୁଁ କିପରି ବାସ୍ତବବାଦୀ ଓ ଆତ୍ମକୈନ୍ଦ୍ରିକ ହୋଇପଡୁଛି । ଏହାକୁ ମୁଁ ମୋର ସଂକୀର୍ଣ୍ଣତା ବୋଲି କହିପାରୁନି । ବରଂ ଏହା resurrection । ମୁଁ ଏ ପୃଥିବୀର ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ବ୍ୟକ୍ତି-ସ୍ୱାତନ୍ତ୍ର୍ୟକୁ ସ୍ୱୀକାର କରିବି ଓ ସମ୍ମାନ ଦେବି । ସେଥିପାଇଁ ମୁଁ ଚିନ୍ତିତ ନୁହେଁ, ଯଦି ମୁଁ ଘଟଣାଚକ୍ରରେ ପଡ଼ି ଆହୁରି ଏକୁଟିଆ ହୋଇଯାଏ । ଆଜି ମୁଁ ମୋ ପାଇଁ ଦୟନୀୟ ହୋଇ ପଡ଼ିଥିବାର ଅନୁଭବ କରିପାରୁଛି । କିନ୍ତୁ ଏହା ସାମୟିକ । ତମେ ଜାଣ ମୁଁ କିପରି ସ୍ୱପ୍ନବାଦୀ ହୋଇପଡ଼ିଥିଲି । ଆଜି ଉଲଗ୍ନ ଓ ଅତି ଭୟଙ୍କର ବାସ୍ତବତା ମୋତେ ଯେମିତି ଏକ ଅନ୍ୟ ମଣିଷ କରିଦେଇଛି । ମୁଁ ବାରମ୍ବାର ନିଜକୁ ସଜାଡ଼ିବାରେ ଲାଗିଯିବି ଓ ଶେଷରେ ଜିତିବି ମଧ୍ୟ ।

ଆଜି ଜନ୍ମାଷ୍ଟମୀ; ଶ୍ରୀକୃଷ୍ଣଙ୍କ ଜନ୍ମଦିନ । କେହି ଯଦି ଶୁଣିଛି ଯେ ଆଜି ମୋର ଜନ୍ମଦିନ ବୋଲି ମୋତେ ସଙ୍ଗେ ସଙ୍ଗେ ଭାଗ୍ୟବାନ ବୋଲି କହିବାକୁ ଭୁଲି ନାହିଁ । ସତରେ ମୁଁ କ'ଣ ଭାଗ୍ୟବାନ ?

ତମର ଚିଠି ପଢୁଥିଲି । ମୁଁ ତ କହିଛି ମୁଁ ଅନ୍ୟକୁ ନିଶ୍ଚୟ ସମ୍ମାନ ଦେବି । ତେଣୁ ଏଠି ଅନ୍ୟମାନଙ୍କ କଥା ଲେଖିବାର ଅବକାଶ ରହିଲା କେଉଁଠି ?

ଆମେ ଅନ୍ୟ ମଣିଷ ହୋଇଯାଇଛେ । ଆଜି କିଏ କାହାକୁ କଥା ନ କହିଲା, କିଏ ଅସନ୍ତୁଷ୍ଟ ହୋଇଗଲା, ଏସବୁ ଭାବିବାକୁ ବେଳ କାହିଁ ? ମୁଁ ନିଜେ କହିବି ଆମେ ବରଂ castaway ହୋଇଯିବା; କିନ୍ତୁ ନିଜର ସ୍ୱାଧୀନତା, ନିଜର ସ୍ୱାତନ୍ତ୍ର୍ୟ ହରାଇବା ନାହିଁ । ଚିତ୍ତରଞ୍ଜନ ଦାସ ଲେଖିଛନ୍ତି, "ମଣିଷ ଯେତିକି ଉପରକୁ ଉଠେ, ସେତିକି ଶାନ୍ତ ହୋଇଯାଏ । ଯେତିକି ଯେତିକି ଶାନ୍ତ ହୋଇଯାଏ ସେତେ ବେଶୀ ସେ ଗ୍ରହଣ କରିପାରେ । ସେ ଏ ଜୀବନର ସମସ୍ତ ଲକ୍ଷ୍ୟ ଓ ଆକାଂକ୍ଷା ପୂରଣ କରିପାରେ ।" ଆଜି ସେଇକଥା ପଢ଼ି କ'ଣ ଆନନ୍ଦ ପାଇବାର କଥା ? ଆଜି ଆମକୁ active ହେବାକୁ ପଡ଼ିବ । ଦେଖ, ଆମେ କାହିଁକି imbecile ଭଳି ଆମର ଚଲାପଥରେ ଆସିଥିବା challange ସମ୍ମୁଖରେ ବିନା ପ୍ରତିରୋଧରେ yield କରିଯିବା ?

ଏ ଦୀର୍ଘ ଚିଠି ମୁଁ ଲେଖିବାର ସାହସ କରିଛି । କାରଣ ଆଜି ମୋର ଜନ୍ମଦିନ ଓ ତମକୁ ଏସବୁ କଥା ନ ଲେଖିଥିଲେ ଆଉ କା'ପାଖକୁ ଲେଖିଥାଆନ୍ତି !

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଏଇ ଅଳ୍ପ ଦିନ ହେଲା 'ଜୀବନ ବିଦ୍ୟାଳୟ' ପଢ଼ିବାକୁ ସୁଯୋଗ ପାଇଛି । ସତରେ ଚିତ୍ତରଞ୍ଜନ ଦାସଙ୍କର ଏହିଭଳି ଏକ ବହିକୁ ଆଜୀବନ ସାଥୀ କରିବା ମୋର ଉଦ୍ଦେଶ୍ୟ । ତମେ ତ ଲେଖିଥିଲ ଯେ ଏପରି ମାନବବାଦୀ ଲେଖା ଖୁବ୍ ପ୍ରଭାବିତ କରିଛି ବୋଲି । ସତରେ 'ଚରୈବେତି' (ଆଗେଇ ଚାଲ) ସମ୍ପର୍କରେ ତାଙ୍କର ପ୍ରେରଣାମୟ ଲେଖା ମୋର ଅନେକ ଦ୍ୱନ୍ଦ୍ୱର ସମାଧାନ କରିଦେଇଛି । ମୁଁ ଆଉ ହାରିଯିବି ନାହିଁ । ନିଃସଙ୍ଗ ହୋଇଗଲେ ଦୁଃଖ କରିବିନି । ବନ୍ଧୁତ୍ୱ ପାଇଁ ଅଯଥା ଆଗ୍ରହୀ ହେବିନି । ମୁଁ ଏକାକୀ ଚାଲିବାକୁ ସମର୍ଥ ହେବି । ଚିତ୍ତରଞ୍ଜନ ଦାସଙ୍କ ଭାଷାରେ ମୁଁ ମଣିଷ ହେବି, ମଣିଷ ହେବାକୁ ଚେଷ୍ଟା କରିବି । 'ଶତାବ୍ଦୀର ନଚିକେତା'ରେ 'ବିଭୁପ୍ରସାଦ' ଓ ତା'ର ବାପା 'ଭବାନୀପ୍ରସାଦ' ଏହିଭଳି ଆଗକୁ ଚାଲିଯିବାକୁ ବାଟ ଦେଖାଇଛନ୍ତି । ଆଜି ସେହିକଥା ମୁଁ ଅନୁଭବ କରିପାରୁଛି । ପରାଙ୍ଗପୁଷ୍ଟ ହେବା କେତେ ବଡ଼ ଭୟଙ୍କର ଅପରାଧ । ଏତେ ବହି ପଢ଼ି ଯଦି ତଥାପି ମୁଁ ମୋର egoକୁ ଆୟତ୍ତାଧୀନ ନ କରି ପାରିଲି, ଏହି ପଢ଼ିବାଟା କେବଳ EXHIBITIONISM, ଏକ ଆତ୍ମପ୍ରତାରଣା । ମୁଁ ଆଜି ଶାନ୍ତି ହୋଇଯାଇଛି ଓ ସମ୍ପୂର୍ଣ୍ଣ ଭାବେ ଶାନ୍ତ ହେବା ମୋର ଅଭିଳିପ୍‌ସା । ଆଜି ମୁଁ ମୁକ୍ତ ଯଦିଓ କେତେକାଂଶରେ

ଅସାମାଜିକ । ଲଳିତକୁ ଚିଠି ଦେବାଟା ତମେ ଯଥାର୍ଥ ଭାବେ ସ୍ଥିର କରିଛ । ହୁଏତ ମୋର ଭାବପ୍ରବଣତା ଅତିମାତ୍ରାରେ ମୋତେ overwhelm କରି ପକେଇଥିଲା । ସଦ୍ୟ ପଢ଼ିଥିବା 'ଦେବଦାସ' ବୋଧହୁଏ ମୋତେ moved କରିଥିଲା । ଚିଠି ଦେଇଥିଲେ ଲଳିତ ଆଘାତ ପାଇଥାଆନ୍ତା, ଏକଥା ମୁଁ ଏଇଠୁ ଅନୁଭବ କରିପାରୁଛି । ଆମକୁ (ମୋତେ) ସମସ୍ତଙ୍କର ବ୍ୟକ୍ତିଗତ ଜୀବନକୁ ସ୍ୱୀକାର କରିବାକୁ ପଡ଼ିବ । ଯଦି କୁହୁଡ଼ି ପହଁରିବା ଜୀବନ ସହ ଏକ experiment, ମୋର ବା ଅଧିକ କ'ଣ କହିବାର ଅଛି । ଏହାବ୍ୟତୀତ ଲଳିତ ଅତିମାତ୍ରାରେ ଅନୁଭବୀ । ତାକୁ morality preach କରିବା କେବଳ ଅସୁନ୍ଦର ନୁହେଁ, ଅଯୌକ୍ତିକ ମଧ୍ୟ ।

ପରୀକ୍ଷା ଫଳ ପାଇଁ ଆଉ ଦଶ ଦିନ ଅଯଥା ଯନ୍ତ୍ରଣାରେ ଅପେକ୍ଷା କରିବାକୁ ପଡ଼ିବ । ପାସ୍ କଲେ continue କରିବା ସୁନିଶ୍ଚିତ । ଦେଖାଯାଉ ଏହି ଚୌମୁହାଣିରେ ମୋର ଜୀବନର ପଥ କେଉଁ ଆଡ଼କୁ ପ୍ରସାରିତ ।

ଆଶା ତମେ ଭଲ ଅଛ ଓ ନିଜର missionରେ ପଛେଇ ନାହିଁ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

କେଜାଣି କାହିଁକି ତମେ ନୀରବ ରହିଛ । ତୁମକୁ ମଧ୍ୟ ମୁଁ ଲେଖିବାକୁ ଚେଷ୍ଟା କରି ବିଫଳ ହୋଇଛି । ତମେ ତ ଜାଣିଥିବ ପୌଷପୂର୍ଣ୍ଣିମା କେତେ ଅଲକ୍ଷ୍ୟରେ ଅତୀତ ହୋଇଗଲା । ସେଦିନ ରାତିରେ ବହୁତ ଡେରି ପର୍ଯ୍ୟନ୍ତ ଉଜାଗର ରହି ମୁଁ ତମମାନଙ୍କୁ ମନେ ପକାଉଥିଲି । ସେତେବେଳର ଆବେଗକୁ ତମ ପାଖକୁ ଲେଖିବାକୁ ଚାହିଁଥିଲି । କିନ୍ତୁ ମୋ ଝିଅାରୀ ମୋ କଲମ ନେଇ ଯାଇଥିବାରୁ ତାହା ସମ୍ଭବ ହେଲା ନାହିଁ । କେତେ କଥା ତ ମନକୁ ଆସୁଛି । ଲେଖିହେଉନି । ଆସ୍ତେ ଆସ୍ତେ ଅନୁଭବ କରିବାର ଶକ୍ତି କମିଯାଉଛି । ସବୁ କଥାର ବିସ୍ମରଣ ଘଟୁଛି । ଅତି ସନ୍ତର୍ପଣରେ ମୋ ପାଖରୁ ମୋର ଅତି ଆପଣାର ବସ୍ତୁମାନଙ୍କୁ ଯେମିତି କିଏ ଚୋରାଇ ନେଉଛି । ଅବଶ୍ୟ ମୁଁ ଏହାକୁ ଅଯଥା serious colour ଦେବା ଠିକ୍ ହେଉନି । Les Miserables ସରିଆସୁଛି । ଖୁବ୍ ଭଲ ବହିଟିଏ । ତମ ପାଖକୁ ଏପର୍ଯ୍ୟନ୍ତ ମୁଁ "A Writer's Notebook"ରୁ କିଛି ଲେଖିପାରିନି । କେତେବେଳେ ଶାନ୍ତ ମାନସିକ ଅବସ୍ଥାରେ ଥିଲେ ମୋର impressions ତମକୁ ଲେଖିବି ।

ପ୍ରଫୁଲ୍ଲ ଫେରିଆସିଛି । ପୁଣି ଏଇଠି ତା'ର ସ୍ୱାଭାବିକ ଜୀବନ ସହ ସେ ମିଶିଗଲାଣି । ସୁଧାକର ଫେବୃୟାରୀ ୧ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ଯାଇ ଭୀଷଣ ଅସ୍ଥିର

ହୋଇପଡୁଛି । ତା'କୁ ସବୁପ୍ରକାର ପ୍ରେରଣା ଦେଲେ ମଧ୍ୟ ସେ ଖୁବ୍ ବ୍ୟତିବ୍ୟସ୍ତ ହୋଇ ପଡୁଛି । ଅମ୍ଲାନ ମଧ୍ୟ ଠିକ୍ ଏହିଭଳି ଅତି ଉଦ୍‌ବିଗ୍ନ ହୋଇ ଅପେକ୍ଷା କରୁଥିବ ଫଳାଫଳକୁ । ଜୀବନରେ ଇଏ ତା'ପାଇଁ ଗୋଟାଏ ବଡ଼ ପରୀକ୍ଷା । ତମ ସମ୍ପର୍କରେ କିଛି ଲେଖୁନି । ସମସ୍ତଙ୍କର ସଫଳତାକୁ ମୁଁ ମୋର ସଫଳତା ବୋଲି କେମିତି ଭାବେ, ତମେ ଜାଣିଥିବ ।

ଆସନ୍ତାକାଲି ବା ପଅରଦିନ ବାଣୀବିହାର ଯିବାକୁ ହେବ । LIC ଫର୍ମ ପହଞ୍ଚିବାର ଶେଷ ତାରିଖ ୩୧ ତାରିଖକୁ ଘୁଞ୍ଚିଯାଇଥିବାରୁ ମୁଁ କିଛି documents ପାଇଁ ବ୍ୟସ୍ତ ହୋଇପଡ଼ିଛି । କୌଣସି ଏକ ସଚେତନତା ହେତୁ ମୁଁ ଦୌଡ଼ (ତମେ rat-race କହିପାର)ରେ ଯୋଗ ଦେବାକୁ ଯାଉଛି ଯଦିଓ, ଆତ୍ମପ୍ରତ୍ୟୟ ସବୁ ହରାଇବସୁଛି । ନାନୀ ଆଦିକୁ ତ ନିଶ୍ଚୟ ଦେଖାକରିବି । କିନ୍ତୁ ସମ୍ଭବ ହେଲେ ତମ ପାଖକୁ ଯିବି । ଅପେକ୍ଷା କରିବନି । ତମେ ତ ଜାଣ ମୋର ଅସୁବିଧା କେଉଁଠି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଠିକ୍ ତମ ଚିଠି ପାଇବା ପୂର୍ବରୁ ତମକୁ ଲେଖିବି ବୋଲି ଭାବୁଥିଲି । ତମେ ଝଡ଼ ଭଳି ଆସିଲ ଓ ପୁଣି ଚାଲିଗଲ । ମୁଁ ଚାହୁଁଥିଲି ତମେମାନେ ଆଉ କିଛି ସମୟ କଟେଇଥାଆନ୍ତ । କିଛି ମନଖୋଲି କଥାବାର୍ତ୍ତା କରିଥାଆନ୍ତେ, କିଛି ସମୟ ପୁରୁଣା କଥା ପୁନରାବୃତ୍ତି କରି ଆନନ୍ଦ ପାଇଥାଆନ୍ତେ । ହାୟ ! ତମେ ପୁଣି କେବେ ଆସିବ ? ମୁଁ ଏଇଠି damned । ତମେ ଜାଣ ମୋର ସମସ୍ତ ଭିତର ଓ ବାହାର ! ଅନେକ ସମୟରେ ଗୋଟାଏ ବିକଟାଳ ଭବିଷ୍ୟତ ମୋତେ ଭୟଭୀତ କରି ପକାଉଛି । ଆଦୌ ସାହସ ରହୁନାହିଁ । ସମୟ ସ୍ଥିର କରିବ ମୋର course of lifeକୁ ।

ବାଣୀବିହାରରେ ତମର ନୂଆଜୀବନ ନିଶ୍ଚୟ ରେଭେନ୍ସା କଲେଜଠୁ ଭଲ ହେବ । ବର୍ତ୍ତମାନ କିଛି ସଂକଳ୍ପ, କିଛି ନିର୍ଜନତା ଓ କିଛି ନୀରବତାର ଆବଶ୍ୟକତା ରହିଛି । ତମେ ଆଗେଇ ଚାଲ ନିଜ ବାଟରେ, ଅନ୍ୟ କାହାର ବ୍ୟାପାରରେ ମୁଣ୍ଡ ଖେଳାଇ ନିଜକୁ ବିଭ୍ରାନ୍ତ କର ନାହିଁ । Laboratoryରୁ ଏ ଚିଠି ଲେଖୁଥିବାରୁ ବିଶେଷ କିଛି ମୁଣ୍ଡକୁ ପଶୁନି । ଅମ୍ଲାନଠୁ Annual Weekly ନେଇଯିବ । ସେଇଟା ମୁଁ ତୁମକୁ ଉପହାର ଦେବି ବୋଲି ଆଗରୁ କହିଥିଲି । ତମେ ଏବେଠୁ ଗୋଟେ flying start ଦେବ; ଆଶା ତମର mission ସଫଳ ହେବ ଓ ତମେ ଭାବିବନି ଯେ ମୋ ଜୀବନ ବ୍ୟର୍ଥ ହୋଇଗଲା ଓ ଅନେକ ସମୟ କଟିଗଲା ।

ମୋର ବ୍ୟାପାର ଆଦୌ ଭଲ ନୁହେଁ । ରେଡ଼ିଓ ଥିବାରୁ ସାମାନ୍ୟ ଆଶ୍ୱସ୍ତି ମିଳୁଛି । କିନ୍ତୁ ଯଥେଷ୍ଟ ନୁହେଁ । ମୁଁ ଚାଲିଛି ମୋ ବାଟରେ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ହଁ, ଏହା ଆମ ମନର କଥା । ଏହାକୁ Kafkaଙ୍କ Nightmare କୁହାଯାଇପାରେ । Bath tubରୁ ମାଛ ଧରିଲା ଭଳି ଏବଂ ପାଇବାର ସ୍ୱପ୍ନ ଦେଖିଲା ଭଳି ଅନାଗତ ଭବିଷ୍ୟତର ମଧୁର ପଦଧ୍ୱନି ଶୁଣୁ । ଆମେ ତା'ରି ଉପରେ ଚାଲିବାକୁ ଯାଉ, ଯଦିଓ ଆମେ ଜାଣୁ ଯେ ନିଶ୍ଚିତ ଭାବେ ଆମକୁ ବୁଡ଼ି ମରିବାକୁ ହେବ । ଆମେ ସବୁ ଭିନ୍ନ ମଣିଷ । ସମୟ ଓ ସ୍ଥାନ ସହ ସମ୍ବନ୍ଧ ରଖି ପାରୁନୁ ବୋଲି ହନ୍ତସନ୍ତ ହେଉଛୁ । ସ୍ୱପ୍ନ କେବଳ ହିଁ ଦେଖୁଛୁ । ଆମର ଅବଚେତନ ମନର ଅକୁହା କାହାଣୀଗୁଡ଼ିକୁ ଆମେ ଚାପିରଖୁ । ସେଗୁଡ଼ିକ ଆମକୁ ସବୁବେଳେ ଅପସାରିତ କରିଦିଏ । କେବେହେଲେ ଉତ୍ପ୍ରେରକ ହୁଏନି । ଆମେ ସବୁ ଏଭଳି କାହିଁକି ହେଲୁ? ଅମ୍ଳାନର କଥା ଦୁଃଖ ଲାଗେ ମୋତେ । ସବୁବେଳେ ନିଜ ଭିତରର ଯୁଦ୍ଧ ଭିତରୁ ସେ ନିଜେ ଆଘାତ ପାଇଥାଏ । ବେଳେବେଳେ ବୁଝିହୁଏନି ତା'କଥା । ବେଳେବେଳେ ମୋର ଇଚ୍ଛା ହୁଏ ତା'କୁ ଲେଖିଦେବାକୁ ଯେ ତା'ଦ୍ୱାରା ଦର୍ଶନର ଆଲୋଚନା ହୁଏନି ବୋଲି । ତଥାପି ମୁଁ ତାକୁ ନିଜର ଭାବେ । ତମ ଭଳି ତା' ପାଖରେ nostalogia ଓ egoକୁ ଖୋଲିଦିଏ । ତମ ପାଖକୁ ଚିଠି ଲେଖିଥିବା କଥା ଶୁଣି ଖୁସିହେଲି । ସେ ତମକୁ ଲେଖିବା ଦ୍ୱାରା ତମର ତା' ପ୍ରତି ବିଶ୍ୱାସ ଫେରିଆସୁ, ଏହା ମୋର କାମନା ।

ତମର ଭାବପ୍ରବଣତା ସହ ଭାଗ ନେବାକୁ ମୁଁ ନିଶ୍ଚୟ ବାଲେଶ୍ୱର ଯାଉଛି; ଅନ୍ତତଃପକ୍ଷେ ତମେ ଏଠିକି ଆସିବା ପୂର୍ବରୁ । ହୋଇପାରେ, ଏହା ଯେକୌଣସି ଦିନ, ଯେକୌଣସି ସମୟରେ । କିନ୍ତୁ ଚିଠି ଲେଖିବ । ଏବେ 'The Dwarf' ପଢୁଛି । Par Lagerkvist, ଯିଏକି ୧୯୫୧ରେ ନୋବେଲ୍ ପୁରସ୍କାର ପାଇଥିଲେ, ତାଙ୍କର ଶ୍ରେଷ୍ଠତମ କୃତୀ । ଆମେ ସବୁ ଭିନ୍ନଭିନ୍ନ ସ୍ତରରେ ଜଣେ ଜଣେ dwarf, ଏକଥା ଆସନ୍ତା ଚିଠିରେ ମୁଁ ଲେଖିବି ନିଶ୍ଚୟ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ 'To exist is not to love' ସହ ଏକମତ ହେବ ନାହିଁ ବୋଲି ମୁଁ ଆଗରୁ ଜାଣିଥିଲି । କେବଳ ମୋର ମାନସିକ ଦ୍ୱନ୍ଦ୍ୱକୁ ବ୍ୟକ୍ତ କରିବା ପାଇଁ ମୁଁ ଏକଥା ତମକୁ ଲେଖିଥିଲି । ତମେ ମୋର ସିଦ୍ଧାନ୍ତକୁ ଗୋଟେ logical fallacy ବୋଲି ଧରିନେଇଛ । ମୁଁ ଏହାକୁ ଗ୍ରହଣ କରୁ ନାହିଁ । ତମର ଭଲ ପାଇବା ସମ୍ପର୍କରେ ଚିନ୍ତାଧାରା ଉପରେ ମୋ ସହ ସମାନ ହୋଇଥିଲେ ମଧ୍ୟ ଭିତର ସ୍ତରରେ ବିପରୀତଧର୍ମୀ । ମୁଁ 'ଭଲ ପାଇବା'କୁ ଜୀବନର ମୂଲ୍ୟବୋଧ ବା 'aesthetics' ଠାରୁ ସବୁବେଳେ ଉପରେ ରଖିଆସିଛି ଓ ରଖିବି । 'To live fully' ଭଳି କଥା ମୋ ପାଖରେ ସମ୍ପୂର୍ଣ୍ଣ ଅର୍ଥହୀନ । କ୍ଷଣିକ ପାଇଁ ବଞ୍ଚିଲେ (ବଞ୍ଚିପାରିଲେ!) ମଧ୍ୟ ମୁଁ ମୋର ସ୍ୱପ୍ନ ସହ ସାମିଲ୍ ହେବାକୁ ଚାହେଁ । ମୋର 'ଭଲ ପାଇବା' ମୋର ଅନ୍ୟତମ ସ୍ୱପ୍ନ । ତମେ ସମ୍ଭବତଃ ମୋ ଭଳି world of terror କୁ ଅନୁଭବ କରିନାହଁ । ତେଣୁ ତମେ ଏ ସମ୍ପର୍କରେ ମୋ ସହ ମତାନ୍ତର ହେବା ଯଥାର୍ଥ ହୋଇଛି । ମୁଁ ଉଦାହରଣ ଦେଇ ଏକଥାକୁ ପ୍ରତିପାଦିତ କରିଦେବାକୁ ଚାହେଁ ନାହିଁ । ଏଇଠି ତମ ସହ ମୁଁ ସାଲିସ୍ କରିବି ବୋଧେ । Corollary ହିସାବରେ ମୁଁ ପୁଣି ଉପସ୍ଥାପିତ କରୁଛି । "to love is not to exist" (ଏହା ମଧ୍ୟ ନିଶ୍ଚିତ ଯେ ତମେ ଏହାକୁ ମାନିନେବ ନାହିଁ ।)

ଦୁଇଟି ଚିଠି ତମ ପାଖରୁ ପାଇସାରିଛି । ଗତ ଚିଠିର ଉତ୍ତର ମୁଁ ଲେଖିପାରି ନାହିଁ । କିଛି ସମୟ ପାଇଁ ତମକୁ ମୁଁ କ'ଣ ଲେଖିବା ଠିକ୍ ହେବ ଏକ ସମସ୍ୟା ହୋଇପଡ଼ିଛି । ଗତ ଚିଠିରେ ତମେ ଜୀବନର recehorse କଥା ଲେଖିଥିଲ । 'ହାରିଯିବା' ଏବଂ 'ନିଷ୍ପତ୍ତି ନ ନେଇ ପାରିବାର ଦାରିଦ୍ର୍ୟ' କଥାକୁ ଠିକ୍‌ଭାବେ ପ୍ରକାଶ ନ କରି ଆବେଗରେ ଲେଖି ପକେଇଥିଲ । ମୋର ଆଶଙ୍କା ଯେ ତମ ସହ ଏତେ ଦିନ ସମ୍ପର୍କ ରଖିବା ପରେ ମଧ୍ୟ ମୁଁ ଜାଣିପାରିନି ଯେ ତମେ କେଉଁ ଘୋଡ଼ାରେ ବାଜି ଲଗାଇଥିଲ ଏବଂ କେଉଁ ନିଷ୍ପତ୍ତି ତମକୁ ଯନ୍ତ୍ରଣା ଦେଉଥିଲା! ମୋର ଭୟ ହେଉଛି ଯେ ତମେ ଏପରି ଏକ ଅବସ୍ଥାକୁ ଆସିଗଲଣି, ଯେଉଁଠି ମୁଠାଏ ମାଟି ଖସି ପଡ଼ିଲେ ଅତଡ଼ା ଖସିଛି ବୋଲି ଭାବୁଛ । ତମେ ଏବେ ନିଜର ଜୀବନଯାତ୍ରା, ନିଜର ପରିବେଶ ସହ ଖୁବ୍ ସନ୍ଧି କରୁଛ । ସମୟ ଏତେ ତମକୁ ଖୁବ୍ ବଦଳେଇ ଦେଉଛି । (ଆମ ସମସ୍ତଙ୍କୁ ମଧ୍ୟ ।) ତମେ ଆଉ ପୂର୍ବଭଳି ଭାବାବେଗକୁ ଲେଖୁ ନାହଁ; ଯଦିଓ ତମର ଚିଠିଗୁଡ଼ିକ 'intellectual' ହେଉଛି । ତମେ ତ ଏସବୁ କଥା ଅନୁଭବ କରୁଥିବ ନିଶ୍ଚୟ । ଏ ଚିଠିରେ ତମେ ବନ୍ଧୁତ୍ୱ କଥା ଲେଖିଛ । ବନ୍ଧୁତ୍ୱ ଯେ ଗୋଟାଏ ଚୁକ୍ତି, ଏକଥା ତମ ମନକୁ କାହିଁକି ଆସୁଛି ? ତମେ ବା କାହା ସାଙ୍ଗରେ ଏହିଭଳି ଚୁକ୍ତି କରିଛ ମୁଁ ଜାଣିନି ।

ତମେ press କଥା ସମ୍ପର୍କରେ ମୋର ମତାମତ ଚାହିଁଛ । ଆମେ ତ ଅନେକ ବାର ଏ ସମ୍ପର୍କରେ animated discussion କରିଛେ । ମୋର ସମର୍ଥନ ଏଥିରେ ରହିଛି ।

କିନ୍ତୁ ପ୍ରଦୀପକୁ ଏଥିରେ ସମ୍ପୂର୍ଣ୍ଣଭାବେ ଜଡ଼ିତ କରିବା ଠିକ୍ ହେବ ନାହିଁ। ପ୍ରଦୀପର ଏକ ନିଜସ୍ୱ ଚିନ୍ତାଧାରା ରହିଛି, quest ମଧ୍ୟ। ତମ ଆମଠାରୁ ସେ ଏକ ସ୍ୱତନ୍ତ୍ର ମଣିଷ। ଗୋଟାଏ religious ingolvement ପାଇଁ ସେ ସୁଯୋଗ ଖୋଜୁଛି। ତମେ ମୋ ଅପେକ୍ଷା ତା'କୁ ଭଲ ଭାବେ ଜାଣ। ମୋର ମତ ହେଉଛି ଏହାକୁ commercial ନ କରିବା। ଏହାର ପରିଚାଳନା ଗୋଟେ collective responsibility ହେବା ଉଚିତ। ତମେ ଯେଉଁମାନେ ଏହାକୁ ଗଢ଼ିବ ବୋଲି ଭାବୁଚ ପ୍ରତି ମାସରେ ଜଣେ ବା ଦି'ଜଣ ଦାୟିତ୍ୱ ତୁଲେଇଲେ ଆଉ କିଛି ସମସ୍ୟା ରହିବ ନାହିଁ।

ତମ ଭଳି ମୁଁ ମଧ୍ୟ ଏ ବସନ୍ତର ଦିନଗୁଡ଼ିକୁ ଅନୁଭବ କରୁଛି। ଭଞ୍ଜ ଆସିଛି ବୋଲି ଅମୁଠାରୁ ଶୁଣିଲି।

ପରେ ପୁଣି ଲେଖିବି।

ଅଚ୍ୟୁତ

ଆଉ ପଦେ : ଅମୁ କାଲି ଏଠାକୁ ତା'ର ସାଙ୍ଗର ବାହାଘରରେ ଯୋଗଦେବାକୁ ଆସିଥିଲା। ଆମଘରେ chickenpox ହୋଇଥିବାରୁ ମୁଁ ସେମାନଙ୍କୁ ଠିକ୍‌ଭାବେ receive କରି ପାରିନି। ଚିଠିରେ ଜାଣିଜାଣି ମୁଁ ତାରିଖ ଦିଏ ନାହିଁ। କାରଣ ବେଳେବେଳେ ଚିଠିଲେଖି ପନ୍ଦର ଦିନ ପରେ ପକାଏ। ଅନେକ ଲେଖି ମଧ୍ୟ ପକାଏ ନାହିଁ। ତମେ ଏଖିଆଲକୁ ଗ୍ରହଣ କରିବ୍।

▯ ▯ ▯

ପ୍ରିୟ ବନ୍ଧୁ,

ତମେ ପ୍ରାୟ ମୋ ଚିଠି ପାଇସାରିଥିବ। ତେଣୁ ତମ ଚିଠିଗୁଡ଼ିକର ଉତ୍ତର ପ୍ରାୟ ମୁଁ ଆଗରୁ ଦେଇ ସାରିଥିଲି।

ଏ ଭିତରେ କିଛି ନୂଆ କଥା ଘଟି ନାହିଁ। କିଛି ଚମକପ୍ରଦ ଘଟଣା ମଧ୍ୟ ନୁହେଁ। ପରୀକ୍ଷା କେବେ ହେବ କିଛି ଜଣା ପଡୁ ନ ଥିଲେ ମଧ୍ୟ ମନେ ହେଉଛି ଯେ ବାତାବରଣ ଯେପରି ନଭେମ୍ବର ବୋଲି। ମୁଁ ୮ ତାରିଖରୁ ଦିନକୁ ୩/୪ ଘଣ୍ଟା ଲେଖାଏଁ ପଢ଼ାପଢ଼ି କରୁଥିଲି। କିନ୍ତୁ ଏବେ ଗତ ତିନି ଦିନ ଧରି ଟିକିଏ ହେଲେ ପଢ଼ି ନାହିଁ। କାରଣ କିଏ କେତେବେଳେ ମୋର କ'ଣ ମାଗି କରି ନେଇଯାଉଛି, ତା'ର ଠିକ୍ ଖବର ରଖି ହେଉ ନାହିଁ। ମୁଁ ମଧ୍ୟ ସେମାନଙ୍କୁ ନାହିଁ କରି ପାରୁ ନାହିଁ। ଏହିଭଳି କ୍ଷେତ୍ରରେ ତମ ଭଳି ହେବାକୁ ମୁଁ ପସନ୍ଦ କରିଥାଆନ୍ତି। କିନ୍ତୁ ମୋର ଏ ବିଷୟରେ rigidity ଯଥେଷ୍ଟ ନାହିଁ। ୧୯୯କୁ ସେ ପିଲା ଆସିବାଦ୍ୱାରା ଗୁରୁ ଓରାମ୍ ପୁଣି ବାସଚ୍ୟୁତ ହୋଇ ପଡ଼ିଛନ୍ତି। ସେମାନଙ୍କର ଘର ବୁଝିବାରେ ଯଥେଷ୍ଟ ଚେଷ୍ଟା ଥିବା କଥା ମୋର ମନେ ହେଉ ନାହିଁ।

ଗୁରୁ ଆସି ମୋ ସଙ୍ଗେ adjust କରିଛି । ସେ 'ଓଡ଼ିଆ ସାହିତ୍ୟର ଇତିହାସ (ମାନସିଂହ)' ପଢୁଛି । ଜଗଦାନନ୍ଦ ପ୍ରାୟ ମୋ ଉପରେ ନିର୍ଭର କରିଛି । ଏହି ସମୟରେ ମୁଁ ଆର୍ଥିକ ଶୋଚନୀୟତା ଦେଇ ଗତି କରୁଥିବାବେଳେ ତମେ ମୋତେ ପଚାରିପାର ମୁଁ ଠିକ୍ କରୁଛି କି ଭୁଲ୍ କରୁଛି । କିନ୍ତୁ ମୁଁ ନାଚାର । ତା'କୁ ସାହାଯ୍ୟ ନ କରିବା ଅର୍ଥ clear-cut murder । କିନ୍ତୁ ଇଆଡ଼େ ମୁଁ ଅନେକ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଛି । ଇତିମଧ୍ୟରେ ଚିତ୍ତ(ଆମର) Police S.I. ପାଇଛି । ସେ ଆଜି ଅନୁଗୋଳ ଯାଉଛି । ମୋତେ କିପରି ହେବ ପଚାରୁଥିଲା । ମୁଁ ସେ ବିଷୟରେ କିଛି ତାକୁ କହିପାରିଲି ନାହିଁ ।

ଏବେ Camusଙ୍କର 'The Rebel' ବହି ପଢୁଛି । ଆମର ମଧ୍ୟ ଏ ବହି ପଢ଼ିବାର ଯଥେଷ୍ଟ ଆବଶ୍ୟକତା ରହିଛି । Collen Wilsonଙ୍କର 'The Outsider' ବହି ଭଳି ଏଥିରେ ବିଦ୍ରୋହୀ ମଣିଷର ବିଭିନ୍ନ ରୂପ ଓ ପରିବେଶ ସମ୍ପର୍କରେ ଲେଖାଯାଇଛି । ମଣିଷ କାହିଁକି ବିପ୍ଳବ କରିଥାଏ ? ଏ ପ୍ରଶ୍ନର ଉତ୍ତରରେ Camus, Ivan Karamazovଠୁ ଆରମ୍ଭ କରି Nietzscheଙ୍କ ପର୍ଯ୍ୟନ୍ତ ଅନେକ ଚରିତ୍ର ବିଶ୍ଳେଷଣ କରିଛନ୍ତି । ଆଗରୁ ଧାରଣା ଥିଲା 'The Rebel' ଗୋଟେ novel ବୋଲି । କିନ୍ତୁ ପ୍ରବନ୍ଧ ବହି ହିସାବରେ ଆମମାନଙ୍କ ଏହା ପଢ଼ିବା ପ୍ରଥମ କର୍ତ୍ତବ୍ୟ । ମୁଁ ପଢ଼ିସାରିଲା ପରେ ତମକୁ କିଛି extracts ଲେଖିବି ।

ପ୍ରଫୁଲ୍ଲ ବା ଅମ୍ଳାନ କେହି ଚିଠି ଲେଖି ନାହାନ୍ତି । ପ୍ରଫୁଲ୍ଲ ବହି ପଠାଇ ନାହିଁ । ଅନ୍ୟ କାହାଠୁ ମଧ୍ୟ ଚିଠି ପାଇ ନାହିଁ ।

ଏହି 'ad'ଟା ପଠେଇଲି । ଆଶା apply କରିବ । ଦୁଇତିନି ଦିନ ହେବ ବାହାରିଛି । ତେଣୁ ଡେରି କରିବା ଠିକ୍ ହେବନି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ବାଲିଅନ୍ତା ଗାଁଟି ଯଥାର୍ଥ ଭାବେ ବାଲୁକାମୟ । କୁଆଖାଇ ନଈର ପାର୍ଶ୍ୱଦେଶରେ ଝାଉଁ ଏବଂ ଆମ୍ବଗଛର ଏକ ଚମତ୍କାର ମାଟ୍ରିକ୍ସ୍ ! ତା' ଭିତରେ ସବୁକିଛି ଆତ୍ମଗୋପନ କଲାଭଳି ମନେହୁଏ । କଟକ ଭୁବନେଶ୍ୱର ରାସ୍ତାରେ ତମେ ଏକଥା କେତେବାର ଲକ୍ଷ୍ୟ କରିଥିବ । ପୁରୀ ହାଇଲେଭେଲ୍ କେନାଲ୍ କୂଳେ କୂଳେ ନଡ଼ିଆଗଛ ଧାଡ଼ି ତମକୁ ମଧ୍ୟ କେତେବାର ପ୍ରଲୋଭିତ କରିଥିବ ।

ଏଇ ଗାଁଟି ଦିନେ ଓଡ଼ିଶାର ବାଣିଜ୍ୟ ବେପାରର ଭୂଗୋଳରେ ସ୍ଥାନ ପାଇଥିଲା, ଯେତେବେଳେ ନଦୀରେ ପୋଲ ହୋଇ ନ ଥିଲା । ପୁରୀ ସାକ୍ଷୀଗୋପାଳ ଆଦି ଅଞ୍ଚଳରୁ

ନଡ଼ିଆ ଗୁଆ ଆସି ଏଇଠାରୁ ହିଁ ଡଙ୍ଗାରେ କଟଣି ଯାଉଥିଲା । ଆହୁରି ମଧ୍ୟ ଶ୍ରୀକ୍ଷେତ୍ରକୁ ଯାଉଥିବା ଯାତ୍ରୀମାନେ ଏଇଠି ହିଁ ରାତି କଟାଉଥିଲେ । ସେସବୁର ସ୍ମୃତି ଏବେ ମଧ୍ୟ ବୟୋବୃଦ୍ଧମାନେ ମୋ ଭଳି ନବାଗତମାନଙ୍କୁ ସ୍ପଷ୍ଟଭାବେ ବଖାଣି ବସନ୍ତି । ମୂକସାକ୍ଷୀ ରୂପେ ସେଦିନର ଗୋଦାମଘରଗୁଡ଼ିକ ଏବେ ମଧ୍ୟ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ିରହିଛି । (ନିରୋଦ ସେହିଭଳି ଏକ ଗୋଦାମଘରେ ରହେ ।) ଗାଁର ଅନେକ ଲୋକ ଏବେ ମଧ୍ୟ ବ୍ୟବସାୟ କରନ୍ତି । ମଦ ନ ହେଲେ ଅଫିମ । ଡେଲ୍‌ଟା ଜଳସେଚନ ଯୋଜନାର କାମ ଚାଲୁଥିବାବେଳେ ନୂଆ ନୂଆ କଣ୍ଟ୍ରାକ୍‌ଟର ସବୁ ସୁରା ଓ ସାକୀର ଆଶ୍ରା ଲୋଡୁଥିଲେ ଏଇଠି । ବଜାରଟି ସେତେବେଳେ ମଧ୍ୟରାତ୍ରି ପର୍ଯ୍ୟନ୍ତ ଉଜାଗର ରହୁଥିଲା । ଏବେ କିନ୍ତୁ ସନ୍ଧ୍ୟା ନ ହେଉଣୁ ସବୁଆଡ଼େ ଶୁନ୍‌ଶାନ୍ ହୋଇଯାଉଛି ।

ଏ ଗାଁର ପ୍ରାୟ କୌଣସି ଲୋକ ସହ ମୋର ପରିଚୟ ହୋଇ ନାହିଁ । ତଥାପି ମୋର ବେଶଭୂଷା, ଦୀର୍ଘକେଶ ଏବଂ ନୂଆମୁହଁ ସେମାନଙ୍କର କୌତୂହଳ ଉଦ୍ରେକ କରିଥିବ । ତମ ଗାଆଁର ଗୁଡ଼ିଆ ଦୋକାନ ଭଳି ଏଇଠି ମଧ୍ୟ ହାଡ଼ିସାହୁର ବିଖ୍ୟାତ ଜଳଖିଆ ମିଷ୍ଟାନ୍ନ ଭଣ୍ଡାର । ଦୁଇ ଶହ ବର୍ଷ ତଳର ଦୋକାନକୁ ପୈତୃକ ସମ୍ପତ୍ତି ରୂପେ ପାଇ ସେ ଆଜି ଗୌରବାନ୍ୱିତ । କାନରେ ତା'ର ନୋଳି, ଦେହରେ ଫତେଇ, ଐତିହାସିକ ମୂଲ୍ୟବୋଧର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ହୁଏତ ବେପାର ନାହିଁ । କିନ୍ତୁ ମୁହଁରେ ହସଖଣ୍ଡକର ମୂଲ୍ୟାଙ୍କନ କରିହେବ ନାହିଁ । ସକାଳେ ତା' ପାଖରେ ବରା ଖିଆଯାଏ । ଚା' ପିଆଯାଏ । ସନ୍ଧ୍ୟାକୁ ମଧ୍ୟ । ଅତି ସ୍ନେହରେ ମୁଁ ତା'ର ଆତିଥ୍ୟ ଗ୍ରହଣ କରେ । ସେ ସବୁବେଳେ ସକାଳୁ କହେ – "ବାବୁ, ଯାଇ ନାହାନ୍ତି ?"

ସ୍କୁଲରେ ନିରୋଦ ଆଗରୁ ମୋର ପରିଚୟ ଦେଇ ସାରିଥିଲା । ସେମାନେ ସବୁ ଆଗ୍ରହର ସହ ମୋତେ ଅପେକ୍ଷା କରୁଥିଲେ । ସବୁ ଶିକ୍ଷକମାନେ ସମ୍ଭବତଃ ମୋଭଳି ଏକ ସୃଷ୍ଟିଛଡ଼ା ଜୀବକୁ ଦେଖିବାକୁ ଚାହୁଁଥିଲେ । ଏଇଠି ସ୍କୁଲରେ ହେଡ୍‌ମାଷ୍ଟର ଅବସର ପାଇଲେ ଅନ୍ୟମାନଙ୍କୁ ନେଇ ତାସ୍ ଖେଳନ୍ତି, ଗୁଲି ଗପ ଜମାନ୍ତି । ପାଠପଢ଼ା କେମିତି ହେଉଥିବ ମୁଁ ଜାଣିନାହିଁ । ଅର୍ଥନୈତିକ ଅବସ୍ଥା ଅସ୍ୱଚ୍ଛଳ । ତଥାପି ମଧ୍ୟ ସେମାନେ ଆପଣା ଆପଣା ପୃଥିବୀକୁ ଭାରି ସଙ୍କୁଚିତ କରି ଦେଇ ଯେମିତି ଖୁସିରେ ରହିବାକୁ ଚାହାନ୍ତି । ଏମାନଙ୍କ ସହ ମୋର ସେମିତି କିଛି ତାତ୍ତ୍ୱିକ ଆଲୋଚନା ହୋଇପାରି ନାହିଁ । ନିରୋଦ ଏମାନଙ୍କୁ ମଣିଷ କରୁଛି ବୋଲି କହୁଥିଲା । ସେଇଠି ବହି ପଢ଼େଇବା ଆରମ୍ଭ କରିଛି ସେ । 'Freedom of Midnight' ମଧ୍ୟ ତାଙ୍କ ସ୍କୁଲ୍ ଲାଇବ୍ରେରୀରେ ଅଛି । ମୁଁ ଆଶ୍ଚର୍ଯ୍ୟ ହେଉଥିଲି ।

ମୋର ରହଣି କାଳ ଭିତରେ ତାଙ୍କ School sports ଆରମ୍ଭ ହେଲା । Stop watch ଧରି ଟାଇମ୍ ରେକର୍ଡ଼ କରିବା ଦାୟିତ୍ୱ ମୋ ଉପରେ ହିଁ ପଡ଼ିଥିଲା । ଏତେ ସାନ

ସାନ ପିଲାଙ୍କ ଗହଣରେ ମୋର ଅକଥନୀୟ ପିଲାଦିନ ମୋତେ ଭାରି ଦୁଃଖାଛନ୍ନ କରି ଦେଉଥିଲା । ସେମାନଙ୍କ ସହ ମିଶିଯିବାର ପ୍ରଚେଷ୍ଟା ମୁଁ ପ୍ରାୟ କରିଛି, ସେମାନଙ୍କ ନିରୀହତା ମୋତେ ପ୍ରଭାବ ପକାଇପାରିଛି । (ବାଲିଅନ୍ତା ଭୁବନେଶ୍ୱରୁ ମାତ୍ର ଦୁଇମାଇଲ୍; ତଥାପି ଏଇଠି ଯେମିତି ସହରର ସମସ୍ତ ତଥାକଥିତ ସଭ୍ୟତା ଅନୁପ୍ରବେଶ କରି ନାହିଁ ।)

ଏଇଠି ସୂର୍ଯ୍ୟାସ୍ତଗୁଡ଼ିକ ଚମତ୍କାର । କୁଆଖାଇ ନଦୀର ପଠାରେ ହେଉ ବା କେନାଲ୍ କୂଳର ବନ୍ଧରେ ହେଉ, ଦୂରରୁ ମଣିଷମାନେ ଭାରି ଭଲ ଦେଖାଯାଆନ୍ତି । ମୁଣ୍ଡରେ ଧାନଗଛର ବିଡ଼ା ବୋହି ଯାଉଥିବା ସ୍ତ୍ରୀଲୋକମାନେ ମଧ୍ୟ ମୋର ସବୁ ଧ୍ୟାନ ଅପହରଣ କରିନିଅନ୍ତି । ଆଗରୁ ତ ଲେଖିଥିଲି, ସମୟ ଏଇଠି ମୋତେ ଆଦୌ କଷ୍ଟ ଦେଇନାହିଁ । ମୁଁ ଭାରି ସହଜ ହୋଇ ପଡ଼ିଥିଲି । ଚାହୁଁଥିଲି ଆହୁରି କିଛି ଆବିଷ୍କାର କରିବା ପାଇଁ, ଆହୁରି ବିଶେଷ ଭାବେ ଜଡ଼ିତ ହେବା ପାଇଁ । ସେସବୁ ସମ୍ଭବ ହେଲା ନାହିଁ । ନିରୋଦ ମଧ୍ୟ ଅନେକ ଯୋଜନା କରିଥିଲା । ସେସବୁ ମଧ୍ୟ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ନିରୋଦ ପାଖରେ ତିନିଦିନ କଟିଗଲା । ବାଲିଅନ୍ତା ହାଇସ୍କୁଲରେ ସେ ଶିକ୍ଷକ । ସେଇଠାରୁ ପ୍ରତିଦିନ ତମକୁ ଗୋଟିଏ ଲେଖା, ଚିଠି ପଠାଇବାର ଯୋଜନା କରିଥିଲି ।

ନାନୀ ଅମ୍ଳାନର ବିବାହର ସଫଳତାକୁ ସନ୍ଦେହ କରନ୍ତି । ମୁଁ ସେମାନଙ୍କୁ ବୁଝାଉଥିଲି । ବିବାହ, ବନ୍ଧୁତା, ସ୍ନେହ ଓ ଭଲ ପାଇବାର ଆମମାନଙ୍କର ସ୍ୱପ୍ନ ଓ ଅଭିମାନ କଥା କହୁଥିଲି । (ଅମ୍ଳାନ ମୋର ଦୁଇ ଦିନ ପୂର୍ବରୁ ସେମାନଙ୍କ ପାଖକୁ ଯାଇଥିଲା ଓ PSCରେ ସାହାଯ୍ୟ ଚାହୁଥିଲା । ସେ ବିବାହ ହେଉଥିବା କଥା କହିଯାଇଛି ।) ସେମାନେ ଆଶଙ୍କା କରନ୍ତି ଯେ ବିବାହ ପରେ ଅମ୍ଳାନ ବଦଳିଯିବ, ସ୍ମିତା ଆମକୁ ଖାତିର୍ କରିବ ନାହିଁ । ଅମ୍ଳାନ ଖୁସିରେ ନ ରହିପାରେ । ଏସବୁର ସମ୍ଭାବନା ଥିଲେ ମଧ୍ୟ ମୁଁ କିପରି ଭୀଷଣ ଆଶାବାଦୀ, ସେମାନଙ୍କୁ ତା'ର ହିଁ ଉଦାହରଣ ଦେଉଥିଲି ।

ମୁଁ ବୁଝିପାରେ ନାହିଁ ଭଲ ପାଇବାର ପ୍ରତିଦାନ ନ ପାଇଲା ପରେ ସେ କାହିଁକି ଗୋଟାଏ eibel ହୋଇଯାଇଛି; କାହିଁକି ଅସନ୍ତୋଷ ଭାବ ପ୍ରକାଶ କରୁଛି । ସିଏତ ପଛକୁ ଫେରି ଚାହିଁ ନ ଥିଲା, ଏବେ କାହିଁକି ପୁରୁଣା ଅଧ୍ୟାୟଗୁଡ଼ିକର ପୁନରାବୃତ୍ତି ହେଉଛି ? ବଡ଼ ଦୁଃଖରେ ଥିବ ସିଏ । ତା'ର ଦ୍ୱନ୍ଦ୍ୱ ଓ ଯନ୍ତ୍ରଣା ମୋତେ ବଡ଼ ଅସହଜ କରିଦେଲା ।

ତମର ଚିଠି ବିଷୟରେ ସେଇଠି ମଧ୍ୟ କଥାବାର୍ତ୍ତା ହୋଇଥିଲା । ତମେ ମଧ୍ୟ ଆଉ ପଛକୁ ଫେରିଆସି ପାରିବ ନାହିଁ । ଅନେକ ବାର ତ ଆମେ ଭାଗ୍ୟ ଓ ସମୟ ହାତର

ଖେଳନା ହୋଇଯାଇଛେ । ଆମେ ଯାହା ଚାହିଁଛେ ତାହା ପାଇ ନାହାନ୍ତି, ଏବେ ଆଉ କାହିଁକି ଦୁଃଖ କରିବା !

ଭୁବନେଶ୍ୱରରେ ଅନେକ ଚିହ୍ନାମୁହଁ ମୁଁ ଖୋଜୁଥିଲି । ମାତ୍ର କାହା ସହିତ ଦେଖା ହେଲା ନାହିଁ । ଗୋଟାଏ ବର୍ଷ ଭିତରେ କ'ଣ ସବୁ ପରିବର୍ତ୍ତନ ହୋଇଯାଇଛି ତାହା ମୁଁ ଆଲୁଅ ବା ଅନ୍ଧାରରେ ଦେଖିପାରିଲି ନାହିଁ । 'Hotel Swapnapuri' ଏକାବେଳକେ ବଦଳିଯାଇଛି । ନୂଆଘର, ନୂଆ ପରିବେଶ, ତାହାର ପାଖାପାଖି କଲଭର୍ଟ ସବୁ ସେମିତି ଅଛନ୍ତି । ରୂପାଲି ତଳର Swampରୁ ଧାନକଟା ହୋଇଗଲାଣି । Modern Book Depotରେ କିଛି ସେମିତି ନୂଆ ବହି ନାହିଁ । ଗେଟେଙ୍କ Faust ପାଇଯାଇଛି, ଅନେକ ଦ୍ୱିଧା ସତ୍ତ୍ୱେ Faulknerଙ୍କ 'The Sound and the Fury' ଆଣିଛି । ଏ ମାସରେ ଏହା ମୋର ଏକମାତ୍ର ସାହାଭରସା ।

ସୁଧାକର ଶେଷରେ ତା'ର appointment ପାଇଛି । O.F.Sରେ ଯୋଗ ଦେବ । ଏଠି ସେ ଜୀବନକୁ ଭାରି ଉପଭୋଗ କରୁଛି । ଅମ୍ଳାନର ବାହାଘରକୁ ତମେ ଆସୁଛ କି ନାହିଁ ? ମୁଁ ତ ଅନେକ କଥା promise କରିଥିଲି ତା'ର ବିବାହ ପାଇଁ । ତଥାପି ଏବେ Hesseଙ୍କର Complete Works ଦେବା କଥା ଚିନ୍ତା କରୁଛି । ଯଦି ସେଇଠି ମିଳୁଛି (ଗୋଟାଏ volume ନ ହେଲେ ମଧ୍ୟ ଚଳିବ), ତମେ ଲେଖିଲେ ମୁଁ ଟଙ୍କା ପଠାଇବି । ଏଇଠି ଶୀତ ପଡ଼ିଲାଣି ।

ଏ ଚିଠିରେ ନିରୋଦ ବା ବାଲିଅନ୍ତା କଥା ମୁଁ ଲେଖି ନାହିଁ । ଚମତ୍କାର ଜାଗାଟିଏ । ପୁଣି ଲେଖୁଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ସମୟ ଅଟକିଯିବା କଥାରେ ପ୍ରାୟ ବିଶ୍ୱାସ ଆସେନି । ଏହା ଏକ ଚିର ପ୍ରବାହ, ଏକ ପୂର୍ଣ୍ଣଗର୍ଭା ସ୍ରୋତ । ସବୁ ମଣିଷ ଯେମିତି ଅପେକ୍ଷା କରନ୍ତି, ଏ ସ୍ରୋତରେ ଭାସିଯିବାକୁ ବା ସବୁ କ୍ଷତର ପୂରଣ ପାଇଁ ଅଥବା ନ ହେଲେ ସମସ୍ତ ପରିସମାପ୍ତି ପାଇଁ । ଏଥିରେ ଦାସତ୍ୱ ଅଛି, ପଳାୟନ ଅଛି, ସାଲିସ୍ ମଧ୍ୟ ଅଛି । ଏହି ସମୟର ପାହାଚ ଦେଇ ମଣିଷ କେଉଁ ସ୍ଥାନକୁ ଆରୋହଣ ବା ଅବତରଣ କରେ, ସେ ନିଜେ ଜାଣିପାରେ ନାହିଁ; ନିଜକୁ ଆଲୋକକୁ ଆଣୁ ଆଣୁ ସେ ଭାରି ରହସ୍ୟାବୃତ ହୋଇଯାଏ । ଏଇଠି ଆର୍ତ୍ତନାଦ ଅଛି, ଆନନ୍ଦ ମଧ୍ୟ ଅଛି । ସମୟ ସାପ ଭଳି ଦେହ ଚାରିପାଖେ ଗୁଡ଼ାଇ ହୋଇଯାଏ, ଫାଶୀଖୁଣ୍ଟର ଦଉଡ଼ି ମଧ୍ୟ ହୋଇଯାଏ । ମଣିଷଟି ସତରେ କେତେ ଦୁର୍ବଳ !

ଏଇଠି ଗୋଟିଏ ମାଆର ସେଦିନ ମୃତ୍ୟୁ ହୋଇଥିଲା, କାଲି ଭଳି ଲାଗୁଛି । ପୁଣି ଗୋଟିଏ ଶିଶୁ ସନ୍ତାନ ଜନ୍ମ ନେଲା । କାଲି ସେଇଠି ମାଲଭାଇମାନେ ଶୁଦ୍ଧିକ୍ରିୟା କରୁଥିଲେ, ଆଜି ସେଇଠି ଭୋଜିଭାତ ହେବ ଏ ଶିଶୁର ଆଗମନ ପାଇଁ । କେତେ ନିର୍ଲିପ୍ତ ହୋଇଯିବାକୁ ପଡ଼େ ଏହିସବୁ ବିଷୟରେ, କେତେ ସହଜ ମଧ୍ୟ । ମଣିଷ ବୋଧେ ଏଇଥିପାଇଁ ସମୟକୁ ଅଟକିଯିବାକୁ ଚାହିଁ ନାହିଁ, ବରଂ ସ୍ଥିର ହୋଇଯିବାରେ ସେ ବିଷାକ୍ତ ହୋଇଯାଇଛି ।

ତଥାପି ବି ଅଚାନକ ସମୟ ଅଟକିଯିବା ଭଳି ଲାଗେ, ଏକ ଭିନ୍ନ ପରିସରରେ, ଏକ ଭିନ୍ନ ଉପସ୍ଥିତିରେ । ତମେ ଏଇ କଥା କେବେ କେମିତି ଅନୁଭବ କରିଥିବ, ଏଥିରେ ମୋର ସନ୍ଦେହ ନାହିଁ । ଏହାକୁ ଠିକ୍ ଏକ ନିର୍ଦ୍ଦିଷ୍ଟ ବେଳା କହିହେବ ନାହିଁ । ତଥାପି ମଧ୍ୟ ଏହା ଅକସ୍ମାତ ରକ୍ତରେ ଚମକ ସୃଷ୍ଟିକରେ । ମେରୁଦଣ୍ଡ ଦେଇ ଏକ ଶୀତଳ ଶିହରଣ ଦେହସାରା ଖେଳିଯାଏ । ସ୍ୱପ୍ନ ଦେଖୁ ଦେଖୁ, ଆତ୍ମବିହ୍ୱଳତାରେ ଲୀନ ହୋଇ ଯାଉଯାଉ ଏ ମଣିଷ ନିଜକୁ ମୁକ୍ତ ବୋଲି ଆବିଷ୍କାର କରେ । ନିଜର ମୁକ୍ତି କଥା ଜାହିର ମଧ୍ୟ କରେ । ଏହା କେତେ ବଡ଼ ସଚେତନତା କେବଳ ଅନୁଭବ କରାଯାଇପାରେ । ଆମେ ଜାଣୁ ଆମକୁ ହିଁ ଆରୋହଣ କରିବାକୁ ହେବ, ଭଲ ପାଇବାର ସିଡ଼ି ଦେଇ । ଏଇଠି ସମୟର ସତ୍ତା ନାହିଁ, ପ୍ରଭାବ ନାହିଁ, ସ୍ଥିତି ନାହିଁ କି ପ୍ରବୃତ୍ତି ମଧ୍ୟ ନାହିଁ । ଆମର ଯନ୍ତ୍ରଣା ଯଦି କିଛି ଥାଏ, ତେବେ ଏହା କୌଣସି ଏକ ନିର୍ଦ୍ଦିଷ୍ଟ କାଳର ନୁହେଁ, କୌଣସି ସ୍ଥାନ ସହିତ ସଂଶ୍ଳିଷ୍ଟ ନୁହେଁ । ଆମର ସ୍ଥିତି ମଧ୍ୟ କେବେ ସମୟ ସଚେତନ ହୋଇଯାଇ ନାହିଁ । ସମୟର ଅଦିନିଆ ଝଡ଼ରେ ଆମେ ମୁଣ୍ଡ ନୁଆଁଇଁ ଦେଇ ନାହୁଁ । ସେଇ ସ୍ୱପ୍ନ ସମ୍ଭବ ପାଇଁ ଆମେ ବଞ୍ଚି ରହୁ । ଏହି ଅଭିନବ ଯାତ୍ରାର ଲକ୍ଷ୍ୟସ୍ଥଳ ଆଡ଼କୁ ଇଞ୍ଚ ଇଞ୍ଚ କରି ଅଗ୍ରସର ହେଉ ।

ହଁ, ସମୟ ତ ନିଶ୍ଚୟ ଅଟକିଯିବ ଆମ ପାଇଁ । କେବେହେଲେ ଆମେ କହିବୁ ନାହିଁ, ଯଦି ଘଣ୍ଟାଟା ପାଖରେ ଥାଆନ୍ତା !

*ଦ୍ରଷ୍ଟବ୍ୟ :*

ଆସନ୍ତାକାଲି ଭୁବନେଶ୍ୱର ଯାଉଛି । ନିରୋଦ ପାଖରୁ କିଛି ବହିଖାତା ଆଣିବାକୁ ପଡ଼ିବ । କେତେ ଦିନ ପରେ ପୁଣି ସେହି ପରିଚିତ ସ୍ଥାନ ଓ ମୁହଁଗୁଡ଼ିକୁ ଦେଖିବାକୁ ମିଳିବ । ନାନୀ ପାଖକୁ ନିଶ୍ଚୟ ଯିବି । ଏବେ କିଛି novels ନ ମିଳିବାରୁ poetry ପଢ଼ିବାକୁ ଆରମ୍ଭ କରିଛି । Mathew Arnoldଙ୍କର collectionଟିଏ ପାଇଛି । ଅମ୍ଳାନର Ezkeilଙ୍କ ସହ ସାକ୍ଷାତ ହୋଇଥିବା କଥା ଅନେକ ଦିନ ପୂର୍ବେ ଲେଖିଥିଲା । ତମେ English poem କିଛି କିଛି ପଠେଇଲେ ସେ ପ୍ରକାଶ କରିବାକୁ ଚେଷ୍ଟା କରନ୍ତା । ଏକଥା ମୋତେ ଲେଖିଥିଲା । ମୁଁ ବୋଧେ ଭୀଷଣ dry ଏବଂ prosaic । କବିତାରୁ ମୁଁ ରସ

ଆସ୍ୱାଦନ କରିବାର ଅଭିଳାଷ ନାହିଁ; ସମୟ ଓ ବହି ପଢ଼ିବାର ନିଶା ଉଭୟ ଏଥିପାଇଁ ଦାୟୀ । ପୁଣି ଲେଖିବି । ଚିଠି ପାଇଛି ।

▯ ▯ ▯

ପ୍ରିୟ ବନ୍ଧୁ,

Hemingwayଙ୍କୁ ଜଣେ ମୁଖ୍ୟ 'existentialist thinker' ଭାବରେ ନିଆଯାଇଛି କି ନାହିଁ ମୁଁ ଜାଣିବାର ସୁଯୋଗ ପାଇନାହିଁ । ଯେତେଗୁଡ଼ିଏ ବହି ଆମେ ପଢ଼ିଛେ, ସେ ପ୍ରତ୍ୟେକ ସ୍ଥଳରେ ଜୀବନକୁ ଗୋଟାଏ ବାସ୍ତବ ଦୃଷ୍ଟିକୋଣରୁ ନେଇଛନ୍ତି । 'Islands In The Stream' ମଧ୍ୟ ଏହାର ଅନ୍ତର୍ଗତ । ମୃତ୍ୟୁ ପରେ ପ୍ରକାଶ ପାଇଥିବା ଏହି ବହିରେ ଗୋଟାଏ artistର ଜୀବନକୁ ଓ ତା'ର ଜଟିଳତାକୁ ସୁନ୍ଦର ଭାବେ ଉଲ୍ଲେଖ କରାଯାଇଛି । ମୋର ମୋଟାମୋଟି ଧାରଣା ହେଲା ଯେ 'Oldman' ସହ Thomas Hudsonର କିଛି ହେଲେ ପାର୍ଥକ୍ୟ ନାହିଁ । କ୍ୟୁବା ପାଖାପାଖି ଦ୍ୱୀପପୁଞ୍ଜରେ ସେ ଜୀବନର ଶେଷକାଳ ଅତି ନିର୍ଲିପ୍ତ ଭାବେ କାଟିଛି । ଜୀବନଟା ତା'ର ଅତି ସହଜ ଭାବେ କଟିଯାଇଥାଆନ୍ତା, ଯଦି ତା'ର ତିନୋଟି ସ୍ତ୍ରୀ ଓ ତିନୋଟି ସନ୍ତାନ ତା'କୁ ଏକୁଟିଆ କରି ଛାଡ଼ି ଯାଇ ନ ଥା'ନ୍ତେ । ସେ ନିର୍ଜନତାରେ ଆକ୍ରାନ୍ତ ହୋଇଛି ସତ, କେତେବେଳେ ହେଲେ ତାହା ପ୍ରକାଶ କରିନାହିଁ । ଗୋଟାଏ Germany submarine ପିଛା କରିବାକୁ ଯାଇ ସେ ଆହତ ହୋଇଛି । ଶେଷରେ 'Oldman' ସ୍ୱପ୍ନ ଦେଖିବା ଭଳି Thomas Hudson ମଧ୍ୟ ମୃତ୍ୟୁଶର୍ଯ୍ୟାରେ ସ୍ୱପ୍ନ ଦେଖୁଛି ।

Hemingway ସମ୍ଭବତଃ ଗୋଟାଏ ନିର୍ଦ୍ଦିଷ୍ଟ ଭାବନାକୁ ବାରମ୍ବାର ରୂପ ଦେଇଛନ୍ତି । ତାହା ହେଲା ଯେ ସଂଘର୍ଷର ଚରମ ସୀମାରେ ନିଜେ ଓ ଶତ୍ରୁ ଭିତରେ ପ୍ରଭେଦ କିଛି ହେଲେ ରହେ ନାହିଁ । ସେଇ ସମୟରେ ଶତ୍ରୁ ଭାରି ଆପଣାର ହୋଇଯାଏ । ତା'କୁ ଭଲ ପାଇହୁଏ; ତାହାଦ୍ୱାରା ନିହତ ହେଲେ ମଧ୍ୟ ମନର ଦୁଃଖ ଆସେ ନାହିଁ । 'The Oldman and the Sea'ରେ ଯେମିତି ସେ କହିଛନ୍ତି, "Fish come, let us see who kills who" । ଏ ବହିରେ ମଧ୍ୟ ଲେଖିଛନ୍ତି, "In the worst parts, when I was the tired I could not tell which was him and which was me... then I began to love him more than anything an earth... I love him so much when I saw him (a fish) coming up that I couldn't stand it. All I wanted to see him closer... I am glad that he's all right and that I'm all right. We aren't enemies."

ସମ୍ଭବତଃ ଭଲ ପାଇବାର ଏହା ଏକ ଚିରନୂତନ ଦିଗ । ଆମେ ଭଲ ପାଇବା କଥା ଅନ୍ୟ ଉପାୟରେ ବୁଝୁ, ଯଦିଓ ଆମ ପାଇଁ ମଧ୍ୟ ଏହାର ଅର୍ଥ ହଜିଯିବା, ଏକାକାର

ହୋଇଯିବା । Hemingway ଙ୍କର ସଂଗ୍ରାମ ଆମ ପାଖରେ କାଣିଚାଏ ନ ଥିଲେ ମଧ୍ୟ ବେଳେବେଳେ ଆମେ ଭାରି ଉଦ୍‌ବୁଦ୍ଧ ହୋଇଯାଇଛୁ, ଭାରି ବିହ୍ୱଳ ହୋଇଯାଇଛୁ । ମୋର ବେଳେବେଳେ ଇଚ୍ଛା ହୁଏ ତାଙ୍କ ଭଳି ଜୀବନଟାକୁ କାଟିଦେଲେ କିଛି ହେଲେ ମିଳିଯାଆନ୍ତା ଆମକୁ, ଆମେ ଏମିତି ହନ୍ତସନ୍ତ ହୁଅନ୍ତୁ ନାହିଁ । କିନ୍ତୁ ଦ୍ୱନ୍ଦ୍ୱସମାହିତ ପ୍ରାଣରେ ଆଉ କିଛି ଉଦ୍ଦାମତା, ଉନ୍ମାଦନା ଥିଲା ଭଳି ମନେହୁଏ ନାହିଁ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମେ କୁହ, ଘରର ମଣିଷ ହୋଇଯାଇ କିଏ କ'ଣ ଭୁଲ କରି ବସେ ? ଜଡ଼ିତ ହୋଇଯିବାର ବୋଧହୁଏ ଏହା ଶ୍ରେଷ୍ଠ ଉଦାହରଣ । ସବୁକିଛି ସଙ୍କୁଚିତ ହୋଇଯାଏ । ସଂସାରଟି ଏକାବେଳକେ ସଙ୍କୁଚିତ ହୋଇଯାଏ ।

ଗୋଟାଏ ଘର, ତଥାପି କେତେ ବଡ଼ ସଂସାର, କେତେ ବଡ଼ ବୋଝ, କେତେ ଅଭିଜ୍ଞତା । ମଣିଷକୁ ସବୁକିଛି ନିରୀକ୍ଷଣ କରିବାକୁ ହେବ, ସଚେତନ ବି ହେବାକୁ ପଡ଼ିବ । ବିଲ ମୁଣ୍ଡରେ ରହିବାକୁ ହେବ । ଖରା, ବର୍ଷା, ଅନ୍ଧାର ଓ ଆଲୁଅର ମଣିଷ ହୋଇଗଲା ପରେ ଆଉ କେଉଁଠି ସମୟ ବଳିବ ଯେ 'metaphysics'କୁ ସେ ଖୋଜିବ ! ଏଇଠି ସମ୍ପର୍କ ରଚିବା ବେଳେ ସେ ମାପିଚୁପି ଭାରି ସତର୍କ ହୋଇଯିବ, ଭାରି ଜଟିଳ ହୋଇପଡ଼ିବ, ତା'ର ହାନିଲାଭ, ସଂସାରର ଲାଭକ୍ଷତି । ସେ ଭୀଷଣ ଅଡୁଆରେ ପଡ଼ିଯିବ, ଗାଳିଦେବ, ଆତ୍ମବୋଧ ଲଭିବ, ସିଏ ଆଗେଇ ଯାଉଯାଉ ଅଟକିଯିବ, ସିଏ ତା'ର ପରିଚୟ ହରାଇ ବସିବ ନାହିଁ । ତଥାକଥିତ ମାୟାମୋହର ଜାଲ ଭିତରେ ସିଏ ଭାରି ଛଟପଟ ହେବ ।

ତୁମେ କୁହ, ସତରେ କ'ଣ ଆମେ ଭାରି ବୀତସ୍ପୃହ ହୋଇଯାଇଛେ ? ଅଥବା ସଂସାର ପାତିବା ବିଷୟରେ କ'ଣ ଡରିଯାଇଛେ ? ଏକ ସ୍ୱତନ୍ତ୍ର ଏକକ ହିସାବରେ ବାପା, ମାଆ, ଅଚ୍ୟୁତ, ଅମ୍ଳାନ, ଅରବିନ୍ଦ, ସ୍ମିତା, ନାନୀ ଓ ମୋଟାମୋଟି ଏ ପୃଥିବୀ ମଧ୍ୟ, ସବୁ କେତେ ଭଲ, କେତେ ସୁନ୍ଦର ! ପ୍ରତ୍ୟେକଙ୍କୁ ନେଇ ଏ ମଣିଷ ଭାରି ସ୍ୱପ୍ନାବିଷ୍ଟ ହୋଇ ଯାଉଛି, ବନ୍ଧୁତା ଓ ଭଲ ପାଇବାର ସବୁ ମହନୀୟତା ଆବିଷ୍କାର କରୁଛି, ଆପଣାକୁ ହଜାଇ ଦେଉଛି, ଆଗେଇ ଯିବାକୁ ଅଣ୍ଟା ଭିଡୁଛି, ସମ୍ପର୍କର ଅନେକ ପୋଲ ଗଢୁଛି, ହତାଶ ହୋଇ ଯାଉନି, ଯନ୍ତ୍ରଣା ଅଛି, ଉଦାସ ହୋଇଯାଉଛି । କିନ୍ତୁ ତଥାପି ବି ଭାଙ୍ଗିଯାଉନି, ବିଶ୍ୱାସ ହରାଉନାହିଁ । ଏସବୁ ପରେ ବି ସମସ୍ତ ଭଲ ପାଇବାର ମଣିଷମାନଙ୍କୁ ନେଇ, ସମଗ୍ର ପୃଥିବୀର ଭଲ ଲାଗୁଥିବା ଚିଜଗୁଡ଼ିକୁ ସଂଗ୍ରହ କରି ତଥାପି ଏକ ସଂସାର ଗଢ଼ିବା

ବୋଧହୁଏ ଆମ ପାଇଁ କଠିନତମ କାର୍ଯ୍ୟ ହୋଇ ଯାଉନି କି? ଆଜିର ସ୍ୱପ୍ନ, ଆଜିର ବଞ୍ଚିବାର ବାସ୍ନା ଓ ସ୍ୱାଦ 'ଘର' ଭିତରେ ବିଷାକ୍ତ ହୋଇଯିବା କଥା ତମେ କ'ଣ ଚିନ୍ତା କର ନାହିଁ।

ଆଗରୁ ତ ଲେଖିଛି, ଏ ସଂସାରରେ ସଫଳତାକୁ ନିଷ୍ଠୁରତାର ମାପକାଠିରେ ମପାଯାଏ, ସବୁ ସୁଖ ଭିତରେ ସ୍ୱାର୍ଥପରତାର ଚେର ବ୍ୟାପିଯାଏ। ମୋ ପାଇଁ ସଂସାର ଗଢ଼ିବା କଥା ଏକାବେଳେ ଅସତ୍ୟ; ତଥାପି ଆମେ ଯେଉଁଭଳି ସମୟର କ୍ରୀତଦାସ କାଲି କ'ଣ ହୋଇଯିବ କହିହେବ ନାହିଁ। ମୋ ପାଇଁ ଯାଯାବରର ଜୀବନ ଶ୍ରେୟସ୍କର, ଗୋଟାଏ 'forwarderer' ହେବା ଯଥାର୍ଥ।

ଅଚ୍ୟୁତ୍

*ଦ୍ରଷ୍ଟବ୍ୟ :*

ତମେ ଲେଖିନାହଁ, ଅମ୍ଳାନ ମଧ୍ୟ ଚିଠି ଦେଇନାହିଁ। ଆଉ ଏବେ କେମିତି ତମର ସମୟ କଟୁଛି? ମୁଁ କିଛି ଦିନ ହେବ କିଛି ପଢ଼ିନାହିଁ। କେତେ ଦିନରୁ Hemingway ଙ୍କ 'Islands In The Stream' ପଢ଼ିସାରିଛି। ତମକୁ ଆସନ୍ତା ଚିଠିରେ ଏକଥା ଲେଖିବି। ତମେ ତ ଜାଣି ବହି ଥିଲେ ମୋର ଅନେକ ଯନ୍ତ୍ରଣା କମିଯାଏ, ମୁଁ ନିଜକୁ ଲୁଚାଇ ଦେଇପାରେ। ଏଇଠି ମନଲାଖି ବହି ଆଉ ମିଳୁନାହିଁ। Mathematics ର କିଛି ବହି ଯୋଗାଡ଼ କରିଛି। ତମେ ସମୟ ହେଲେ କିଛି 2nd hand ବହି କିଣି ପଠାଅ, ବା ତମେ ଯେଉଁ ବହି ପଢ଼ିସାରିଛ, ମୁଁ ପରେ ସେସବୁକୁ ଫେରାଇଦେବି। ଯେତେ ଦିନ ଏଇଠି ମୁଁ ରହିବି, ସମ୍ଭବତଃ ମୋର ଏ ପରୀକ୍ଷାରୁ ପଛଘୁଞ୍ଚା ଦେବିନାହିଁ। ଲେଖିବ।

▯ ▯ ▯

ପ୍ରିୟ ବନ୍ଧୁ,

ଚିଠିକୁ ଉତ୍କଣ୍ଠାର ସହ ଅପେକ୍ଷା କରୁଥିଲି। କେଜାଣି କାହିଁକି ବାଲେଶ୍ୱର ଯାଇ ତୁମକୁ ବିଦାୟ ଦେବାଟା ମୋ ପାଇଁ ଗୋଟାଏ ଜଟିଳ ବ୍ୟାପାର ହୋଇପଡ଼ିଥିଲା। ଶେଷ ମୁହୂର୍ତ୍ତରେ ପହଞ୍ଚିଯିବାକୁ ବି ଚାହୁଁଥିଲି; କିନ୍ତୁ ଜାଣି ନଥିଲି ଯେ ତମେ କୋଡ଼ିଏ ତାରିଖରେ ବିଦାୟ ନେଲ।

ଦିଲ୍ଲୀର ଗତିଶୀଳ ଜୀବନ ସହ ତମେ ସାମିଲ୍ ହୋଇପାରୁନାହଁ ବୋଲି ଲେଖିଛ। ଗୋଟାଏ ପରିସରରୁ ଆଉ ଗୋଟାଏ ବୃହତ୍ତର ପରିବେଶ ଭିତରକୁ ଚାଲିଗଲେ ହଠାତ୍ ଅନେକ ଭୟ ମାଡ଼ିବସେ। କିନ୍ତୁ ଏସବୁ ଭୀଷଣ ଭାବେ ସାମୟିକ। ତମେ ପୁଣି ସହଜ ହୋଇଯିବ ବୋଲି ମୋର ଦୃଢ଼ବିଶ୍ୱାସ। ଦିଲ୍ଲୀରେ ସମୟର ଘୋଡ଼ା ଅତି ଲଗାମଛଡ଼ା। ସେଠି କିଏ ଛିଙ୍କିଲେ ଏଇଠି ବଜ୍ର ପଡ଼ିଲା ଭଳି ଶୁଭେ, ସେଇଠି କିଏ ଦୀର୍ଘଶ୍ୱାସ ଛାଡ଼ିଲେ

ଏଇଠି ଝଡ଼ ବହେ । ତଥାପି ପ୍ରଭାତ ତମର ପିଲାଦିନରୁ ବନ୍ଧୁ । ସେ ଯଦି ଦିଲ୍ଲୀର ସାଂସ୍କୃତିକ ମହଲ ସହ ଯଥେଷ୍ଟ ଭାବେ ପରିଚିତ, ତମେ କାହିଁକି ହୋଇ ପାରିବନାହିଁ ? ଯେଉଁ ମଣିଷ ସମୟ ଓ ସ୍ଥିତି ସଚେତନ, ସେ ହୁଏତ ଦିଲ୍ଲୀରେ ଅଜଣା ହୋଇଯିବ ନାହିଁ, ନିଜକୁ ହେୟ ମନେକରିବ ନାହିଁ । ତମେ ଆପଣାକୁ ଆଗେଇ ନେବ, Institute ରେ ହେଉ ବା CPରେ ହେଉ, କଫିହାଉସ୍‌ରେ ହେଉ ବା ରାଜଘାଟରେ ହେଉ ।

ତମେ ଲେଖିଛ Institute ରେ Math, Statistics ଓ Eco. ସବିଶେଷ ଅଧ୍ୟୟନ କରିବାକୁ ହୁଏ । ତମେ ତ ଏବିଷୟରେ କେବେ ପଛେଇନାହଁ, ଆଗ୍ରହ ତମର କେବେ ମରିଯାଇନାହିଁ । ଅର୍ଥନୀତି ତମ ପାଇଁ କେବେ ଦୁର୍ଗମ ହୋଇଯାଇନି, କେବେ ପାଚେରୀ ସୃଷ୍ଟି କରିନାହିଁ । ଜୀବନରେ ତମକୁ ଭଲ ଲାଗୁଥିବା ଚିଜମାନଙ୍କ ଭିତରୁ ଏହା ବି ଗୋଟିଏ । ଏବେ ଆଉ ପଛକୁ ଫେରିବାକୁ ସମୟ ନାହିଁ କି ସୁଯୋଗ ବି ନାହିଁ ।

ଦିଲ୍ଲୀରେ ସକାଳ କେମିତି ହୁଏ, ସନ୍ଧ୍ୟା କେମିତି ନଇଁ ଆସେ ମୁଁ ଲକ୍ଷ୍ୟ କରିବାକୁ ସୁଯୋଗ ପାଇନାହିଁ । ଗୋଟାଏ ଆଲୋକର ଆସ୍ତରଣ ଉପରେ ଜନ୍ମ କେମିତି ଜଣାପଡ଼େ ତାହା ମଧ୍ୟ ମୁଁ ଜାଣିନାହିଁ । ଆମ ଜୀବନରେ Metaphysics ର ଏକ ସ୍ୱତନ୍ତ୍ର ସ୍ଥାନ ଅଛି; ତା'ର ଏକ ସ୍ୱତନ୍ତ୍ର ଯନ୍ତ୍ରଣା ଆମକୁ ଆକ୍ରାନ୍ତ କରେ । ତମେ ଯାହାକୁ 'ନୈର୍ବ୍ୟକ୍ତିକ' ବୋଲି ଆଖ୍ୟା ଦେଇଛ, ଏହା ମଧ୍ୟ ସେହିଠାରୁ ଉଦ୍‌ଭବ । କେବେ କେମିତି ଇଛା ହେଲେ ତମେ ମଧ୍ୟ ଦିଲ୍ଲୀକୁ ଆବିଷ୍କାର କରିବ, ବାରିଷ୍ଟର ଗୋବିନ୍ଦ ଦାସ 'ଦେଶେଦେଶେ'ରେ ଯେମିତି ଦିଲ୍ଲୀକୁ ଏକ ରୋଗକ୍ଲିଷ୍ଟ ସହର ବୋଲି ନେଇଛନ୍ତି, ତମେ ମଧ୍ୟ ଆପଣାର ନିଜସ୍ୱ ଦୃଷ୍ଟିରେ ଏଇଠି ସେହି ପୁରୁଣା ମୁହଁଗୁଡ଼ିକୁ ଖୋଜିବ । କିଏ ନକହିବ ଯେ ଇତିହାସର ପରିଚିତ ଅଶରୀରୀମାନେ ତମକୁ ସ୍ୱପ୍ନାବିଷ୍ଟ କରିଦେବେ ବୋଲି, ଠିକ୍ ଯେମିତି ବାଲେଶ୍ୱରର 'ପରମିଟ୍ ଘାଟ'ଠାରେ 'ଆକାମାଭୈ...' ଶୁଣିଲା ଭଳି । ବାଲେଶ୍ୱରରେ ଜୀବନର ଏକ ଅଧ୍ୟାୟ ଶେଷ ହେଲା । ଆଉ ଏକ ପର୍ଯ୍ୟାୟର ଅୟମାରମ୍ଭ ପରେ ତମେ ପୁଣି ଯଥେଷ୍ଟ ଭାବେ ସ୍ଥିତପ୍ରଜ୍ଞ ହୋଇପାରିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଯୋଗୀ ଭାଇନା କେମିତି ଅଛ ? ତା'ର ଚିଠି ମୁଁ ପାଇଥିଲି ବୋଲି କହିବ । ସେ କଲିକତାରେ ପହଞ୍ଚି ଯେମିତି ମୋ ପାଖକୁ ଲେଖେ ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ :*

ଏତିକିରେ ମୋ କଥା ପ୍ରାୟ ମୁଁ ଲେଖିନାହିଁ । ପୁଣି ଲେଖୁଛି । ଅନେକ ଅସଂପୂର୍ଣ୍ଣ ଚିଠିକୁ ଶେଷ କରି ତମପାଖକୁ ପଠାଇବାକୁ ହେବ ।

▯ ▯ ▯

ପ୍ରିୟ ବନ୍ଧୁ,

ଏ ବର୍ଷ ପ୍ରାରମ୍ଭରେ ପ୍ରଫୁଲ୍ଲ ଓ ଗୋପବନ୍ଧୁ ଶୁଭେଚ୍ଛା ଜଣାଇ greetings ପଠାଇଛନ୍ତି । ଚିଠି ମଧ୍ୟ ଲେଖିଛନ୍ତି । ଦୀର୍ଘ ଏକ ବର୍ଷ ଧରି ବିଚ୍ଛିନ୍ନ ହୋଇଯାଇଥିବା ସମ୍ପର୍କକୁ ପ୍ରଫୁଲ୍ଲ ଯୋଡ଼ିବାକୁ ଚାହିଁଛି । ଗୋପବନ୍ଧୁ 'inadvertent silence' କଥା ଅନୁଭବ କରିପାରିଛି । ମୁଁ ସ୍ୱୀକାର କରୁଛି ଯେ ଏମାନଙ୍କ ପ୍ରତି ମୁଁ ବିମୁଖ ହୋଇଯାଇଛି ଏବଂ ଏମାନଙ୍କ ପ୍ରତି ମୁଁ ସହଜ ହୋଇ ପାରିନାହିଁ ।

ଅମ୍ଳାନ ତା'ର ବାହାଘରର ଏକ 'tentative programme' ପଠାଇଛି । ୨୪ ତାରିଖରେ ସେମାନେ ରାଉରକେଲା ଛାଡ଼ିବେ ଓ ୨୫ ତାରିଖରେ ସେମାନେ ରାଉରକେଲା ଛାଡ଼ିବେ ଓ ୨୫ ତାରିଖ ଦ୍ୱିପ୍ରହର ବେଳକୁ ବିବାହ ଅନୁଷ୍ଠିତ ହେବ । ଅଗ୍ନିକୁ ସାକ୍ଷୀ ରଖି ସେ ସଂସାର ପାତିବା ବେଳେ ଆମର ଉପସ୍ଥିତି କାମନା କରିଛି । ତମର ଠିକଣା ହଜାଇ ଦେଇଥିବାରୁ ସେ ତମକୁ ଲେଖି ପାରିନାହିଁ । ମୋତେ ସବିଶେଷ ଲେଖିବା ପାଇଁ ଅନୁରୋଧ କରିଛି । ମୁଁ ତମର ଠିକଣା ପଠାଇବା ସଙ୍ଗେ ସଙ୍ଗେ ତମେ ନଆସିପାରିବାର ସମ୍ଭାବନାକୁ ଜଣାଉଛି । ମୋର ବିଶ୍ୱାସ ସେ ତମକୁ ବୁଝିବ । ତମ ଉଭୟଙ୍କ ଭିତରେ ଚିଠିର ଆଦାନପ୍ରଦାନ ହୋଇଗଲେ ମୁଁ ଭାବୁଛି ଭଲ ହୁଅନ୍ତା ।

ଅମ୍ଳାନର ବିବାହ ମୋ ପାଇଁ ମଧ୍ୟ ଏକ ଅଦ୍ୱିତୀୟ ଘଟଣା ହେବାକୁ ଯାଉଛି । ପ୍ରଫୁଲ୍ଲ ଭଳି ସେ ମଧ୍ୟ କେବେହେଲେ ତା'ର ଭଲ ପାଇବାର ଆବେଗକୁ ପ୍ରକାଶ କରିନାହିଁ । ଯେତେବେଳେ ଯାହା କହିଛି ତାହାକୁ ମୁଁ କେବଳ ideological କିମ୍ବା academic interest ବୋଲି ଧରିନେଇଛି । ବିବାହ ଉତ୍ସବର ସମାପନ ପରେ ହଠାତ୍ ବନ୍ଧୁତ୍ୱ ଗୋଟାଏ much played record ହୋଇଯାଏ । ଅମ୍ଳାନ ଯଦି ପ୍ରଫୁଲ୍ଲ ଭଳି ଶିଥିଳ ହୋଇଯାଏ, ମୁଁ ଅତି ଧୈର୍ଯ୍ୟର ସହ ତାହାକୁ ଗ୍ରହଣ କରିବି; କରିବା ମୋ ପକ୍ଷେ ଉଚିତ ହେବ । ମୁଁ ବୋଧେ ବେଶୀ possessive ହୋଇପଡ଼ୁଛି ।

ରାଉରକେଲା ଯିବି ବା କଟକ ଯାଇ ବିବାହରେ ଯୋଗଦେବି, ଏ ପର୍ଯ୍ୟନ୍ତ ସ୍ଥିର କରିନାହିଁ । ତମେ ଆସୁଥିଲେ ଭଲ ହୋଇଥାଆନ୍ତା । ପରେ ସବୁ କଥା ଲେଖିବି । ମୁଁ ଏତେ ଜଟିଳ ସମସ୍ୟା ଭିତରେ ପଡ଼ିଯାଇଛି ଯେ ମୋର ସମ୍ଭବତଃ ଜଡ଼ିତ ହୋଇଯିବା ଭଳି ଉନ୍ମାଦନାର ଅଭାବ ଅନୁଭବ କରୁଛି । ତମେ ମୋତେ ବୁଝୁଥିବ ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ :*

କେଜାଣି କାହିଁକି କେତେ ଦିନ ହେବ ଭାରି ଉଦାସ ଲାଗୁଛି । ତମେ ନିଜ ପାଇଁ ଆବଶ୍ୟକୀୟ illusion ସୃଷ୍ଟି କରି ପାରୁନାହିଁ ବୋଲି ଲେଖିଥିଲ । ମୁଁ ବରଂ କହୁଛି ଯେ

ଆବଶ୍ୟକୀୟ illusion ସୃଷ୍ଟି କରି ମଧ୍ୟ ମୁଁ ଯେପରି ଆଦୌ ବଞ୍ଚିପାରୁନାହିଁ । ଏଇଠି ଗଦାଗଦା ବହି ଭିତରେ ତଥାପି ଯେମିତି ହଜି ଯାଇ ହୁଏନାହିଁ, ତଥାପି ଯେମିତି ଯୌବନ ଓ ଜୀବନର ଛନ୍ଦପତନ ଘଟେ । Steepen Wolf ରେ ଠିକ୍ କଥା ଲେଖାଯାଇଛି - "If you walk on water, be sure, you are going to drown someday." କେତେ ବଡ଼ ସତକଥା, ମୋ ପାଇଁ କେତେ ଯଥାର୍ଥ ମଧ୍ୟ । ଏବେ ମଧ୍ୟ ମୁଁ ମୋର ତଥାକଥିତ ଯାତ୍ରାପଥରୁ ଓହରି ଆସିବାକୁ ଚାହୁଁନାହିଁ । ମୁଁ ଜାଣେ ଏ ମୋର କୁହୁଡ଼ି ପହଁରିବାର ଶେଷ ପରିଣତି କ'ଣ ।

ଏବେ ଏଇଠି ପ୍ରତି ପଦକ୍ଷେପରେ ମୁଁ ଅପମାନିତ ହେଉଛି, ମୋର ସମସ୍ତ ଆତ୍ମଅଭିମାନ ଭୀଷଣ ଆଘାତ ପାଉଛି । ଆଃ, ଆଜି ମୁଁ କ'ଣ ହୋଇଯାଇଛି । କିଏ ଯେମିତି ଏ ଜୀବନର ଥୁଣ୍ଟା ବରଗଛରେ କୁଠାରାଘାତ କରୁଛି ।

'The Sound and the Fury' ର 1st reading ସରିଯାଇଛି । ମୁଁ ମୋଟାମୋଟି ଗୋଟେ idea ସଂଗ୍ରହ କରିପାରିଛି । ଏଠାରେ ବିଷୟବସ୍ତୁ ଅପେକ୍ଷା techniqueକୁ ପ୍ରାଧାନ୍ୟ ଦିଆଯାଇଛି । ଯଦି stream of consciousness ସହ ଆଗରୁ ମୁଁ ପରିଚିତ ହୋଇ ପାରିଥାଆନ୍ତି, ତାହାହେଲେ ବହିଟିକୁ ଭଲ ଭାବେ ଉପଭୋଗ କରିଥାଆନ୍ତି । ତଥାପି ଆଉଥରେ ପଢ଼ିବାକୁ ହେବ । Faust ଏବେ ମଧ୍ୟ ଅଧାରେ ରହିଯାଇଛି । ମୁଁ ଅତି ସଚେତନତାର ସହ ଏହାକୁ ପଢ଼ିବି । ଏବେ 'Don Quixote' ପଢୁଛି । ଏହି ସର୍ବାଦୃତ ଚରିତ୍ରଟି ସହ ମୋର ଯେମିତି ଅନେକ ଦିନରୁ ପରିଚୟ । କେତେ ସହଜରେ ସେ illusion ସୃଷ୍ଟି କରିପାରେ, ତା'କୁ ନେଇ adventure ଆସନ୍ତା ଚିଠିରେ ଆହୁରି କିଛି ଅଧିକ ଲେଖିବି ।

□ □ □

ପ୍ରିୟ ବନ୍ଧୁ,

କ୍ରମଶଃ ମୁଁ ପୁଣି ସମୟ ସଚେତନ ହୋଇଯାଉଛି । ଗୋଟିଏ ଦିନ ବିତିଗଲା ପରେ ମୁଁ ପୁଣି ଯେମିତି ଲାଭକ୍ଷତି ହିସାବ କରୁଛି । କେତେଦିନ ଆଉ ଏଇମିତି ମୁଁ ଗୋଟାଏ ନିର୍ଦ୍ଦିଷ୍ଟ ପ୍ରବାହକୁ ଏଡ଼ାଇ ପାରିବାକୁ ସକ୍ଷମ ହେବି । ଏ ସମ୍ପର୍କରେ ଅଧିକାଂଶ ଭୟ ଓ ପାପମନ ମୋତେ ଭାରାକ୍ରାନ୍ତ କରି ପକାଉଛନ୍ତି । ଏଥରର ଭାଗ୍ୟ ଓ ଭଗବାନଙ୍କ ପାଖରେ ମୁଁ ଯେମିତି ସମର୍ପଣ କରି ଦେଉଛି ।

ଫେବୃୟାରୀ ୯ ତାରିଖରେ ମୋର ଉପର ଭାଇର ବିବାହ । ଏଇଥିପାଇଁ ଆମର ପରିବାରରେ କେହି ଖୁସି ଥିବା କଥା ମୁଁ ଦେଖି ପାରୁନାହିଁ । ଘଣ୍ଟାଚକଟା ଚାଲିଛି, ଆମର ଅର୍ଥନୈତିକ ଅବସ୍ଥା ଆଦୌ ସ୍ୱଚ୍ଛଳ ନୁହେଁ । ଏହି ବିବାହ ପରେ ଆମ ସମସ୍ତଙ୍କର

ପରିବର୍ତ୍ତନ ହୋଇଯିବ, ଆମେ ଭାଇମାନେ କେହି କାହାର ନୁହଁନ୍ତି ବୋଲି କାୟମନୋବାକ୍ୟରେ ଗ୍ରହଣ କରିବୁ । ଏକା ମାଆପେଟରୁ ଜନ୍ମ ନେଇ ଆମେ ପୁଣି ଆପଣା ପର କଥା ଚିନ୍ତା କରିବୁ । ବାବା ମାଆଙ୍କର ନୈତିକ ବଳ ଭାଙ୍ଗି ଯାଇଥିବା କଥା ମୋ ଆଗରେ ସେମାନେ ଅନେକ ଥର ସ୍ୱୀକାର କରିଛନ୍ତି । ସେମାନଙ୍କର ଶେଷ ସ୍ୱପ୍ନ ଥିଲି ମୁଁ, ସବୁ ଦିନ ପାଇଁ ଯେମିତି ମୁଁ ତାହା ଭାଙ୍ଗି ଦେଉଛି । ମୋତେ ବୋଝ ଭାବେ ଆଉ ସେମାନେ କେତେ ଦିନ ଗ୍ରହଣ କରିପାରିବେ ମୁଁ ଜାଣିନାହିଁ, ଏଇଠି ମୁଁ ଆଉ କେତେଦିନ ଆଶ୍ରା ପାଇବି ତାହା ମଧ୍ୟ କହିହେବ ନାହିଁ ।

ଆଗରୁ ତ ଲେଖିଥିଲି ଯେ ମୋର ଏଇଠି ଅବମାନନା କରାଯାଉଛି ବୋଲି, ସେଇଥିପାଇଁ ବେଳେବେଳେ ଇଚ୍ଛା ହୁଏ ପୁଣି ଏ ଦୌଡ଼କୁ ଫେରିଆସିବାକୁ, ନିଜକୁ ପ୍ରମାଣିତ କରିବାକୁ । କୌଣସି ପ୍ରକାର ସଫଳତା ମୋ ପାଇଁ ଯେ ଅସମ୍ଭବ ମୁଁ ବିଶ୍ୱାସ କରେ ନାହିଁ । କିନ୍ତୁ ମୌଳିକ ଭାବେ ମୁଁ ଯେମିତି ଏକ ଭିନ୍ନ ଉପାଦାନରେ ଗଢ଼ା । ଏଥରର ସବୁ Competitive ପରୀକ୍ଷାଗୁଡ଼ିକୁ ମନପ୍ରାଣ ସହ ଦେବାକୁ ଯେମିତି ପରିସ୍ଥିତି ବାଧ୍ୟ କରୁଛି, ତଥାପି ଯେମିତି ମୁଁ ସେ ବିଷୟ ଆଦୌ ବିଚାରକୁ ନେଉନାହିଁ । Prof. Sanyal ଙ୍କୁ ମନେରଖିଛି ଅଥଚ Maths. ର ପୃଷ୍ଠା ଓଲଟାଇବାକୁ ଆଦୌ ଆଗ୍ରହ ନାହିଁ । ଏଇଠି ପଢ଼ିବାକୁ ବହି ମଧ୍ୟ ନାହିଁ ।

ସବୁ କଥାକୁ ଲକ୍ଷ୍ୟ କରି ମୁଁ କୌଣସି ଉପାୟରେ ନିଜକୁ ଶାନ୍ତ କରିପାରୁନାହିଁ, ଅତୀତର ବିଫଳତା ଯେମିତି ସବୁ ରାସ୍ତା ବନ୍ଦ କରିଦେଇଛନ୍ତି । ବାରମ୍ବାର ବିଶ୍ଳେଷଣ କରି ଆମେ ଚାହିଁଛେ ଯେ ଏ ବୟସରେ କିଛି ହେଲେ ନିଜସ୍ୱ ପରିଚୟ ରହିବା ଦରକାର । ତଥାପି ମୋର କ'ଣ ନିଜସ୍ୱ କଥନ ଅଛି ଯେ ମୁଁ ସଂସାର ଭିତରେ ନିଜର ସ୍ଥିତି ଦୃଢ଼ କରିପାରିବି ?

ବନ୍ଧୁ, ବଡ଼ ହତୋତ୍ସାହ ଲାଗୁଛି ଏବେ । କେତେ ବର୍ଷଧରି ଯେଉଁପ୍ରକାର ମନସ୍ତାପ ଦେଇ ମୁଁ ଗତି କରିପାରିଛି, ଆଉ ଯେମିତି ସହିପାରୁନାହିଁ, ଆଉ ଯେମିତି ମୁଁ ନିଜକୁ ଗ୍ରହଣ କରିପାରୁନାହିଁ । ଯଦି ସବୁ ସମ୍ପର୍କ ସାମାନ୍ୟ ଅପ୍ରୀତିକର ହୋଇଯାଏ, ସବୁ ଦର୍ଶନ ସମୟର ସୁଅରେ କେବଳ ବାଲିବନ୍ଧ ହୋଇପଡ଼ିବାର ଛଳନା କରେ, ସେଇଠି ଆଉ କେଉଁ କଥା ବାକି ରହିଗଲା ଯେ ମଣିଷ ଅଣ୍ଟାଭିଡ଼ି ସଂଗ୍ରାମ କରିବ ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ :*

Don Quixote ଶେଷ ଅକ୍ଷର ପର୍ଯ୍ୟନ୍ତ ମୁଁ ଉପଭୋଗ କରୁଥିଲି । (ମୋର ବିଶ୍ୱାସ ତମେ ଏ ବହିଟି ପଢ଼ିଛ) Don Quixote ର illusion ଗୁଡ଼ିକ ଭାରି କୌତୁକପ୍ରଦ ହୋଇଛି । ସର୍ବୋପରି ତା'ର ସହଚର ହିସାବରେ Sancho Panza) ମଧ୍ୟ ଯଥେଷ୍ଟ

ହାସ୍ୟରସ ସୃଷ୍ଟି କରିପାରିଛି । Don ର ଇଚ୍ଛା ଥିଲା ଏ ପୃଥିବୀର ସର୍ବଶ୍ରେଷ୍ଠ knight-errant) ହେବାକୁ । ତାର ପ୍ରିୟତମା Dulcinca del Toboso (ଯାହାର ସ୍ଥିତି ତାହା ବ୍ୟତୀତ ଅନ୍ୟ କେହି ଜାଣିନାହାନ୍ତି) କୁ ସେ ଏ ପୃଥିବୀ ସାରା ଖୋଜି ଥିଲା । ଶେଷ ପର୍ଯ୍ୟନ୍ତ ସେ ଆପଣାର ସ୍ୱପ୍ନ ସହ ଜଡ଼ିତ ହୋଇଯାଇଛି, କିନ୍ତୁ ହାରିଯାଇଛି, ତାର ତଥାକଥିତ ପାଗଳାମୀ ତାକୁ ମୃତ୍ୟୁଶଯ୍ୟାରେ ଅତିମାତ୍ରାରେ ବାସ୍ତବ କରିଦେଇଛି । ସେ କହୁଛି, "…. I am no longer Don Quixote de la Mancha, but Alonso Quixano, the same whom the world, for his fair and honest life, was pleased to surname the Good, I am now an utter enemy to Amadi de Gaul (one legendary and great knight-errant) and all his generation. Now the senseless and profane histories of knight-errantry are to me disgusting and odious; I now acknowledge my folly, and perceive the danger into which I was led by reading them; and now, through the memory of God, and my own dearbought experience, I abhor them."

J.B. Priestley ମତ ଦେଇ କହିଛନ୍ତି ଯେ ଜୀବନର ଅନ୍ତିମ କାଳରେ ଡନ୍‌କୁଷ୍ଟି (ବୋଧେ ଠିକ୍ ଓଡ଼ିଆ ଅନୁବାଦ ହେବନାହିଁ) ର ମସ୍ତିଷ୍କ ସୁସ୍ଥ ହୋଇ ପଡ଼ିବାଟା ଉଚିତ ହୋଇଛି ।

"A deeper interpretation, caught in the sad undertones of the narrative, tells us that he begins to say good-bye to his illusions because he is aware of the approach of Death, the great reality, the truimphant enemy of all illusion."

ତଥାପି ଯେମିତି Don Quixoteର ପାଗଳାମୀକୁ ମୁଁ illusion କହିପାରୁନାହିଁ । ତାହାର କଥା, ଆମ ସମସ୍ତଙ୍କର ନିଜସ୍ୱ ସଂଳାପ । ତା' ପାଇଁ windmill ରାକ୍ଷସ ପାଲଟିଯିବା, Dulcinea ଗୋଟାଏ ଗାଁ କନିଆ ହୋଇପଡ଼ିବା ବା ଗୋଟାଏ inn କୁ castle ଭାବିବା ଏକାବେଳକେ ଯଥାର୍ଥ । ପ୍ରତିକଥାରେ ସେ enchanted ହୋଇଯିବା କଥା ଅନୁଭବ କରିଛି । ତା'ର ତଥାକଥିତ illusion କୁ ନେଇ ସେ ନିଜର ସାମ୍ରାଜ୍ୟ ଗଢ଼ିପାରିଛି ।

ଏ ବହିର introduction ରେ ଲେଖାଯାଇଛି, "What is left for man to hope for, to live by ? The idealist is inevitably defeated by unchangeable reality and human nature. The best we have is the philosophy Don Quixote had rejected as the negation of our human aspiration.... This is our fate and we must accept it. Cervantes, though he sympathizes with Don Quixote, in whom he has put much of himself, consistently mocks and rejects him consistently appeals from books and illusions

to life. Our greatness is to know ourselves, to know our own defeat and to smile."

*ନୋଟ୍ :* ତମେ କ'ଣ ଭାବୁଛ ମୋର Don Quixote ସହ କିଛି ସାମଞ୍ଜସ୍ୟ ରହିଛି ବୋଲି ? ତଥାପି ମୋର ବିଶ୍ୱାସ ଯେ ଭଲ ପାଉଥିବା ମଣିଷଟି ଆଗରେ ଯେମିତି ମୁଁ confess କଲି, ଏ ପୃଥିବୀରେ କେବଳ ସେହି କରିପାରିଥାଆନ୍ତା ।

▯ ▯ ▯

ପ୍ରିୟ ବନ୍ଧୁ,

ବେଳେବେଳେ ଏମିତି ଶୂନ୍ୟ ହୋଇଯିବାକୁ ପଡ଼େ । କେଜାଣି କାହିଁକି ଗତ କେତେ ଦିନ ଧରି ତମକୁ ମୁଁ ଲେଖିବାକୁ ଚେଷ୍ଟା କରିଛି । କେବଳ ଶେଷରେ ନିଜର ପରାଜୟରେ ଲଜ୍ଜିତ ହୋଇଛି । ଗୋଟିଏ ବିବାହର ସମସ୍ତ ପ୍ରଥା ଓ ପ୍ରଣାଳୀକୁ ମୁଁ ବର୍ଣ୍ଣନା କରି ତମକୁ ଅଯଥା ବ୍ୟସ୍ତ କରିବି ନାହିଁ । ଏ ବିବାହ ଅମ୍ଳାନର ବିବାହ ସହ କିଛି ହେଲେ ସାମଞ୍ଜସ୍ୟ ନାହିଁ । ତଥାପି ଏହାକୁ ଅସାଧାରଣ କହିହେବ ନାହିଁ । ଟିକିଏ ଦୂରରୁ ସମସ୍ତ  ହସକୌତୁକ, ଜନସମାଗମ ଓ ଜଡ଼ିତ ହୋଇଯିବାର ଆନନ୍ଦ ଲକ୍ଷ୍ୟ କରୁଥିଲି । ଅଗ୍ନିକୁ ସାକ୍ଷୀ ରଖି ମଣିଷ ସଂସାର ପାତିବାର ସ୍ୱର୍ଗୀୟ ବାସନା କଥା ଅନୁଭବ କରୁଥିଲି । ଏଇଠି ସ୍ଥାନ ନିର୍ଦ୍ଧାରଣ କରିବା ଭାରି ଜଟିଳ, ନିଜକୁ ଆବିଷ୍କାର କରିବା ଅସମ୍ଭବ ।

ଗତ କେତେ ଦିନ ସମୟ ମୋତେ ଯନ୍ତ୍ରଣା ଦେଇନାହିଁ । ଅତି ଅହେତୁକ ଭାବରେ ଫାଲଗୁନ ମାସରେ ହାଡ଼ଭଙ୍ଗା ଶୀତ ପଡ଼ିଛି । ତେଣୁ ରାତିଗୁଡ଼ିକରେ ନିଜକୁ ସଙ୍କୁଚିତ କରି ଶୋଇ ଯାଇହୁଏ । ତମେ ତ ଜାଣିଥିବ ଏ ରାତିଗୁଡ଼ିକରେ ମୋର ନିର୍ଦ୍ଦିଷ୍ଟ ଜଡ଼ତାର ମୃତ୍ୟୁ ହୁଏ । ମହାଜାଗତିକ ହେଉ ବା ମହାଆସୁରିକ ହେଉ ମୁଁ ସଚେତନ ହୋଇଯାଏ । ସେଇ ସମୟରେ ମୁଁ କିଛି ଲେଖିଥାଏ । ଏ ସମୟ ଭିତରେ ଆଦୌ କିଛି ପଢ଼ି ପାରିନାହିଁ । RD condensed Book ଟିଏ ପଢ଼ିଛି । Secret and Stories of War ପଢୁଛି । Russel ଖୋଲିନାହିଁ ।

ତମର ତଥାକଥିତ ବ୍ୟର୍ଥତା ମୋତେ ମଧ୍ୟ ଆକ୍ରାନ୍ତ କରିଛି । ତମେ ନିଜର ସର୍ବଶ୍ରେଷ୍ଠ  ସାଫଲ୍ୟ ଆଶା କରୁଥିଲାବେଳେ ଯେମିତି ବଜ୍ରପାତ ହେଲା । ଆମଦେଇ ଏସବୁ ହେବନାହିଁ । ଏକ ସଂକୀର୍ଣ୍ଣ ପରିସର ଆମକୁ ବାରମ୍ବାର ହାତଠାରି ଡାକିଛି । କିନ୍ତୁ ଟିକିଏ ଭାବି  ଦେଖିଲେ ଆମେ ସବୁବେଳେ ଚିର ନୂତନ ବସ୍ତୁର ସନ୍ଧାନରେ ଯେପରି ଅଛୁ । ସେଇଥିପାଇଁ ଗୋଟାଏ ଆବିଷ୍କାରକର ମନନେଇ ଆମେ ବିଶାଳ ପୃଥିବୀ ସହ ସମ୍ପର୍କ ଯୋଡ଼ିବାକୁ ଚାହୁଁଛେ ।

ତମେ ପୁଣି ଲେଖିବ ସେଇ ନୂଆ ମଣିଷ, ନୂଆ ପରିବେଶ କଥା । ଆମର ଆବିଷ୍କାରରେ ପରାଜୟ ନାହିଁ । ତମେ ମୋତେ ବୁଝୁଥିବ ।

ମୋର ନୀଳଗିରି ଯିବା କଥା ନିଶ୍ଚିତ । କିନ୍ତୁ କେବେ ସମ୍ଭବ ହେବ ଶୀଘ୍ର ଲେଖୁଛି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

୧୯୭୮ ଆମ ପାଇଁ ଘଟଣାବହୁଳ ବା ଉଲ୍ଲେଖନୀୟ ହେବ କି ନା ସନ୍ଦେହ, ତଥାପି ଅମ୍ଳାନ ପାଇଁ ଏହା ନିଶ୍ଚିତ ରୂପେ ଜଟିଳ ଓ ଗୁରୁତ୍ୱପୂର୍ଣ୍ଣ । ମୁଁ ତା'କୁ 'ରୁବାୟତ', ନବବର୍ଷର ଉପହାର ଭାବରେ ଦେଇଥିଲି ଏବଂ ମୋ ପାଇଁ ଅଦରକାରୀ ଥିବା 'Importance of Living' ମଧ୍ୟ ତାର ଲାଇବ୍ରେରୀକୁ ପ୍ରଦାନ କଲି । କିନ୍ତୁ ୧୯୭୮ ପାଇଁ ତାହାର 'resolutions' ଠିକ୍ ଓଲଟା ଥିଲା ଓ ଜୀବନପ୍ରଣାଳୀ ମଧ୍ୟ ଅନୁରୂପ ଭାବରେ ସେ ବଦଳାଇ ଦେବାକୁ ଆରମ୍ଭ କରିଛି ।

ଅମ୍ଳାନ ଆଜି ପୃଥବୀକୁ ଯେ ଘୃଣାଚକ୍ଷୁରେ ଦେଖୁଛି ବା ବିମୁଖ ହୋଇପଡୁଛି, ତାହା ଅତି ସ୍ୱାଭାବିକ କଥା । ଗତ ସାତବର୍ଷର ଯୌବନ ଯେମିତି କଣ୍ଟକିତ ପଥ ଦେଇ ରକ୍ତାକ୍ତ ହୋଇପଡ଼ିଛି । ଯେମିତି ଏ ପୃଥିବୀର ସମଗ୍ର ତିକ୍ତତା ତା' ଉପରେ ଅଜାଡ଼ି ହୋଇପଡ଼ିଛି । ୧୯୭୦ ମସିହାରେ ଏ ପୃଥିବୀକୁ ଅତି ଅଚିହ୍ନା ଭାବରେ ଆବିଷ୍କାର କରୁଥିଲା । କ୍ଷଣିକ ଉତ୍ତେଜନାରେ ବନ୍ଧୁତା ଓ ଭଲ ପାଇବାକୁ ସେ ସବୁକିଛି ବୋଲି ଗ୍ରହଣ କରୁଥିଲା । ଭାବୁଥିଲା ଯେ ଏକ ଯନ୍ତ୍ରଣାଦଗ୍ଧ ମଣିଷ ଏ ପୃଥିବୀରେ ହିଁ ଅତିମାନବ । ସବୁ ନୈରାଶ୍ୟ ସତ୍ତ୍ୱେ ମଣିଷପଣିଆ ହାର ମାନୁ ନଥିବା ଏକ ନିରାଟ ସତ । ସେ ସ୍ୱୀକାର କରୁଥିଲା ଯେ ବଞ୍ଚିବା ମାନେ ଆପଣା ପ୍ରତି ବଶ୍ୟତା ସ୍ୱୀକାର କରିବା, ଆପଣାର ନିଜତ୍ୱକୁ ଭାରି ନିବିଡ଼ ଭାବେ ଭଲ ପାଇବା । ସେ କିନ୍ତୁ ପଥଭ୍ରାନ୍ତ ହୋଇ ଯାଇଥିଲା ।

'୭୦ର ବାଟ ହୁଡ଼ିଥିବା ପଥିକ ଆଜି ପୁଣି' ୭୮ରେ ତା'ର ବାଟ ଚିହ୍ନିପାରିଛି । ଆଜି ତାର ଜ୍ଞାନୋଦୟ ହୋଇଛି । ପୁଣିଥରେ ଝାଡ଼ିଝୁଡ଼ି ହୋଇ ସେ ଜୀବନକୁ ଆରମ୍ଭ କରୁଛି । ଯେଉଁମାନେ ତାହାର ଜୀବନର ସମୀକରଣଗୁଡ଼ିକୁ ସମାଧାନ କରିପାରୁଥିଲେ, ସେମାନେ ତା' ପାଇଁ ଆଜି ମୃତ । ଯେଉଁ aesthetics ତାହାର ବ୍ୟକ୍ତିତ୍ୱର ମାନ ନିର୍ଦ୍ଧାରଣ କରୁଥିଲା, ତାହା ମଧ୍ୟ ଅର୍ଥହୀନ । ଅମ୍ଳାନ ଆଜି ପୁଣିଥରେ ଗୋଟାପଣେ ପୃଥିବୀର ମଣିଷ । ଏକ ନଗ୍ନ ଦୃଢ଼ତା ନେଇ ଆଜି ସେ ପୁଣି ଜାହିର କରିବା ପାଇଁ ଉଦ୍ୟତ ।

(ସେ କ'ଣ କରୁଛି, ମୁଁ ନକହି ତମେ ବରଂ ଜାଣିବାକୁ ଚାହିଁବା ଠିକ୍ ହେବ ।) ଆଜି ତା' ପାଇଁ ବଞ୍ଚିବାଟା ବିଷମୟ ନୁହେଁ ବା ବ୍ୟର୍ଥତା ତା'ର ପୃଥିବୀକୁ ଉଜାଡ଼ି ଦେଇଥିଲେ ମଧ୍ୟ ତା'କୁ ଭାଙ୍ଗିପାରିନାହିଁ । ଯଦି ତା'ର ଦାରିଦ୍ର୍ୟ ଦୁନିଆ ଆଖିରେ ଉପହାସ ସୃଷ୍ଟି କରିଥାଏ, ଯଦି ସ୍ମିତା ତା'ର ପୌରୁଷତ୍ୱକୁ ଅବମାନନା କରିଥାଏ ସେ ଯେ କୌଣସି ଉପାୟରେ ସେସବୁର ପ୍ରତିକାର କରିବା ବୋଧେ ବାସ୍ତବ ସଂଗାମ ।

ଅମ୍ଳାନ ପାଇଁ ମୋର ସହାନୁଭୂତି ବା ଦୁଃଖ ନାହିଁ । ମୁଁ ତା'କୁ ଅତି ଏକାନ୍ତ ଭାବେ ଅନୁଭବ କରିପାରିଛି । ସମ୍ଭବତଃ ଆବେଗରେ ଯାହାକିଛି ମୁଁ ତାହା ପାଖକୁ ଲେଖିଥିଲି । ସେସବୁ ଲେଖିପାରିବି ନାହିଁ । ମୋର ଯାହା କିଛି କର୍ତ୍ତବ୍ୟବୋଧ ଓ ଅଧିକାର ଥିଲା, ତାହା ପୁଣିଥରେ ପ୍ରମାଣିତ କରିବାକୁ ଯିବିନାହିଁ । ଆମେ ସମସ୍ତେ ଯେ ଆପଣା ଆପଣା ପାଇଁ ବଞ୍ଚୁ, ଏହା ଜାଣିସାରିଲା ପରେ ସେଥିପ୍ରତି ବୀତସ୍ପୃହ ହେବା ଏକ ମସ୍ତବଡ଼ ନିଷ୍ଠୁରତା ହୋଇଯିବ । ବୌଦ୍ଧିକ ସ୍ତରରେ ମୁଁ ବାରମ୍ବାର ତା' ସହ ସାଲିସ୍ କରିବି । କାରଣ ମୋ ପୃଥିବୀରେ ଅମ୍ଳାନ ବୋଲି ଗୋଟିଏ ମୋର ବାଛିବା ପାଇଁ ସୁଯୋଗ ହିଁ ନାହିଁ ।

ଗୋଧୂଳିତ ସନ୍ଧ୍ୟାର ମଧ୍ୟଭାଗରେ ଯେତେବେଳେ ସବୁ ରଙ୍ଗ ଫିକା ପଡ଼ିଯାଏ, ସେତେବେଳେ ମୋର ସଚେତନତାର ଏକ ସଚେତନ ମୃତ୍ୟୁ ହୁଏ । ତମେ ବୋଧେ ଜାଣିନାହଁ ଯେ ମୁଁ ଏଇସବୁ ମୁହୂର୍ତ୍ତମାନଙ୍କରେ ଉନ୍ମାଦ ହୋଇଯାଏ । ଗୋଟାଏ ଦୋମୁହାଁ ଏଣ୍ଡୁଅ ଭଳି ମୁଁ ଦୁଇ ଦିଗକୁ ଓଟାରି ହୋଇଯାଏ । ମୋ ନିଜର ଅସ୍ଥିର ପୃଥିବୀ ଓ ଦୂର ଦିଗ୍‌ବଳୟର ପ୍ରଶାନ୍ତ ଓ ମୁଗ୍ଧ 'ମହାଜଗତ' ମଧ୍ୟରେ ମୁଁ ଯେମିତି ଫାଡ଼ି ହୋଇଯାଏ । କେବେ କେମିତି ସୌଭାଗ୍ୟ ଥିଲେ ମୁଁ ମୋ ଦୁର୍ଗର ପାଚେରୀ ଡେଇଁ ସେଆଡ଼କୁ ଡେଇଁଯାଏ । ସଚେତନତାର ଏଇ ସଂଗ୍ରାମଟିକୁ ବେଳେବେଳେ ହିଁ ବଞ୍ଚି ରହିବାର ସ୍ୱାଦ ବୋଲି ଗ୍ରହଣ କରିଥାଏ । ଯେଉଁ ମଣିଷର ପାଦତଳୁ ସ୍ଥିତିର ଇଲାକାଟି ଖସି ପଡ଼ି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ, ସେ ବୋଧେ ଅପରପାର୍ଶ୍ୱର ଭୌତିକ ଓ ମହାଜାଗତିକ ଅନୁଭୂତିରେ ଆପଣାର ଧ୍ୱସ୍ତବିଧ୍ୱସ୍ତ ବ୍ୟକ୍ତିତ୍ୱ ଖୋଜିଥାଏ । ସେଇଠି ହଜିଯାଇହୁଏ, ଭୁଲିଯାଇହୁଏ, କିନ୍ତୁ ଭ୍ରମ ତୁଟିଯାଏ ନାହିଁ । ଯେତେବେଳେ ଭ୍ରମ ଭାଙ୍ଗିଥାଏ, ପରାସ୍ତ ସୈନିକର ଗ୍ଳାନି ନେଇ ପୁଣି ନିଜର ଭଗ୍ନ ପୃଥିବୀକୁ ଅଭିଶପ୍ତ ଭଳି ଫେରିବାକୁ ହୁଏ ।

ଏଭଳି ଏକ ଅଦ୍ଭୁତ ପରିସ୍ଥିତିରେ, ଏଭଳି ଏକ ବ୍ରାହ୍ମ ମୁହୂର୍ତ୍ତରେ ସଚେତନତା ଯେ ମୋ ଭଳି ମଣିଷକୁ କିଛି ନା କିଛି ଅର୍ଥ ଦେଇଥାଏ ଓ ଏକ ରହସ୍ୟାବୃତ ଜୀବନରେ ଆଲୋକପାତ କରିଥାଏ ମୁଁ ବିଶ୍ୱାସ କରିପାରେ ନାହିଁ । ସବୁ କିଛିର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ସଙ୍ଗୀତ ମୋ ଭିତରେ ଯୌବନ ଓ ଯନ୍ତ୍ରଣାର ଏକ ଅସ୍ପଷ୍ଟ ତରଙ୍ଗକୁ ବିଲୀନ କରିଦିଏ । ମୁଁ ମୁକ୍ତ ହୋଇଯାଏ । ମୁଁ କାହା ସହ ମିଶିଯାଏ, ମୁଁ ମରିଯାଇଥାଏ ।

ଅଚ୍ୟୁତ

☐ ☐ ☐

ପ୍ରିୟ ବନ୍ଧୁ,

ମୁଁ ଚିଠି ଲେଖି ପାରୁନଥିବାର ଯନ୍ତ୍ରଣା ତମେ ଅନୁଭବ କରିପାରୁଥିବ ବୋଲି ବିଶ୍ୱାସ କରୁଛି । ଯେତେବେଳେ ଯାହା କିଛି ମନକୁ ଆସୁଛି ଲେଖିବା ପରିବର୍ତ୍ତେ ମୁଁ ସେସବୁକୁ ଯେମିତି ମୋର ବିଚାରର ନିକିତିରେ ହିଁ ଓଜନ କରିବସୁଛି ।

ଏଇ ଶୀତ କଥା ମୁଁ କେତେ ଉପାୟରେ ଅଙ୍ଗେ ନିଭାଇଛି । ହେଲେ ଧାଡ଼ିଏ ଲେଖିବାର ସଦ୍‌ଚିନ୍ତା ଉଦ୍ରେକ ହେଉନାହିଁ । ବିଶ୍ୱାସ କର ବା ନକର, ଝର୍କାର ଫାଙ୍କ ଦେଇ ଆସୁଥିବା ଶୀତୁଆ ପବନ ମୋର ଅନାବୃତ ଦେହରେ ଯେମିତି କିଛି ହେଲେ ପ୍ରତିକ୍ରିୟା ସୃଷ୍ଟି କରୁନାହିଁ । ଅଥଚ ଏ ଘରଭିତରେ ମୋର ସ୍ଥିତି ମୋତେ ସାଇବେରିଆର ନିର୍ବାସନ ଦୁଃଖ ଲଦି ଦେଉଛି । ଯଦି କୌଣସି ଏକ ଶୀତକାଳକୁ cold cream ବା vicks, ନତୁବା ରେଜେଇ ବା କାମ୍ବୁ୍ୟ ରେ ଅତିବାହିତ କରାଯାଇପାରୁ ଥାଆନ୍ତା, ତେବେ ତ ଦୁଃଖ ନଥିଲା । ଏଇଠି ସୋଫା ଉପରେ ଧୂଳିର ଏକ ମୋଟା ଆସ୍ତରଣ ଘର ଭିତରେ ବିକ୍ଷିପ୍ତ ଆସକ୍ତି ଯେମିତି ଜୀବନକୁ ଇତସ୍ତତଃ ଫୋପାଡ଼ି ଦେଇଛନ୍ତି ।

ଏ ଘରେ ଅନେକ ଦିନ ଧରି ମୋର ବନ୍ଧୁତା ହାସଲ କରିଥିବା ବୁଢ଼ିଆଣୀମାନେ ଯେମିତି ଭାରି ନିସ୍ପୃହ ହୋଇ ଯାଇଛନ୍ତି । ଏଠାରେ ଆସ୍ଥାନ ସୁଦୃଢ଼ କରିଥିବା ଝିଟିପିଟିମାନେ ଯେମିତି hibernation ଦେଇ କାଳ କାଟୁଛନ୍ତି ।

× × × ×

ଏବେ ପୃଥିବୀ ଭାରି ସଙ୍କୁଚିତ ହୋଇଗଲା ଭଳି ଲାଗୁଛି । ମୋର ଆଶଙ୍କାମୟ ମୁହୂର୍ତ୍ତଗୁଡ଼ିକରେ ମୁଁ ବୋଧେ ଭାବି ନଥିଲି ଯେ ଏଇଠି ମୋତେ ହିଁ ଅତି ନିଷ୍ଠୁର ଭାବେ ନିର୍ଜନତା ଭୋଗିବାକୁ ପଡ଼ିବ ବୋଲି । ଯଦି ମୁଁ ମୋର ସ୍ଥିତି ଜାହିର କରିଥାଆନ୍ତି, ତେବେ ତ କିଛି ଭାବିବାର ନଥିଲା । କିନ୍ତୁ ନିଜର ସ୍ୱପ୍ନ, ଭଲ ପାଇବା ଓ ବନ୍ଧୁତାର ଅସଂଖ୍ୟ ଝଙ୍କାରରେ ଯେବେ କିଛିଟା ନଗ୍ନତା ମିଶିଯାଏ, ତେବେ ମୋର ସବୁ ଶକ୍ତି ନିଃଶେଷ ହୋଇ ଯାଇଥିବା ଭଳି ଲାଗେ । ମୁଁ ଜାଣେ ଏ ପୃଥିବୀରେ ମୋର ଭାର ବୋହିବା ପାଇଁ ସମସ୍ତେ ନାରାଜ । ମୁଁ ଆଶ୍ଚର୍ଯ୍ୟ ହେବିନାହିଁ ଯଦି ତମେ କୁହ ଯେ ମୋ ସହ ସମ୍ପର୍କ ଯୋଡ଼ି ତମେ ଆଜି ଭୀଷଣ କ୍ଲାନ୍ତ, କାରଣ ମୁଁ ଏତେ ଦିନ ଧରି ତମକୁ ବିଭ୍ରାନ୍ତ କରିଆସିଛି ।

ବନ୍ଧୁ ! ସତରେ ତମେ କ'ଣ ଭାବୁଛ ଯେ ମୋ ସହ ବନ୍ଧୁତା ବାନ୍ଧି ତମେ ଆଜି ଭାରି ଦୁଃଖ ପାଉଛ ? ସତରେ ତମେ ଆହୁରି ଭଲରେ ଥାଆନ୍ତ, ଯଦି ମୁଁ ତମକୁ ଜୀବନର ଚୌମୁହାଣୀଗୁଡ଼ିକରେ ସାହଚର୍ଯ୍ୟ ଦେଇ ନଥାଆନ୍ତି ? ତମେ ଏବିଷୟରେ ଅମ୍ଳାନ ଭଳି ସ୍ୱଚ୍ଛ ହୋଇଯିବା ଠିକ୍ ହେବ ବୋଲି ମୁଁ ମନେକରେ । ତାହାର ଦୁର୍ଗତିଗୁଡ଼ିକ ପାଇଁ ମୁଁ

ମୋ ତରଫରୁ ଦୋଷ ସ୍ୱୀକାର କରିଛି । (ତମ ପାଇଁ ମଧ୍ୟ ତାହା କରିପାରିବି ।) ତଥାପି ଏଇଭଳି ଏକ ମ୍ଳାନ ସନ୍ଧ୍ୟାରେ ସେ ହିଁ ଉପଲବ୍ଧି କରିଛି ଯେ ମୁଁ ବୋଧେ ତା' ଜୀବନରେ ନଆସିଥିଲେ ସେ ଆଜି ଆହୁରି ଭଲ ମଣିଷ ହୋଇ ପାରିଥାଆନ୍ତା, ଅନ୍ତତଃ ଏ ସମାଜ ଆଖିରେ ଏକ ବ୍ୟର୍ଥ ପୁରୁଷ ବୋଲି ଗଣା ହୋଇ ନଥାନ୍ତା ।

ମୋର ଅତିମାନସ ପୃଥିବୀରେ ଅମ୍ଳାନ ଅଦ୍ୱିତୀୟ ଭାବେ ଭଲ ମଣିଷ । ତାହା ପାଇଁ ଅର୍ଥହୀନ ଓ ଅନାବଶ୍ୟକ ହୋଇଗଲେ ମଧ୍ୟ ଏକ ସଚେତନ ମଣିଷ ଭଳି ମୁଁ ତାକୁ ଆହୁରି ଭଲ ପାଇପାରିବି । ତାହାର ଦୁର୍ଭାଗ୍ୟଜନକ ପରିସ୍ଥିତିଗୁଡ଼ିକୁ ମୁଁ ଆହୁରି ଭଲଭାବେ ଅନୁଭବ କରିପାରିବି । ଆଜି ନିର୍ବିକାର ଭାବରେ ମୁଁ ତାହାର ପୃଥିବୀରୁ ବିଦାୟ ନେଇଛି । ତା' ପାଇଁ ଆଜି ମୁଁ ଅତି ସରଳ ଭାବେ ହଜିଯାଇଛି ।

କେବେ କେମିତି ପୁରୁଣା ଦିନଗୁଡ଼ିକର ସ୍ୱପ୍ନ ଓ ଭଲ ପାଇବା ମୋର ମନେପଡ଼ିଲେ ନିଶ୍ଚୟ ଅଥୟ ଲାଗିବ । ପ୍ରାଣ ନିଶ୍ଚୟ ବ୍ୟଥା ପାଇବ । ତଥାପି ମୁଁ ହିଁ ମୁଁ । ମୁଁ ତମମାନଙ୍କୁ ହରାଇବସିଲେ ବୋଧେ ଆହୁରି ଭଲ ପାଇପାରିବି । ପୃଥିବୀରେ ନିଶ୍ଚିହ୍ନ ହୋଇଗଲାବେଳେ ହିଁ ମୁଁ ମୋର ଭଲ ପାଇବାର ସାର୍ଥକତା ଉପଲବ୍ଧି କରିପାରିବି । ଏଇଥିପାଇଁ ତମଠାରୁ ମୁଁ ବୋଧେ ହତାଦର ସବୁଠାରୁ ବେଶୀ ଆଶା କରିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଜି ସକାଳୁ ଆକାଶ ମେଘାବୃତ ହୋଇଯାଇଛି । କାଲି ସନ୍ଧ୍ୟାରେ ବର୍ଷା ହୋଇଥିଲା । ଫଗୁଣର ସମସ୍ତ ରୋମାନ୍‌ସକୁ ହତ୍ୟାକରି ମେଘ ଯେମିତି ନିଜକୁ ଜାହିର୍ କରିଥିଲା । ମୁଁ ହୁଏତ ଆପଣାର ଇଚ୍ଛା ବିରୁଦ୍ଧରେ ଭିଜିଥିଲି, ଆପଣାର ଏ କଳୁଷିତ ମନପ୍ରାଣକୁ ଧୋଇ ଦେବାକୁ ଚାହିଁ ନଥିଲି । ତମେ ଏବେ ଆଶ୍ଚର୍ଯ୍ୟ ହେଉଥିବ, ଯଦି ମୁଁ ସ୍ୱୀକାର କରେ ଯେ ଏକ ଅଭିନବ ଆବିଳତା ମୋତେ ଆକୃଷ୍ଟ କରିଛି ବୋଲି । କଥାକଥାକେ ମୁଁ ଭୀଷଣ ନଗ୍ନ ହୋଇଯାଉଛି, ସବୁଠି ମୁଁ ଯେମିତି ବର୍ତ୍ତୁଳାକାର ବକ୍ରରେଖା ଖୋଜିବୁଲୁଛି । ଦିଗ୍‌ବଳୟ ସେପାଖେ ଯଦି ମେଞ୍ଚାଏ ବାଦଲ୍ ଗୋଟାଏ ଅନିର୍ଦ୍ଦିଷ୍ଟ ରୂପରେଖ ନେଉଛି, ମୁଁ ଅତି ଅହେତୁକ ଭାବେ ଉତ୍ତେଜିତ ହୋଇପଡୁଛି । ମୋର ବଦ୍ଧମୂଳ ଧାରଣା ଥିଲା ଯେ ମଣିଷର ଦୁର୍ବଳତା ଗୋଟାଏ ପ୍ରକାରର kinetics, ଗୋଟାଏ ଅତି ଛନ୍ଦମୟ ପ୍ରବାହ । ଆଜି ମୁଁ ସେହି ଦୁର୍ବଳତାର ଶିକାର ହୋଇଯାଇ ମଧ୍ୟ ଯେମିତି ଭାରି ବେସୁରା ହୋଇପଡ଼ିଛି । ମୁଁ ଭାରି ଅସହାୟ ଭାବେ ଦ୍ୱନ୍ଦରେ ପଡ଼ିଯାଇଛି ।

ଫାଲ୍‌ଗୁନର ସମସ୍ତ ରଙ୍ଗକୁ ଘୋଡ଼ାଇ ଦେଇ ବର୍ଷା ହେବାଟାରେ ଆଶ୍ଚର୍ଯ୍ୟର କଥା ଅଛି ନା ନାହିଁ ମୁଁ ଜାଣିନାହିଁ । କାଲି ମୁଁ ପ୍ରଥମଥର ପାଇଁ ଏକ ଭୟାନକ ପରିସ୍ଥିତିରେ ପଡ଼ିଯାଇଥିବା କଥା ଅନୁଭବ କରିଥିଲି । ମେଘ ଯେଉଁଦିନ ଡାଙ୍କୁ ନା କାହିଁକି, ଆମେ ସବୁ ଏକାଠି ଥିଲେ ଭାରି ଉତ୍‌ଫୁଲ୍ଲିତ ହୋଇଯାଉଥିଲେ । ଭିଜିବା ଛଡ଼ା ଆମ ପରସ୍ପରର ଅତି ସୂକ୍ଷ୍ମତମ ଚେତନା ପ୍ରବାହ ଅତି ସାବଲୀଳ ଭାବେ ପରିପ୍ରକାଶ ଘଟୁଥିଲା । ଆମେ ସବୁ ଏବେ ଯେମିତି ଅତି ଅସଂଲଗ୍ନ ଭାବେ କେଉଁଠି ଲାଖିଯାଇଛେ । ତମେ ଯେମିତି ମଳୟର ମାଦକତା ଉପଲବ୍‌ଧି କରୁଛ, ଅମ୍ଲାନ ସଦ୍ୟ ବିବାହ କରି ମଧ୍ୟ ତା'ର କାଣିଚାଏ ଅନୁଭବ କରିପାରୁନାହିଁ । ଅମ୍ଲାନ ଜୀବନଯୁଦ୍ଧକୁ ଯେଉଁଭଳି ନେଉଛି ମୁଁ ତା'ର ଆଦିଅନ୍ତ ପାଉନାହିଁ । ତମେ ଯେଉଁ ଏକାକୀବୋଧ କଥା ଲେଖିଥିଲ, ମୁଁ ଯେମିତି ଅନେକ ଦିନ ପରେ ନୂଆ କରି ତାହା ବୁଝିପାରୁଛି ।

କାଲି ସନ୍ଧ୍ୟାରେ ଓଦାଳିଆ ଅନୁଭୂତି ମୋ ପାଇଁ ତ ପ୍ରଥମ ନଥିଲା, ମୋର ଅତିଶୟ ବିବ୍ରତ ଚିନ୍ତାଧାରା ମଧ୍ୟ ନୂଆ ନଥିଲା । ତଥାପି ଯେମିତି ମୁଁ ଭାରି ଡରିଯାଇଥିଲି । ବର୍ଷା ମୁହଁରୁ ରକ୍ଷା ପାଇବା ପାଇଁ ମୁଁ ଯେମିତି ପଳାୟନ କରୁଥିଲି । ଏକ ନିର୍ଦ୍ଦିଷ୍ଟ ଚକ୍ରବ୍ୟୁହ ଭିତରୁ ନିଜକୁ ବଞ୍ଚାଇବା ପାଇଁ ମୁଁ ଜୀବନରେ ପ୍ରଥମବାର ଚେଷ୍ଟା କରୁଥିଲି । ମୋର ବଞ୍ଚିରହିବା ଯେ ନିତାନ୍ତ ଦରକାର, ଏହି କଥା ମୁଁ ବାରମ୍ବାର ସ୍ମରଣ କରୁଥିଲି ।

ହଁ, ଆଜି ମୋ ପାଇଁ ଦୁର୍ବଳ ହୋଇଯିବା ଏକ ଶକ୍ତି ନୁହେଁ, ଏକାକୀ ହୋଇପଡ଼ିବାଟା କିଛି ନୂଆଚେତନା ନୁହେଁ । ଆଜି ଭଲ ପାଇବାର କଥା ମୁଁ ଅନୁଭବ କରିପାରୁନାହିଁ । ନିଜକୁ ମୁଁ ଯେମିତି ନିରାପଦ ରଖିବା ପାଇଁ ଚାହୁଁଛି । ଏହି ମୁହୂର୍ତ୍ତରେ ମୋର ଅନନ୍ୟସାଧାରଣ ହେବାର ଅଭିଳାଷ ସମାଧି ଲଭୁଛି ।

ଆକାଶ ଆଜି ସକାଳୁ ମେଘାଛନ୍ନ ହୋଇଯାଇଛି । କେତେ ବଡ଼ ନିରାଟ ବାସ୍ତବତା ଏହା ! ମୁଁ ଚରିତ୍ରହୀନ ହୋଇଯାଇଛି । କେତେ କରୁଣ କଥା ସତରେ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ରାଉରକେଲାରୁ ଫେରି ତମ ଚିଠି ପାଇଲି । ଅନେକବାର ତ କହିଛି ଆବେଗରେ ଲେଖିଲେ ତମ ଭାବଧାରା ସହ ଏକାକାର ହୋଇଯାଇହୁଏ, ତମକୁ ଗଭୀର ଭାବେ ଅନୁଭବ କରିହୁଏ ।

ହଠାତ୍ ଯେମିତି ତମେ ଝର୍କା ଖୋଲି ଦେଲ, ବସନ୍ତ ଆସିଯାଇଛି ବୋଲି ଅଙ୍ଗେ ଅଙ୍ଗେ ଉପଲବ୍‌ଧି କଲ; ଏଥିରେ ତମର ଜଡ଼ତା ଯେ କଟିଯାଇନାହିଁ ବରଂ ମୋର

ପାଷାଣ ପ୍ରତିମା ଦେହରେ ପ୍ରାଣ ସଞ୍ଚାର ହୋଇଛି । ବାଲେଶ୍ୱରରେ ଥାଇ ତମେ ମୋତେ ଶିଶିରକଣାଗୁଡ଼ିକ ସହ ପରିଚିତ କରାଇ ଦେଇଥିଲ, ଆଉ ଆଜି ମୁଁ ଯେମିତି ତମ ଚିଠିରୁ ସଂଚିତ ଫେରିପାଉଛି ।

ଏଇଠି କେତେ ଶୀଘ୍ର ଶୀତ ସରିଗଲା ଓ ଖରାତାତିର ଆରମ୍ଭ ହେଲା ମୁଁ ଜାଣିପାରିନାହିଁ । ମୋ ଅଜାଣତରେ ଏଇଠି ମଳୟ ହୁଏତ ବହୁଛି, ହୁଏତ ତାହାରି ମୃଦୁ ଆଘାତରେ ମନ ମତୁଆଲା ହେଉଛି । ମୋ ଅଜାଣତରେ ଏଇଠି ଆମ୍ବଗଛରେ ବଉଳ ଧରିଲା, ମୋ ଅଗୋଚରରେ ପତ୍ରସବୁ ବୃନ୍ତଚ୍ୟୁତ ହୋଇଗଲେ । ମୁଁ ମଧ୍ୟ ଜାଣି ନାହିଁ ଶୀତ ପାଇଁ କିଏ କେତେ ଏଲିଜି ଲେଖିଲେ, କେହି ପ୍ରେମିକ ବସନ୍ତ ପାଇଁ ଆଗମନୀଗୀତିକା ରଚିଲେ । ଆକାଶ ଯେ କେତେବେଳେ ଅବିର ବୋଳି ହୋଇପଡୁଛି, କେତେବେଳେ ମେଘାଚ୍ଛନ୍ନ ହୋଇପଡୁଛି, ମୁଁ ତା'ର ଖବର ରଖିପାରିନାହିଁ । ମୋ କୁଆରିଆ ମନ ସେପାଖର ସତ୍ୟ ଓ ସୁନ୍ଦର ପୃଥିବୀକୁ ସ୍ପର୍ଶ କରିପାରୁନାହିଁ ।

ସତରେ କ'ଣ ବ୍ୟର୍ଥତାର ପାଚେରୀ ଡେଇଁ ଆମେ ଏଇଭଳି ସଚେତନ ହୋଇପାରିବା ? ନିଜର ସ୍ଥାଣୁ ଜୀବନରେ ଯବନିକାପାତ କରି ସ୍ଥିତପ୍ରଜ୍ଞ ହୋଇପାରିବା ? ଯେମିତି ଅକାଳରେ ଆମର metaphysical anguish ମୃତ୍ୟୁ ଲଭିଲା, ଯେମିତି ଆମେ ଏ ନିଷ୍ଠୁର ପୃଥିବୀରେ ଏକାକୀ ହୋଇଗଲେ ବା ଯେମିତି ଆମେ ଆପଣାକୁ ସଙ୍କୁଚିତ କରି ଖୋଳ ଭିତରେ ଲୁଚାଇ ରଖିଲେ ମନେହୁଏ ଆମେ ଯେମିତି ଆଉ କିଛି ଦାବୀ କରିପାରୁନାହୁଁ, ଆଉ ଯନ୍ତ୍ରଣା ଉତ୍‌ପ୍ରେରକ ହେଉନାହିଁ ।

ତମେ ଲେଖିଥିଲ ସମୟ ହେଉଛି ବଞ୍ଚିବା ସପକ୍ଷରେ ସର୍ବଶ୍ରେଷ୍ଠ ଯୁକ୍ତି । ପୁଣି ଯେ ଆମ୍ବକଷିର କାୟା ବୃଦ୍ଧି ହେବ, ପୁଣି ଯେ ସବୁଠି ନୂଆ ପତ୍ର ପଲ୍ଲବିତ ହୋଇଯିବ ବା ପୁଣି ଆମେ ଆପଣାକୁ ଆହୁରି ସଜୀବ କରିପାରିବା, ଏହା ସେହି ସମୟ ହାତର କଥା । ମୁଁ ଆପଣାକୁ କାଳବୈଶାଖୀ ପାଇଁ ପ୍ରସ୍ତୁତ କରୁଛି, ମୁଁ ଯେମିତି ଅକାଳରେ ଝରି ନଯାଏ ସେଥିପାଇଁ ଯେମିତି ସତର୍କ ହୋଇଯାଉଛି । ସେଇଥିପାଇଁ ଏଥରର କୃଷ୍ଣଚୂଡ଼ା ଫୁଲଗୁଡ଼ିକ ମୋ ପାଇଁ ଏକାବେଳକେ ଦୃଷ୍ଟିର ଅନ୍ତରାଳରେ ରହିଯିବେ, ଏଥର ଜୀବନଟା ଭାରି ରଙ୍ଗହୀନ, ସ୍ୱାଦୁହୀନ ହୋଇପଡ଼ିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ବିବାହର ସମସ୍ତ କୋଳାହଳ ଓ euphoria ର ସମାପ୍ତି ପରେ ଲେଖିବାକୁ ସୁଯୋଗ ପାଇଲି ।

ତମର ଚିଠି ମୋ ହୃଦୟରେ ଗଭୀର ଆଘାତ ଦେଇଛି । ଏଥର ମଧ୍ୟ prestige issue ଥିଲା, ଆମର ଅଭିମାନ ଓ ଆତ୍ମବିଶ୍ୱାସ ପାଇଁ ଗୋଟାଏ challange ଥିଲା । ତମ ଉପରେ ମୁଁ ଅନେକ ଆସ୍ଥା ରଖିଥିଲି, ଏଇଠି ତମର ଶୁଭେଚ୍ଛୁମାନେ ମଧ୍ୟ । ଏଇମିତି ଦୁର୍ଦ୍ଦିନରେ ଅନେକ କିଛି ଓଲଟପାଲଟ ହୋଇଯାଏ, ଆମେ ଛିଟିକି ପଡୁ, ଆପଣାକୁ ଅବିଶ୍ୱାସ କରିବାକୁ ବାଧ୍ୟ ହେଉ, ତମ ପାଇଁ ଏଇଠି ଯେଉଁମାନେ ଅନେକ ଆଶାର ଦିହୁଡ଼ି ଜାଳିଥିଲେ ଆଜି ସେମାନେ ମଧ୍ୟ ସେଭଳି ଭାଙ୍ଗି ପଡ଼ିଛନ୍ତି ।

ତମେ ଲେଖିଥିଲ, ସମୟ ଓ ପରିଶ୍ରମର ଅପଚୟ ହେଲା ବୋଲି ଯେଉଁ ମଣିଷର ego ଅଛି, ଯାହାର ନିଜସ୍ୱକଥନ ଅଛି ସେ କଚ୍ଛପ ଗତିରେ ହେଲେ ମଧ୍ୟ ଆଗେଇ ଚାଲିଛି । ଭଞ୍ଜଙ୍କଠାରୁ ତ ସଚ୍ଚି ରାଉତରାୟଙ୍କ ପର୍ଯ୍ୟନ୍ତ ପଢ଼ାଗଲା, ଅନୁଭବ କରାହେଲା, ନେପୋଲିୟନଠାରୁ ହିଟ୍‌ଲର ପର୍ଯ୍ୟନ୍ତ ଇତିହାସକୁ ମନ୍ଥନ କରାଗଲା, ଗୋଟାଏ ନିର୍ଦ୍ଦିଷ୍ଟ ସମୟ ପ୍ରବାହ ସହ ଜଡ଼ିତ ହେବାକୁ ପଡ଼ିଲା । ତଥାପି ତମେ ଯେ କିଛି ପାଇଲ ନାହିଁ କହିଲେ ମୁଁ ମାନି ନେବିନାହିଁ । କେଉଁମାନେ ପାଇଲେ ନପାଇଲେ ମୁଁ ଦୃଷ୍ଟି ଦେଉନାହିଁ । ତମେ ପୁଣି next bout ପାଇଁ ପ୍ରସ୍ତୁତ ହୋଇଯିବ ।

ତରତରରେ ଲେଖୁଛି । ବିବାହର ଘଟଣାବଳୀ କଥା ଅନ୍ୟ ଚିଠିରେ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଦିଲ୍ଲୀରେ ଥାଇ ତମେ ସାମ୍ପ୍ରତିକ ରାଜନୈତିକ ଉତ୍ତେଜନାକୁ ଭଲଭାବେ ଲକ୍ଷ୍ୟ କରିପାରୁଥିବ । ଏଇଠି ମୁଁ ଯେମିତି ସବୁକିଛି ଚୁପ୍‌ଚାପ୍‌ଭାବେ ଗ୍ରହଣ କରୁଛି । ସେମିତି କିଛି ଉଲ୍ଲେଖନୀୟ ଜାଗରଣ ହୋଇଥିବା କଥା ମୁଁ ଜାଣିପାରୁନାହିଁ ।

ମୋର ଅନେକବାର ଇଚ୍ଛା ହୋଇଛି ରାଜନୀତିରେ ସକ୍ରିୟ ଭାଗନେବାକୁ, ଯେକୌଣସି ଜନ ଆନ୍ଦୋଳନରେ ସାମିଲ ହେବାକୁ । ଏହିଭଳି ଜଡ଼ିତ ହୋଇଯିବାଟା ଏ ନିରର୍ଥକ ଜୀବନ ପାଇଁ କିଛି ହେଲେ ସ୍ୱାଦ ଆଣିଦିଅନ୍ତା, ଆହୁରି ମଧ୍ୟ ଗତିପଥ ବଦଳିଯାଆନ୍ତା । Malhranx ବା Hemingway ନିଜ ନିଜର ସାହିତ୍ୟିକ ପ୍ରତିଭାକୁ ପରସ୍ଫୁଟ କଲାଭଳି ମୁଁ ମଧ୍ୟ କିଛି ଲେଖିପାରନ୍ତି । (ଯୁଦ୍ଧୋତ୍ତର ସାହିତ୍ୟକୁ ଲକ୍ଷ୍ୟକରି ମୁଁ ଏହିକଥା ଅନୁଭବ କରୁଛି ।) Neruda ଙ୍କ ଭଳି ମଧ୍ୟ କିଛି କବିତା ରଚନା କରିପାରନ୍ତି ।

ଆଜିର ନିଷ୍କ୍ରିୟତା ମୋ ହୃଦୟରେ କୁଠାରାଘାତ କରୁଛି । ଯେଉଁ ideology ବା human values କଥା ମୁଁ ବାରମ୍ବାର ଚିନ୍ତା କରୁଛି । ତାହାର ରକ୍ଷା ପାଇଁ ମୁଁ ଯେମିତି ତିଳେହେଲେ ଚେଷ୍ଟା କରୁନାହିଁ । ଗତ କେତେ ମାସର ଶାସନ ପରମ୍ପରା ଭାରତ ଇତିହାସର ଏ କଳଙ୍କମୟ ଅଧ୍ୟାୟ ବୋଲି ମୁଁ ବିବେଚନା କରୁଛି । ଏ ଶାସନ ବୋଝରେ

ଶିକାର ମୁଁ ନିଜେ । ଯେଉଁ କେତେ ଦିନ ମୁଁ ଅମଲାତନ୍ତ୍ର ସହ ସମ୍ପୃକ୍ତ ହୋଇଛି ମୋ ନିଜସ୍ୱ ଚିନ୍ତାର ମୃତ୍ୟୁ ହୋଇଥିବା କଥା ମୁଁ ତମକୁ କହିଥିବି । ସତରେ କେତେ ଚେତନାହତ ମୁଁ ହୋଇ ଯାଇନଥିଲି । '1984 (Orwell)'କୁ ଭୂମିକା କରି ମୁଁ ଯେମିତି ଅନେକ କିଛି ଦୁଃସ୍ୱପ୍ନ ଦେଖୁଛି । ମୁଁ ଯେମିତି 'Winston' ହୋଇଯାଇଛି । ହୁଏତ ଆମେ ସମସ୍ତେ କ୍ଷୁଧାର ଦାସତ୍ୱ ଗ୍ରହଣ କରିଛେ । ଗୋଟାଏ ନିର୍ଦ୍ଦିଷ୍ଟ establishment ଭିତରେ ଆପଣାର ସ୍ଥିତି ପାଇଁ ମୂଷାଦୌଡ଼ରେ ଯୋଗ ଦେଉଛେ, ଆମ ପାଇଁ 'Give me liberty or give me death' ଅର୍ଥହୀନ । ଆମେ ଏକ ସକ୍ରିୟ ଆଁନ୍ଦୋଳନକୁ ଯେମିତି ଏଡ଼ାଇ ଦେଉଛେ ।

ଆଉ କେଇ ଦିନ ପରେ ନିର୍ବାଚନ ସରିଯିବ । ମୋତେ ଡର ଲାଗୁଛି ଯେ ଆମ ଭଳି ସ୍ୱାଧୀନଚେତା ମଣିଷମାନଙ୍କ ଅବସ୍ଥା କ'ଣ ହେବ ? ଗୋଟାଏ ନିର୍ଦ୍ଦିଷ୍ଟ ଛାଞ୍ଚରେ ଆମକୁ ପଡ଼ିବାକୁ ବାଧ୍ୟ କରାଯିବ ଏବଂ ରୀତିମତ୍ brainwashing ଚାଲିବ । ଆଜିକାଲି ସିନେମାହଲଗୁଡ଼ିକରେ ଭୋଟ୍ ପାଇଁ ପ୍ରଚାର ଚାଲିଲାଣି, କେତେଜଣ ପ୍ରସିଦ୍ଧ ବୁଦ୍ଧିଜୀବୀ ମଧ୍ୟ ସ୍ୱେଚ୍ଛାଚାର ଶାସନର ଗୁଣଗାନ କରିବା ଆରମ୍ଭ କରିଦେଲେଣି । ଏଇସବୁ ଭବିଷ୍ୟତ ପାଇଁ ଭଲ ସୂଚନା ନୁହେଁ, ଏକ ପ୍ରକାରର ଫାସିବାଦର ମୂଳଦୁଆ ପଡ଼ିଲାଣି ।

Humboldt's Gift ରେ Saul Bellow ମଣିଷର ଭୟକୁ ମାନସିକ ସ୍ତରରେ ବିଚାର କରିଛନ୍ତି, ".... pshychotherapists may become the new spiritual leader of mankind, Goethe was afraid the modern world might turn into a hospital, Every citizen unwell ..... Is hypochondria a creation of the medical profession ? .... when culture fails to deal with the feeling of emptiness and the panic to which man is disposed other agents come forward to put us together with therapy, with glue, or slogans, a spit. This is more pesimistic than Dostoevsky's Grand Inquisitor when said: mankind is frail, needs bread, cannot bear freedom but requires miracle, mystery, and authority, a natural disposition to feelings of emptiness and panic is worse than that, Much worse."

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମକୁ ଲେଖିପାରିନାହିଁ । ଚିଠି ପାଇଛି ।

ଏ ପର୍ଯ୍ୟନ୍ତ ଭବିଷ୍ୟତ ପାଇଁ ମୁଁ କିଛି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ନେଇପାରୁନାହିଁ । ନୀଳଗିରି ଯିବା କଥା ଘରେ ପ୍ରସ୍ତାବ ଦେଇଛି । ଶୀଘ୍ର କିଛି ନିଷ୍ପତ୍ତି ନିଆଯିବ । ଗୋଟିଏ ପରୀକ୍ଷା

ପାଇଁ ଫର୍ମ ପୂରଣ କରିବି । ଦିନକୁଦିନ ମୁଁ ଯେମିତି ଅଥର୍ବ ହୋଇଯାଉଛି । ଗୁଡ଼ାଏ ବହି ଆଣିଛି, କିନ୍ତୁ ପୃଷ୍ଠାଏ ପଢ଼ିବାକୁ ଧୈର୍ଯ୍ୟ ନାହିଁ । ଗରମ ପଡ଼ିଗଲାଣି । ଦ୍ୱିପ୍ରହରଗୁଡ଼ିକ ଅସହ୍ୟ ହୋଇଯାଉଛି । ଖରାଦିନ ଆସିବାର ସୂଚନା ଦେଇ ପାହାଡ଼ଗୁଡ଼ିକରେ ନିଆଁ ଝଲସି ଉଠୁଛି । ରାତ୍ରିରେ ସେସବୁ ସହ କିଛିନା କିଛି ସମ୍ବନ୍ଧ ରଖିବାକୁ କଷ୍ଟ ହେଉଛି । ଏଇଭଳି ଅନେକ କିଛି ପରିବର୍ତ୍ତନ ମୋତେ ଭାରି ବିକ୍ଷୁବ୍ଧ କରି ଦେଇଛନ୍ତି । ଆଜି ମୁଁ ଆପଣାକୁ ଗୋଟାଏ Degraded and defiled soul ବୋଲି ଗ୍ରହଣ କରିନେଉଛି ।

ଅମ୍ଳାନଠାରୁ କିଛି ଉତ୍ତର ମିଳିନାହିଁ । ମୁଁ ଜାଣେ ସେ କ୍ରମେ କ୍ରମେ ସଙ୍କୁଚିତ ହୋଇଯାଉଛି । ସଂସାରରେ ଆମଠାରୁ ତାର ତଥାକଥିତ ଦାୟିତ୍ୱବୋଧ ଯଥେଷ୍ଟ ବେଶୀ । ସେ ଆମଠାରୁ ବେଶୀ ସତର୍କ ଓ ହିସାବୀ ହେବା କିଛି ଆଶ୍ଚର୍ଯ୍ୟର କଥା ନୁହେଁ । ମୁଁ ରାଉରକେଲାରେ ତା'ର ଗତିବିଧି ଲକ୍ଷ୍ୟ କରୁଥିଲି । ପ୍ରତିକଥାରେ ସ୍ମିତାକୁ ପ୍ରଭାବିତ କରିବାକୁ ସେ ହିଁ ଯେମିତି ଅବିରତ ଚେଷ୍ଟା କରୁଥିଲା, (ହୋଇପାରେ, ବିବାହର ପରବର୍ତ୍ତୀ ରୋମାନ୍‌ସର ଏହା ଏକ ଅନ୍ୟରୂପ) ଅମ୍ଳାନର ଭବିଷ୍ୟତ କାର୍ଯ୍ୟକ୍ରମ ନେଇ ସାମାନ୍ୟ ମତାନୈକ୍ୟ ହୋଇଥିଲା । ମୁଁ କିଛି ସମାଧାନ କରିବାକୁ ବ୍ୟର୍ଥ ପ୍ରୟାସ କରିଥିଲି । ସେ ନିଜେ ଭଲଭାବେ ଜାଣେ କ'ଣ କରିବା ଉତ୍ତମ ହେବ, ମୁଁ କିଛି ଉପଦେଶ ଦେବାଟା ନିରର୍ଥକ ହୋଇଥାଆନ୍ତା ।

ଅମ୍ଳାନକୁ ତମ ସହ ସମ୍ପର୍କ ରଖିବାକୁ କହୁଥିଲି । ଏସବୁ ବିଷୟରେ କାହିଁକି ସେ ଏଭଳି ଉଦାସୀନ ଏକଥା ମଧ୍ୟ ପଚାରୁଥିଲି । ବଡ଼ ଅଦ୍ଭୁତ ମନେହେଲା । ସେ ଆପଣାର ଅତି ବିଶେଷ ଦୃଷ୍ଟିକୋଣରୁ ସବୁକଥା ବିଚାର କରେ । ଏପଟୁ ଅନେକ ଚିଠି ପରେ କାଁ ଭାଁ ଉତ୍ତର ମିଳିଥାଏ । ତମେ ଏକଥାକୁ ବିଚାର କରିବ ବୋଲି ମୋର ଆଶା ।

ଏବେ କେମିତି ସମୟ କଟୁଛି ତମର ? ହୋଲି ଆସୁଛି । ଦୁର୍ଯ୍ୟୋଧନ ସହ କଳହ କରିବା କଥା ମନେପଡୁଛି । ଅଜାଣତରେ କେତେ ଦିନ ଏ ଭିତରେ କଟିଗଲାଣି । ମୁଁ ପୁଣି ଲେଖିବି ଏ ଭିତରେ । ଗୋପବନ୍ଧୁ ଚିଠି ଦେଇଛି । ମୁଁ ଉତ୍ତର ଦେଇନାହିଁ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଦୋଳପୂର୍ଣ୍ଣିମା ଦିନ ଏବର୍ଷରେ ପ୍ରଥମ ଥର ପାଇଁ ଅମ୍ଳାନ ଉପହାର ଦେଇଥିବା ଡାଏରୀରେ କିଛି ଲେଖିବାକୁ ମନସ୍ଥ କରିଥିଲି । ସେଦିନ ସେମିତି କିଛି ଅସାଧାରଣ ଘଟଣାକୁ କେନ୍ଦ୍ରକରି ମୁଁ ଭାରି ଉଦ୍‌ବେଳିତ ହୋଇଯାଇଥିଲି, ଭାରି ଉତ୍ତପ୍ତ ହୋଇପଡ଼ିଥିଲି । ଜହ୍ନଆଲୁଅ ସେଦିନ ଅନ୍ଧକାର ମନେ ହେଉଥିଲା । ସମ୍ପୂର୍ଣ୍ଣ ଭାବେ ଆଚ୍ଛାଦିତ ହୋଇ

ମଧ୍ୟ ମୁଁ ଭାରି ନଗ୍ନ ଜଣା ପଡୁଥିଲି । ଏହିଭଳି ମୁହୂର୍ତ୍ତମାନଙ୍କୁ ତମେ ଅସତର୍କ ବୋଲି କୁହ, ଯେତେବେଳେ ସବୁ ପାଣ୍ଡୁର ହୋଇଯାଏ । ମୁଁ ଅନେକ ରାତି ପର୍ଯ୍ୟନ୍ତ ଚେଇଁ ରହିଥିଲି, ସ୍ୱପ୍ନରେ ଏକ ଅଭିନବ ମଣିଷରେ ପରିଣତ ହୋଇଯାଇଥିଲି । ସେଇ ମୁହୂର୍ତ୍ତଗୁଡ଼ିକ କଥା ମନେ ପଡ଼ିଲେ ଏବେ ମଧ୍ୟ ଦେହରେ କମ୍ପନ ଆସୁଛି । ମୁଁ କାୟାକଳ୍ପ ହୋଇ ହୋଇଯାଇଥିଲି କି ନାହିଁ କହିପାରିବିନି, କିନ୍ତୁ ସେଦିନ ମୁଁ ଭାରି ଆଦିମ ହୋଇ ପଡ଼ିଥିଲି । ଦେହ ଭିତରର ଜୀବକୋଷରେ ସେଦିନ ଅନେକ ଉନ୍ମାଦନା; ମୁଁ ଯେମିତି ଏକ ନିଷିଦ୍ଧ ଇଲାକାରେ ମୋତେ ହତ୍ୟା କରୁଥିଲି । ଏସବୁ କଥାକୁ ସେଦିନ ଲେଖିବାକୁ ଭାଷା ପାଇ ନଥିଲି ।

ଅପନ୍ତରାରେ ପଡ଼ିଲେ ବୋଧେ ଦେହଜ କ୍ଷୁଧା ପ୍ରବଳତର ହୁଏ, ଜୀବନରେ baser elements ରାଜତ୍ୱ କରନ୍ତି । ଗୋଟାଏ ମୁହୂର୍ତ୍ତର ଉତ୍ତେଜନାରେ ମଣିଷର ସବୁ ଆଦର୍ଶବାଦ ମାଟିରେ ମିଶିଯାଏ, ଭଲ ପାଇବାଜନିତ ସମସ୍ତ ସ୍ୱପ୍ନ ଭାଙ୍ଗିଯାଏ, ମୂଲ୍ୟବୋଧ ଭିନ୍ନ ରୂପ ନିଏ ଏବଂ ପରିଶେଷରେ ନିଜ ସପକ୍ଷରେ ବିତଣ୍ଡା ଯୁକ୍ତି ବଢ଼ାଯାଏ । ସେଇ କାଳରାତ୍ରିରେ ମୁଁ ଯେମିତି enchanted ହୋଇଯାଇଥିଲି, ଅନେକ କିଛି ଅଙ୍ଗେ ନିଭାଇବାକୁ ଚାହିଁଥିଲି, ମୁଁ ଆପଣାକୁ ଯେମିତି ବାରମ୍ବାର ଦୁଃସାହସିକ ବୋଲି ପ୍ରମାଣିତ କରୁଥିଲି । ମନେହେଉଥିଲା ମୁଁ ଯେମିତି ମୁଠାଏ ଶୂନ୍ୟତାକୁ ଆପଣାର କରୁଛି, ମୁଁ ଏକ ରକ୍ତପିପାସୁ ଜାନୁଆର୍ ହୋଇପଡ଼ିଛି । ଏହା କ'ଣ ଗୋଟାଏ ବିରାଟ ରୂପାନ୍ତର ନୁହେଁ କି ?

ତମେ ରୂପାନ୍ତର କଥା ଲେଖିଛ । ଆଗରୁ ଅନେକ କଥାରେ ତମେ ଉଦାସୀନ ରହୁଥିବା କଥା ଲେଖିଥିଲ । ଦେଖ, ତମେ ମୋ ପାଇଁ ଏକ ଭିନ୍ନ ମଣିଷ, ଗୋଟାଏ world of faith । ସେଥିପାଇଁ ତମେ ଆପଣା ପ୍ରତି honest ହୋଇପାରୁନାହିଁ ଲେଖିଲେ ମୁଁ ଭାରି ବ୍ୟଥା ଅନୁଭବ କରେ । ଭାରି ଭୟ ପାଏ । ଯେଉଁ ଭଲ-ପାଇବା, nostalogia, ସ୍ୱପ୍ନ ଓ ସତ୍ୟ ସିମେଣ୍ଟ ବେଞ୍ଚରେ ଜନ୍ମ ନିଏ, ହ୍ରଦ କୂଳରେ ବିକଶିତ ହୁଏ, ଭୁବନେଶ୍ୱରର କେଉଁ ଅଖ୍ୟାତ ପୋଲରେ ଫଳପ୍ରସୂ ହୁଏ, ସିଏ କ'ଣ ଏତେ ଶୀଘ୍ର ମରିଯାଏ ଓ ଏତେ କରୁଣ ଭାବେ ପଙ୍ଗୁ ପାଲଟିଯାଏ ? ? ଆଃ ! ଆମେ କେଉଁ ସ୍ତରକୁ ଉଠିଥିଲେ, କେଉଁ ଭାବାବେଗରେ ଏ ପୃଥିବୀକୁ ଆପଣାର କରିଥିଲେ ? ? କୃଷ୍ଣଚୂଡ଼ାର ରଙ୍ଗ ଏବେ ମଧ ଆମ ମୁହଁରୁ ଲିଭିଯାଇନି; ରାସ୍ତାକଡ଼ର ଅବହେଳିତମାନଙ୍କର ଯନ୍ତ୍ରଣାର କ୍ଷତ ଏବେ ମଧ ଶୁଖିନାହିଁ । ତଥାପି ଆମେ ସେସବୁ ପ୍ରତି ବୀତସ୍ପୃହ ହୋଇଯାଉଛେ । ଆମେ ଯେଉଁ ରଙ୍ଗମଞ୍ଚରେ ଭାରି ସହଜ ହୋଇ ଅଭିନୟ କରିବାକୁ ଚାହୁଁଥିଲେ, ଆଜି ଯେମିତି ମୁଖା ପିନ୍ଧି ଆମେ ସେଇଠି musquerade କରୁଛୁ ! ସ୍ୱପ୍ନର ସୌଦାଗରର ଆଜି ଯେମିତି ଆପଣାର ଜାହାଜ ମଝି ସମୁଦ୍ରରେ ବୁଡି ଯାଇଥିବା କଥା ପ୍ରଥମଥର ପାଇଁ ଶୁଣି ଶୋକାତୁର ହୋଇଯାଇଛି । ଆମେ କେତେ ଶୀଘ୍ର ବଦଳି ଯାଉଛେ ?

ବନ୍ଧୁ! ଜୀବନକୁ ଆମେ ଯେତିକି ଜାଣିଛେ, ତାହା ସମ୍ଭବତଃ ଯଥେଷ୍ଟ ନୁହେଁ। ଯେତିକି ଅଭିଜ୍ଞତା ଆମେ ସଞ୍ଚୟ କରିଛେ ଆମକୁ ଏକ ସୁନ୍ଦର ପୃଥିବୀରେ ପହଞ୍ଚିବା ପାଇଁ ବିଶେଷ କିଛି ପୁଞ୍ଜି ନୁହେଁ। ଗୋଟାଏ 'ତେଲଲୁଣ'ର ସଂସାରରେ ଅତି ନିର୍ଲିପ୍ତ ହୋଇ ଯାଇ ହେବ କି ନାହିଁ, ଆମେ ପ୍ରତ୍ୟକ୍ଷ ଭାବେ ଅନୁଭବ କରିପାରିନେ। ଜୀବନରେ ଆମର ଭଲ ପାଇବା ଏକ ଚରମ ଇସ୍ତାହାର। ତଥାପି କ'ଣ ଏହାକୁ ଆମେ ଅକ୍ଷରେ ଅକ୍ଷରେ ପାଳନ କରୁଛେ? ବେଳେବେଳେ ଆମକୁ କୋଳାହଳ ବିରକ୍ତ କରିବ, ନିଃସଙ୍ଗବୋଧ ଅଥୟ କରିବ, ଚିରାଚରିତ ପ୍ରଥାର ସୁଅ ଆମକୁ ଭସାଇନେବ, skuldruggery ରକ୍ତରେ ମିଶିଯିବ, ଜଟିଳତା ଜୀବନସଙ୍ଗୀତର ଏକ ଅଭିନବ ମୂଳ ହେବ। ଏହା ସତ୍ତ୍ୱେ ମଣିଷ ଆପଣାର ମନର ମଣିଷ ପ୍ରତି honest ହୋଇପାରିବ, ଆପଣାର ସମସ୍ତ ଚେତନାଶକ୍ତିକୁ ଗୋଟାଏ set of truth ଦ୍ୱାରା ବାରମ୍ବାର review କରିବ। ଏହା ଜୀବନଯାତ୍ରା, ଏହା ନିର୍ବାସନ, ଏହା ମଧ୍ୟ ଆପଣାର ରାଜ୍ୟବିସ୍ତାର। ସେଇଥିପାଇଁ ତମେ ଆଜି ଆପଣାକୁ ଅନୁଶୀଳନ କରୁଛ, ମୁଁ ନିଜକୁ ଧ୍ୱଂସମୁଖକୁ ଟାଣି ନେଉଛି, ଅମ୍ଳାନ ଜୀବନକୁ ଗୋଟାଏ ଦ୍ୱନ୍ଦ ବୋଲି କହୁଛି।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଏଠାକୁ ଆସିବା ପରଠାରୁ ମୁଁ ଯେମିତି ଅନେକ କିଛି ବଦଳିଯାଇଛି। ତମପାଖକୁ ମୁଁ ସେମିତି କିଛି ଲେଖି ପାରୁନାହିଁ। ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଛି ଯେ ମୋର ମାନସିକ ଭାରକେନ୍ଦ୍ର ଗତ କେତେ ଦିନର ଘଟଣାରେ ଯେମିତି ସ୍ଥାନଚ୍ୟୁତ ହୋଇଯାଇଛି।

ତମ ଘରୁ ତମ ପାଖକୁ ଚିଠି ଲେଖିବା ଏକ ଅଭିନବ କଥା; ତଥାପି ମୁଁ ବାରମ୍ବାର ଏଇଠି ନିଜର ସତ୍ତାକୁ ହଜାଇଦେବି। ଏଇଠି ମୋ ବଦଳରେ ତମେ ଯଦି ଥାଆନ୍ତ କ'ଣ ହୋଇଥାଆନ୍ତ, କେଉଁ ଭଳି ଭାବପ୍ରବଣ ହୋଇଥାଆନ୍ତ, ସେକଥା ମୁଁ ବାରମ୍ବାର ଉଲ୍ଲେଖ କରିବି। ଏଇଠି ଗୋଟାଏ ମନ୍ଥର ବିବର୍ତ୍ତନକୁ ପ୍ରକାଶ କରିବାକୁ ଭୁଲିବି ନାହିଁ, ମୁଁ ଯେ କ୍ରମ ବିକଶିତ ହେଉଛି, ଏକଥା ତମକୁ ଅନୁଭବ କରାଇବି, ଯେତେ ଦିନ ରହେ, ଯେଉଁ ସମୟରେ ମୋର ଭାବାନ୍ତର ହୁଏ।

ଆଜି ଅନ୍ୟଦିନ ଅପେକ୍ଷା ଶୀଘ୍ର ଉଠି ପଡ଼ିଛି। ସକାଳ ହୋଇଗଲାଣି, ଝର୍କା ସେପାଖେ ପବନ ଅତି ଆନନ୍ଦମୁଖର ହୋଇପଡ଼ିଛି। ଗତ କେତେ ଦିନଧରି ଏଇଠି ବର୍ଷା ଫଳରେ ତାପମାତ୍ରାର ଯଥେଷ୍ଟ ପରିବର୍ତ୍ତନ ହୋଇଥିବାରୁ ମୁଁ ଏଇଠି ପ୍ରତି ମୁହୂର୍ତ୍ତକୁ ବିଶେଷ ଉପଭୋଗ କରୁଛି। ଏଇ ସକାଳ ମୋର ଅତି ପ୍ରିୟ, ଅତିଶୟ ଅମୃତମୟ। ସମସ୍ତ

ନୀରବତା ଭଙ୍ଗ କରି କୋଇଲିଟିଏ ଯଦି ଏକକ ସଙ୍ଗୀତ ସୃଷ୍ଟି କରେ, ସକାଳର ପରିବେଶ ଅମୃତମୟ ହୋଇଯାଏ । ଏଇଭଳି ଟିକିଏ ମନଲୋଭା ସ୍ମୃତି ମଣିଷ ଆପଣାର ଗଭୀରତମ ପ୍ରଦେଶରେ ସ୍ଥାନ ଦେଇ ଭାରି ହାଲୁକା ହୋଇଯାଏ । ଗତ ରାତ୍ରିର ସମସ୍ତ ଦୁଶ୍ଚିନ୍ତା ଅପସରି ଯାଏ । ତମେ ଅନୁଭବ କରିଥିବ ଏଇଠି ରାତିଗୁଡ଼ାକୁ । ଖୁବ୍ ଭୌତିକ ମନେହୁଏ । ତଥାପି ପ୍ରଶାନ୍ତି ଆଣିଦିଏ, ତଥାପି କେଉଁଠାରୁ ଅଜଣାଶକ୍ତି ଦେହକୁ ଆସିଯାଏ । Steppen Wolf ନିଜେ ଅନୁଭବ କରିଛି ଯେ solitude is independence । ଏହାର ସତ୍ୟତା ପ୍ରମାଣିତ ହୁଏ । କେଉଁ ଏକ ଅଜଣାସ୍ରୋତ ସହ ଅତି ସନ୍ତର୍ପଣରେ ହଜିଯାଇ ହୁଏ ।

କିନ୍ତୁ ସକାଳ ! ଠିକ୍ ସୂର୍ଯ୍ୟୋଦୟ ପୂର୍ବରୁ ମଣିଷ (ମୋ ଭଳି !) ଅନୁଭବ କରେ ଯେ ସେ ପୁଣି ଆଲୋକଭିମୁଖରେ ଯାତ୍ରା ଆରମ୍ଭ କରିଛି, ଏକ ନିର୍ଦ୍ଦିଷ୍ଟ ପଥରେ ସେ ପୁଣି ଜୀବନକୁ କିଛି ବାଟ ଓଟାରି ନେବାକୁ ଅଣ୍ଟା ଭିଡୁଛି । ଏଇଠି ସକାଳୁ ଝର୍କା ସେପାଖେ ଟଗର ଫୁଲର ଅରଣ୍ୟ, ପବନର ମୃଦୁ ଆଘାତରେ ଲହଡ଼ି ଭାଙ୍ଗୁଛି । ଠିକ୍ ସେଇ ପାଖରେ ସ୍ଥଳପଦ୍ମ ଗଛଟିଏ ଲୁଚି ରହିଛି, ତା'ର ଧଳାଫୁଲର ଏସକାଳୁ ବୋଧେ ନିଜସ୍ୱ କିଛି ପରିଚୟ ନାହିଁ;କିନ୍ତୁ ସେଇଥିପାଇଁ ସେ ଆଦୌ ବ୍ୟଥିତ ନୁହେଁ । ସେ ସୂର୍ଯ୍ୟକୁ ଅପେକ୍ଷା କରିଛି । ଏଇ ଯେଉଁ ଲାଲିମାରେ ଆକାଶ ରଞ୍ଜିତ ହୋଇଯାଇଛି, ସିଏ ପୁଣି ଆପଣାର ରାଗ ସଂଗ୍ରହ କରିବ । ଅତି ଆଶ୍ଚର୍ଯ୍ୟ ଭାବେ ପୁଣି ସେ ରକ୍ତବର୍ଣ୍ଣ ଧାରଣ କରିବ । ଏ ବୈଚିତ୍ର୍ୟ ମୋତେ ସାହସ ଦେଇଛି, ମୋତେ ଆଶ୍ୱାସନା ଦେଇଛି ।

ସତରେ ପୁଣି ଦିନେ ଆମର ଭାବାନ୍ତର ଘଟିବ, ପଟ୍ଟ ପରିବର୍ତ୍ତନ ହେବ, ଆମେ ପୁଣି ଗୋଟାଏ ସ୍ତରକୁ ଆଉ ଗୋଟାଏ ସ୍ତରକୁ ଅନାୟାସରେ ଯାଇପାରିବା, ସେଥିରେ ମୋର ବିଶ୍ୱାସ ଅତୁଟ ରହିଛି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଦୁଇଟି ଚିଠି ପାଇଛି । ପ୍ରଥମ ଚିଠିର ଉତ୍ତର ମୁଁ ବାରମ୍ବାର ଲେଖିବାକୁ ଚାହୁଁଛି । କିନ୍ତୁ ପ୍ରତିଥର ଭାରି ଉଦ୍‌ବେଳିତ ହୋଇଯାଇଛି; ସେଇଟି ଯେମିତି ମୋର ଜୀବନ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସନ୍ଦର୍ଭ ହୋଇପଡ଼ିଥିଲା ।

କେଜାଣି କାହିଁକି ଜୀବନ ବଡ଼ ଭୀତିପ୍ରଦ ମନେହେଉଛି । ଏଇ ମୁହୂର୍ତ୍ତରେ ଇଚ୍ଛା ହେଉଛି ମୋ ଅନେକ କିଛି ହୋଇଯିବାକୁ । ଗୋଟାଏ abstract hibernation ହେଉ ବା Rip van winkle ର ଅଦ୍ୱିତୀୟ ନିଦ୍ରା ହେଉ, ମୋତେ ଏ ତଥାକଥିତ ଜୀବନ ସଂଗ୍ରାମରୁ ରକ୍ଷା କରିପାରନ୍ତା । ଏଇ 'ବର୍ତ୍ତମାନ'ର ଜୀବନକଥାଗୁଡ଼ିକ ଲିପିବଦ୍ଧ ହୁଅନ୍ତା

ନାହିଁ, ମୋର ଚେତନାଶକ୍ତି ଯେମିତି ହେଲେ ବି ଲୋପ ପାଇଯାଆନ୍ତା । ମୁଁ ଅନେକ ବର୍ଷ ପରେ ନିଜକୁ ପୁଣି ଆବିଷ୍କାର କରନ୍ତି, ନିଜକୁ ଅସ୍ତମିତ ହେଉଥିବାର ଦେଖି ଗଭୀର ପ୍ରଶାନ୍ତି ଲଭନ୍ତି, ନଚେତ୍ ଏକ ଦିବ୍ୟାଲୋକର ସନ୍ଧାନରେ ପୁଣି ମୁଁ ଉଦ୍‌ବୁଦ୍ଧ ହୁଅନ୍ତି ।

ବିଶ୍ୱାସ କର ବା ନକର ଆଜି ମୁଁ ଭାରି ଜଟିଳ ମଣିଷଟିଏ ହୋଇଯାଇଛି । ଗତ କେତେ ବର୍ଷର ବ୍ୟର୍ଥତା, ଝଡ଼ ଓ ମାନସିକ ଦ୍ୱନ୍ଦ ମୋ ଉପରେ ଉଇହୁଙ୍କା ହୋଇମାଡ଼ିଯାଇଛି । କେଜାଣି କାହିଁକି ମୁଁ ନିଜକୁ ହଠାତ୍ ଗୋଟାଏ ଅଭିନବ ମଣିଷ କରିବାର ଅପଚେଷ୍ଟା କରୁଥିଲି ବୁଝିପାରୁନାହିଁ । physicsକୁ ଭଲପାଇଲି, କିନ୍ତୁ କେଉଁଠି ପହଞ୍ଚିଲି ତ ତମେ ଭଲ ଭାବେ ଜାଣ । (ସେଦିନ ଦୁର୍ଗା ପାଖରେ ସ୍ତୁପାକୃତି ବହି ଦେଖି ମୁଁ ଯେମିତି ଚମକି ପଡ଼ିଥିଲି, ତଥାପି ବାହାସ୍ଫୋଟ ମାରିବା ପାଇଁ ସମସ୍ତଙ୍କ ଆଗରେ କହୁଥିଲି ଯେ life is more interesting than physics.) କେଉଁ ଏକ ଶୁଭ ମୁହୂର୍ତ୍ତରେ ତମମାନଙ୍କ ସହ ମୋର ବନ୍ଧୁତାର ଅଧ୍ୟାୟ ଆରମ୍ଭ ହେଲା । କିନ୍ତୁ ଲଳିତ ଗଲା, ପ୍ରଫୁଲ୍ଲ ଯଥେଷ୍ଟ ଦୂରତା ରକ୍ଷା କରିପାରିଲା, ଅମ୍ଳାନ ସେଇମିତି କିଛି ଚେଷ୍ଟା ବି କରୁଥିବ, ଭଞ୍ଜ ସହ ସମ୍ପର୍କରେ ସେମିତି କିଛି ଉଷ୍ଣତା ନାହିଁ, ବାକି ତମେ ରହିଯାଇଛ, ତମର ଯିବା ରହିବା ପୁଣି ଅନ୍ୟ ଏକ ଶକ୍ତି ହାତରେ । ଭଲ ପାଇବାର କଥା ମଧ୍ୟ ସେଇଭଳି । ଆଲୋକ ଓ ପୃଥିବୀକୁ ଭଲ ପାଇବାକୁ ମୁଁ ଚେଷ୍ଟାକରି ଦୈହିକ କାମନାର ଶିକାର ହୋଇଗଲି ।

କାଲି ମୁଁ ବାପାମାଆଙ୍କୁ ହରାଇବି, ତମକୁ ହରାଇବି, ଆପଣାକୁ ଧ୍ୱଂସ ହେଉଥିବାର ଦେଖିବି, ଏସବୁ ମୁଁ ସହିପାରିବି ତ ? ଏ ଭଙ୍ଗ ଓ ବ୍ୟଥାତୁର ପ୍ରାଣ ସାହସ ସଞ୍ଚୟ କରିପାରିବ କି ନାହିଁ ବିଶ୍ୱାସ ଆସୁନାହିଁ । ମୋର ନିର୍ଜନତାର ଭୂତ ଯେତେବେଳେ ମୋତେ ଗୋଡ଼ାଇବ କାହା ପାଖରେ ମୁଁ ଆଶ୍ରୟ ନେବି ବୁଝିପାରୁନାହିଁ । ତମେ ତଥାପି ଯେମିତି ଅନେକ କଥା ଲେଖିବାକୁ ଇଚ୍ଛା କରି ମଧ୍ୟ ଚାପି ଦେଇଛ । ତମେ ସୋନ୍ୟାକୁ ମୋର ଚରମ ବିଜୟ ବୋଲି କହୁଛ; କାହିଁକି କହୁନାହଁ ଯେ ଜାନ୍ତବ ଶକ୍ତି ଆଗରେ ମୁଁ ହାରିଯାଇଛି ବୋଲି । ମୁଁ Van Gogh ହୋଇଯାଇଛି ବୋଲି ତମେ ବିବେଚନା କରୁଛ; କାହିଁକି ଦୃଢ଼ ସ୍ୱରରେ କହୁନାହଁ ଯେ ଏହା ମୋର ଗୋଟାଏ ବୌଦ୍ଧିକ ଆତ୍ମପ୍ରତାରଣା ବୋଲି ।

ଗତ ବର୍ଷମାନଙ୍କର ଘଟଣାଗୁଡ଼ିକ ଖୁବ୍ ମୂଲ୍ୟବାନ ସ୍ମୃତି ଓ ଅନୁଭୂତି ହୋଇଯିବାରେ କିଛି ହେଲେ ସନ୍ଦେହ ନାହିଁ, କିଛି ହେଲେ ବି ମତାନୈକ୍ୟ ନଥାଇପାରେ । ତଥାପି ଏସବୁରେ ଜଡ଼ିତ ହେବା କେତେବଡ଼ ମତିମାନର କାର୍ଯ୍ୟ ହୋଇଛି ସମୟ ଆସିଲେ ଆପେ ଜଣାପଡ଼ିବ । ସଂସାରରେ ମୁଖ୍ୟ ଜନସ୍ରୋତରେ ସାମିଲ୍ ହୋଇଯାଇଥିଲେ ଜୀବନ କେତେ ବଡ଼ ସହଜ ଓ ସରଳ ଉପପାଦ୍ୟ ହୋଇଯାଇଥାଆନ୍ତା । ଆଜି କିନ୍ତୁ ବୁଢ଼ୀଆଣୀ ଜାଲ ଭିତରେ ଛନ୍ଦି ହୋଇଥାଇ ଆଉ ମୁକୁଳିବାର ବାଟ ନାହିଁ, ଏ ଯେଉଁ chain reaction ସୂତ୍ରପାତ ହୋଇଛି, ତାହାର ଅଶେଷ ଫଳାଫଳ ମୋତେ ମୁଣ୍ଡପାତି ସହିବାକୁ

ହେବ । ଅନ୍ଧକାରର ଗହ୍ୱର ଭିତରେ ମୁଁ ଯେତେବେଳେ ନିଜର ନିକ୍ଷେପ କରି ଆଲୁଅ ଖୋଜୁଛି, ମୋର ହତାଶା ମୋ ପାଇଁ ଶ୍ରେଷ୍ଠ ଔଷଧ ହେବ ।

ବନ୍ଧୁ ! ମୁଁ ପ୍ରଥମଥର ପାଇଁ ଆପଣା ବିପକ୍ଷରେ ବିଦ୍ରୋହ କରୁଛି । ମୋ ଭିତରେ Mephistopheles ବସା ବାନ୍ଧିଛି । ପ୍ରତି ପଦକ୍ଷେପରେ ଯେମିତି ସେ ମୋତେ ବାଟ କଢ଼ାଉଛି, ମୋତେ ମରୀଚିକାର ସ୍ୱାଦରେ ପ୍ରଲୋଭିତ କରୁଛି ।

ଅଚ୍ୟୁତ

(ଏ ଚିଠି ଦୁଇଦିନ ପରେ ପଠାଉଛି)

× × × ×

ତୁହାକୁତୁହା ବର୍ଷ ହେଉଛି ଏଇଠି । ଖରାଦିନେ ଏଭଳି ଝଡ଼ବର୍ଷା କେବେହେଲେ ହୋଇ ନଥିଲା ବୋଲି କାଲି ମାଆ କହୁଥିଲେ । ସନ୍ଧ୍ୟାରେ ମୁଁ ଛାତ ଉପରେ ବୁଲୁଥିଲି । ଆସନ୍ନ ବର୍ଷାଜନିତ ଶୀତଳତା ଆକଣ୍ଠ ଉପଭୋଗ କରୁଥିଲି । ଏକ ମେଘମେଦୁର ଆକାଶ ଓ ସିମୁଳିପାଳ ଅରଣ୍ୟାନୀ ଭିତରେ ଯେଉଁ ସାମାନ୍ୟ କିଛି ଫାଙ୍କ ଥିଲା ।, ସେ ଭିତର ଦେଇ କେଉଁଠୁ କେଜାଣି ଅସ୍ତଗାମୀ ସୂର୍ଯ୍ୟ ହଠାତ୍ ଉଦ୍‌ଭାସିତ ହୋଇପଡ଼ିଲା । ଏଭଳି ଦୃଶ୍ୟ ମୁଁ କ୍ୱଚିତ୍ ଦେଖିଛି ଜୀବନରେ । ଏ ନୀଳଗିରି ଗାଁରେ ତମ ଅନୁପସ୍ଥିତିରେ ଯେ ମୁଁ ଭୀଷଣ ଭବଗ୍ରାହୀ ହୋଇଯାଇଛି, ଏକଥା ମୁଁ ପ୍ରଥମ ଥର ପାଇଁ ଅନୁଭବ କରୁଥିଲି । କେତେ ସମୟ ପର୍ଯ୍ୟନ୍ତ ସବୁକିଛି ଆଲୋକମୟ ହୋଇଗଲା ମୁଁ ଜାଣିପାରିନାହିଁ, କେତେବେଳେ ବି ଅନ୍ଧକାର ମାଡ଼ିଆସିଲା ମୁଁ ଲକ୍ଷ୍ୟ କରିନାହିଁ ।

ଏହି ଅନିର୍ବଚନୀୟ ଶୋଭାଭଣ୍ଡାର ମୋତେ ଏକ ଭିନ୍ନ ମଣିଷ କରିଦେଇଥିଲା । ହଠାତ୍ ଯେମିତି ଅମାଅନ୍ଧକାରାଚ୍ଛନ୍ନ ଜୀବନଯାତ୍ରାରେ ମୁହୂର୍ତ୍ତକ ପାଇଁ ମୁଁ ଆଲୋକର ସନ୍ଧାନ ପାଇଲି; ଭାରି ଆଶାବାଦୀ ହୋଇଗଲି । ଏହି ସବୁର ସଂସ୍ପର୍ଶରେ ଆସି ସମସ୍ତ ପ୍ରତାରଣା ଭାଙ୍ଗିଯାଏ, ସମସ୍ତ ଦ୍ୱନ୍ଦର ମୃତ୍ୟୁ ହୁଏ, ସବୁ ଅନ୍ତର୍ଦାହର ସମାପ୍ତି ଘଟେ । କ୍ଷଣିକ ପାଇଁ ହେଲେ ମଧ୍ୟ ଆପଣା ଉପରେ ବିଶ୍ୱାସ ଫେରିଆସେ । ସେଇ ଦିଗରେ ହଠାତ୍ ମୁଁ ନିଜକୁ ଯେମିତି ମୁହେଁଇ ଦେଇଛି, ଏ ଧାରଣା ଜନ୍ମେ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଯେଉଁ ପ୍ରଚଣ୍ଡ ଶୂନ୍ୟତା ଓ ଶିଥିଳତା ଦେଇ ମୁଁ ଗତି କରୁଛି, ସେକଥା ମୁଁ ଠିକ୍ ଭାବେ ବ୍ୟକ୍ତ କରିପାରୁନାହିଁ । ମୋର ମନେହେଉଛି, ଯେଉଁ ଭାବପ୍ରବଣତା ମୋ ପାଇଁ

ଏକମାତ୍ର ପ୍ରାଣଶକ୍ତି ଥିଲା ତାହାର ମୃତ୍ୟୁ ଘଟିଛି । ସବୁ ସମ୍ପର୍କ ପାଇଁ ଗୋଟାଏ ନିବିଡ଼ ଆବେଗ ଯେ ଦରକାର ହୁଏ, ଏକଥା ତମେ ନିଶ୍ଚୟ ଅନୁଭବ କରିଥିବ । ବର୍ତ୍ତମାନ ମୁଁ ଯେମିତି ଏ ବିଷୟରେ ଖୁବ୍ ସତର୍କ ହୋଇଯାଇଛି ।

ମୋର ଯେଉଁ ଯନ୍ତ୍ରଣା, ବିକୃତ ରୁଚି ସଂକୀର୍ଣ୍ଣତା ମୋତେ ଦାଉ ସାଧୁଛି, ସେସବୁକୁ ଅତି ଅବାଞ୍ଛିତ ଭାବେ ତମମାନଙ୍କ ଉପରେ ଲଦି ଦେବାକୁ ଉଚିତ ମନେ କରୁନାହିଁ । ତମର ନିଜସ୍ୱ ସ୍ୱାଧୀନତା ଅଛି । ବନ୍ଧୁତ୍ୱର ସୀମାରେଖା ମଧ୍ୟ ନିର୍ଦ୍ଦିଷ୍ଟ । (ଏକଥା ମୁଁ ଏଇମାତ୍ର ଯେମିତି ଜାଣିପାରିଛି !) ଯେତେ ଚେଷ୍ଟା କଲେ ମଧ୍ୟ ବନ୍ଧୁତ୍ୱରେ ଏକାକାର ଭାବ ସହଜରେ ଆସେ ନାହିଁ । ଆମ ସମସ୍ତଙ୍କର ସୁବର୍ଣ୍ଣ ଅତୀତକୁ ଘାଣ୍ଟିଚକଟି ମୁଁ ଏଇକଥା ଜାଣିପାରିଛି । ପ୍ରତ୍ୟେକେ ତା'ନିଜ ପାଇଁ କେତେ ମାତ୍ରାରେ ଆବଦ୍ଧ ଓ ଅଙ୍ଗୀକାରବଦ୍ଧ । ଯେତେବେଳେ ନିଜେ ଏକାକୀ ହୋଇଯିବ ତାହା ତମେ ଅନୁଭବ କରିପାରିବ । ଅମ୍ଳାନ, ପ୍ରଫୁଲ୍ଲ ଓ ଅନ୍ୟମାନେ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ, କିଏ ନକହିବ ଏହା ଆମ ପାଇଁ ଅସତ୍ୟ ବୋଲି ।

ତଥାପି ମଧ୍ୟ ଜୀବନରେ ଭଲ ପାଇବାର ଯେଉଁ ସର୍ବୋତ୍ତମ ଓ ବଳିଷ୍ଠ ଭୂମିକା ଅଛି, ମୁଁ ଅସ୍ୱୀକାର କରୁନାହିଁ । କିନ୍ତୁ ସବୁ ନିୟମ, ନୀତି ଓ ପରିପ୍ରେକ୍ଷୀରହିତ ଭଲ ପାଇବା ଏବେ ମଧ୍ୟ ମୁଁ ଆବିଷ୍କାର କରିନାହିଁ, ହୃଦୟ ଯାହାକୁ ଅତି ମୁକ୍ତ ଭାବେ ଗ୍ରହଣ କରିବ, ଏପରି ବସ୍ତୁ ମଧ୍ୟ ମୋର ଦୃଷ୍ଟିଭଙ୍ଗୀ ଭିତରେ ପ୍ରବେଶ କରିନାହିଁ । ଦିନକୁ ଦିନ ମୋର ରୂପାନ୍ତର ଘଟୁଛି । ସମୟର ସ୍ରୋତରେ ଯେଉଁଭଳି ମନ୍ଥନ ହେଉଛି, ଏପର୍ଯ୍ୟନ୍ତ ଅମୃତ ବାହାରିନାହିଁ ।

ତମର ଚିଠିଗୁଡ଼ିକୁ ମୁଁ ଖୁବ୍ ଯତ୍ନର ସହ ଅନୁଧ୍ୟାନ କରୁଛି । ତମେ କ୍ରମେ ଆପଣାର ପରିବେଶ (situation) ବିରୁଦ୍ଧରେ ବିଦ୍ରୋହ କରିବାକୁ ଆରମ୍ଭ କରିଛ । Outsider ସମସ୍ୟାର ମୂଳରେ ଏଇକଥା ବଳିଷ୍ଠ ଭାବେ ଜଡ଼ିତ ହୋଇଛି । କିନ୍ତୁ Camus ଙ୍କ Outsider ବୋଧେ ଏକ ଭିନ୍ନ ମଣିଷ । ସେ ଜୀବନରେ ସନ୍ଧି କରିଛି । ଅତି ନିର୍ଲିପ୍ତ ଭାବେ ଆପଣାର ଜୀବନତରୀ ବାହି ନେଇଛି । ମଣିଷ କେତେ ଦିନ ବିଦ୍ରୋହ କରିପାରିବ, ଏହା ମୁଁ ସନ୍ଦେହ କରେ । ମୁଁ ନିଜେ ପାରିନାହିଁ । ନିଜର ଚିନ୍ତାଧାରକୁ ପୁଞ୍ଜିକରି ଗୋଟାଏ world of terror ର ମୁକାବିଲା କରିବା ସହଜ କଥା ନୁହେଁ । ପ୍ରତି ମୁହୂର୍ତ୍ତରେ ଅନୁଭବ କରିବ ଯେ ନିଜର ସ୍ଥିତି ଓ ପ୍ରବୃତ୍ତି ଉଭୟେ ନିଜ ଅଜାଣତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଯାଇଛନ୍ତି, ନିଜର ସତ୍ତା ଜାହିର୍ କରିବା ପାଇଁ ଚେତନାଶକ୍ତି ବ୍ୟତିରେକ ଆହୁରି ଅନେକ ଜିନିଷ ଲୋଡ଼ା । ଆତ୍ମହତ୍ୟା ଏହାର ନିର୍ଦ୍ଦିଷ୍ଟ ସମାଧାନ ନୁହେଁ କି ଗୌରବର ଶୀର୍ଷଦେଶରେ ପହଞ୍ଚିବା ଏକ ଅବ୍ୟର୍ଥ ଔଷଧ ମଧ୍ୟ ନୁହେଁ । ଯେଉଁମାନେ ସ୍ଥିତପ୍ରଜ୍ଞ, ସେମାନେ ଭାରି ଦୁଃଖୀ ମଣିଷ, ଖୁବ୍ ଜଟିଳତମ । ସାଧାରଣ ମାନବିକ ଦୁର୍ବଳତାର ଶିକାର ସେମାନେ, ତଥାପି ଅତିମାନବୀୟ ସ୍ତରରେ ସେମାନେ ବଳିଷ୍ଠ ବ୍ୟକ୍ତିତ୍ୱର ପ୍ରତିମୂର୍ତ୍ତି ।

ଯେତେ ଯାହା ହେଲେ ବି ତମେ 'ମେସିନ୍' ହୋଇଯିବ ନାହିଁ। ମଣିଷ ଯେଉଁ ମୁହୂର୍ତ୍ତରେ ବିପ୍ଳବରେ ସାମିଲ୍ ହୁଏ, ନିଜକୁ ଗୋଟାଏ 'ଅପ୍ରାକୃତିକ ଘୂର୍ଣ୍ଣିର ମୁହଁରୁ ବଞ୍ଚାଇପାରେ, ସେ ଗୋଟାପଣେ ଯେ ମଣିଷ ପଦବାଚ୍ୟ, ଏକଥା ମୁଁ ନିଶ୍ଚିତ ଭାବେ କହିପାରିବି। ଏହା ଏକ transition period। ଗୋଟାଏ ସ୍ତରରୁ ଆଉ ଗୋଟାଏ ମହାନ୍ ସ୍ତରକୁ ଉଠିବା ବେଳର ଯନ୍ତ୍ରଣା। Jonathan Livingstone Seagull ର ନିଜସ୍ୱ ଅନୁଭୂତି। ଯେତେ ଯାହା ହେଲେ ତମ ଉପରେ ମୋର ଅଖଣ୍ଡ ବିଶ୍ୱାସ ଅଛି।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଘରକୁ ଫେରିବା ମାନେ ଆଉ ଏକ ପୃଥିବୀରେ ପାଦ ଦେବା। ତାଳଚେର ଛାଡ଼ିବାର ଦୀର୍ଘ ଅଢ଼େଇ ମାସକୁ ବେଶ୍ ପ୍ରମାଣିତ କରି ମୋର ବ୍ୟବହାର୍ଯ୍ୟ ଜିନିଷଗୁଡ଼ିକରେ ଅଧଇଞ୍ଚ ବହଳର ଧୂଳି ଜମିଯାଇଛି। ଅତି ଆଶ୍ଚର୍ଯ୍ୟଜନକ ଭବେ ପରିବର୍ତ୍ତିତ ହୋଇଯାଇଥିବା ପରିବେଶ ପୁଣି ଭାବାନ୍ତର ସୃଷ୍ଟି କରୁଛି। ସଦ୍ୟ ଏବଂ ଲୋଭନୀୟ ନୀଳଗିରିର ସ୍ମୃତି ଗୋଟାଏ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟି କରିଛି।

ତମେ ତ ମୋର ଏ ଘର ଭିତରର ସ୍ଥିତି ସମ୍ପର୍କରେ ଅନେକ କିଛି ଜାଣିଛ। ବେଳେବେଳେ ମୁଁ ଏଇଠି ସତରେ ଜନ୍ମ ହୋଇଛି କି ନାହିଁ ବିଶ୍ୱାସ ଆସେ ନାହିଁ। ଏଠିକାର ମଣିଷମାନେ ମୋର ଯେ ଏକାନ୍ତ ନିଜର, ଏକଥା ମଧ ମନରେ ଧାରଣା ଜନ୍ମେ ନାହିଁ। ଭଲ ପାଇବା ଏଇଠି ସଂକୀର୍ଣ୍ଣ ହୋଇଯାଏ, ଜୈବିକ ହୋଇପଡ଼େ, ଆବେଗ ସ୍ରୋତ ସମ୍ମୁଖରେ ଅନେକ କିଛି ହିମାଳୟ ତୁଲ୍ୟ ପ୍ରତିବନ୍ଧକ ସୃଷ୍ଟି କରେ। ତଥାପି ଭଲ ପାଇବା ମାନେ ଭଲ ପାଇବା, ଅନ୍ୟ ଅର୍ଥରେ ନୁହେଁ। ଆଗେଇ ଚାଲିବା ମାନେ ଜୀବନ, ଏଥିରେ ଦ୍ୱିରୁକ୍ତି ନାହିଁ।

ଖରା ଏଇଠି ପ୍ରବଳ। କାଲି ରାତିସାରା ଶୋଇ ପାରିନାହିଁ। ଘରୁ ସମସ୍ତେ ବାହାରି ଆସି ବାହାରେ ମୁକ୍ତ ଆକାଶ ତଳେ ଆଶ୍ରୟ ନେଉଛନ୍ତି, ଜହ୍ନ ଆଲୁଅର ମଳିନତା ସହ ସେମାନେ ମିଶିଯାଉଛନ୍ତି। କିଛି ଦୂରରୁ ଅପେରାର ତୂରୀ ଶୁଭୁଛି, ତାଳଚେରରେ ଏ ଖରାଦିନ ରାତିରେ ନିଦରେ ଶୋଇପଡୁନାହିଁ।

ଏଇଠି ପୁଣି ସୋନ୍ୟା ସହ ଆଉଥରେ ମୁଁ ପରୀକ୍ଷା କରିବି, ମୋର ଜୀବନ ସହ ଜଡ଼ିତ ହୋଇଥିବା ସମସ୍ତ ଅନୁଭୂତି ଓ ବୌଦ୍ଧିକ ପରିପକ୍ୱତାକୁ ପୁଞ୍ଜିକରି ମୁଁ ପୁଣି ସମ୍ପର୍କ ଯୋଡ଼ିବି। ମୁଁ ଧନ୍ୟ ହେଇଯିବି ସତ, ମୁଁ ମଣିଷ ପଦବାଚ୍ୟ ହୋଇପାରିବି। ସୋନ୍ୟା ଯେ ଆଉ କେହି ନୁହେଁ, ସେହି ସ୍ୱପ୍ନର ମଣିଷଟିକୁ ମୁଁ ଯେମିତି ପୁଣିଥରେ ଖୋଜିବି।

ମୁଁ ବିଶ୍ୱାସ କରୁଛି ମୋର ନିର୍ଦ୍ଦିଷ୍ଟ ଓ ଅନିର୍ଦ୍ଦିଷ୍ଟ advenure କୁ ତମପାଖକୁ ଠିକ୍ ଭାଷାରେ ଲେଖିପାରିବି । ଏହାକୁ ତମେ ମଧ୍ୟ ଗୋଟାଏ ନିର୍ଦ୍ଦିଷ୍ଟ ଓ ଅନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ନେଇ ବିଚାର କରିବ ।

ମାଆ ଯଥେଷ୍ଟ ଦୁର୍ବଳ ହୋଇଯାଇଛି । ପାରିବାରିକ କଳହ ଓ ଅଶାନ୍ତି ଘରେ ନପଶୁଣୁ ଚାଳ ବାଜିବା ଭଳି ମୋ କାନରେ କିଛି ପଡ଼ିସାରିଛି । ଏଇଠି କଷ୍ଟେମଷ୍ଟେ କିଛି ଦିନ କାଟିବାକୁ ହେବ । ଅତିକମ୍‌ରେ ନଭେମ୍ବର ପର୍ଯ୍ୟନ୍ତ । ତା'ପରେ ଅନ୍ୟ ରାସ୍ତା, ଅନ୍ୟ ଯୋଜନା ।

ଅମ୍ଳାନ କୃତକାର୍ଯ୍ୟ ହୋଇଥିବା କଥା କେହି କହିପାରିଲେ ନାହିଁ । ସେ କୁଆଡ଼େ ଏବେ ସ୍ମିତା ଘର ଛାଡ଼ି ଜଗତ୍‌ପୁରରେ ଏକାକୀ ରହୁଛି । ନାନୀ ଏ ସମ୍ବାଦ ଦେଲାବେଳେ ମୁଁ ଚମକି ପଡ଼ିଥିଲି । ଏହା ଯଦି ଭଲ ପାଇବାଜନିତ ଏକ ସମସ୍ୟା ହୁଏ, ତେବେ ଆମ ଦୁହିଁଙ୍କ ସାହାଯ୍ୟ ନିହାତି ଦରକାର, ଯେତେ ଅନାହୂତ ହେଲେ ମଧ୍ୟ । କିନ୍ତୁ ପାରିବାରିକ ଅଶାନ୍ତିରେ ନୀରବ ରହିବା ସବୁଠାରୁ ଶ୍ରେୟସ୍କର । ମୁଁ ତା'ପାଖକୁ ନଲେଖିବାଜନିତ ନିଷ୍ଠୁର ସଂକଳ୍ପ ନେଇସାରିଛି ।

ମୁଁ ଏଥର ସମସ୍ତ ସାମର୍ଥ୍ୟ ଓ ଆତ୍ମବିଶ୍ୱାସ ନେଇ ପରୀକ୍ଷା ଦେବି । ଏଥର ମୁଁ ନିଜକୁ ହାରିବାକୁ ଦେବି ନାହିଁ । ତମେ ତମର ଯୋଜନା ଲେଖିବ ।

ଅଚ୍ୟୁତ

***ଦ୍ରଷ୍ଟବ୍ୟ :***

Modern Book Depot ରେ ବହୁତ ଭଲ ଓ ଦାମୀ ବହି ଥିଲା । ଆର୍ଥିକ ଅସ୍ୱଚ୍ଛଳତା ହେତୁ ମୁଁ ଚାରୋଟି ବହି ଆଣିଛି ।

1. Unpopular Essays, 2. The Rebel, 3. Inside the Whale & Other Essays- Orwell, 4. Pedagogy of the Oppressed- Paulo Freire

ମୁଁ ଏହାର ଟୀକା ପଠାଇବି । ତମେ ତାଳଚେର ଠିକଣାରେ ଲେଖିବ ।

▯ ▯ ▯

ପ୍ରିୟ ବନ୍ଧୁ,

ଭୁବନେଶ୍ୱରରୁ ଲେଖୁଛି । କାଲି ନୀଳଗିରିରୁ ନାନୀ ଆଦିଙ୍କ ସାଙ୍ଗରେ ଚାଲି ଆସିଲି । ତାଳଚେର ଯିବା କଥା ତମକୁ ଗତ ଚିଠିରେ ଧାରଣା ଦେଇଥିଲି ।

ମୋର ଯାହା ପର୍ଯ୍ୟବେକ୍ଷଣ, ମୁଁ ତାହା କ୍ରମାଗତ ଭାବେ ତମ ପାଖକୁ ଲେଖିବାକୁ ଚେଷ୍ଟା କରିଛଇ । ବାବି ପାଖରେ ଅଧିକ ଦିନ ରହି ଯାଇଥିଲେ ତାହାର ସୁନ୍ଦର ଓ ଉଜ୍ଜ୍ୱଳ

ଭବିଷ୍ୟତ ମୁଁ ନଷ୍ଟ କରି ଦେଇଥାଆନ୍ତି । ମୋର ଭୟ ହେଲା ଯେ ଯେଉଁ ସୃଷ୍ଟିଛଡ଼ା ଜୀବନ ମୋତେ ଧ୍ୱଂସମୁଖକୁ ଓଟାରିନେଉଛି, ତାହା ବାବି କ୍ଷେତ୍ରରେ ହୋଇଯିବ । ମୁଁ ପିଲାଦିନେ ଯେଉଁଭଳି ବ୍ୟବହାର କରୁଥିଲି, ବହି ପଢ଼ିବାକୁ ଯେଉଁଭଳି ଗ୍ରହଣ କରୁଥିଲି, ପ୍ରତିବାଦ କରିବାର ଦୁଃସାହସ ଯାହା ବି କରିଆସୁଥିଲି, ତାହା ବାବି ଅନୁକରଣ କରିବା ପାଇଁ ଆରମ୍ଭ କରିଥିଲା । ଏହା ପଛରେ ମୋର ପ୍ରଭାବ ମଧ୍ୟ ଅତି ଗୁରୁତର ଭାବେ ଜଡ଼ିତ ହୋଇଯାଇଥିଲା । ତମେ ତ ଜାଣ ମୋର rational judgement ନାହିଁ, ମାନବିକ ସ୍ତରର ସମସ୍ତ ସୁଗୁଣ କେଉଁ ଦିନଠାରୁ ମୁଁ ହରାଇବସିଛି । ଯେଉଁଭଳି ଅନୁଚିନ୍ତା ଓ ବିକ୍ଷିପ୍ତତା ମୋତେ ଆକ୍ରାନ୍ତ କରିଛି, ତାହା ମୁଁ ବାବିକୁ ବେଳେବେଳେ କହି ଦେଉଥିଲି । ତା'ବୟସରେ ମୋର ଅଦ୍ଭୁତ ଚିନ୍ତାଧାରାର ପ୍ରଭାବ କାଣିଚାଏ ନପଡୁ, ଏହା ହିଁ ଆନ୍ତରିକ ଭାବେ ମୁଁ ଚାହୁଁଥିଲି । ମୁଁ ନୀଳଗିରି ଶୀଘ୍ର ଛାଡ଼ି ଦେବାଟା ବାବି ପାଇଁ ମଙ୍ଗଳକର ବୋଲି ମୁଁ ଭାବିଲି ।

ଶେଷରେ ଛାଡ଼ିବାବେଳକୁ କୋହ, ଦୁଃଖ, ବ୍ୟର୍ଥତା ଓ ଭୟ ମୋତେ ଆଚ୍ଛନ୍ନ କରି ଦେଉଥିଲା । ବାପାଙ୍କ ପାଖରେ ବସି ମୁଁ ମୋର ଦୋଷ ସ୍ୱୀକାର କରିବା କଥା ଭାବୁଥିଲି । ତାଙ୍କ ଆଗରେ ମୋର ନିଜର ଚିନ୍ତାଧାରା ମଧ୍ୟ କହିଦେବାକୁ ଚାହୁଁଥିଲି । କିନ୍ତୁ କିଛି କହିପାରିଲି ନାହିଁ । ତମେ ଅନ୍ତତଃ ମୋତେ ବୁଝିବ, ମୋତେ ସ୍ୱାର୍ଥପର ବୋଲି ମନେ କରିବ ନାହିଁ । ମୁଁ ହଠାତ୍ ତମର ସମର୍ଥନ ନପାଇ ଚାଲିଆସିବା କଥା ସୁନ୍ଦର ହୋଇନାହିଁ ସତ, ତଥାପି ମୋର କାର୍ଯ୍ୟକୁ ତମେ ବାସ୍ତବ ଦୃଷ୍ଟିକୋଣରୁ ବିଚାର କରିବ ।

ନୀଳଗିରିରେ ମୁଁ ଅନେକ କିଛି ପାଇଛି । ସ୍ନେହ, ସହାନୁଭୂତି, ନିର୍ଜନତା, ବେଦନା, ବିରହ, ଆତ୍ମସଚେତନତା, ଏସବୁ କେବେ ନା କେବେ ଭିନ୍ନ ରୂପରେ ମୋତେ ଚହଲାଇ ଦେଇଛନ୍ତି । ମୁଁ ସେସବୁକୁ କେବେହେଲେ ଭୁଲିଯିବି ନାହିଁ । ତମେ ତାଳଚେର ଠିକଣାରେ ଲେଖିବ ବୋଲି ଆଶା କରେ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ହିମାଳୟରୁ ତମର ଚିଠିଗୁଡ଼ିକ ମୋତେ ଅନ୍ୟ ଏକ କଳ୍ପନାତୀତ ରାଜ୍ୟରେ ପହଞ୍ଚେଇ ଦେଇଥିଲା । ଚମତ୍କାର ଲେଖିଛ ତମେ । 'ଶୀଳାତୀର୍ଥ'ର ମଣିଷ ହିସାବରେ ତମେ ହିମାଦ୍ରିକୁ ଆବିଷ୍କାର କରିଛ । ଏଥିରେ ଆବେଗ ଓ ଉଦ୍‌ଭାସ ଭାରି ଅନ୍ତରଙ୍ଗଭାବେ ପରିସ୍ଫୁଟ ହୋଇଛି । ହିମାଳୟ ଆମ କଳ୍ପନାବିଳାସ ନଥିଲା, ଆମର ଆଗେଇ ଯିବାର ପଛରେ ଏହା ବାରମ୍ବାର ପ୍ରେରଣା ଦେଇଥିଲା । ଗମ୍ଭୀର ଓ ଅତ୍ୟୁଚ୍ଚ ଶୃଙ୍ଗଗୁଡ଼ିକ ଆମ ପାଇଁ କେବେ ହେଲେ ଭୌଗୋଳିକ ସ୍ଥିତିରେ ରହିଯାଇ ନଥିଲା । କେତେ ଭଲ ହେଲା,

ତମେ ଯାଇପାରିଲ, ଆପଣାକୁ ତୁଷାରାବୃତ ନଗାଧିରାଜ ସହ ପରିଚିତ କରାଇପାରିଲ । ଗଙ୍ଗାରେ ବୁଡ଼ ଦେଇ ଆପଣାକୁ ଧୋଇପାରିଲ । ପବିତ୍ର କରିଦେଲ ମନପ୍ରାଣକୁ । ଏ ଯାତ୍ରା (sentimental journey)କୁ ମୁଁ ତମ ଜୀବନର ଅନ୍ୟ ଏକ ବିଶେଷ ଘଟଣା (ଅଦ୍ୱିତୀୟ) ବୋଲି ମନେକରୁଛି । ମୁଁ ପାଖରେ ଥିଲେ ଅଧିକ କିଛି ଘଟି ନଥାନ୍ତା । ତମେ ଓ ମୁଁ ଏହି କ୍ଷେତ୍ରରେ ନିଶ୍ଚିତ ଭାବେ ସମଭାବାପନ୍ନ ।

ତମ ପାଖରୁ ହିମାଳୟବର୍ଣ୍ଣିତ ଚିଠିଗୁଡ଼ିକ ପାଇ ମୁଁ ମାଆ, ବୁଢ଼ୀମାଆ ଓ ଅନ୍ୟମାନଙ୍କୁ ଶୁଣାଇଛି । ବାପାଙ୍କୁ ଦେଇଛି; ସେମାନେ ଉପଭୋଗ କରିଛନ୍ତି । ଋଷିକେଶ ଓ ହରିଦ୍ୱାର କଥା ବୁଢ଼ୀମା'ଙ୍କର ସ୍ପଷ୍ଟ ମନେଅଛି । ସେ ଅନେକ କଥା କହୁଥିଲେ । ତିରିଶ ବର୍ଷ ତଳକୁ ଫେରିଯାଇଥିଲେ, ତମେ ପିଲାଟିଏ ହୋଇ କେଉଁଠି ପହଞ୍ଚିଛ ଅବାକ୍ ହେଉଥିଲେ । ମଣିଷ କାହିଁକି ତୀର୍ଥ କରେ ।, ସେକଥା ମୁଁ ତାଙ୍କୁ ପଚାରିଥିଲି । ସେ ଉତ୍ତର ଦେଇଥିଲେ ଯେ ଜୀବଦଶା ଭିତରେ ଏସବୁ ଦେଖିଲେ ଆଖି ପବିତ୍ର ହୋଇଯାଏ, ପାପମନ କୁଆଡ଼େ ଧର୍ମପ୍ରାଣ ହୋଇଯାଏ । ତମେ ମୋଭଳି ମଣିଷର ମନନେଇ ନିଶ୍ଚୟ ଯାଇଥିଲ । ତମେ ଯେତେବେଳେ ଧର୍ମଚିନ୍ତାରେ ଗଦ୍‌ଗଦ୍ ହୋଇଯାଇଛ, ଭକ୍ତିପୂତ ଚିତ୍ତରେ ବିହ୍ୱଳ ହୋଇଯାଇଛ, ହିମାଳୟ ଜୀବନରେ କେଉଁଭଳି ଭାବାନ୍ତର ସୃଷ୍ଟି କରିଥାନ୍ତା ମୁଁ ତାହା ଅନୁଭବ କରିପାରୁଛି । ସେଠାକୁ ଯାଇ ତମେ ଯେମିତି ଆଜି ଏକ ସତ୍ୟପଥରେ ଆଗକୁ ଅଗ୍ରସର ହୋଇଯାଇଛ, ମୁଁ ଏଇଠି ଅତି ସନ୍ତପ୍ତ ଓ ଅନୁତପ୍ତ ପ୍ରାଣନେଇ ଯେମିତି ଅନେକ ପଛରେ ପଡ଼ିଯାଇଛି । ଆଗ ଭଳି ତମ ଚିଠି ପଢ଼ି ଏଇ ମୁହୂର୍ତ୍ତରେ ମନେହେଉଛି, ମୁଁ ହିମାଳୟର କ୍ରୋଡ଼କୁ ଚାଲିଯାଇ ସେଇଠି ଆଶ୍ରୟ ମାଗିଥାଆନ୍ତି, ଏ ଯନ୍ତ୍ରଣାରୁ ରକ୍ଷା କରନ୍ତି ନିଜକୁ, ଆପଣାକୁ ସଂଯତ କରନ୍ତି । ଗୋଟାଏ ବିଭତ୍ସ ଓ ରୋଗଗ୍ରସ୍ତ ପୃଥିବୀରୁ ଅନନ୍ତ କାଳ ପାଇଁ ମୁକ୍ତି ମିଳନ୍ତା ମୋତେ । ଅତି ଶାନ୍ତ ମଣିଷଟିଏ ହୋଇପାରନ୍ତି ।

× × × ×

ଏ ଭିତରେ ଶ୍ୟାମବାବୁଙ୍କ ଗାଁକୁ ମୁଁ ଯାଇଛି । ତମପାଖରୁ ତାଙ୍କ ବିଷୟରେ ଅନେକ କଥା ମୁଁ ଶୁଣିଥିଲି, 'ପଡ଼ିଉଠି ଯିବା' ମଣିଷ ହିସାବରେ ତାଙ୍କୁ ମୁଁ ଭିନ୍ନ ଦୃଷ୍ଟିରେ ଦେଖୁଥିଲି । ଭଲ ହେଲା ତାଙ୍କ ସହ ସାକ୍ଷାତ ହୋଇ । ସେ ମୋ କଥା ଜାଣିବାର ଅବକାଶ ପାଇନାହାନ୍ତି । ମୋର ଭାବପ୍ରବଣ ମନ ସହ ସେ ଅପରିଚିତ । ସେଇଥିପାଇଁ ତାଙ୍କ ସହ ସମୟର (ଅଳ୍ପ ହେଲେ ମଧ୍ୟ) ସଦୁପଯୋଗ କରିପାରିନାହିଁ । ତାଙ୍କ ଗାଁଟିର ଅବସ୍ଥିତି ଭାରି କାବ୍ୟିକ । ସେଇଠି ଶ୍ୟାମବାବୁ କ'ଣ, ଯେ କେହି ମଣିଷର ଆବେଗ ଥିଲେ କବିତା ଲେଖିପାରିବାକୁ ଯଥେଷ୍ଟ ଖୋରକ୍ ପାଇବ । ଏଭଳି ଅତି ନିଭୃତ ଇଲାକାରେ ମଣିଷ କେବଳ ଆତ୍ମଗୋପନ କରିବା ପାଇଁ ଚାହିଁବ । ଭୀଷଣ ସବୁଜ ହୋଇଯାଇଛି, ବିଶେଷ କରି ବର୍ଷା ହେଲାପରେ ! ଆମେ ଗାଁ ବୁଲି ବାହାରିଥିଲୁ । ଶ୍ୟାମବାବୁ ଉଦ୍ୟମ କରିଥିଲେ

ଆମକୁ ଆଦିବାସୀ ଗୀତ ଓ ନୃତ୍ୟରେ ଆପ୍ୟାୟିତ କରିବାକୁ । ଲୋକମାନେ ଭାରି ସରଳ, ମଦ୍ୟପାନରେ ମସ୍‌ଗୁଲ୍ ହୋଇଥିବା କଥା ଲକ୍ଷ୍ୟ କଲି । ସନ୍ଧ୍ୟା ନଇଁ ଆସିବାରୁ ମୁଁ ଓ ବାବି ଫେରିଆସିଲୁ । ଶ୍ୟାମବାବୁଙ୍କ ସଙ୍ଗେ ପୁଣି ଦେଖା ହେବାର ସମ୍ଭାବନା ଅଛି ।

ଏଠିକି ଆସିବାର ପ୍ରାୟ ଦୁଇମାସ ହୋଇଗଲା । ଉଦ୍ଦେଶ୍ୟ କିନ୍ତୁ ପୂରଣ ହେଲା ନାହିଁ । ବାବି ପରୀକ୍ଷାରେ ଭଲ କରିନାହିଁ, ବିଶେଷ କରି ଗଣିତରେ ଖରାପ କରିଛି । ଦୋଷ ମୁଁ ନିଜକୁ ହିଁ ଦେଉଛି, ଏ ମୋର ଏକ ଚରମ ବ୍ୟର୍ଥତା ବୋଲି ମୁଁ ମାନିନେଉଛି । ମୋର ପଢ଼ାପଢ଼ି କିଛି ଉଲ୍ଲେଖନୀୟ ନୁହେଁ । 'ଅରବିନ୍ଦ ପାଠାଗାର'ର କେତେକ ବହି ପଢ଼ିବା ଛଡ଼ା ମୁଁ ବିଶେଷ କିଛି ହାସଲ କରିନାହିଁ । ତମ ଆଲ୍‌ମିରାର ସବୁ ବହି ପ୍ରାୟ ସରିଗଲାଣି । ଏହାପରେ ଏଇଠି ସମୟ ଅତିକ୍ରାନ୍ତ ହେଲେ ମୁଁ କ'ଣ କରିବି ଭାବିପାରୁନାହିଁ । ମୋର କିଛି ଦିନ ତଳର ପ୍ରଚଣ୍ଡ ସଂକଳ୍ପ ଆଜି ଯେମିତି ଭାଙ୍ଗି ଯାଇଛି, କେଉଁଠି ମୁଁ ପୁଣି ନିଜକୁ ଆତ୍ମଗୋପନ କରିବି, ଏକଥା ଚିନ୍ତା କରୁଛି । ଶେଷରେ ସ୍ୱୀକାର କରୁଛି ଯେ ତମ ଗାଁ ସହ ମୁଁ ଅତି ନିବିଡ଼ ଭାବେ ଜଡ଼ିତ ହୋଇପାରିନାହିଁ । ଏଇଠି କେତେବେଳେ ସକାଳ ହୁଏ ଏବଂ ସନ୍ଧ୍ୟାର ଅନ୍ଧକାରରେ ସବୁ କେତେବେଳେ ଆତ୍ମଗୋପନ କରନ୍ତି ମୁଁ ଏବେ ମଧ୍ୟ ଭଲ କରି ଆବିଷ୍କାର କରିନାହିଁ । ତମ ଘରର ମଣିଷମାନଙ୍କ ଛଡ଼ା ଏଇଠି କାହାସହ ମୋର ପରିଚୟ ହେଲାନାହିଁ । କେଉଁ ମଣିଷ ଅତି କରୁଣ ଭାବେ ମଣିଷପଣିଆ ପାଇଁ ସଂଗ୍ରାମ କରୁଛି ତାହା ମଧ୍ୟ ଲକ୍ଷ୍ୟ କରିପାରିନାହିଁ । ଭାବପ୍ରବଣତାର ଭଙ୍ଗା ଏଇଠି ମୋତେ ଆକ୍ରାନ୍ତ କରିଛି । ତମ ପରିବାରର ଜଣେ ହୋଇଯାଇଛି ସତ, ମୁଁ ଏବେ ଯେମିତି ଏଘରର ପ୍ରତି କୋଣରେ ଅପରିଚିତ ହୋଇ ରହିଯାଇଛି ।

ଜୀବନରେ ଯଦି କେବେ ମୋର ନିଜସ୍ୱ କଥା ଲେଖିବ  ସେ, ଏଇଠି ମୋର ଆତ୍ମଗୋପପନରୁ ମୁଁ ନିଶ୍ଚୟ ଉଲ୍ଲେଖ କରିବି । ତମର ବାପାଙ୍କ ଭଳି ଉଦାରଚେତା ଓ ମହାନ ମଣିଷଙ୍କର ସଂସ୍ପର୍ଶରେ ଆସିଥିବା ହେତୁ ମୋର ମାନସିକ ସ୍ତରରେ ପରିବର୍ତ୍ତନ କଥା ମଧ୍ୟ ମୁଁ ବାରମ୍ବାର ମନେପକାଇବି । ତାଙ୍କ ସହ ମୁଁ ଦୀର୍ଘସମୟ ଆଲୋଚନା କରିବାକୁ ବାରମ୍ବାର ଇଚ୍ଛା କରି ମଧ୍ୟ ଯେମିତି ଶେଷ ମୁହୂର୍ତ୍ତରେ ନିବୃତ୍ତ ହୋଇଯାଏ, ତଥାପି ତାଙ୍କ ପାଖରୁ ଅନୁଭୂତିସମ୍ପନ୍ନ ଅନେକ ଉପାଦେୟ କଥା ଶୁଣିବାକୁ ମିଳିଥାଏ । ଏଇଠି ତମ ସ୍ଥାନରେ ମୁଁ ନିଜକୁ ହୁଏତ ଗ୍ରହଣ କରିନେଇଛି, ଅନ୍ୟମାନେ ମଧ୍ୟ ଏକଥା ମାନି ନେଉଛନ୍ତି ।

ଖୁବ୍ ଶୀଘ୍ର ମୁଁ ମୋର ଅନୁଭୂତିକୁ ଲେଖିବି, ଏ ଗାଁର ସବୁ ପରିବେଶକୁ ସଂକ୍ଷେପରେ ମୁଁ ନିଶ୍ଚୟ ବର୍ଣ୍ଣନା କରିବି; ତମ ଘର ପ୍ରତି ଆନୁଗତ୍ୟ ପ୍ରକାଶ କରିଥିବା କେତେଜଣଙ୍କୁ ଲକ୍ଷ୍ୟ କରି ମୋର ଦୃଷ୍ଟିକୋଣ ଉଲ୍ଲେଖ କରିବି । ଏଇଠି ଯେଉଁସବୁ ରଙ୍ଗ ଫିକା ପଡ଼ିଯାଏ, ଯେଉଁ ବାସ୍ନା ମତୁଆଲା କରେ ନାହିଁ, ଯେଉଁ nostalgia କରୁଣ ହୋଇଯାଏ, ତାହା ମଧ୍ୟ ସମୟ ଓ ସୁଯୋଗ ଦେଖି ମୁଁ ନିଶ୍ଚୟ ଜଣାଇବି ।

ଅଚ୍ୟୁତ

***ଦ୍ରଷ୍ଟବ୍ୟ :***

ଅମ୍ଳାନ ତାହାହେଲେ ତମକୁ ଲେଖିଛି । ଭୀଷଣ ସ୍ୱାର୍ଥପର ମଣିଷଟିଏ । ଅବଶ୍ୟ ତା'ର ବା ଦୋଷ କ'ଣ ? ଜୀବନରେ ଯେଉଁ ଅଭାବ ତାହାକୁ ଆମର ନିକଟବର୍ତ୍ତୀ କରିଥିଲା, ଏବେ ତାହା ମେଣ୍ଟି ଯାଇଛି । ଆମେ ଏବେ ତୃତୀୟ ପୁରୁଷ, ଅଜଣା ଓ ଅନୁପ୍ରବେଶକାରୀ । ଅମ୍ଳାନ ସହ ମୋର ଯୋଗାଯୋଗ ନଥିଲେ ମଧ୍ୟ ମୁଁ ଏଥିପାଇଁ ଚିନ୍ତିତ ବା ଦୁଃଖିତ ନୁହେଁ । ସମୟ ଅନୁସାରେ ସିଏ ମୋର ମନେପଡ଼ିବ, ମୁଁ ତା'ର ମନେପଡ଼ିବି । ବନ୍ଧୁତାର ଦୃଷ୍ଟାନ୍ତ ଦେବାକୁ ଗଲାବେଳେ ମୁଁ ଅତି ନିଶ୍ଚିତ ଭାବେ ତା'ର ମନକୁ ଆସିବି । ସେ ସମ୍ଭବତଃ ନୀରବ ହୋଇ ଜଣାଇଦେବାକୁ ଚାହେଁ ଯେ ବନ୍ଧୁତାର ସୀମାରେଖା ନିର୍ଦ୍ଦିଷ୍ଟ । ଏହା ଜୀବନର ଅନେକ କିଛି ନୁହେଁ, କିଛି ବି ନୁହେଁ ବୋଧେ । ତମେ ତା'ପାଖକୁ କିନ୍ତୁ ଲେଖୁଥିବ ।

□ □ □

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି । ହିମାଳୟରୁ ତମେ ଲେଖିଥିବା ସବୁଚିଠି ମଧ୍ୟ ମୋର ହସ୍ତଗତ ହୋଇଛି । ବମ୍ବେ ଠିକଣାରେ ତମକୁ ଉତ୍ତର ପଠାଇଥିଲି, ତମେ ପାଇନାହଁ ବୋଧେ । ସେ ଯାହାହେଉ ଚୁମ୍ବକରେ ପୁଣି ମୁଁ ସେସବୁ ଲେଖୁଛି ।

ତମେ ଯେଉଁଭଳି ହିମାଳୟକୁ ଅନୁଭବ କରିପାରିଛ, ଆମ ବନ୍ଧୁମାନଙ୍କ ଭିତରୁ କେହି ସେଭଳି ଯେ କରିପାରିଥାଆନ୍ତା ମୋର ସେଥିରେ ସନ୍ଦେହ କରିବାର ଅଛି । ଚମତ୍କାର ଶୈଳୀ ଓ ଭାଷାର ଅଫୁରନ୍ତ ବିନ୍ୟାସ ଦେଇ ତମେ ଆବେଗକୁ ରୂପ ଦେଇଛ । ଚିରଦିନ ପାଇଁ ଏ ଚିଠିଗୁଡ଼ିକୁ ମୁଁ ସାଇତି ରଖିବି, ବେଳେବେଳେ ପଢୁଥିବି ମଧ୍ୟ, ଅନେକବାର ହିମାଳୟଯାତ୍ରୀ ହେବାକୁ ଆମେ ଚାହିଁଛେ, ବାରମ୍ବାର ଭଗ୍ନ ମନୋରଥ ହୋଇଯାଇଛେ, ଅବସ୍ଥାଚକ୍ର ଆମକୁ ସେ ସୁଯୋଗ ଦେଇନାହିଁ । ଆମେ ମଧ୍ୟ ଆଗରୁ ଭାଗ୍ୟବାନ ନଥିଲେ ଏ ସମ୍ପର୍କରେ । ହିମପର୍ବତ ଆମ ପାଇଁ ଜୀବନର ଅନେକ କିଛି, ଆମର ଆବେଗର ପରିପ୍ରକାଶର ଏକ ଅଦ୍ୱିତୀୟ ମାଧ୍ୟମ । ତମେ ପାଖରେ ଥାଇ ଏହି କଥା ଅନୁଭବ ନିଶ୍ଚୟ କରିପାରିଛ । ଗମ୍ଭୀର ଏବଂ ଉତ୍ତୁଙ୍ଗ ଶୃଙ୍ଗମାନେ ତମକୁ ବିଶ୍ୱାସ ଦେଇଛନ୍ତି, ଗଙ୍ଗା ତମକୁ ନିର୍ମଳ ସ୍ନେହ ଦେଇଛି । ତମେ ଆପଣାକୁ ସ୍ୱଚ୍ଛ କରିପାରିଛ, ଗୋଟାଏ ଅତିମାନବୀୟ ସ୍ତରରେ ତମେ ପହଞ୍ଚିଯାଇଛ । ଚିତ୍ତରଂଜନ ଦାସ ଲେଖିଛନ୍ତି, 'ଶୁଣିବାର କାନ ନେଇ ଗଲେ କୁଆଡ଼େ ପର୍ବତକୁ ଶୁଣିହୁଏ ।' ତମେ ମଧ୍ୟ ସେହି ଆଦି କାଳର ଅଦ୍ଭୁତ ସଙ୍ଗୀତ ଓ ଅବର୍ଣ୍ଣନୀୟ ସଂଳାପ ଶୁଣିପାରିଛ, ତମେ ମହାନ ହୋଇଯାଇଛ । ମୁଁ ତମପାଖରେ ରହିବାକୁ

ଏକ ଦେବପ୍ରେରିତ ସୁଯୋଗ ବୋଲି ମନେ କରିଥାଆନ୍ତି । କିନ୍ତୁ ତମେ ଯାହା ଆବିଷ୍କାର କରିପାରିଛ, ମୁଁ ଥିଲେ ସେଥିରେ କିଛି ଅଧିକ ସଂଯୋଗ ହୋଇନଥାନ୍ତା । ହିମାଳୟ ବିଷୟରେ ଆମ ଦୁହିଁଙ୍କ ଭିତରେ ଦ୍ୱିମତ ନାହିଁ । ତମର ଚିଠିକୁ ମୁଁ ଏଇଠି ସମସ୍ତଙ୍କ ଆଗରେ ପଢ଼ି ଶୁଣାଇ ଦେଉଥିଲି, ତମର ମନର କଥାଗୁଡ଼ିକ ଏଇଠି ସମସ୍ତଙ୍କୁ ଭାବବିହ୍ୱଳ କରୁଥିଲା । ହିମାଳୟଠାରୁ ଦୂରରେ ରହି ତମେ ଏବେ ତା'କଥା ମନେ ପକାଉଥିବ । ତା'ର ରୂପାନ୍ତର (ପ୍ରତି ମୁହୂର୍ତ୍ତରେ) ତମ ଭିତରେ ଏବେ ବି ଭାବାନ୍ତର ସୃଷ୍ଟି କରୁଥିବ । ପୁଣି ତମେ କେବେ ହିମାଳୟ ପାଖକୁ ଗଲେ ଛାଡ଼ି ଆସିଥିବା ଅତି ପ୍ରିୟ ମଣିଷମାନଙ୍କୁ ମନେପକାଇ ପୁଣି ଲେଖିବ; ପୁଣି ବଞ୍ଚିବା ପାଇଁ ସାହସ ସଞ୍ଚୟ କରିବ ।

ତମେ ଭଲ ଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଚିଠି ପାଇଲି ।

ମୁଁ ଚାକିରୀ, ମାନେ ଗୋଟାଏ ନିର୍ଦ୍ଦିଷ୍ଟ କ୍ରୀତଦାସତ୍ୱ ବୋଲି ମନେକରେ । ତଥାପି ମଧ୍ୟ ଦୂର ପାହାଡ଼ ଭଳି ମୋତେ ଆକୃଷ୍ଟ କରେ । କେଉଁଠି ବି ରହିଲେ ନିଜର ମୌଳିକ ସ୍ୱାଧୀନତା କ୍ଷୁଣ୍ଣ ନିଶ୍ଚୟ ହିଁ ହେବ । ବଞ୍ଚିବା ବି ମୋଟ ଉପରେ ସେଇଆ ।

ତମ ଚିଠି ପଢ଼ି ବିଶେଷ ଦୁଃଖ ଅନୁଭବ କଲି । ଦିଲ୍ଲୀରେ ଏତେ ଅଳ୍ପ ଦିନ ଭିତରେ ତମର ଯେ ଏତେ ପାଖକୁ କେହି ଆସିଥିଲା, ମୁଁ ବିଶ୍ୱାସ କରିପାରୁନାହିଁ । ଭଲ ଭଣିଷ ତଥା ପ୍ରିୟଜନମାନେ ଏଇମିତି ସବୁ ଆଶାକୁ ଭାଙ୍ଗି ଦେଇ ଅକାଳରେ ଝରିଯାଆନ୍ତି । ମୁଁ ହୁଏତ ତାଙ୍କୁ ଦେଖିନାହିଁ, ପରିଚୟ ମଧ୍ୟ ନାହିଁ; ତଥାପି ଆମର ପରିସରଭୁକ୍ତ କେହି ଆତ୍ମୀୟର ବିୟୋଗଜନିତ ଦୁଃଖ ମୁଁ ନିଶ୍ଚୟ ଭୋଗୁଛି ।

ତମ ପାଖକୁ ଲେଖୁଥିବା ସବୁ ଚିଠି ମୁଁ ପଠେଇପାରୁ ନାହିଁ । ତାହାର ପ୍ରଧାନ କାରଣ ହେଉଛି ମୋର ସାଧାରଣ ଚିନ୍ତାଧାରା । ଚିଠିଗୁଡ଼ିକ କିଛି ଲେଖିଲା ପରେ ଅନୁଭବ କରୁଛି ଯେ ତାହା ବିଶେଷ ଉନ୍ନତ ବା ପରିପକ୍ୱ ନୁହେଁ । ଏଇସବୁ କଥା ତମେ ଅନୁଭବ କରୁଥିବ । ମୋର କିପରି ଅଧୋଗତି ହେଉଛି, ତାହା ତମେ ବେଶ୍ ଲକ୍ଷ୍ୟ କରିପାରୁଥିବ । ଏବେ କିଛି ଅନୁଭବ କରି ଧାଡ଼ିଏ ଲେଖିବା ସମସ୍ୟା ହୋଇପଡୁଛି । କିଛି ସମୟ ପାଇଁ ମୁଁ ଅବସର ଚାହୁଁଛି । ତମ ପାଖକୁ ମୁଁ ଏଇମିତି ସାଧାରଣ କଥା ଲେଖିବି, ନିଜ କଥା ପ୍ରାୟ ଲେଖିବି ନାହିଁ ।

ବମ୍ବେ (ମୁମ୍ବାଇ) କଥା ଲେଖିବ। ଅମ୍ଳାନ ସେଇଠି ଥିଲାବେଳେ ବିଶେଷ କିଛି ଲେଖୁ ନଥିଲା। ଆମର ଚିରାଚରିତ ଉପାୟରେ ସେଠିକାର ମଣିଷମାନଙ୍କୁ ତମେ ଲକ୍ଷ୍ୟ କରିବ। ଅଶୋକ ଯଦି ଲେଖିଥାଏ ମୋ କଥା ତା'କୁ ଜଣାଇଦେବ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଜି ଏଇଠି ଏକ ଅନିର୍ବଚନୀୟ ରୂପ ନେଇ ଜହ୍ନ ଉଠିଛି। ସନ୍ଧ୍ୟା ପୂର୍ବରୁ ଆକାଶ ରକ୍ତିମ ହୋଇଥିଲା। ହାଲ୍‌କା ବାଦଲ ଦେହରେ ଭିନ୍ନ ଭିନ୍ନ ରଙ୍ଗସବୁ ବୋଳି ହୋଇଯାଇଥିଲା। ଜହ୍ନ ଉଠିବା ପରେ ମଧ୍ୟ ଆକାଶ ଭାରି ମନୋରମ ହୋଇ ଉଠିଥିଲା। ମୁଁ କିନ୍ତୁ ଭଲ ମନ୍‌ରେ ନାହିଁ।

ଏଠାକୁ ଆସିବାର ଦୁଇମାସ ହୋଇଗଲା। ମୁଁ ଏଇଠି କ'ଣ କରିଛି, କ'ଣ ନକରିଛି ସେ ସମ୍ପର୍କରେ ଅଗଣିତ ପ୍ରଶ୍ନ ପଚାରି ନିଜକୁ ଅଥୟ କରି ଦେଇଛି। ପଢ଼ାପଢ଼ି କିଛି ହୋଇଛି, କିନ୍ତୁ ସେଥିରେ ମୋର ସମୁଦାୟ ମନୋଭାବ କ୍ରମଶଃ ଶିଥିଳ ହୋଇଯାଇଛି, ପରିଶ୍ରମ କରିବାର ଅନୁକୂଳ ବାତାବରଣ ପାଇଁ ସୁଦ୍ଧା ତାହାର ସଦ୍‌ବ୍ୟବହାର ମୁଁ କରିପାରିନାହିଁ। ପ୍ରତିଦିନ ସକାଳୁ ଉଠି ପଢ଼ିବାକୁ ପ୍ରତିଜ୍ଞାବଦ୍ଧ ହୋଇଛି ସତ; କିନ୍ତୁ ଆଳସ୍ୟ ଓ କାପୁରୁଷତା ମୋତେ ପଛଘୁଞ୍ଚା ଦେବାକୁ ବାଧ୍ୟ କରିଛନ୍ତି, ମୁଁ ଭାରି ଭୟଭୀତ ହୋଇଯାଇଛି।

ଏଠାକାର କାର୍ଯ୍ୟକ୍ରମ ଭିତରେ ବାବିକୁ ପାଠପଢ଼ାରେ ସାହାଯ୍ୟ ମୂଳ ଥିଲା। ବାବି ମୋଟାମୋଟି ମୋର ଅତି ପାଖକୁ ଚାଲିଆସିଥିଲା। ଏହାଦ୍ୱାରା ମୁଁ ତା'ର ମନରେ ଆଗ୍ରହ ସୃଷ୍ଟି କରିବା କଥା ଦେଖିପାରୁଥିଲି। କିନ୍ତୁ କେଉଁଠି ଯେମିତି କିଛି ଅଭାବ ରହିଗଲା, ସେ ଯେମିତି ଭାରି ବୀତସ୍ପୃହ ମନେହେଲା। ସେ ଘଣ୍ଟାଘଣ୍ଟା ଧରି ଗପବହି ପଢ଼ିପାରେ, ଗିଟାର୍ ଘଣ୍ଟାଏ ପର୍ଯ୍ୟନ୍ତ ବଜାଇପାରେ, ଆଖଡ଼ାରେ ଯାତ୍ରା ଶିଖିପାରେ। କିନ୍ତୁ ପାଠପଢ଼ା ପାଇଁ ଯେତିକି ଧ୍ୟାନ ଓ ଧୈର୍ଯ୍ୟ, ସେତିକି ନରହିବାଟା ଭାରି ଆଶ୍ଚର୍ଯ୍ୟଜନକ ମନେହେଲା। ମୋର ସମସ୍ତ ଚେତାବନୀ ସତ୍ତ୍ୱେ ସେ ଆଦୌ ପଢ଼ିଲା ନାହିଁ; ମୁଁ ମଧ୍ୟ ଶାସନ କରିବାକୁ କୁଣ୍ଠାବୋଧ କଲି। ଏସବୁ ପରେ ବି ବାବିର ଯାହା ସାଧାରଣଜ୍ଞାନ ଓ ଧୀଶକ୍ତି ଥିଲା, ସେଥିରେ ମଧ୍ୟ ପରୀକ୍ଷାରେ ଭଲ କରିବା କଥାରେ ମୁଁ ଆଶାୟୀ ଥିଲି। କିନ୍ତୁ ପରୀକ୍ଷାର ଫଳାଫଳ ତ ତମେ ଜାଣିଛ। ମୁଁ ଯେମିତି ଅପମାନିତ ହେଲି। ମୋର ego କୁ ବହୁତ ବାଧିଲା। ନିଜକୁ ଦୋଷ ଦେଲି। କ୍ଷମା କରିପାରିଲି ନାହିଁ। ମୋର ଧାରଣା ହେଲା ଯେ ମୁଁ ତାକୁ ପଢ଼ାଇ ନଥିଲେ ସେ ଭଲ କରିଥାଆନ୍ତା। ସେ ମୋର 'କୁସ୍ୱଭାବ' ଦ୍ୱାରା ପ୍ରଭାବିତ ହେଉଥିବାର ଭୟ ମୋତେ ବିଶେଷଭାବେ ଆକ୍ରାନ୍ତ କଲା। ବାବିର ସବୁ

potentialities ଅଛି । ସବୁ ପ୍ରତି ତା'ର ଆଗ୍ରହ ମଧ୍ୟ ଅଛି; କିନ୍ତୁ ଆଗକୁ ମାଡ଼ିଯିବାର ସାହସ ବା ଚେତନାଶକ୍ତି ନାହିଁ । competitive spirit ର ଘୋର ଅଭାବ ଅଛି, ପାଠ ପଢ଼ିବା ପାଇଁ ଯେତିକି ପରିଶ୍ରମ କରିବା କଥା ସେତିକି ସେ କରୁନାହିଁ ।

ବନ୍ଧୁ ! ଆଜି ମୋତେ ଏଇଠି ରହିବାକୁ ସତ୍‌ସାହସ ଆସୁନାହିଁ । ଏଠାରେ ତମ ଘରର ଅନ୍ନଧ୍ୱଂସ କରିବା ବ୍ୟତୀତ ଆଉ କିଛି କରୁନାହିଁ । ଦେହରେ ମେଦବୃଦ୍ଧି ହେଉଥିବା କଥା ସ୍ପଷ୍ଟ ଲକ୍ଷ୍ୟ କରିପାରୁଛି । ମୁଁ ଅତି ବ୍ୟର୍ଥତାର ସହ ନୀଳଗିରି ଛାଡ଼ିବା କଥା ସ୍ଥିର କରୁଛି । ଏଇଠି ତମର ବାପାମାଆଙ୍କର ଅକୁଣ୍ଠ ସ୍ନେହ ଓ ସଦିଚ୍ଛା ମୋର ଅନାଗତ ଜୀବନର ସ୍ମରଣିକା ହୋଇ ରହିବ । ବୁଢ଼ୀମା' ମୋର ମାଆ ବୟସର । ତାଙ୍କ ପାଖକୁ ମୁଁ ସବୁଠାରୁ ବେଶୀ ଆକର୍ଷିତ ହୋଇଯାଇଥିଲି । ଏଠାକାର ପରିବେଶ ମୋର ଭାବପ୍ରବଣତାରେ ବେଶ୍ ମିଶିଯାଇଥିଲା । ତମ ଘରର ଅନ୍ୟ ମଣିଷମାନେ ମୋର ଅତି ନିଜର ମନେ ହେଉଥିଲେ ।

ଏଇଠିକୁ ଆସିବା ପରଠାରୁ କୃଷ୍ଣଚୂଡ଼ା ଗଛରେ ଫୁଲ ଧରିଲା, ଏବେ ତାହା ଫିକା ପଡ଼ିଗଲାଣି । 'କିମ୍ବିରା' ଭଳି ବଢ଼ିବା (ଆରୋହଣ କରିବା) ଇଚ୍ଛା ଥିଲା । ତାହା ହୋଇପାରିଲା ନାହିଁ । ଏଇଠି ଲୋକମାନଙ୍କ ସହ ମିଶିବାକୁ ଭାରି ଇଚ୍ଛା ଥିଲା; ତାହା ଅପୂର୍ଣ୍ଣ ରହିଗଲା । ଏଠାକାର ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତରେ ମିଶିଯିବା କଥା ମଧ୍ୟ କଷ୍ଟକର ହୋଇପଡ଼ିଲା ।

ତମେ ମୋର ସବୁକଥାକୁ ବିଶ୍ୱାସ କରିବ ଏବଂ ନୀଳଗିରି ଛାଡ଼ିବା କଥାରେ ସମ୍ମତ ହେବ । ତମ ଚିଠି ପାଇବା ବେଳକୁ ବୋଧେ ମୁଁ ନଥିବି । ଏଇ ସପ୍ତାହ ଭିତରେ ମୁଁ ତାଳଚେରରେ ପହଞ୍ଚିବି । ଯଦି ନଯାଏ, ପୁଣି ଲେଖିବି ।

ଅଚ୍ୟୁତ

***ଦ୍ରଷ୍ଟବ୍ୟ :***

କୋଜାଣି କାହିଁକି ଜହ୍ନ ଆଲୁଅରେ ଘେରାଏ ବୁଲିଆସିବାକୁ ମନେହେଲା । ତମ ଗାଁର ଅପେରା ପାଇଁ ପ୍ରସ୍ତୁତ ଦେଖିବାକୁ ମଧ୍ୟ ସୁଯୋଗ ମିଳିଲା । ଝାପ୍‌ସା ଆଲୁଅରେ ସେହି ଯାତ୍ରାପ୍ରିୟ ମଣିଷମାନଙ୍କର ମୁହଁ ଦେଖି ହେଲାନାହିଁ । ତଥାପି ଯତ୍‌କିଞ୍ଚିତ୍ ସମ୍ବଳ ନେଇ ସେମାନଙ୍କର ଉଦ୍ୟମ ପ୍ରଶଂସନୀୟ ଥିଲା । ରାତିସାରା ମୁଁ ବେଳେବେଳେ ତୁରୀ ଶୁଣିବାକୁ ପାଇଥାଏ, ସେମାନଙ୍କର ପ୍ରଗାଢ଼ ଆଗ୍ରହର ଏହା ଯଥେଷ୍ଟ ପରିଚୟ । ଆଖଡ଼ାଘର ଆଗରେ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ଦଳେ ବସିଥାଆନ୍ତି । ଲଣ୍ଠନ ଆଲୁଅରେ ବହି ପଢ଼ା ଚାଲିଥାଏ । ଢୋଲ୍‌କି ବଜା ହେଉଥାଏ, କୋଳାହଳ ଭିତରେ କିଛି ତ ଶୁଣି ହେଉନଥାଏ । ସେମାନଙ୍କ ଯାତ୍ରା ଦେଖି ହେବ କି ନାହିଁ ସନ୍ଦେହ, ତଥାପି ଏକ ସୁଯୋଗ ହରାଇଛି ବୋଲି ଧରିବାକୁ ହେବ ।

□ □ □

ପ୍ରିୟ ବନ୍ଧୁ,

ତମ ଚିଠିରୁ ତମର ଅନ୍ତରାତ୍ମା କିପରି କ୍ରମବିକାଶ ହେଉଛି, ସେ ବିଷୟରେ ମୁଁ ସମ୍ୟକ୍ ଧାରଣା ସଂଗ୍ରହ କରିପାରୁଛି ।

ଧରାଯାଉ ତମେ ଏକ ଜଟିଳ ସମସ୍ୟାର ସମ୍ମୁଖୀନ ହୋଇଛ; ଏହି ସମୟରେ ମୁଁ ଅତି ସାଧାରଣ ମଣିଷ ସ୍ତରକୁ ଓହ୍ଲାଇଯାଇ ତମକୁ ଗୋଟାଏ ବିଚାରବନ୍ତ ମଣିଷର ବଞ୍ଚିବା ସପକ୍ଷରେ ଯୁକ୍ତି କହିବି ନା ମୋର ଅତି ନିଜସ୍ୱ ଚିନ୍ତାଧାରାରୁ କିଛି ଉଦ୍ଭଟ ଯୁକ୍ତି ବାଢ଼ିବି ଜାଣିପାରୁନାହିଁ । ଏ ପୃଥିବୀରେ ତମ ପାଖରେ ବନ୍ଧୁତ୍ୱ ବ୍ୟତିରେକ ମୋର ଅନ୍ୟକିଛି ପରିଚୟ ନାହିଁ । ବୌଦ୍ଧିକ ତଥା ଆବେଗସ୍ତରରେ ମୁଁ ଆଜିପର୍ଯ୍ୟନ୍ତ କେବଳ ସାହଚର୍ଯ୍ୟ ଦେଇଆସିଛି, ତମର ଶାନ୍ତ ଏବଂ ସୁନ୍ଦର ଜୀବନକୁ ହିଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ପ୍ରଶଂସା କରିଆସିଛି । ଆବେଗ ଓ ଜଡ଼ିତ ହୋଇଯିବାର କ୍ଷେତ୍ରରେ ଆମ ଦୁହିଁଙ୍କର ଧାରଣା ଓ ପରିପ୍ରକାଶ ଯଥେଷ୍ଟ ଭାବେ ଭିନ୍ନ । ଉଭୟଙ୍କର ଜୀବନର ଗତିପଥ ମଧ୍ୟ ଏକାବେଳକେ ସ୍ୱତନ୍ତ୍ର । (ଅବଶ୍ୟ ଏହାପଛରେ ଆମର ସାମାଜିକ ଓ ଅର୍ଥନୈତିକ ପ୍ରଭାବ ଭିନ୍ନ ଧରଣର ।) ତମେ ଏକ କାବ୍ୟିକ ପୃଥିବୀରେ ସଂଗୀତର ମୂର୍ଚ୍ଛନା ଖୋଜୁଥିଲାବେଳେ ମୁଁ ହୁଏତ ଯନ୍ତ୍ରଣାର କରାଳ ସ୍ରୋତରେ ଆପଣାର ସ୍ଥିତି ଜାହିର କରିପାରିନାହିଁ । ତମେ ଉଚ୍ଚାକାଶର ସ୍ୱପ୍ନ ଦେଖୁଥିଲାବେଳେ ମୁଁ ବୋଧେ ନର୍କର ବିଭତ୍ସତା ଭିତରେ ବୁଡ଼ିଯାଇଛି । ତମ ପାଇଁ ଏ ପୃଥିବୀ ଗୋଟାଏ world-of-faith, ମୋ ପାଇଁ ସମୟ ଓ ସ୍ଥାନ ଏକାବେଳକେ ଗୋଟାଏ 'world-of-terror' ।

ସବୁ ତାରତମ୍ୟ ସତ୍ତ୍ୱେ ଆମର ବନ୍ଧୁତାର ଏକ ବଳିଷ୍ଠ ଓ ସୁଦୃଢ଼ ପଟ୍ଟଭୂମି ଯେ ରହିଆସିଛି, ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ । ଏହି common denominator କୁ ମୁଁ କହେ ଆମର ଜୀବନପଥରେ ଆଗେଇବାର ମୂଳମନ୍ତ୍ର । ଏଥିରେ ଆମେ କେବେ ଦ୍ୱିମତ ହୋଇନାହୁଁ । କେବେ ଯୁକ୍ତି ବାଢ଼ିନାହୁଁ । ଆମେ ଆପଣାର ନିଜସ୍ୱ ପଥରେ, ନିଜସ୍ୱ ପୃଥିବୀରେ ଆଗକୁ ଯେ ମାଡ଼ିଚାଲିଛେ, ଏଥିରେ କେବେହେଲେ ସନ୍ଦେହ ନାହିଁ । 'Fare forward' କଥା ବା 'ଚରୈବେତି'ର କଥାରେ ଆମେ ଆମର ଭାବପ୍ରବଣତା ବାରମ୍ବାର ପ୍ରକାଶିତ କରିଛେ । ଆମେ ଜୀବନବାଦୀ, ଆମେ ଭଲ ପାଇବାର ଅପରିମେୟ ଶକ୍ତି ଅନୁଭବ କରିପାରୁ, ସ୍ୱପ୍ନ ଦେଖିବା ମାନେ ଭଲ ପାଇବା କଥା ମନେପକାଉ, ବଞ୍ଚିବାକୁ ଗୋଟାଏ ମହତ୍ ଦୃଷ୍ଟିକୋଣରୁ ବିବେଚନା କରୁ । ଏଇଠି ଏକାକୀ ହୋଇଗଲେ ଆମେ ପାଗଳ ହୋଇଯାଉ, ଗୋଟାଏ world-of-loneliness ଆମ ଉପରେ ଶାସନ କରିବାକୁ ଗଲେ ଆମେ ବିଦ୍ରୋହ କରୁ । ନିଜକୁ ହାରିଯିବାକୁ କେବେହେଲେ ଦେଉନାହୁଁ, ଏଇସବୁ ବୋଧେ ଆମର ବଞ୍ଚିବା ସପକ୍ଷରେ ଦୃଢ଼ ଯୁକ୍ତି ।

ବନ୍ଧୁ! ତମ ଚିଠିରୁ ମନେହେଲା ତମେ ମୋର କେତେ ପାଖରେ ଅଛ, କେତେ ମାତ୍ରାରେ ତମେ ମୁଁ ସମାନ ସ୍ତରରେ ଆଜି ଜୀବନଯନ୍ତ୍ରଣାକୁ ଉପଲବ୍ଧି କରୁଛେ । ଏଇଠି ତମକୁ ମୋର ଚେତାଇ ଦେବାକୁ ହେବ ଯେ ଆମର ଜୀବନଯାତ୍ରା ଏବେ ମଧ୍ୟ ଆରମ୍ଭ ହୋଇନାହିଁ, ଏବେ ମଧ୍ୟ କେଉଁଠି ଆମର ସଂଗ୍ରାମ ଆରମ୍ଭ କରିବାକୁ ହେବ ଜଣାନାହିଁ । ଆମେ ନିଜକୁ ହିଁ ପ୍ରସ୍ତୁତ କରୁଛେ, ନିଜକୁ seasonal ବୋଧେ କରୁଛେ । ଏହି ଅସତର୍କ ସମୟରେ ଆମକୁ ପଛକୁ ବାରମ୍ବାର ଅପସାରିତ କରିବାକୁ ହେବ, ଆମକୁ ସଙ୍କୁଚିତ ହୋଇଯିବାକୁ ହେବ । ଅନେକ ପରିପ୍ରେକ୍ଷୀରେ ମୁଣ୍ଡପାତିବାକୁ ହିଁ ପଡ଼ିବ । କିନ୍ତୁ ଦିନେ ଯେ ଆମର ବିଜୟ ହେବ, ଦିନେ ଯେ ଆମେ ଆମର ସ୍ୱପ୍ନିଳ ପୃଥିବୀକୁ ଆବିଷ୍କାର କରିପାରିବା, ନିଶ୍ଚୟ ଯେ ଆମର ଚେତନାଶକ୍ତି ଆମକୁ ପ୍ରେରଣା ଦେବ, ଏଥିରେ ମୋର ଅନନ୍ତ ବିଶ୍ୱାସ ଅଛି । ତମକୁ ହଠାତ୍ ନିଜ ଉପରେ ସନ୍ଦେହ କରିବାର ଦେଖିଲେ ମୋତେ ଦୋଷୀ ଭଳି ଲାଗେ, ହୁଏତ ମୁଁ ତମକୁ କେତେକାଂଶରେ ପ୍ରଭାବିତ କରୁଛି; କିନ୍ତୁ ତମେ ବାରମ୍ବାର ସବୁ impartities ଭିତରୁ ଦୀପ୍ତିମନ୍ତ ହୋଇପଡ଼ିବ, ଏହା ମୋର ଗୋଟାଏ ବଦ୍ଧମୂଳ ଧାରଣା; ମୋ ହୃଦୟର କଥା ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ:*

ଆଜି ବର୍ଷା ଓ ବଜ୍ରପାତରେ ନୀଳଗିରି ଅନ୍ଧକାରାଛନ୍ନ ହୋଇଯାଇଛି, ଏଇଠି ବୈଶାଖ ପୂର୍ଣ୍ଣିମାକୁ ଯଥାର୍ଥଭାବେ ଅନୁଭବ କରିବା ପାଇଁ ବାହାରେ ଘେରାଏ ବୁଲି ଆସିବାକୁ ସୁଯୋଗ ନାହିଁ, ପଢ଼ା ଟେବୁଲ୍ ପାଖରେ ବସି ହୁଏତ ମୁଁ ଯେମିତି ଜହ୍ନ ଉଠିବାକୁ ଅପେକ୍ଷା କରିଛି, ଦିଗ୍‌ବଳୟରେ ବହେ ଉଚ୍ଚ ପର୍ଯ୍ୟନ୍ତ ଘନ କଳାମେଘ । ଏହି ସମୟରେ ହିଁ ତାଳଗଛର ଫାଙ୍କ ଦେଇ ମେଘଉହାଡ଼ରୁ ଜହ୍ନ ଉଠିବାର ଦୃଶ୍ୟ ତମେ ସେଇଠି ବୋଧେ କଳ୍ପନା କରିପାରୁଥିବ । ଆଖପାଖ ସବୁ ଭାରି ତୋଫା ହୋଇଯାଇଛି; ଯେଉଁଠି ମସୀ ଅନ୍ଧକାର ଥିଲା, ସେଇଠି ଟେନାଏ ଜ୍ୟୋତ୍ସ୍ନା ଭାବାନ୍ତର ସୃଷ୍ଟି କରୁଛି । ଟଗର ଗଛର ଚିକ୍କଣ ପତ୍ରମାଳାରେ ଚମତ୍କାର ପ୍ରତିଫଳନ ଏ ଉଦାସ ସନ୍ଧ୍ୟାକୁ ଭାରି ଅର୍ଥପୂର୍ଣ୍ଣ କରିଦେଉଛି ।

ତମେମାନେ ସବୁ ପାଖରେ ଥାଅନ୍ତ, ଏଇଠି ଏଇ ମୁହୂର୍ତ୍ତରେ! ଆମେ କେଉଁ ଅଜଣା ଇଲାକା ଆବିଷ୍କାର କରିବାକୁ ବାହାରିଥାଆନ୍ତେ, ନୂଆ adventure ର ଖୋରାକ୍ ପାଇଥାଆନ୍ତେ । ଏ ସମୟରେ କାମନାର ଜ୍ୱାଳା ପ୍ରଶମିତ ହୋଇଯାଆନ୍ତା, ego ନିଶ୍ଚିହ୍ନ ହୋଇଯାଆନ୍ତା । ମଣିଷକୁ ଆମେ ଅନୁଭବ କରିପାରୁଥାଆନ୍ତେ, ଆମେ ସବୁ ଖୋଳ ପରିତ୍ୟାଗ କରି ହଠାତ୍ ଏ ଆଲୋକ ସହ ସାମିଲ୍ ହୁଅନ୍ତେ!!

ଏଇଠି ମଧ୍ୟ କହିରଖେ ଯେ ରାତ୍ରିଗୁଡ଼ିକ ଯେତେବେଳେ ଭାରି ଅଥୟ ହୋଇପଡ଼େ, ଯେତେବେଳେ ଏକାକୀବୋଧ ମୋତେ ଭୟ ଦେଖାଏ ହୁଏତ ଚନ୍ଦ୍ରାତପ ତଳେ ମୁଁ ମୋର ଅସ୍ତିତ୍ୱ ହିଁ ଖୋଜିଥାଏ, ଏତିକିବେଳେ 'being' ଗୋଟାଏ ନିର୍ଦ୍ଦିଷ୍ଟ frequency ରେ ହଠାତ୍ ତା'ର ନିଜ କଥା ବଖାଣିବସେ, ଏତିକିବେଳେ ଏ ପୃଥିବୀ ତା'ର ଅବଗୁଣ୍ଠନ ଖୋଲିଦିଏ, ଆକାଶ ଓଠରେ ହସ ଲହଡ଼ି ମାରେ । ଏସବୁ ତ ତମେ ମଧ୍ୟ ଅନୁଭବ କରିଥିବ । ଏହି ସମୟରେ ମୋର ପ୍ରିୟତମମାନଙ୍କୁ ମୁଁ ଆଦରିବସେ, ସିମେଣ୍ଟ ବେଞ୍ଚ୍ କୁହ, କୃଷ୍ଣଚୂଡ଼ା ଫୁଲ କୁହ, ବା ଅମଡ଼ାବାଟଟି କୁହ, ଭାରି ଆକର୍ଷିତ କରନ୍ତି । ଏଇଥିପାଇଁ ଆମେ ବୋଧେ ପ୍ରତ୍ୟେକଟି ପୂର୍ଣ୍ଣିମା ରାତ୍ରିରେ ଉଜାଗର ରହିଛେ; ଏଇଥିପାଇଁ ଆମେ ଏ ରାତ୍ରିଗୁଡ଼ିକୁ କେବେହେଲେ ଭୁଲିପାରି ନାହୁଁ । (ତମେ କ'ଣ କରୁଥିବ ଏହିକ୍ଷଣି ? ଏ ମୁହୂର୍ତ୍ତଗୁଡ଼ିକରେ ତମେ ପୁଣି ଭାବପ୍ରବଣ ହୋଇଯାଉଥିବ ।)

ଆଜି ଏଇଠି ଜହ୍ନ ଏକ ଭିନ୍ନ ରୂପରେ ପ୍ରତାରିତ କରିବାକୁ ଚାହୁଁଛି । କହୁଛି, "ହେ ପ୍ରିୟତମ ! ଏ ମୋର ଅଭିସାର କେବଳ ତମରି ପାଇଁ । ଏ ରାତି ଆମର ମିଳନ ପାଇଁ । କାହିଁକି ସେଇଠି ବିଷର୍ଣ୍ଣ ହୋଇ ବସିଛ ? କାହିଁକି ଆସୁନାହିଁ ଲୀନ ହୋଇଯିବାକୁ, ଏକାକାର ହୋଇଯିବାକୁ ?" (ଆହାଃ, ସୋନ୍ୟା କ'ଣ କରୁଥିବ ଏଇକ୍ଷଣି, ଏଇ ମୁହୂର୍ତ୍ତରେ ?)

ପୁଣି ଲେଖୁଛି ।

▯ ▯ ▯

ପ୍ରିୟ ବନ୍ଧୁ,

ତମ ଗାଁର ଦ୍ୱାରଦେଶରେ କୃଷ୍ଣଚୂଡ଼ା ଗଛଟିଏ ଯେ ସ୍ୱାଗତ ସମ୍ଭାଷଣ ଜଣାଏ, ଏକଥା ତମେ ଆବିଷ୍କାର କରିଛକି ନାହିଁ ମୁଁ ଜାଣିନାହିଁ । ସ୍କୁଲ କାନ୍ଥକୁ ଲାଗି ସେ ଯେମିତି ସେଇଠି କାଳପୁରୁଷ ହୋଇଯିବାକୁ ଚାହେଁ ।

ଏଇମିତି ଏକ ଆସନ୍ନ ବର୍ଷା ସହ ସମ୍ପର୍କ ସ୍ଥାପନ କରିବାକୁ ସେଇ ଇଲାକାରେ ସଶରୀରେ ପ୍ରବେଶ କରି ପ୍ରଥମେ ଏ ଫୁଲର ଅରଣ୍ୟକୁ ଆବିଷ୍କାର କରିଥିଲି । କୃଷ୍ଣଚୂଡ଼ାର ରଙ୍ଗ ଯେ ଗୋଟାଏ ବ୍ୟଥାତୁର ପ୍ରାଣର ଅନେକ କିଛି, ଏକଥା ଅନୁଭବ କରିପାରିଥିଲି । ଫିକା ହୋଇଆସୁଥିବା ହୃଦୟ ଉପରେ କିଏ ଯେମିତି ମୋଞ୍ଚାଏ ଜ୍ୟୋତି ବୋଳିଦେଲା, କିଏ ଯେମିତି ମୋତେ ପୁଣି ଅନେକ ବିକ୍ଷିପ୍ତ ଅତୀତକୁ ଏକାଠି ସାଉଁଟି ଉପହାର ଦେଲା । କୃଷ୍ଣଚୂଡ଼ା ଫୁଲମାନେ ବିଗତ ଦିନମାନଙ୍କ ପାଇଁ ଅସାମାନ୍ୟ ସ୍ମୃତିର ଝଲକ ଥିଲେ । ତମେ ମନେପଡୁଥିଲ, ମନେପଡୁଥିଲା ସିମେଣ୍ଟବେଞ୍ଚ୍, ଉଦ୍‌ଭାସିତ ହେଉଥିଲା ଜୀବନଯାତ୍ରାର ଅଙ୍କାବଙ୍କା ଗତିପଥ । ହଠାତ୍ ଚେଇଁ ଉଠୁଥିଲେ ମନର ମଣିଷମାନେ, ଲୋଟି ଯାଉଥିଲେ ସବୁ ଯନ୍ତ୍ରଣାସମାହିତ କାମନାମାନେ ।

କେଜାଣି କାହିଁକି କ୍ଷଣକ ପାଇଁ ମୁଁ ଭିନ୍ନ ମଣିଷ ହୋଇଗଲି, ବିଲୁପ୍ତ ହୋଇଗଲି; କେତେବାର ମୁଁ ଚାହିଁଛି ଯେ ଏଇଠି ଶୋଇଯାଆନ୍ତି, ଏଇ ଗଛତଳେ । ମୋ ଉପରେ ଛାଇ ହୋଇଯାଆନ୍ତା କୃଷ୍ଣଚୂଡ଼ାର ସ୍ତବକ, ହୃଦୟ ବିଦୀର୍ଣ୍ଣ ହୋଇଯାଆନ୍ତା, ପ୍ରଥମସୂର୍ଯ୍ୟର କିରଣରେ ମୁଁ ବିଲୟ ଲଭନ୍ତି, ମୁକ୍ତି ପାଇଯାଆନ୍ତି, କେତେବାର ତମକୁ ଏ ମୋର ସ୍ୱପ୍ନ କଥା କହିଥିବି । ଜୀବନରେ ମୁଁ କେଜାଣି କାହିଁକି ସେଦିନକୁ ମୁଁ ଖୋଜୁଛି, ଅପେକ୍ଷା କରୁଛି । ଅନ୍ୟବାଟରେ ମୁକ୍ତି ମିଳିବା ସମୟସାପେକ୍ଷ, ଅତିଶୟ ଚିନ୍ତା ମଧ୍ୟ । ଏହା ହିଁ ଜୀବନର ଏକମାତ୍ର ଯଥାର୍ଥତା, ମୁକ୍ତିର ଏକମାତ୍ର ପରିଚୟ ।

କହିଲ ଦେଖି, ଜୀବନଟା ଗୋଟାଏ ଯନ୍ତ୍ରଣା ଓ ଯୌବନଟା ଗୋଟାଏ ବିଭ୍ରାନ୍ତିକର ଅନ୍ୱେଷଣ ନା ଠିକ୍ ତା'ର ଓଲଟା । ଏ ଜୀବନରେ ସ୍ୱାଦମାନେ ଗୋଟାଏ ଜୈବିକ ବିସ୍ଫୋରଣରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଇ ସ୍ଥିତିହୀନ ହୋଇଯିବା, ଯାହାକୁ ଆମେ କହୁ lack eration । ଯୌବନ ବା ଗୋଟାଏ ସ୍ୱୈରାଚାର ପରିବେଶରେ ନୈତିକତା ପାଇଁ ବୃଥା ଅଭିଯାନ । ମଣିଷକୁ କିଏ ଚିହ୍ନିଛିକି ନା ମୁଁ ଭଲଭାବେ ଅନୁଭବ କରିପାରିଛି । ଏଇଠି ଜୀବନ ଅବୋଧ ମନେହୁଏ, ଯୌବନ ଓଜନିଆ ଜଣାପଡ଼େ । ତେଣୁ ମୁକ୍ତିର ଅର୍ଥ ଅତି ସ୍ପଷ୍ଟ ଭାବେ ଅନୁମାନ କରାଯାଇପାରେ ।

କୃଷ୍ଣଚୂଡ଼ା ଫୁଲ ଜୀବନ-କାନ୍‌ଭାସ୍ ଉପରେ ଚମତ୍କାର ସ୍କେଚ୍ ହୋଇଯାଏ, ଯୌବନର ପ୍ରତି ଗ୍ରନ୍ଥିରେ ଏକ ଚିରନୂତନ ଝଙ୍କାର ତୋଳେ ।

ତମ ଗାଁର କୃଷ୍ଣଚୂଡ଼ା ଗଛଟା ମୋ ଜୀବନ ଇତିହାସ ପାଇଁ ନୂଆ ନହୋଇପାରେ; କିନ୍ତୁ ମୋର ଚିରନୂତନ ସ୍ୱପ୍ନିଳ ପୃଥିବୀରେ ତା'ର ସ୍ଥାନ ସ୍ୱତନ୍ତ୍ର । ତା'ର ପରିଚୟ ଅତି ନିର୍ଦ୍ଦିଷ୍ଟ । ଏହିସବୁ ଦିନମାନଙ୍କରେ ମୁଁ ନିଶ୍ଚୟ ସେଆଡ଼କୁ ଯିବାକୁ ଚାହିଁବି, ସେଇଠି ପୁଣି କିଛି ସମୟ ପାଇଁ ଅଟକିଯିବି ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ:*

ତମେ ଲେଖିନାହଁ ।

▯ ▯ ▯

ପ୍ରିୟ ବନ୍ଧୁ,

ଚିଠି ପାଇଛି ।

ତମେ ମୋତେ ସତରେ କ୍ଷମା କରିଛ ତ ! ତମ ଘର ପ୍ରତି ଅସମ୍ମାନ ଓ ଆମର ବନ୍ଧୁତ୍ୱର ଅବମାନନା ମୋତେ ନିରନ୍ତର ବିବ୍ରତ କରୁଛି । ବାବିଠାରୁ ଆରମ୍ଭ କରି ବାପାଙ୍କ ମନରେ ମୁଁ ଯେଉଁଭଳି ଆଘାତ ଦେଇଛି ମୋର ଦୋଷୀମନ ଆହୁରି ଉଦ୍‌ବେଳିତ

ହୋଇଯାଇଛି । ମୋର ନୀଳଗିରି ଛାଡ଼ିବା ଏକ ଗୁରୁତର ଅପରାଧ ହୋଇଛି । ତଥାପି ତମେ ମୋତେ ବୁଝିବାକୁ ଚେଷ୍ଟା କରିବ ବୋଲି ମୁଁ ଆଶା ଓ ଆସ୍ଥା ରଖିଛି ।

ନିଜ ଉପରେ ଆଜି ମୁଁ ସନ୍ଦେହ କରୁଛି । କେଉଁ କୂଳରେ ମଣିଷ ନ ହୋଇପାରିବା ଜନିତ ଗ୍ଳାନି ଓ ବ୍ୟର୍ଥତା ମୋତେ ଅବିରତ ଅଥୟ କରିଦେଉଛି । ଏତେ ବର୍ଷର ଜୀବନ ଅତିବାହିତ କରିସାରିଲା ପରେ ଆଜି ମୁଁ କ'ଣ ହାସଲ କରିପାରିଛି ଜାଣିପାରୁନାହିଁ । ବୌଦ୍ଧିକ ମୂଲ୍ୟବୋଧ ଓ ମାନସିକ ଅଭିବୃଦ୍ଧି ଆଜି ମୋ ପାଖରେ ଲୋପ ପାଇଯାଇଛି । ଗତ କେତେ ବର୍ଷର ଜୀବନଚିନ୍ତା ଆଜି ମୋତେ ଆହୁରି ଶଙ୍କାକୁଳ କରିଦେଉଛି । କେଉଁ ସ୍ତରରେ ମୁଁ ଏ ପୃଥିବୀକୁ ଆପଣାର କରିଥିଲି, କେଉଁ ସ୍ତରରେ ମୁଁ ମୋର ଚିନ୍ତାସ୍ରୋତ କହୁଥିବା କଥା ଅନୁଭବ କରିଥିଲି, ଆଜି ତାହା ମୋ ମନରୁ ଏକାବେଳକେ ପୋଛି ହୋଇଯାଉଛି । ଦିନକୁ ଦିନ ଜୀବନ ବଡ଼ ଦୁର୍ବୋଧ ମନେହେଉଛି । ନିର୍ଲଜ୍ଜତା ଆଜି ମୋ ପାଇଁ ଏକ ଅସ୍ତ୍ର ହୋଇପଡ଼ିଛି । ଏଇଠି, ଆମରି ଘରେ, ମୁଁ ପୁଣି ଜଣେ ଆମରି ବଂଶର ଦାୟାଦ, ତାହା ଆଦୌ ବିଶ୍ୱାସ କରିହେଉନାହିଁ । ଯେଉଁଠିକି ଗଲେ ମଧ୍ୟ ପରାଙ୍ଗପୁଷ୍ଟ ହୋଇଯାଉଛି । ମୁଁ କାୟମନୋବାକ୍ୟରେ ପର ଉପରେ ନିର୍ଭର କରିବାକୁ ବାଧ୍ୟ ହେଉଛି ।

ଥରେ ଜାନୁଭଗ୍ନ ହେଲେ ରାସ୍ତାକଡ଼ର ଆବର୍ଜନାଠାରୁ ବି ମୂଲ୍ୟହୀନ ହୋଇଯିବାକୁ ପଡ଼େ । ଥରେ ପୁରୁଷ ହୋଇଗଲେ ଏ ପୃଥିବୀର ବୋଝ ଗୋଟାପଣେ ଆସି ମୁଣ୍ଡ ଉପରେ ଲଦି ହୋଇଯାଏ । ଏହିକଥା ଏବେ ମୁଁ ଅନୁଭବ କରିପାରୁଛି । ଆଜି ପଛକୁ ଫେରିବାକୁ ସାହସ ନାହିଁ, ଆଗକୁ ଇଞ୍ଚେ ମାତ୍ର ଆଗେଇବାକୁ ଶକ୍ତି ନାହିଁ । ନିଜ ପୃଥିବୀରେ ମୁଁ ନିଜେ ନିର୍ବାସିତ, ଆଜି ମୁଁ ଏକ ଖଣ୍ଡିତ ବ୍ୟକ୍ତିତ୍ୱ ।

ବନ୍ଧୁ ! ଥରେ ହେଲେ ତମେ ମୋର ନିକଟତମ ମଣିଷ ହିସାବରେ ମନଖୋଲି କହିଦିଅ ଯେ ମୁଁ ଏ ପୃଥିବୀ ପାଇଁ ଅନୁପଯୁକ୍ତ । ଥରେ ହେଲେ ଜଣାଇଦିଅ ଯେ ମୋ ଦେଇ କିଛି ହେବ ନାହିଁ । ତା'ହେଲେ ଏ ମନରେ ଯେତେ ଆଶା ସବୁ ରହିଛି, ମୁଁ ତାହା ଦୂରେଇ ଦେଇପାରିବି; ମୁଁ ବଞ୍ଚିବା ସପକ୍ଷରେ ବା ବିପକ୍ଷରେ କିଛି ସିଦ୍ଧାନ୍ତ ନେଇପାରିବି । କିନ୍ତୁ ଅସ୍ଥିର ଓ ବିବର୍ଣ୍ଣ ହୋଇ ବଞ୍ଚିବା ଆଉ ସମ୍ଭବପର ନୁହେଁ, ସବୁ ବ୍ୟର୍ଥତାକୁ ପୁଞ୍ଜିକରି ଗୋଟାଏ ସୁସ୍ଥ ଜୀବନର ମୂଳଦୁଆ ପକାଇବା ସ୍ୱପ୍ନସମ୍ଭବ । କୁହୁଡ଼ିରେ ପହଁରି ମୁଁ କେଉଁଠି ପହଞ୍ଚି ପାରିବିନାହିଁ । କୁଟାଖିଅ ଭଳି ଭାସିଭାସି କେଉଁ କୂଳରେ ଲାଗିବି ନାହିଁ ।

× × × ×

ମୁକ୍ତି ଯେ ଅମୂଲ୍ୟ, ତା'ର କ'ଣ ପ୍ରମାଣ ଅଛି ମୋ ପାଖରେ । ମୁକ୍ତି କହିଲେ ମୁଁ ବୁଝେ ଗୋଟାଏ ଅତି ଅଦ୍ଭୁତ ଭୂମିକା ଗ୍ରହଣ କରିବା । ଲିପ୍ତ ହୋଇଯିବାର ଚରମତମ ପ୍ରଦେଶରେ ପହଞ୍ଚିଯିବା । ଏ ପୃଥିବୀର ସଙ୍ଗୀତ ଓ ଝଙ୍କାର, ଏ ଆକାଶର ବଦଳୁଥିବା ବର୍ଣ୍ଣବିଭବ, ଏ ଭଲ ପାଇବା, ସବୁ ମୋ ପାଇଁ ଆଶ୍ରୟ ଥିଲା, ମୋର ନିଜର ପରିଚୟ

ଥିଲା । ଏସବୁ କ୍ରମେ ଜୀବନର ରଙ୍ଗମଞ୍ଚରୁ ଅନ୍ତର୍ହିତ ହୋଇଗଲାଣି । ଏଇଠି ଅନ୍ଧକାର ସବୁକିଛି ଅକୁହା କଥାର ପରିପ୍ରକାଶ । ନିଛକ ଭଣ୍ଡାମୀର ଚମତ୍କାର ରୂପାନ୍ତର । ଆଜି ମୁଁ ମଣିଷ ସ୍ତରରୁ ତଳକୁ ଓହ୍ଲାଇ ଆସି କେଉଁଠି ପହଞ୍ଚିଯାଇଛି ! କେତେ ବଡ଼ ଜୁଆଖେଳରେ ମୁଁ ଭାଗ ନେଉଛି । କି ବିଭତ୍ସ କାର୍ଯ୍ୟ ପାଇଁ ସାହସ ସଞ୍ଚୟ କରୁଛି । ବଞ୍ଚିବାର ବାହାନା କରିବା ସବୁଠାରୁ ଭୟଙ୍କର । ଜୀବନଟାକୁ ଏହି ଅର୍ଥରେ ନେବା ଘୃଣାର କଥା, ଯିଏ ଏକଥା ମଧ୍ୟ କରୁଛି ସେ ସବୁଠାରୁ ଘୃଣ୍ୟ । ମୁଁ ସମ୍ଭବତଃ ଏ ପୃଥିବୀର ଏକମାତ୍ର ମଣିଷ, ଯାହାପାଇଁ 'trial and judgement' ମଧ୍ୟ ଘୋର ଆତ୍ମପ୍ରବଞ୍ଚନା । କେତେ ତଳକୁ ମୁଁ ଖସିଯାଇଛି । "It is solely by risking life that freedom is obtained.... the individual who has not staked his life may, no doubt, be recognized as a person, but he has not attained the truth of this recognition as an independent self-consciousness." ମୁଁ କ୍ରୀତଦାସ ହୋଇଯାଇଛି । ତମର ଭାଷାରେ ମୁଁ ଆଉ ଅଚ୍ୟୁତ ହୋଇନାହିଁ । ଆଜି ନିଜର 'inner contradictions' ଗୁଡ଼ିକରେ ଜ୍ୟୋତି ନାହିଁ । ଆଜି ego ଆଉ ଅପୂର୍ବ ଶକ୍ତି ନୁହେଁ ବା ଅସ୍ୱାଭାବିକତା ଗୋଟାଏ ପରିଚୟ ନୁହେଁ । ମୁଁ ରକ୍ତମାଂସର ମଣିଷ ହୋଇ ମଧ୍ୟ ମରିଯାଇଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଚିଠି ପାଇଛି । ଦୀର୍ଘ ଚାରିଦିନ ହେବ ମୁଁ ତମକୁ କିଛି ଲେଖିବାକୁ ଚେଷ୍ଟା କରି ବିଫଳ ହୋଇଛି । ଏଥିରୁ ତମେ ଅନୁମାନ କରିପାରୁଥିବ, ମୋର ଆବେଗ କେଉଁ ସ୍ତରକୁ ଆସିଯାଇଛି ।

'Dersu Uzala' ଗୋଟାଏ ପ୍ରକାରର ଜୀବନର ଶେଷ ପରିଣତି । ଏହାର ବାସ୍ତବତା ପ୍ରଶ୍ନବାଚକ ଚିହ୍ନରେ ରହିଗଲେ ମଧ୍ୟ ଆମେ ଅବଚେତନ ମନରେ ଏହାହିଁ ସ୍ୱପ୍ନ ଦେଖୁ । ବାରମ୍ବାର ଆମେ ଚାହୁଁ ସମୟ ତିଳେ ହେଲେ ଯେମିତି ସ୍ପର୍ଶ ନକରୁ, ଆମର ସମସ୍ତ ମାନସିକ ବିକାଶ ଆପଣାଛାଁଏଁ ଗଢ଼ିଉଠୁ । ego, inhibitions, ସଂକୀର୍ଣ୍ଣତାବୋଧ 'whiteness of snow','blueness of sky' ଏବଂ 'virginity of landscape'ରେ ମିଳେଇଯାଏ । ଏହାର ସତ୍ୟତା 'ଦେରସୁ' ଭଳି ପରୀକ୍ଷା କରିବାକୁ ଆମେ ବେଳେବେଳେ ଆଶାୟୀ ହୋଇଯାଉ ।

ଏହାର ସମାଲୋଚନା ମୁଁ କେଉଁଠି ପଢ଼ିଥିଲି । ତମେ ମୋଟାମୋଟି ସାରାଂଶଟି ଲେଖିଛ । କିଛି ମାତ୍ରାରେ ନିଜର ଦୃଷ୍ଟିକୋଣକୁ ଜଡ଼ିତ କରାଇ ପାରିଥିଲେ ଚିଠିଟି ମୋ ଜୀବନର ଏକ ଉତ୍‌ପ୍ରେରକ ହୋଇ ପାରିଥାଆନ୍ତା । (ସ୍ୱୀକାର କରୁଛି ଯେ ମୋର ମୃତପ୍ରାୟ

ଚେତନା ପୁଣି ତମ ଚିଠି ଦ୍ୱାରା ସତେଜ ହୋଇପାରିଛି ।) 'Robinson Crusoe'କୁ 'Dersu Uzala' ସହ ତୁଳନା କରିବାଟା କେତେ ଦୂର ଯଥାର୍ଥ ମୁଁ ଜାଣିନାହିଁ । ତଥାପି ମନେହେଲା Robinson ସାଧାରଣ ମଣିଷକୁ ନେଇ ସୃଷ୍ଟି କରାଯାଇଛି । ତା'ଜୀବନରେ ବଞ୍ଚିବାର ଅଦମ୍ୟ ଲିପ୍‌ସା, ମଣିଷର ସଂଗ୍ରାମୀ ମନ ଓ 'sense of exclusiveness' ପ୍ରାଧାନ୍ୟବିସ୍ତାର କରିଛି । ଅନ୍ୟ ପକ୍ଷରେ 'Dersu Uzla'କୁ ମୁଁ ଗୋଟାଏ irrational ଏବଂ unnatural ଚରିତ୍ର ବୋଲି ମନେ କରୁଛି । ଗୋଟାଏ ବରଫାବୃତ ନିର୍ଜନ ଇଲାକାରେ ସାଧାରଣ ମଣିଷ ଦେର୍‌ସୁ ନ ହୋଇ ରବିନ୍‌ସନ୍ ହୋଇପାରିବ ବୋଲି ମୋର ବିଶ୍ୱାସ ଅଛି ।

କିନ୍ତୁ ଦେର୍‌ସୁକୁ ଆମେ ଆମର ସବୁଠାରୁ ନିକଟତର ବୋଲି ମନେକରିବୁ । ଆମ ପାଇଁ ବଞ୍ଚିବାର ସଂଗ୍ରାମ ମୁଖ୍ୟ କେବେହେଲେ ହୋଇନାହିଁ; ବରଂ ହୃଦୟର ନିଭୃତ କୋଣରେ ଆମେ ଆପଣାକୁ past of the vast microcosm କରିଦେବାକୁ ବାରମ୍ବାର ଇଚ୍ଛା ଜାଗରିତ ହୋଇଛି । ସଂସାରକୁ ଯଦି କେବେ ଆମେ ଛାଡ଼ି ଦେଇପାରୁ, (shipwreck ବା penance ଛଡ଼ା) ଯଦି କେବେ ଏ ପୃଥିବୀକୁ ଭଲ ପାଇବାକୁ ଆମେ ଆଗେଇଚାଲୁ, ତେବେ ଦେର୍‌ସୁ ହିଁ ଆମର ପଥପ୍ରଦର୍ଶକ ହୋଇପାରିବ ।

ବନ୍ଧୁ ! ତମକୁ ଲେଖିପାରିନାହିଁ ବୋଲି କିଛି ମନେକରିବ ନାହିଁ । ମୋର ଅକ୍ଷମତା ପାଇଁ ମୁଁ ବିଶେଷ ଅନୁତପ୍ତ । ତମେ ଯେମିତି ମୋର ନୀରବତାଜନିତ ଶୂନ୍ୟତା ଅନୁଭବ ନକର, ସେଥିପାଇଁ ମୁଁ ଘୋର ସଚେତନ । ବେଳେବେଳେ ଯେତେବେଳେ ମୁଁ ଭାବଶୂନ୍ୟ ହୋଇପଡୁଛି ମୋର ଯନ୍ତ୍ରଣା କୁହୁଡ଼ି ଭଳି ମୋର ଅନ୍ତରାତ୍ମାରେ ଘୋଟିଯାଉଛି । ମୁଁ ଖୁବ୍ ଅଣନିଃଶ୍ୱାସୀ ହୋଇଯାଉଛି । ମୁଁ ଯେମିତି ମୋର ସମସ୍ତ ଶକ୍ତି ଠୁଳ କରି 'fear of bondage' ଓ 'bondage of fear' ଉଭୟଙ୍କୁ ବିରୋଧ କରୁଛି । ମୁଁ କ୍ରମଶଃ ହାରିଯାଉଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଏଇ ଅଭିନବ ମୁହୂର୍ତ୍ତରେ ତମ କଥା ମନେପଡୁଛି । ସନ୍ଧ୍ୟା ହୋଇନାହିଁ । ପୂର୍ବାକାଶରେ ରଙ୍ଗର ଅଫୁରନ୍ତ ବିନ୍ୟାସ । ତାହାକୁ ରୂପ ଦେବାକୁ ମୁଁ ବୃଥା ପ୍ରୟାସ କରୁଛି । ଏହିସବୁ ସମୟରେ ମୁଁ ମୋର ମୁଖା ଖୋଲିଦେଇ କଲମ ଧରି ଲେଖିବସେ, ଯାହାକିଛି ମନକୁ ଆସେ ତାହାକୁ ତମ ପାଖକୁ ହିଁ ଚିଠିରେ ଭରିଦିଏ ।

ଏଇଠି ବର୍ତ୍ତମାନ କେଉଁ ଚିତ୍ରକଳ୍ପ ନେଇ ମୁଁ ଏ ଶୋଭାଭଣ୍ଡାରକୁ ବର୍ଣ୍ଣନା କରିବି ଜାଣିପାରୁ ନାହିଁ । ଏହାକୁ ଏକ ଆଗ୍ନେୟ ଉଦ୍‌ଗୀରଣ କହିପାର, ପୁରାବର୍ଣ୍ଣିତ ସମୁଦ୍ରମନ୍ଥନ

କଥା ମଧ୍ୟ ଭାବିପାରେ । ହାଲୁକା ବାଦଲ ଦେହରେ କେତେ ପ୍ରକାରର ରଙ୍ଗ ଲେପି ହୋଇଯାଇଛି, ଯାହା ଭିତରେ ମୁଖ୍ୟତଃ ସ୍ୱର୍ଣ୍ଣାଭ ଜ୍ୟୋତି ବେଶୀ ପରିସ୍ଫୁଟ ହୋଇଛି । ତାହା ତଳକୁ ଫିକା ପଡ଼ିଯାଇଥିବା ଅବିର ରଙ୍ଗର ଜୁଆର, ଆଉ କିଛି ତଳେ ପ୍ରଶାନ୍ତ ନୀଳିମା । ମୃଦୁପବନରେ ଯଦି କିଛି କଳାବାଦଲ ଅନୁପ୍ରବେଶ କରୁଛି ତାହା ତତ୍‌କ୍ଷଣାତ୍ ବିଲୁପ୍ତ ହୋଇଯାଉଛି; ସବୁ ରଙ୍ଗ ଏକ ବିରାଟ ଢେଉ ହୋଇ ଠିକ୍ ମୋରି ସାମ୍ନାରେ ଅଜାଡ଼ି ହୋଇଯାଉଛି ।

ଏସବୁ ରକ୍ତରେ ଅପୂର୍ବ ଶିହରଣ ଖେଳାଇ ଦେଇଛି । ମୁଁ ମୋର ସ୍ଥିତିକୁ ସମ୍ପୂର୍ଣ୍ଣ ମୁକ୍ତ କରିଦେଇଛି ଏଇକ୍ଷଣି । ଯନ୍ତ୍ରଣା ନାହିଁ, ନିଜସ୍ୱକଥନ ନାହିଁ, ନିଜର ପାରମ୍ପରିକ ଆବିଳତା ନାହିଁ । ମୁଁ ସ୍ୱଳ୍ପ ସମୟ ପାଇଁ ରୂପାନ୍ତରିତ ହୋଇଯାଇଛି । ଏକ ଆଲୋକର ବନ୍ୟାରେ ଭାସିଯାଉଛି । ମୁଁ ମଚ୍ଛିହୋଇ ଯାଉଥିଲେ ମଧ୍ୟ ଅମୃତ ଚାଖିପାରୁଛି ।

ତମକୁ ମୁଁ ଏଇସବୁ ମୁହୂର୍ତ୍ତରେ ଭାରି ଅନୁଭବ କରିପାରେ । ଆମର ସମ୍ପର୍କର ବୋଧହୁଏ ଏହାଠାରୁ ବଳି ଶକ୍ତିଶାଳୀ ପରିସର ଆଉ କିଛି ନାହିଁ । ଏହି ସମୟରେ ତମ ସହ ସବୁଠାରୁ ବେଶୀ ଯୋଗାଯୋଗ ସ୍ଥାପନ କରିହୁଏ । ତମେ ନିଜକଥା କେତେ କମ୍ କୁହ କେତେ କମ୍ ପ୍ରକାଶ କର ! ତମେ ଭଲ ମଣିଷ ବୋଲି କେତେ ସହଜରେ ଗ୍ରହଣ କରିହୁଏ, କିଛି ଯୁକ୍ତି ନବାଢ଼ି ତମକୁ 'ଅତି ପାଖର ମଣିଷ' ବୋଲି ମନେ କରିହୁଏ ।

ଯେକୌଣସି ସମ୍ପର୍କ ଆଲୋକର କଥା; କେବେହେଲେ ଅନ୍ଧାର ଯାହାକୁ ଲୁଚାଇ ପାରେନାହିଁ । ଏହିଭଳି ସବୁରଙ୍ଗ ଆପଣାର ନିଜସ୍ୱ ପ୍ରଣାଳୀରେ ପ୍ରକାଶିତ ହୁଏ ।

× × × ×

"Shall I have to face death alone someday ? I only hope it will be soon." କେତେ ମାତ୍ରାରେ ଏହା ସତ୍ୟ ମୁଁ ଭାବିପାରୁନାହିଁ, କାରଣ ଏପର୍ଯ୍ୟନ୍ତ ମୁଁ ଯେକୌଣସି ଭାବରେ ବଞ୍ଚିପାରିଛି । ତମେ Andre Maurois ଙ୍କର କିଛି ବହି ପଢ଼ିଛ କି ନାହିଁ, ମୁଁ ଜାଣିନାହିଁ । ଆଗରୁ ଅନେକ ପ୍ରଖ୍ୟାତ ଲେଖକ ଏହାଙ୍କୁ ଉଦ୍ଧାର କରିଥିବା କଥା ମୋର ମନେପଡୁଛି । 'A Climate of Love' ମୋ ପାଇଁ ତାଙ୍କର ପ୍ରଥମ ବହି । ଭଲ ପାଇବାର ଅନେକ ଛନ୍ଦ ଏ ବହିରେ ବର୍ଣ୍ଣନା କରାଯାଇଛି । ଆମର ତଥାକଥିତ 'ଭଲପାଇବା' ସହ ଏହାର ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସମ୍ପର୍କ ରହିଛି । ଏଇଠି ଭଲ ପାଇବା, ଆତ୍ମୀୟତା ଓ ସମ୍ପର୍କକୁ ଆଖି ଆଗରେ ରଖି ହୃଦୟକୁ ବିଶ୍ଳେଷଣ କରାଯାଇଛି । ଆତ୍ମପ୍ରତାରଣା, ସନ୍ଦେହ ଓ ଜୈବିକ କାମନାକୁ ଚମତ୍କାର ରୂପ ଦିଆଯାଇଛି । ବାରମ୍ବାର ଗୋଟାଏ ପାର୍ଶ୍ୱରେ ଅନାବିଳ ଭଲ ପାଇବାକୁ ରଖି ସବୁ ଦୋଷଦୁର୍ବଳତାକୁ ଓଜନ କରାଯାଇଛି । 'Philippe' ଏହାର ନାୟକ । Don Juan ହେବାର ସ୍ୱପ୍ନ ସେ ନିଶ୍ଚୟ ଦେଖୁଛି । ଯାହାକୁ ଭଲ ପାଇଁ ବିବାହ କରିଛି, ତା'କୁ ଆପଣାର କରିବାକୁ ସବୁ ପ୍ରକାରର

ଚେଷ୍ଟା କରିଛି, କିନ୍ତୁ ସ୍ତ୍ରୀର ଭିନ୍ନ ସ୍ୱଭାବ ତା'କୁ ସନ୍ଦେହୀ କରିଛି । ତା'ର ଭଲ ପାଇବାର ବାସନା ଅତୃପ୍ତ ହୋଇଯାଇଛି । ପ୍ରଥମ ସ୍ତ୍ରୀଠାରୁ ପ୍ରତାରିତ ହେଲାପରେ ପୁଣି ସେ ବିବାହ କରିଛି । ଏଥର କିନ୍ତୁ ସେ ତା'ର ସ୍ତ୍ରୀକୁ ଭଲ ପାଇ ପାରିନାହିଁ । ତା'ର ସ୍ତ୍ରୀ ତାହାକୁ ସନ୍ଦେହ ଚକ୍ଷୁରେ ଦେଖି ମଧ୍ୟ ବୁଝିବାକୁ ଚେଷ୍ଟା କରିଛି । ସାଧ୍ୟମତେ ବୁଝାମଣା ସ୍ଥାପନ କରିଛି । କିନ୍ତୁ ଫିଲିପ୍ ଶେଷବେଳକୁ ଭଲ ପାଇବାର ଅପୂର୍ଣ୍ଣତା ବେଶ୍ ଅନୁଭବ କରିପାରିଛି । ପାଖରେ ସ୍ତ୍ରୀ ଥାଇ ମଧ୍ୟ ସେ ଏକାକୀ ମରିଛି ।

Andre Maurois ଙ୍କୁ ବିଂଶ ଶତାବ୍ଦୀର 'Neo-romanticism'ର ଅନ୍ୟତମ ସ୍ରଷ୍ଟା ବୋଲି କୁହାଯାଇପାରେ । ଏହାଙ୍କର ଅନ୍ୟକିଛି series ବହି ପଢ଼ିବାକୁ ଇଚ୍ଛା ଥିଲେ ମଧ୍ୟ ମିଳିବ କି ନାହିଁ ସନ୍ଦେହ । ଏହାଙ୍କର ସବୁ ଯୁକ୍ତି ସହ ମୁଁ ଏକମତ ହୋଇପାରି ନାହିଁ । ତଥାପି ମୋର ପ୍ରିୟ ଲେଖକମାନଙ୍କ ଗହଣରେ ସେ ନିଶ୍ଚୟ ସ୍ଥାନ ପାଇବେ । ତାଙ୍କର କିଛି extract ମୁଁ ଲେଖୁଛି ।

'I saw women as unstable beings always in search of someone to guide them, to direct their minds and their errant desires. Perhaps a woman's need creates an obligation as the man's part to be the infallible compass,always painting in the right direction. A great love is not sufficient to hold a woman unless the lover knows how to fill her life with renewed interest.'

(ଏହି କଥା ସହ ମୁଁ ନିଜକୁ ସାମିଲ୍ କରୁନାହିଁ; କାରଣ ଯଦି ଭଲ ପାଇବାକୁ ଉଦ୍‌ଜୀବିତ କରିବାକୁ ପ୍ରତିଦିନ ନୂଆନୂଆ ପନ୍ଥା ଅନୁସରଣ କରିବାକୁ ପଡ଼େ ତାହା 'ଭଲ ପାଇବା' ନୁହେଁ ।)

× × × ×

ରାତିର ବୟସ ଅଧିକ ହୋଇଛି । ଏଘରର ନିର୍ଜନତାକୁ ଫ୍ୟାନ୍‌ର ଏକ ବିକୃତ ଘର୍ଷଣ ଶବ୍ଦ ଭାଙ୍ଗି ଦେଉଛି । ବାହାରେ କିନ୍ତୁ ସବୁକିଛି ନିଦରେ ଅଚେତ ହୋଇଯାଇଛି । ଏଇ ହେଉଛି ଉତ୍କୃଷ୍ଟ ସମୟ, ଯେଉଁଠି ନିଜର 'being' ସହ କଥୋପକଥନ କରାଯାଇପାରେ । ମୁଁ ନିଜକୁ ପୁଣି ସଚେତନ କରୁଛି । ଶୋଇଥିଲେ ଏତେବେଳେ ସ୍ୱପ୍ନ ଦେଖୁଥାଆନ୍ତି; ଚେଇଁରହି ମୁଁ ମୋର ସବୁ କିଛି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଏକାଠି କରୁଛି ।

ଅଧୋପତନର ସୀମା ଟପି ମୁଁ ତଳକୁ ଖସି ଆସିଛି । ଏଇଠି ଖାଲି ବ୍ୟର୍ଥତାର ଉପହାର ମିଳିଲା, ସବୁ ସମ୍ପର୍କ ହଳାହଳ ମନେହେଲା; ଭଲ ପାଇବାର 'dream castle' ଅକାଳରେ ମାଟିରେ ମିଶିଗଲା । ମଣିଷ ହେବାକୁ ଚେଷ୍ଟା କରି ମୁଁ ଅମଣିଷ ହୋଇଗଲି । ଏ ପୃଥିବୀଟାକୁ ଆପଣା କରିବାକୁ ଚାହିଁ ମଧ୍ୟ ଏକାକୀ ହୋଇଗଲି ।

ମୁଁ ଡରିଯାଇଛି କି ? ମୁଁ ଜାଣେ ମୋତେ ବଞ୍ଚିବାକୁ ହେବ; ଯେଉଁ ସ୍ତରକୁ ଖସିଗଲେ ମଧ୍ୟ । ମୁଁ ନିଜକୁ ଧ୍ୱଂସ ହେବାକୁ ଦେବିନାହିଁ; କଦାପି ନୁହେଁ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଚିଠି ପାଇଛି । ଏଥର ତମେ ମନେଖୋଲି କିଛି ଲେଖିଛ, ତମର ଭାବନାର କିଛି ଅଂଶ ମୋର ମାନସିକ କ୍ଷେତ୍ରରେ ପକାଇପାରିଛି । ତମେ ଆହୁରି ମୋର ନିକଟତର ହୋଇପାରିଛ ।

ଆମର ଜୀବନଯାତ୍ରାକୁ ତମେ ଗୁରୁଣ୍ଡିଗୁରୁଣ୍ଡି ଯିବା ସହ ତୁଳନା କରିଛ । ମୁଁ ଏହା ଅନୁଭବ କରିପାରିଛି । କୌଣସି ପ୍ରକାର ସାଫଲ୍ୟ ଆମକୁ ଉଚ୍ଚାକାଶକୁ ଉଠାଇ ପାରିନାହିଁ । ଏବେ ଆମର ତାହା ନିତାନ୍ତ ଲୋଡ଼ା ହେଉଥିଲାବେଳେ କେତେ ସହଜରେ ଆମେ ନିଜ ସ୍ୱପକ୍ଷରେ ଯୁକ୍ତି ବାଢ଼ୁଛେ । ତମେ ବୋଧେ ଶେଷରେ ଅଦୃଷ୍ଟ ହାତରେ ନିଜକୁ ଛାଡ଼ି ଦେଉଛ, ଆପାତତଃ ମୁଁ ମଧ୍ୟ ଭାଗ୍ୟବାଦୀ ହୋଇଯିବାକୁ ବାଧ୍ୟ ହେଉଛି ।

ଆତ୍ମବିଶ୍ୱାସ ହରାଇ ବସିଲା ପରେ ଆଜି ଆମେ ଆଉ ନିଜ ନିୟନ୍ତ୍ରଣରେ ନାହୁଁ । 'ମୁକ୍ତି' ଆମ ପାଇଁ କ୍ରମଶଃ ଦୂର ପାହାଡ଼ ହୋଇଯାଉଛି, ମୁକ୍ତିର ପଥ ଖୋଜିଖୋଜି ଆମେ ଏକ ଅନ୍ଧକାର ଗହ୍ୱର ଭିତରେ ପଡ଼ିଯାଇଛେ । ତମେ ସହରର ସମସ୍ତ ଦୌଡ଼ ଓ ପ୍ରତାରଣା ଭିତରେ ଏକୁଟିଆ ହୋଇ ଯାଉଥିଲାବେଳେ ଜୀବନଟା ମୋ ପାଇଁ ଗୋଟାଏ ନୂଆ treatise ହୋଇପଡୁଛି । ଏଇଠି ଭଲ ପାଇବାକୁ ମୁଁ ଚାହିଁଥିଲି । ଏଇଠି ମୁଁ ହୃଦୟର ସଙ୍ଗୀତ ଶୁଣିବାକୁ ଆଶା ପୋଷିଥିଲି । ଗୋଟାଏ ଉଦ୍ଭଟ metaphysics କୁ ମୁଁ ଆପଣାର କରିବାକୁ ସର୍ବଶ୍ରେଷ୍ଠ ସଫଳତା ବୋଲି ଧରି ନେଇଥିଲି । କିନ୍ତୁ ଦିନକୁ ଦିନ ଏ ପୃଥିବୀ ବିଭତ୍ସ ଓ କଦାକାର ଜଣାପଡୁଛି । ଏଇଠି ହୃଦୟଟା କାହାରି ମଣିଷର ହୃଦୟ ବୋଲି ମନେ ହେଉନାହିଁ । ଯଦି ମଣିଷପଣିଆକୁ ନିଷ୍ଠୁରତାର ମାପକାଠିରେ ମପାଯାଏ, ତେବେ ମୋର ମଣିଷପଣିଆକୁ ଧିକ୍ । ମୁଁ ଠିକ୍ ତମଭଳି ଏତେ ବଡ଼ ପୃଥିବୀରେ ଭାରୀ ଏକୁଟିଆ ହୋଇଯାଇଛି । ଯଦି ମୁଁ କୌଣସି ପ୍ରକାରର ଭିନ୍ନ ସ୍ୱାଦର ଭାବାବେଗ ସହ ସଂଶ୍ଳିଷ୍ଟ ହୋଇପାରୁଛି, ତାହାକୁ କୌଣସି ନିର୍ଦ୍ଦିଷ୍ଟ ରୂପ ଦେଇ ପାରୁନାହିଁ । ଯେତେଯାହା ପଢ଼ିଲେ ମଧ୍ୟ ଦିନକୁ ଦିନ ଅପରିପକ୍ୱତା ବଢ଼ୁଛି; ଅପୂର୍ଣ୍ଣତା ଗ୍ରାସ କରୁଛି । ଚିନ୍ତାଧାରାର ପରିପ୍ରକାଶ ପାଇଁ ମୁଁ ମାଧ୍ୟମ ଖୋଜି ପାରୁନାହିଁ । ଏହା ମୋର ବଞ୍ଚିବାର ସବୁଠାରୁ ବଡ଼ ସମସ୍ୟା । ମୋର ଅବିବେକପଣିଆ ବୃଦ୍ଧି ହେଉଛି । ସବୁଠାରୁ ବଡ଼ 'creative age' ହରାଇବସୁଥିବା କଥା ମନେହେଉଛି ।

ବଞ୍ଚିବାଟା ଗୋଟାଏ 'fundamental situation' । ଆମର ନିର୍ଦ୍ଦିଷ୍ଟ ପ୍ରକାରର କ୍ରିୟା ଓ ପ୍ରତିକ୍ରିୟା ଦ୍ୱାରା ତାହାର ଭାରସାମ୍ୟ ରକ୍ଷା କରାଯାଇ ପାରିଛି । ସେଇଥିପାଇଁ କୌଣସି ପାର୍ଶ୍ୱରେ ସାମାନ୍ୟ ବ୍ୟତିକ୍ରମ ହେଲେ ତାହାର ପ୍ରତ୍ୟକ୍ଷ ପ୍ରଭାବ ଆମରି ଉପରେ ପଡୁଛି । ସେଇଥିପାଇଁ ପ୍ରଫୁଲ୍ଲ, ଅମ୍ଳାନ ଏବଂ ଅନ୍ୟମାନଙ୍କ ସହ ସମ୍ପର୍କ ଶିଥିଳ ହୋଇଗଲେ ମୋର ଶ୍ୱାସରୁଦ୍ଧ ହୋଇପଡୁଛି । ତମରି କ୍ଷେତ୍ରରେ ଗୋଟାଏ ଛନ୍ଦହୀନ ପୃଥିବୀର ଅଭାବ ତମକୁ alienated କରିଦେଉଛି । ଆମର ବାରମ୍ବାର ଭାରସାମ୍ୟ ରକ୍ଷା କରିବା ପାଇଁ ସଂଗ୍ରାମ ବୋଧେ ଆମର ସବୁଠାରୁ ଅନାବିଳ ପରିଚୟ, ଏଇଠି ଆମେ ମୁକ୍ତ ହୋଇପାରିଛେ, ଏଇଠି ଆମେ ମଣିଷ ହୋଇପାରିଛେ । କାଲି ପାଇଁ ଆମେ ଗୋଟାଏ 'lost species' ଗୋଟାଏ ଭ୍ରମାତ୍ମକ ଜୀବନ କାହାଣୀ । ଆମର ବିଲୁପ୍ତି ଆମ ପାଇଁ ଯଥେଷ୍ଟ ମୂଲ୍ୟବାନ । କାରଣ ଆମର ସ୍ଥିତିକୁ ହିଁ ସେ ଠିକ୍ ରୂପ ଦେବ । କିନ୍ତୁ ଆମକୁ ହିଁ ବଞ୍ଚିବାର ସବୁ ସ୍ତର ଅତିକ୍ରମ କରିବାକୁ ହେବ; ସୁଖ ଓ ଦୁଃଖ ଉଭୟର, ଆଲୁଅ ଓ ଅନ୍ଧକାରର । ଏହି କଥା Goethe 'Faust'ରେ ଲେଖିଛନ୍ତି:

*Then, following eternal norms,*
*You move through multitudinous forms*
*To reach at past the state of man.*

ମୁଁ ଭାବୁଛି ତମେ ଏ କଥାରେ ଏକମତ ହେବ ।

ଅଚ୍ୟୁତ

***ଦ୍ରଷ୍ଟବ୍ୟ :***

କାଲିରାତି ଭଲ ଅସରାଏ ବର୍ଷା ହେଲା । ବର୍ଷାରେ ଭିଜିବାକୁ ଚାହିଁ ମଧ୍ୟ ମୁଁ ଘରୁ ବାହାରି ପାରିଲିନାହିଁ । ତଥାପି ମେଘର ଗୁରୁଗମ୍ଭୀର ଶବ୍ଦ ମୁଁ ବେଶ୍ ଅନୁଭବ କରିପାରିଥିଲି । ଆଜି ସକାଳୁ ସଦ୍ୟସ୍ନାତା ପୃଥିବୀକୁ ମୁଁ ଦେଖୁଥିଲି । ଗୋଟାଏ ରାତିର ବୟସ ଅତିକ୍ରମ କରି ମଧ୍ୟ ତା'ର ତିଳେମାତ୍ର ପରିବର୍ତ୍ତନ ହୋଇନାହିଁ; ବରଂ ସେ ଆହୁରି ସୁନ୍ଦର ଦେଖାଯାଉଛି । ସକାଳର ପ୍ରଶାନ୍ତି ମୋତେ ସୁସ୍ଥ କରିଦେଇଛି । କାଲି ରାତିସାରା କାମନା ଓ ମହତ୍ ଚିନ୍ତାର ଅପୂର୍ବ ମିଳନ ।

ବାଜି ଚିଠି ଦେଇଛି । ଲେଖିଛି ଯେ ମୁଁ ଚାଲିଆସିବାଜନିତ ଶୂନ୍ୟତା ଆଉ କେହି ପୂରଣ କରିପାରୁ ନାହାନ୍ତି । ଆଜି ତା'କୁ ଲେଖିବି ।

ଏଥରର ନିର୍ବାଚନର ଫଳାଫଳ ଦେଖିଥିବ । ଏହାକୁ ମୁଁ ଗୋଟାଏ historical paradox ବୋଲି କହିବି ନାହିଁ । କାରଣ ଲୋକପ୍ରିୟତା ଥାଇ Nazism ଏବଂ Fascismର ଏହିଭଳି ମୃତ୍ୟୁ ହୋଇଥିଲା । ତଥାପି କଂଗ୍ରେସ ମୋର ସବୁ ସହାନୁଭୂତି ହାସଲ କରିପାରିଛି ।

European History ପାଇଁ ମୁଁ Thomson, Fisher Vol-I, L.Mukherjee ରଖିଛି । ଯେଉଁଭଳି question ଆସୁଛି ଏସବୁ ଯଥେଷ୍ଟ ନୁହେଁ । ତେଣୁ ତମେ ପାଖରେ ଯାହା ରଖିଛ ପଠାଇବ । ମୁଁ Sociology ନେବାକୁ ଭାବିଥିଲି, କିନ୍ତୁ ବହି ଯୋଗାଡ଼ କରିବା ସମ୍ଭବ ହେବ ନାହିଁ ବୋଲି ମୁଁ ମୋର ବିଷୟ ନିର୍ବାଚନରେ କିଛି ବଦଳେଇନାହିଁ । କିଛି ଦିନ ହେବ ମୁଁ ପ୍ରାୟ ପଢ଼ିପାରୁନାହିଁ । ତମେ ଭଞ୍ଜ ପାଖକୁ ଗଲେ ମୋ କଥା କହିବ ।

□ □ □

ପ୍ରିୟ ବନ୍ଧୁ,

ମୋର ଆଶା ଥିଲା ଲକ୍ଷ୍ନୌ ତମର ଭାବଧାରାକୁ ଆକ୍ରାନ୍ତ କରିଥିବ । ତମେ ତ ଜାଣ, ଏ ସହର ଇତିହାସକୁ ବିଭିନ୍ନ ସମୟରେ ବିଭିନ୍ନ 'ମସଲା' ପ୍ରଦାନ କରିଛି । ଏଇଠି ଦିନେ ମୁଜ୍ରା ହେଉଥିଲା, ନୂପୁରର ନିକ୍ୱଣରେ ସେଠାକାର ପରିବେଶ ଅପୂର୍ବ ହୋଇଯାଉଥିଲା । ଏଇଠି ନବାବ୍‌ମାନଙ୍କର ସମାବେଶ ହେଉଥିଲା । ଏଇଠି ରୋମାଞ୍ଚକର ଘଟଣାମାନଙ୍କୁ ଇତିହାସ ଲିପିବଦ୍ଧ କରୁଥିଲା, ପ୍ରେମ ଓ ହତାଶାର କାହାଣୀ ମଧ୍ୟ ଏଇଠି ଚିରଦିନ ପାଇଁ ଅମର ହୋଇଯାଉଥିଲା ।

ପ୍ରେମଚାନ୍ଦଙ୍କର ଅଦ୍ୱିତୀୟ ଗଳ୍ପ 'ସତ୍‌ରଞ୍ଜ କି ଖିଲାଡ଼ି'ର ଉଭୟ ଓଡ଼ିଆ ଓ ଇଂରାଜୀ ଅନୁବାଦ ମୁଁ ଆଗରୁ ପଢ଼ିଥିଲି । (ସତ୍ୟଜିତ୍ ରାୟଙ୍କର ସିନେମା ତାହା ପୁଣି ଅନେକଙ୍କର ଦୃଷ୍ଟି ଆକର୍ଷଣ କରିଥିବ ।) ତମେ ସେଇଠି ଗୋଟାଏ decadence ର ସତ୍ତା ଅନୁଭବ କରିପାରିଲ କି ନାହିଁ ମୁଁ ଜାଣିପାରିଲି ନାହିଁ । ଗୋଟାଏ nostalgia କୁ ଅନୁଭବ କରିବା କଥା ତମେ ଲେଖିନାହଁ । ସମ୍ଭବତଃ ସମୟ ଓ ସୁଯୋଗର ଅଭାବ ଏହାର ମୁଖ୍ୟ କାରଣ । ତଥାପି ଭାବପ୍ରବଣ ହୋଇଗଲେ କୁଆଡ଼େ ଲକ୍ଷ୍ନୌର ଜରାଜୀର୍ଣ୍ଣ ପ୍ରାସାଦଗୁଡ଼ିକ ଭିତରୁ ସଂଗୀତ ଓ ନୃତ୍ୟର ଏକ କରୁଣ ସ୍ମୃତି ଅନୁଭବ କରିଥିବା କଥା ଅନେକ ଲେଖିଛନ୍ତି । ମୁଁ ଗଲେ କେବେ ନିଶ୍ଚୟ ସେହି ଭ୍ରମ ସମ୍ପର୍କରେ ସତ୍ୟତା ପରୀକ୍ଷା କରିବି ।

୧୦ ତାରିଖରେ ଭୁବନେଶ୍ୱର ଯିବି । ପରୀକ୍ଷା ପୂର୍ବରୁ ମୁଁ ପ୍ରାୟ feverish ହୋଇଯାଇଛି । ପୁଣି ଯେମିତି guillotined ହେବାକୁ ଯାଉଥିବା ଭଳି ଲାଗୁଛି । କେତେଦିନ ହେବ ପଢ଼ିବାକୁ ବିତୃଷ୍ଣା ଆସିଯାଇଛି, ଗୋଟାଏ ପ୍ରକାରର ଶିଥିଳତା ମୋତେ ଗ୍ରାସ କରିଛି । ସେଇଥିପାଇଁ ମୁଁ Dostoevsky ପଢ଼ିବାର ସୁଯୋଗ ପାଇବା ମାତ୍ରେ ତାହା ଛାଡ଼ିନାହିଁ । କେତେ ଦିନ ପରେ ପୁଣି ମୋର ସବୁଠାରୁ ପ୍ରିୟ ଲେଖକଙ୍କୁ ପଢୁଛି ! କେତେ ଆପଣାର ସେ ମନେ ହେଉଛନ୍ତି ! 'My Uncle's Dream' ତିନୋଟି ଛୋଟ ଉପନ୍ୟାସର ସମଷ୍ଟି । କେଉଁଠି କେବେ ଏହାର ଆଲୋଚନା ତମେ ପଢ଼ିଥିବ । ଏଗୁଡ଼ିକ ସର୍ବୋତ୍କୃଷ୍ଟ

କୃତୀ ନହେଲେ ମଧ୍ୟ ସଫଳ ସୃଷ୍ଟି ବୋଲି ମୁଁ ବିବେଚନା କରୁଛି । ଅତି ସାମାନ୍ୟ ସାମାନ୍ୟ ଘଟଣାକୁ କେନ୍ଦ୍ରକରି Master ଚମତ୍କାର ଗଳ୍ପର ପଟ୍ଟଭୂମି ତିଆରି କରି ପାରିଛନ୍ତି । ମୁଁ ସେସବୁକୁ ଏବେ ସବିଶେଷ ଲେଖିବାକୁ ଚାହିଁନାହିଁ । ପରେ ଗୋଟି ଗୋଟିକରି ମୋର ମତାମତ ପଠାଇବି । ତଥାପି କେତେଗୁଡ଼ିଏ ଉପାଦେୟ କଥା ଲେଖିବା ଠିକ୍ ହେବ ବୋଲି ମୁଁ ଭାବୁଛି ।

"Knowing that a sickman would not be executed, he got hold of vodka, let some tobacco soak in it, and drank it. He laughed up such a lot of blood for such a long time that his lungs were affected. He was transferred to a hospital and a few months after died of viruleat consumption." (My Uncle's Dream)

"Several times I have had an almost inconquerable impulse to beat you, to disfigure you, to strangle you. I love you hopelessly and I know that afterwards I would love you thousand times more. If I ever kill you, I shall have to kill myself, too, of course. Well then, I would put off killing myself as long as possible, so as to indulge in the intolerable pain of being without you. ....Say the word, and I will leap into this abyss." (The Gambler)

ଏସବୁକୁ ମୁଁ ଆଲୋଚନା କରି ଲେଖିବି । 'My Uncle's Dream'କୁ ମୋଟାମୋଟି କୁହାଯାଇପାରେ ଯେ ଏହା 'dying aristocracy' ଉପରେ ଏକ ସାରଗର୍ଭକ ସନ୍ଦର୍ଭ । 'The Gambler' Dostoevsky ଙ୍କର ଜୁଆଖେଳ ପ୍ରତି ପ୍ରଚଣ୍ଡ ନିଶାକୁ ପ୍ରତିପାଦିତ କରିଛି ।

ଏହାପୂର୍ବରୁ 'The Rebel' ପଢୁଥିଲି । Camusଙ୍କର positive existentialism ଜ୍ୟାମିତିକ ସତ୍ୟ ଭଳି ପ୍ରତିପାଦିତ କରାଯାଇଛି; ତଥାପି କେତେଗୁଡ଼ିଏ କଥା ସହ ମୁଁ ଏକମତ ହୋଇପାରିନାହିଁ ।

".....blindman entertain the puerile belief that to love are single day of life amounts to justifying centuries of oppression."

ତମେ ଏହା ଉପରେ ଲେଖିବ ବୋଲି ମୁଁ ଆଶା ରଖିଛି ।

ଏବେ ଦେହ ଓ ମନ ଭଲ ନାହିଁ । କ୍ରମାଗତ ବର୍ଷା, ସୋନ୍ୟା ଓ ପାଠପଢ଼ାର ବୋଝରୁ ମୋତେ ମୁକ୍ତି ମିଳୁନାହିଁ । ମୁଁ ନିଜତ୍ୱ ହରାଇ ବସୁଥିବାଜନିତ ଯନ୍ତ୍ରଣାରେ ଘାଣ୍ଟିହେଉଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

କିଛି ସମୟ ପୂର୍ବେ ଅମ୍ଳାନର ଚିଠି ପାଇଲି । ହଠାତ୍ ମୋର ଗୋଡ଼ତଳୁ ପୃଥିବୀ ଖସିଯିବା ଭଳି ଲାଗିଲା । ମୁଁ ଯେମିତି ଏକ ଦୁଃସ୍ୱପ୍ନ ଦେଖୁଛି । ଯେମିତି ଅନ୍ଧକାର ଭିତରେ ବୁଡିଯାଉଛି । ଅମ୍ଳାନ କିଛି ଭଲ ସମ୍ବାଦ ଦେଇନାହିଁ । ତମକୁ ତା'ର ଅକୁହା କଥା ଲେଖିଥିବ ବୋଲି ଆଶା କରୁଛି ସେ ଲେଖିଛି:

"...... I should not be very wrong in saying that my marriage has been a failure right from the start. We both are not pulling in together. Both of us have fought several rounds and have reconciled to no end. It seems that we both could be happy if we get separated. It is just not the clash of ego but, personalities. Somehow we don't fit into each other's shoes. It could take a book to write all that has happened but this is the crux. Anyway, both of us are staying separate for the sake of conviniece."

ଏକଥା ଗୋପନୀୟ ହେଲେ ମଧ୍ୟ ମୁଁ ତମକୁ ଲେଖିବା ପାଇଁ ବାଧ୍ୟ ହୋଇଚି । ଅମ୍ଳାନ ସହ କଟାଇଥିବା ମୁହୂର୍ତ୍ତଗୁଡ଼ିକ ଆଜି ସ୍ପଷ୍ଟଭାବେ ମନେପଡୁଛି । ଆମର କେତେ ପାଖରେ ସେ ଥିଲା, ଆପଣାର ସଂକୀର୍ଣ୍ଣତା ଓ ସାଂସାରିକ ସଚେତନତା ଆମ ଉପରେ ଲଦି ଦେଇ ସେ କେତେ ନିଶ୍ଚିନ୍ତ ହୋଇଯାଉଥିଲା । ଆମ ପାଖରେ ଭଲ ପାଇବାର ସ୍ୱାଦକୁ ବଖାଣୁ ନଥିଲେ ମଧ୍ୟ ଆମେ ଆମର ହୃଦୟରେ ସେସବୁ ଅନୁଭବ କରିପାରୁଥିଲେ । ଆମେ ସବୁ ଭିନ୍ନ ହୋଇ ମଧ୍ୟ ଏକାକାର ହୋଇଯିବାକୁ ଅବିରତ ଚେଷ୍ଟା କରୁଥିଲେ ।

ବିବାହ ପରଠାରୁ ମୁଁ ଅନୁମାନ କରୁଥିଲି ଯେ ଅମ୍ଳାନ ଏକ ସଫଳ ଜୀବନ ଆରମ୍ଭ କରିପାରିଛି । ଭଲ ପାଉଥିବା ମଣିଷଟିଏ ପାଖରେ ଥିଲେ ଜୀବନ ଅପୂର୍ଣ୍ଣ ରହିଯାଏ ନାହିଁ । ଏହା ମୋର ଏକ ବ୍ୟକ୍ତିଗତ ବିଜୟ ବୋଲି ମୁଁ ବାରମ୍ବାର ଉଲ୍ଲସିତ ହେଉଥିଲି । କେତେ ଶୀଘ୍ର କ'ଣ ସବୁ ଘଟିଯାଉଛି, ମୁଁ ତା'ର କୂଳକିନାରା ପାଉନାହିଁ । ଅମ୍ଳାନର ଏଭଳି ଶୋଚନୀୟ ଅବସ୍ଥା ଆସିଯିବ, ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନାହିଁ । ଦୋଷତ୍ରୁଟି କଥା ମୁଁ ବିଚାରକୁ ନେଉନାହିଁ । କିଏ ଭୁଲ କଲା, କିଏ ଅମାନୁଷିକ ହୋଇଗଲା, ମୁଁ ତାହା ମଧ୍ୟ ଭାବୁନାହିଁ । ଆଶ୍ଚର୍ଯ୍ୟ ହେଉଛି ଯେ ମଣିଷ ଭଲ ପାଇ ମଧ୍ୟ ସୁଖୀ ହୋଇପାରେ ନାହିଁ । ଭଲ ପାଇ ଜିତିବା ମୁହୂର୍ତ୍ତକର ଉତ୍ତେଜନା ବ୍ୟତୀତ ଅନ୍ୟକିଛି ନୁହେଁ । ଏ ସାଧାରଣ ପୃଥିବୀ ଆଖିରେ ଅମ୍ଳାନ ଭାରି ଭଲ ମଣିଷ, ସିଏ ପୁଣି ହାରିଯିବ ଏକଥା କେମିତି ଖାପଛଡ଼ା ମନେହେଉଛି ।

ଏଥିରେ କିଏ ଛଳନା କରୁଥିଲା, କିଛି ଠଉରାଇ ପାରୁନାହିଁ । ସମ୍ଭବତଃ ଅମ୍ଳାନ ଜାଣିଥିଲା ଯେ ସେ ଭଲ ପାଇବାର ଯୋଗ୍ୟ ନୁହେଁ; ତଥାପି ପରିସ୍ଥିତି ତାହାକୁ ବାଧ କରିଛି । ସମ୍ଭବତଃ ସ୍ମିତା 'ଅପଦାର୍ଥ'କୁ ବିବାହ କରିଥିବାର ଦୁଃସାହସିକ ଚିନ୍ତା କରୁଛି । ଏମାନେ ଯେ ସମୟ ଓ ସ୍ଥାନ ଆଗରେ କ୍ରୀତଦାସତ୍ୱ ସ୍ୱୀକାର କରିଛନ୍ତି ତାହା ସ୍ପଷ୍ଟ ପ୍ରମାଣିତ ହୋଇଯାଇଛି । ଭଲ ପାଇବା ମାନେ ଭଲ ପାଇବା । ଏଥିରେ ହାନିଲାଭ, ଓଜନ ଏବଂ ପରିସରର ସ୍ଥାନ ନାହିଁ । ଯଦି କେହି ଜାଣି ଜାଣି ଏତେ ଦିନର ସବୁ ସ୍ୱପ୍ନ ଓ ସାଧନା, ସତ୍ୟ ଓ ସାର୍ଥକତାକୁ ମାଟିରେ ମିଶାଇଦିଏ ଆମେ ତ ଏକାବେଳକେ ଅସହାୟ ।

ଅମ୍ଳାନର ପାରିବାରିକ ଜୀବନରେ ଆମେ ତୃତୀୟ ପୁରୁଷ । ଏଇଠି ଆମର ଭୂମିକା ଏବଂ ପରିସର ନଗଣ୍ୟ । ଏଇଠି ଆମେ ପୁରାପୁରି ନିଷ୍କ୍ରିୟ । ଆମର ଭାବନା, ଆବେଗରେ ମରୁ ଚରିଯାଏ । ଆମର ଭଲ ପାଇବା କେଉଁଠି ହେଲେ ପ୍ରତିପାଦିତ ହୁଏ ନାହିଁ । ଅମ୍ଳାନ ଯଦି ହାରିଯାଇଥାଏ, ଆମେ ମଧ୍ୟ ହାରିଯାଇଛେ । ତାହାର ବ୍ୟର୍ଥତା ଆମର କଳ୍ପନାବିଳାସର ଚରମ ବ୍ୟର୍ଥତା ।

କେଉଁଭଳି ଚିଠି ଲେଖି ମୁଁ ଅମ୍ଳାନର ବିଶ୍ୱାସ ଫେରାଇ ଆଣିବି, ତା'ର କିଛି ରୂପରେଖ ଦେଇ ପାରୁନାହିଁ । ମୋର କର୍ତ୍ତବ୍ୟ କ'ଣ, ତାହା ମଧ୍ୟ ମୁଁ ନିର୍ଦ୍ଧାରଣ କରିପାରୁନାହିଁ । ମୋର ସମସ୍ତ ଚିନ୍ତାଧାରା ସମ୍ପର୍କରେ ଅମ୍ଳାନ ତ ଭଲଭାବେ ପରିଚିତ । ଏଥିରେ ଯଦି କିଛି ଫଳପ୍ରଦ ହୋଇ ନଥାଏ, ତେବେ ମୁଁ ବ୍ୟକ୍ତିଗତ ଭାବେ କ'ଣ କରିପାରିବି ସନ୍ଦେହ କରୁଛି । ଏହା ଏକ ସାମୟିକ ଆଗ୍ନେୟ ଉଦ୍‌ଗୀରଣ । ଭଲ ପାଇବାରେ ପାରସ୍ପରିକ ବିଶ୍ୱାସ ଓ ମର୍ଯ୍ୟାଦା ମୁଖ୍ୟ ବୋଲି ଅମ୍ଳାନ ତ ଭଲ ଭାବେ ଅନୁଭବ କରିପାରିଥିବ । ତଥାପି ଯଦି ଏଥିରେ ସେମାନେ ପରସ୍ପର ପ୍ରତି ବିମୁଖ, ମୁଁ ସେମାନଙ୍କୁ ଜଟିଳ ମଣିଷ ବୋଲି ଧରିନେଇଛି ।

ରବିବାର କଟକ ବା ଭୁବନେଶ୍ୱରରେ ଯାଇ ରହିବି । ମଙ୍ଗଳବାର ପରୀକ୍ଷା । ଆଗରୁ ଅମ୍ଳାନକୁ ଲେଖୁଛି ଯେ ମୋତେ ବୁଧବାର ଦେଖା ଯେମିତି କରେ । ପନ୍ଦର ତାରିଖ ପରୀକ୍ଷା ପରେ ଭାବୁଛି କଟକରେ ଦିନେଖଣ୍ଡେ ଅଧିକ ରହି ସେମାନଙ୍କ ଭିତରେ ଗୋଟାଏ କିଛି ବୁଝାମଣା ପାଇଁ ଚେଷ୍ଟା କରିବି । ଅମ୍ଳାନର ବ୍ୟବହାରରେ ମୁଁ ଭୀଷଣ ଉତ୍‌କ୍ଷିପ୍ତ ହୋଇଯାଇଥିଲି । ଆଗରୁ ସ୍ଥିର କରିଥିଲି ଯେ ତା'କୁ ମୁଁ ଦେଖା କରିବି ନାହିଁ । କିନ୍ତୁ ଏବେ ତାହା ଅପରିହାର୍ଯ୍ୟ ହୋଇଯାଇଛି । ସ୍ମିତା ସହ ମୋର ଖୁବ୍ ଅଳ୍ପ ସମୟ ପାଇଁ ଦେଖାସାକ୍ଷାତ । ରାଉରକେଲାରେ ଆମେ ପରସ୍ପରକୁ ଜାଣିବାକୁ ବିଶେଷ ଚେଷ୍ଟା କରିନାହୁଁ ବା ସୁଯୋଗ ପାଇନାହୁଁ । ଅମ୍ଳାନର କହିବା ଅନୁସାରେ ସେ କୁଆଡ଼େ ମୋର ମତାମତକୁ

ସମ୍ମାନ ଦିଏ । ଯଦି ଏହା ସତ ହୁଏ,ତେବେ ମୁଁ ଭାବୁଛି କିଛି ଗୋଟାଏ ସମାଧାନ ହୋଇଯାଇପାରେ । ଅବଶ୍ୟ ଅମ୍ଲାନ ଉପରେ ମୋର ସମ୍ପୂର୍ଣ୍ଣ ନିୟନ୍ତ୍ରଣ ଅଛି, ସ୍ମିତା ଉପରେ ସବୁ ନିର୍ଭର କରେ ।

ଆସନ୍ତା ସପ୍ତାହରେ ମୁଁ ତାଳଚେରରେ ରହୁନାହିଁ । ଆଶା କରୁଛି କଟକରୁ ଅମ୍ଲାନ ବିଷୟରେ କିଛି ଲେଖିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଜି ପରୀକ୍ଷା ସରିଲା । ସଫଳତା 'ଅନିଶ୍ଚିତ'ରେ ରହିଗଲା । ପ୍ରଶ୍ନ ସହଜ ଆସିଥିଲା । କିନ୍ତୁ ସବୁଥର ଭଳି ମୁଁ ତାହାର ସଦୁପଯୋଗ କରିପାରିନାହିଁ ।

ପରୀକ୍ଷା ଦେବା ବ୍ୟତୀତ ଏଇଠି ଅନ୍ୟ ଦୁଇଟି ମୁଖ୍ୟ କାର୍ଯ୍ୟ ଥିଲା । ପ୍ରଫୁଲ୍ଲ ଓ ଅମ୍ଲାନ ସଙ୍ଗେ ଦେଖା କରିବା । ଅମ୍ଲାନ ସାଙ୍ଗରେ ପରୀକ୍ଷା ଆରମ୍ଭ ଦିନଠାରୁ ମୁଁ ପ୍ରାୟ ଅନେକ ସମୟ କାଟୁଛି । ଆମର କଥାବାର୍ତ୍ତାର ଶେଷ ହୋଇନାହିଁ । ପର୍ଯ୍ୟାୟକ୍ରମେ ସବୁ ଘଟଣା, ଦୁର୍ଘଟଣା, ଆନନ୍ଦ ଓ ଦୁଃଖ ଆଲୋକର ଅଭିମୁଖରେ ଏଇଠି ଯାତ୍ରା କରୁଛି । ଆମେ ଯେମିତି କେତେ ଯୁଗରୁ ଦେଖି ନଥିଲୁ, ଆମେ ଦୁହେଁ ଆବେଗରେ ଫାଟିପଡୁଛୁ । ବନ୍ଧୁତାର ଆଉ କ'ଣ ଅଧିକ ସଂଜ୍ଞା ଥାଇପାରେ !

କନିକା ଲାଇବ୍ରେରୀରୁ ଲେଖୁଛି । ବାହାରେ ବର୍ଷା । ଏଠାକାର ପରିସ୍ଥିତି ଏବେ ସଂପୂର୍ଣ୍ଣ ବଦଳିଗଲାଣି । staff ପାଇଁ ଏକ ସ୍ୱତନ୍ତ୍ର ପାଠାଗାର ଖୋଲଯାଇଛି । ଚମତ୍କାର ନୀରବତା ଏଇଠି । ବାହାରେ ହ୍ୱିସିଲ୍ ଏବଂ ପାଟିତୁଣ୍ଡ ବେଶ୍ କିଛି ମୋତେ ମନେ ପକାଇଦେଉଛି । ପାଖରେ ଅମ୍ଲାନ 'Newsweek' ପଢୁଛି । ବିମର୍ଷ, କ୍ଷୁବ୍‌ଧ, ଭାଙ୍ଗିପଡ଼ିଥିବାର ଏକ ଜ୍ୱଳନ୍ତ ନମୁନା । ଅମ୍ଲାନର କାହାଣୀ ଭୀଷଣ ଦୁଃଖମୟ । ପ୍ରତିଥର ସେ ଗୋଟାଏ କିଛି ପୂର୍ବ ଘଟଣା ମନେପକାଇ କୋହରେ ଅତିଷ୍ଠ ହୋଇଯାଉଛି । ସିଏ ଆଜି ଯେମିତି ଏକ ଭିନ୍ନ ମଣିଷ ହୋଇଯାଇଛି । ତମେ ହୁଏତ ବିଶ୍ୱାସ କରିପାରିବ ନାହିଁ ଯେ ଗତ ସାତ ବର୍ଷର ଭଲ ପାଇବା ସେମାନଙ୍କ ପାଖରେ ଆଜି ଏକ ବିଫଳତାର ପ୍ରତୀକ ହୋଇ ରହିଯାଇଛି । 'ଭଲ ପାଇବା' ସେମାନଙ୍କ ପାଖରେ ଘୃଣାରେ ପରିଣତ ହୋଇଯାଇଛି । ଆନ୍ତରିକତା, ଆବେଗ, ହୃଦୟର ଆଲୋଡ଼ନ ଆଦି କାଣିଚାଏ ମାତ୍ର ସେମାନଙ୍କ ପାଖରେ ନାହିଁ । ପରସ୍ପର ପ୍ରତି ସେମାନେ ବିଷୋଦ୍‌ଗାର କରୁଥାନ୍ତି । ମୋର ମନେହୁଏ, ଅତି କରୁଣ ଭାବରେ ସେମାନଙ୍କର ଘର କରିବାର ଓ ସଂସାର ପାତିବାର

ସୁଖସ୍ୱପ୍ନ ଧୂଳିସାତ୍ ହୋଇଯାଇଛି । ଅମ୍ଳାନ ମୋର ·ନିଜର ମଣିଷ; ଅନ୍ତତଃ ସେଇଆ ମୁଁ ପ୍ରଥମ ସାକ୍ଷାତକୁ ଧରି ନେଇଛି । ତା'ର ଭଲ ପାଇବାର ଛନ୍ଦ, ବିଚିତ୍ର ପରିପ୍ରକାଶ ସହ ଅତି ଘନିଷ୍ଠ ଭାବେ ଜଡ଼ିତ ହୋଇସାରିଲା ପରେ ମୁଁ ଏବେ ଯେମିତି ଆଉ ଏକ ରୂପ ଦେଖୁଛି ।

ସବୁ କଥାକୁ ସଜାଡ଼ି ଲେଖିଲେ ହେବ 'Love is in peril' । ଭଲ କାହାର କହିହେବ ନାହିଁ । ଦୋଷ ମଧ ଏବେ ମୁଁ କାହା ପାଖରେ ଖୋଜିନାହିଁ । ପଅରଦିନ ଶାନ୍ତାକୁ ଦେଖା କରିବାକୁ ତାଙ୍କ ଘରକୁ ଯାଇଥିଲି । ଅମ୍ଳାନ ପାଇଁ ସେ କେମିତି ଆଜି ନାରାଜ, କେମିତି ବୀତସ୍ପୃହ, ତାହା ମଧ ଅନୁଭବ କରିପାରିଲି । ତାହାର ମତ ଯେ ଅମ୍ଳାନ କୁଆଡ଼େ impulsive, କୁଆଡ଼େ ଭାରି irrational. ଘର ପାତିବାର କର୍ତ୍ତବ୍ୟବୋଧ ତା'ର ନାହିଁ ଏବଂ ସେ କୁଆଡ଼େ ସବୁକଥାରେ ଭୀଷଣ ଉତ୍କ୍ଷିପ୍ତ ହୋଇଯାଉଛି । ସ୍ମିତାର ଯାହା ମତ, ସେ ତା'ର ବାପାମାଆଙ୍କ ପାଖରେ ରହିବ । ଆତ୍ମହତ୍ୟା କରିବାର ସାହସ ତାହାର ନାହିଁ । ଯେଣୁ ସେ ବଞ୍ଚିବାକୁ ଚାହେଁ, ସେ ଖୁସିରେ ରହିବାକୁ ଚାହେଁ । ତାହା ପାଇଁ ଅମ୍ଳାନ ଆଜି ପୂର୍ବର ଅମ୍ଳାନ ନୁହେଁ । ମୁଁ ଅମ୍ଳାନର ଅନୁରାଗ ସମ୍ପର୍କରେ ପଚାରିଥିଲି । ସେ ସେଥିରେ ସନ୍ଦେହ କରୁଥିବା (ସାମୟିକ ଭାବେ) କଥା ଜଣାଇଥିଲା । ପ୍ରଥମଥର ପାଇଁ ମୁଁ ଭୀଷଣ ଆଘାତ ପାଇଥିଲି, ଯେତେବେଳେ ସେ କହିଲା ଯେ ଗତ ସାତବର୍ଷ ଧରି ସିଏ ଠକିଯାଇଛି ।

× × × ×

ଜଗତ୍‌ପୁରରେ ଅମ୍ଳାନ ପାଖରେ ଗୋଟାଏ ରାତି କାଟିଲି । PWD ବଙ୍ଗଳା, ଠିକ୍ ଷ୍ଟେସନ ପାଖରେ । ଭାରି ନିର୍ଜନ ଜାଗାଟିଏ । ଏଇଠି ସ୍ମିତା ରହିବାକୁ ନାରାଜ । ରାତି ଅନେକ ସମୟ ପର୍ଯ୍ୟନ୍ତ ଆମେ ଦୁହେଁ ଚେଇଁ ରହିଥିଲୁ । ନାନା କଥା ଆଲୋଚନା ହେଲା; ଆମର ସମ୍ପର୍କ, ଆଗର ଭଲ ପାଇବା ଏବଂ ଆମର ସଫଳତା ସବୁକୁ ପୁଣି ଇତିହାସଗର୍ଭରୁ ପୁନରୁଦ୍ଧାର କଲୁ । ପ୍ରତି କଥାରେ ସ୍ମିତାର 'flashback' ଅମ୍ଳାନକୁ ଚହଲେଇ ଦେଉଥିଲା । ଆମେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲୁନାହିଁ ।

ସ୍ମିତାଠାରୁ ଅମ୍ଳାନ ଯେଉଁଭଳି modesty, ଯେଉଁଭଳି ନାରୀସୁଲଭ ସରଳତା, ଜାୟାର ଅନୁରାଗ ଓ ଜନନୀ ହେବାର ଉତ୍କଣ୍ଠା ଖୋଜିଥିଲା ପାଇନଥିଲା । ସ୍ମିତା ଅମ୍ଳାନଠାରୁ ବିବାହ ପୂର୍ବରୁ ବୁଝାମଣାର ଅଭାବ ଅନୁଭବ କରିଥିଲା । ଉଭୟେ ଉଭୟଙ୍କ ପାଖରେ ନିରାଶ ହେଲେ । ଭଲ ପାଇବା ବଦଳରେ ଟଙ୍କାରେ ସବୁ ଓଜନ କରାଗଲା । ସ୍ମିତା ପାଇଁ ତାହାର ସୌନ୍ଦର୍ଯ୍ୟ, ତାହାର ବ୍ୟକ୍ତିଗତ ସ୍ୱାଧୀନତା ମୁଖ୍ୟ । ଅମ୍ଳାନ ପାଇଁ ଗୋଟାଏ ସ୍ତ୍ରୀର ସାନ୍ନିଧ୍ୟ ବଡ଼ । ଗୋଟାଏ ପରିବାରର ଉଷ୍ମତା ଅପରିହାର୍ଯ୍ୟ । ସେ ସେଇଆର ଅଭାବ ପାଇଁ ଆଜି ଅତିଶୟ ବିଚଳିତ, ଅତିମାତ୍ରାରେ ବିବ୍ରତ ।

ବନ୍ଧୁ! ମୁଁ ଜାଣିଥିଲି, ଭଲ ପାଇବା ମଣିଷକୁ ଅତିମାନବ କରିଦିଏ; ଏଇଠି ଯିଏ ଭୀଷଣ ସ୍ନେହକାଙ୍ଗାଳ, ତା'କୁ 'ଭଲ ପାଇବା' ମିଳେନାହିଁ । ଯିଏ ଭଲ ପାଇପାରେ, ସେ ଖୁସି ହୋଇପାରେ ନାହିଁ । ମଣିଷ ଏପରି କାହିଁକି ନିଷ୍ଠୁର ହୋଇଯାଏ, ମୁଁ ତା'ର କିଛି ଆଦିଅନ୍ତ ପାଏ ନାହିଁ । ମୋର ବିଶ୍ୱାସ ଥିଲା ଯେ ଅମ୍ଳାନ ଓ ସ୍ମିତା ଏ ପୃଥିବୀରେ ଆପଣାର ଭଲ ପାଇବାକୁ ପୁଞ୍ଜି କରି ସଫଳ ମଣିଷ ହୋଇପାରିବେ । କେଉଁଠି ଯେମିତି କିଛି ଭୁଲ୍ ହୋଇଗଲା । ଏମାନେ ମୋର ସ୍ୱପ୍ନକୁ ଭାଙ୍ଗିଦେଲେ ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ :*

ଏଠାରେ ଆଉ ଦିନେ ଦୁଇଦିନ ରହି ଘରକୁ ଚାଲିଯିବି । ନାନୀ ଘରକୁ ଫୋନ୍ କରିଥିଲି, କିନ୍ତୁ କେହି ଧରି ନଥିଲେ । ଏବେ ଯାଇ ଦେଖାକରିବି । Higher papers ପାଇଁ କିଛି ବହି ଯୋଗାଡ଼ କରିବାକୁ ପଡ଼ିବ । ପ୍ରଫୁଲ୍ଲ କହିଥିଲା ଦେଖାକରିବାକୁ । ମାତ୍ର ଆସିଲା ନାହିଁ । ଘର ଠିକଣାରେ ଲେଖିବ ।

▯ ▯ ▯

ପ୍ରିୟ ବନ୍ଧୁ,

ଗତକାଲି ଭଳି ଆଜି ପଶ୍ଚିମାକାଶ ଆଉଟା ସୁନାରଙ୍ଗରେ ଝଲସିଉଠିଛି । ତମେତ ଜାଣ ଏଇ ମୁହୂର୍ତ୍ତଗୁଡ଼ିକରେ ମୁଁ ଉନ୍ମାଦ ହୋଇଯାଏ । ମୁଁ ଆପଣାକୁ ହଜାଇଦିଏ । ଏଇଠି ରଙ୍ଗସବୁ ବଦଳିଯାଉଛି । କ୍ଷଣିକମଧ୍ୟରେ ପଟ୍ଟପରିବର୍ତ୍ତନ ହେଉଛି । ତଥାପି କିନ୍ତୁ ଭାବାନ୍ତର ହେଉନାହିଁ; ଏକଲୟରେ ମୁଁ ଏକ ବିବର୍ତ୍ତିତ ପୃଥିବୀକୁ ଚାହିଁରହିଛି ।

ଠିକ୍ ଆଲୁଅର ଚାନ୍ଦୁଆତଳେ ଦଳଦଳ ହୋଇ ପକ୍ଷୀ ଉଡ଼ିଯାଉଛନ୍ତି । ସେମାନଙ୍କୁ ଚିହ୍ନି ହେଉନାହିଁ, ସେମାନଙ୍କ ସିଲ୍‌ହଟ୍ ଗୋଟାଏ କଳାରେଖା ଭଳି ଆଙ୍କି ହୋଇଯାଉଛି । ଏଇ ସମୟରେ କେହି ନୀଡ଼ହରା ନୁହଁନ୍ତି, କେହି ଆପଣାର ଆଶ୍ରୟ ସମ୍ପର୍କରେ ଅନିଶ୍ଚିତ ନୁହନ୍ତି । ସେମାନେ ଏକ ବିଡ଼ମ୍ବିତ ଭାଗ୍ୟ ନେଇ ଫେରୁନାହାନ୍ତି । ସେମାନେ ଗୋଟାଏ ଦିନର ଜୀବନ ଅତିବାହିତ କରିଛନ୍ତି ।

ଏଇ ଆଶ୍ରୟ କଥା ଭାବି ବସିଲେ ମୁଁ ଥରେ ହେଲେ ମଧ୍ୟ ଅତୀତକୁ ଫେରିଯାଏ । ଇତିହାସକୁ କବରତଳୁ ଖୋଳିଆଣେ । ଏତେ ବଡ଼ ପୃଥିବୀରେ ମୁଁ ଆଦୌ ଅସହାୟ ନୁହେଁ ବୋଲି ମନେକରେ । ଦିନେ ଯେ ମୁଁ ଦ୍ୱିପ୍ରହରର ଖରାରେ ଛାଇତଳର ଆଶ୍ରା

ଖୋଜୁଥିଲି, ଦିନେ ଯେ ମୁଁ କାହାରି ପଣତତଳେ ଆତ୍ମଗୋପନ କରିବାକୁ ଚାହୁଁଥିଲି ସେସବୁ ଗୋଟାଏ ତରଙ୍ଗରେ ଆସି ମୋର ସ୍ଥିର ମନକୁ ଚହଲାଇ ଦିଅନ୍ତି । କେତେ ଶୀଘ୍ର ମଣିଷର ସ୍ୱପ୍ନବିଳାସ ତାସ୍‌ଘର ଭଳି ଧରାଶାୟୀ ହୁଏ ।

× × × ×

ତମର ଚିଠି ପାଇଲି । ଆଜିକାଲି ତମେ ଖୁବ୍ କମ୍ ଲେଖୁଥିଲେ ମଧ୍ୟ ଅନେକ କଥା ଲେଖିପାରୁଛ । ଏସବୁ ଭିତରୁ ମୁଁ ତମକୁ ଖୁବ୍ ଅନୁଭବ କରିପାରୁଛି । ତମେ ଜୀବନ ସହ ଯେଉଁଭଳି ଜଡ଼ିତ ହୋଇଯାଇଛ, ଆମ ଭିତରୁ କିଏ କେବେ ଏହିଭଳି ପାରିଥିଲା କି ନାହିଁ ସନ୍ଦେହ ଜନ୍ମୁଛି । ତମେ ଏବେ ଆପଣାକୁ ଯେଉଁସବୁ ପ୍ରଶ୍ନବାଚକ ଚିହ୍ନ ସହ ବିଶ୍ଳେଷଣ କରୁଛ, ସେସବୁ ଏକାବେଳକେ ଅଦ୍ୱିତୀୟ । ତମେ ଏହିଭଳି ଲେଖିବା ନିଶ୍ଚୟ ଅବ୍ୟାହତ ରଖିବ ।

ତମେ ଅସ୍ୱୀକାର କରିବ ନାହିଁ ଯେ ଦିନକୁଦିନ ତମର କୁହୁଡ଼ି ପହଁରିବା ଶେଷ ହେଉଛି ବୋଲି । ଦିନ ଥିଲା ତମେ ('ଆମେ'କୁ generalize କରିପାର) ସ୍ୱପ୍ନିଳ ଆଖିରେ ଏ ଦୁନିଆର ଜୁଆରଭଟ୍ଟାକୁ ଗ୍ରହଣ କରୁଥିଲ, ବିମୋହିତ ହୋଇ ଯାଉଥିଲ । ତମେ ସମୟ ଓ ସ୍ଥାନ ବିଶେଷକୁ ଅତିକ୍ରମ କରିବାକୁ ହିଁ ଚାହିଁଥିଲ । ଆଜି ତମେ କେଉଁଠି କେମିତି ଲାଖିଯିବାକୁ ମନ ବଳାଉଛ, ସମୟର ପୀଡ଼ାରୁ ରକ୍ଷା ପାଇବା ପାଇଁ ବାଟ ଖୋଜୁଛ । କେଜାଣି କେମିତି ତମେ ହଠାତ୍ ଦିନଟିଏ କଟିଗଲା ପରେ ଆଶ୍ୱସ୍ତିର ନିଃଶ୍ୱାସଟିଏ ମାରୁଛ । ଗୋଟାଏ ମୁହୂର୍ତ୍ତରେ ଜୀବନର ସଂଜ୍ଞା ବଦଳିଯାଉଛି । ବଞ୍ଚିବାର ଅର୍ଥ ଜଟିଳ ମନେହେଉଛି, ଭାବନାର ସୁଆଦ ଭିନ୍ନ ହେଉଛି । କେବେ କେମିତି ତମେ ବଞ୍ଚିବାକୁ ମୁଖ୍ୟ ବ୍ୟବସାୟ ବୋଲି ଧରି ନଥିଲ । ଆଜି ଏକ ଭାରାକ୍ରାନ୍ତ ହୃଦୟରେ ତମେ ନିଜତ୍ୱକୁ ଏ ପୃଥିବୀର ବିଭିନ୍ନ ନିଷ୍ଠୁର ବିପଣୀରେ ବିକ୍ରୟ କରିଦେଉଛ । ତମେ ଗତ ଚିଠିରେ ଲେଖିଥିଲ ଯେ ଶିଶୁସୁଲଭ ନିରୀହତା ନେଇ ଆମେ ପରସ୍ପରକୁ ପୁଣିଥରେ ଭେଟିବା । ତମ ସହ ଏକମତ ହେବା ପୁଣି ଏକ ସ୍ୱପ୍ନନଦୀରେ ନୌକା ବାହିବା !

ଯେତେ ଚେଷ୍ଟା କଲେ ବି ଆମେ ପଛକୁ ଫେରିପାରିବା ନାହିଁ । ହୁଏତ ବିଷାଦମୟ ମୁହୂର୍ତ୍ତଗୁଡ଼ିକରେ କେବଳ ମନେପକାଇ ମୁଣ୍ଡ ବାଡ଼େଇବା ହିଁ ଆମର ସର୍ବଶ୍ରେଷ୍ଠ ସାନ୍ତ୍ୱନା ହେବ । ଦିନେ ଯେ ଆମେ ଗୋଟାଏ କିଛି 'break through' କରିପାରିବା ତାହାର ବିଶ୍ୱାସ ଓ ସାମର୍ଥ୍ୟ କମିଯାଉଛି । ଏପରି ଏକ ସମୟ ଆସିବ, ଯେତେବେଳେ ଆମେ ତାହା ସମ୍ପୂର୍ଣ୍ଣ ହରାଇବସିବା । ଆମର ସ୍ଥିତି ସହ ଏକ ବିଶେଷ ଧରଣର ସମ୍ପର୍କକୁ ରୂପରେଖ ଦେବା ପାଇଁ ଆମେ ବୋଧେ ଚାହିଁଛେ । ତାହା ହିଁ ଆମର ଶେଷ ସ୍ୱପ୍ନ । ଆମେ ଅତି

ନିଷ୍କ୍ରିୟ ଭାବେ ତାହା କେବଳ ଭାଙ୍ଗିଯିବା କଥା ହିଁ ଲକ୍ଷ୍ୟ କରିବାକୁ ବଞ୍ଚିରହିବା । ଏହା ମୋର ସର୍ବଶେଷ କଳ୍ପନା ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ :*

ଏଇମାସ ସାରା ମୁଁ କେବଳ European History ପଢ଼ିଛି । ବେଳେବେଳେ କିଛି ଅଂଶ ନିଶ୍ଚୟ ଭଲ ଲାଗିଛି । ତଥାପି ଜଣେ ସ୍ଥିତି ସଚେତନ ମଣିଷ ପାଇଁ diplomacy ବା statemanship ଆଦିର କ'ଣ ମୂଲ୍ୟ ଓ ଅର୍ଥ ଅଛି ? ଆସନ୍ତା ଏକ ତାରିଖରେ PSC office ରେ subergistrar ପାଇଁ interview ଦେବାକୁ ପଡ଼ିବ । ମୁଁ ନାନୀଆଦିଙ୍କୁ ଦେଖା କରିବି ନିଶ୍ଚୟ । ପୁଣି ବଞ୍ଚିବା ପାଇଁ ମୁଁ ବୋଧେ ସଂଗ୍ରାମ କରୁଛି । ସଚେତନ ଓ ଅବଚେତନ ଉଭୟ ସ୍ତରରେ ।

ପାଖରେ କିଛି ବହିନାହିଁ ପଢ଼ିବାକୁ । T.E. Lawrence ପରେ Huxleyଙ୍କର ତିନୋଟି ବହି (essays) ପଢ଼ିଛି । ସେସବୁ ବୃଥା ବୌଦ୍ଧିକ ପରିଶ୍ରମ ବୋଲି ମନେ କରୁଛି । ପ୍ରଦୀପ ବା ବିଭୁପାଢ଼ୀ,ଏମାନଙ୍କୁ ମୁଁ ବିଶେଷ ଗୁରୁତ୍ୱ ଦେବା ଉଚିତ ମନେ କରୁନାହିଁ । ତଥାପି ଅବସ୍ଥାଚକ୍ରରେ ସେମାନଙ୍କୁ ଆଡ଼େଇ ଦେଇ ହେବନାହିଁ ।

ଅମ୍ଳାନ ପ୍ରତି ମୁଁ କ୍ରମେ ବୀତସ୍ପୃହ ହୋଇପଡୁଛି ବୋଲି ଭୟ ହେଉଛି । ଏହିଭଳି ପରିସ୍ଥିତିର ଯେ ସମ୍ମୁଖୀନ ହେବାକୁ ପଡ଼ିବ, ମୁଁ କେବେ ବୋଧେ ଆଶା କରିନଥିଲି ତା'ର ଭଲ ପାଇବାର ମୁହୂର୍ତ୍ତଗୁଡ଼ିକରେ ମୁଁ ଏକମାତ୍ର ସାହସ ଓ ବିଶ୍ୱାସ ଥିଲି । ଏବେକା ଘଟଣାମାନଙ୍କରେ ମୋର ପ୍ରବେଶ ନାହିଁ, ମୋର ଆବଶ୍ୟକତା ନାହିଁ । ଅମ୍ଳାନ ପାଖୁ କେଇ ଧାଡ଼ି ଚିଠି ଲେଖି ନିଜର ବ୍ୟାକୁଳତା ଓ ସହାନୁଭୂତି ପ୍ରକାଶ କରିବାର ମସ୍ତ ବୋଧେ ଏବେ ମୁଁ ଅନୁଭବ କରିପାରୁନାହିଁ । ସେ ଖୁସିରେ ରହୁ, ଏକଥା ମୁଁ ନିଶ୍ଚୟ ଚାହୁଁଛି । କିନ୍ତୁ ଅମ୍ଳାନର ସାମୟିକ ନିଷ୍ଠୁରତାକୁ ମୁଁ ବୁଝିପାରୁନାହିଁ ।

ତମେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଯିବଣି । ପୁଣି ଲେଖିବ ।

□ □ □

ପ୍ରିୟ ବନ୍ଧୁ,

ତମେ ଯେ ମୋତେ ବିଶ୍ୱାସ ଦେଇ ପାରିଛ, ଏହା କେତେ ବଡ଼ ସୌଭାଗ୍ୟର କଥା । ତମମାନଙ୍କର ଦୁଃସମୟରେ ମୁଁ ଯଦି ଏହିଭଳି ଦି'ଧାଡ଼ି ଲେଖିପାରୁଥାନ୍ତି, ମନଖୋଲି ଦି'ପଦ କହିପାରୁଥାଆନ୍ତି, ନିଜକୁ ଧନ୍ୟ ମନେ କରୁଥାଆନ୍ତି । ତମନଙ୍କୁ

ବୁଝିବା ପରିବର୍ତ୍ତେ ସବୁବେଳେ ମୁଁ ଯେମିତି ମୋର ନିଜତ୍ୱକୁ ତମମାନଙ୍କ ଉପରେ ଅତି ନିଷ୍ଠୁରଭାବେ ଲଦି ଦେଇଛି ।

ଆଜି ମୁଁ ସବୁଠାରୁ ଅସହାୟ ଅବସ୍ଥାରେ ପହଞ୍ଚିଯାଇଛି । ତମେ ତ ଜାଣ କେତେ ଦିନ ହେବ ମୁଁ ଏକ ଅଦ୍ଭୁତ ପରୀକ୍ଷା କରୁଥିଲି । ବିଗତ ଦିନମାନଙ୍କର ସବୁ ବ୍ୟର୍ଥତା ପରେ ମୁଁ ନିଶ୍ଚୟ ସଚେତନ ହୋଇଯାଇଥିଲି । 'spirit' ଭଳି 'flesh' ସହ ମୋର ମୁକାବିଲାର ଏକ କରୁଣ ସମାପ୍ତି ହେଲା । ଯେଉଁ aesthetics ମୋତେ ବାରମ୍ବାର କୁହୁଡ଼ି ପହଁରିବାକୁ ପ୍ରଲୋଭିତ କରିଥିଲା, ସେଇ ପୁଣି ପୁନର୍ବାର ହତାଶାର ଏକ ଝଡ଼ ସୃଷ୍ଟି କରିଦେଲା । ମୋଭଳି ମଣିଷମାନଙ୍କର ଏଇଠି ସ୍ଥାନ ନାହିଁ । ଯାହାର ପ୍ରାର୍ଥନା ଓ ପ୍ରତିବାଦ ଏ ଘରର ଝର୍କା ବାହାରକୁ ଶୁଣାଯାଏ ନାହିଁ, ଯାହାଉପରେ ଏ ପୃଥିବୀର ସବୁ ପାପର ଭାର ଏକ ପାହାଡ଼ ଭଳି ଲଦି ଦିଆଯାଏ, ତା'କୁ କେଉଁ ସୂତ୍ରରେ ମଣିଷର ଆଖ୍ୟା ଦେବ ? ଏଇଠି 'ମୁକ୍ତି' ମିଳେ ନାହିଁ, କ୍ରୀତଦାସତ୍ୱ ମଧ୍ୟ ମିଳେ ନାହିଁ । ଏଠାରେ ମଣିଷ ପଶୁ ସ୍ତରରେ ରହେ ନଚେତ୍ ମହାମାନବ ହୋଇଯାଏ । ଏତେବଡ଼ ପୃଥିବୀରେ 'ମଣିଷ' ବୋଲି ଜୀବଟିଏ ଆଖି ଆଗକୁ ଆସୁନାହିଁ । ସେଇଥିପାଇଁ ମୁଁ 'ଦେବତ୍ୱ' ସ୍ତରକୁ ଉଠିବାର ବୃଥା ପ୍ରୟାସ କରି ପଶୁସ୍ତରକୁ ଓହ୍ଲାଇ ଆସିଥିଲି । ଭାବିଥିଲି, ଏଇଠି ମୋତେ ସାନ୍ତ୍ୱନା ମିଳିବ, ମୁକ୍ତି ମିଳିବ, ସବୁ ପିପାସାର ସମାପ୍ତି ହେବ । ଆଶା କରିଥିଲି, ଏଇ ସ୍ତରରେ ରହିପାରିବା ମୋ ପାଇଁ ବର୍ତ୍ତମାନ ସୁଦ୍ଧା ସର୍ବଶ୍ରେଷ୍ଠ ସାଫଲ୍ୟ ହୋଇପାରିବ ।

ତମେ ଜାଣିଛ କି ନାହିଁ କେଜାଣି, ଦେହର କ୍ଷୁଧା ପ୍ରଶମିତ ହୁଏନାହିଁ । ରକ୍ତରେ ହଠାତ୍ ଜୁଆର ଉଠିଲେ ମଣିଷର ରୂପ ସମ୍ପୂର୍ଣ୍ଣ ବଦଳିଯାଏ । ମୁକ୍ତି ପରିବର୍ତ୍ତେ ଶୃଙ୍ଖଳ ହିଁ ମିଳେ । ଆପଣାର ଦୁର୍ବଳତା ହଠାତ୍ ଶାସନ କରିବାର ଏକ ଅମୋଘ ଅସ୍ତ୍ର ପାଇଯାଏ । ହୃଦୟ ଆଲୋଡ଼ିତ ହୋଇଗଲେ ସବୁ କ୍ଷତ ବିଦୀର୍ଣ୍ଣ ହୋଇଯାଏ । ଯଦି କିଛି ନିଜତ୍ୱ ଥାଏ, ତାହା କାମନା ଶିଖାରେ ଆହୁତି ଦିଆଯାଏ । ମୁଁ ଭଲ ପାଇବା କଥା ବୁଝେ, ମୁକ୍ତ ହୋଇଯିବାର ଉଚ୍ଚ ଆକାଂକ୍ଷା ରଖେ । ମୋ ପାଇଁ medium ଗୌଣ, ମୋ ପାଇଁ ପନ୍ଥା ମୂଲ୍ୟହୀନ । ସେଇଥିପାଇଁ ମୋର ଆଧ୍ୟାତ୍ମିକବାଦର ଯେଉଁଦିନ ମୃତ୍ୟୁ ହେଲା, ସେଦିନ କେଉଁଠୁ କେଜାଣି ସଇତାନ୍ ମୋତେ ଅନେକ ଦୁଃସାହସର ଉପହାର ଆଣିଦେଲା । ମୋର ମନେହେଲା ଯେ ଦେହର କ୍ଷୁଧା ବୋଧେ ମୁକ୍ତିର ଅନ୍ୟ ଏକ ରୂପ !

ଆଜି ମୁଁ ସବୁକିଛି ହରାଇବସିଛି । ମୋ ପାଖରେ ନିଜର ବୋଲି କିଛି ନାହିଁ । ଗୋଟାଏ ଦୋଳକର ଉଭୟ ପ୍ରାନ୍ତରେ ନୈରାଶ୍ୟ ଓ ଯନ୍ତ୍ରଣା, ପ୍ରିଜ୍‌ମ୍‌ର ସବୁ ରଙ୍ଗରେ ସମାନ ବ୍ୟର୍ଥତା । ତମେ 'body' ବା 'spirit' ଯେଉଁଠି ଆଶ୍ରା ଲୋଡ଼ା, ଶେଷ ପରିଣତି ଉଭୟ କ୍ଷେତ୍ରରେ ସ୍ଥୂଳତଃ ସମାନ । ସବୁ କିଛି କ୍ରମଶଃ ହରାଇବସିବା ବୋଧେ ମୋ

ଜୀବନର ଏକମାତ୍ର ଆଭିମୁଖ୍ୟ । ସେଇଥିପାଇଁ ସନ୍ତପ୍ତ ଓ ବିଜୟ ପ୍ରାଣରେ ଯାହାକିଛି ଆସୁଛି, ମୁଁ ମୁଣ୍ଡପାତି ଗ୍ରହଣ କରୁଛି । ଏତେବଡ଼ ସ୍ୱପ୍ନ ପ୍ରସାଦରୁ ଗୋଟାଏ ଗୋଟାଏ ସ୍ତମ୍ଭ ଧରାଶାୟୀ ହୋଇଯାଉଥିଲେ ମଧ ମୁଁ ଭୁଷୁଡ଼ି ପଡ଼ିନାହିଁ । ଏଇଥିପାଇଁ ତମମାନଙ୍କର ଆଶା ଓ ବିଶ୍ୱାସ ବୋଧେ ଦାୟୀ ।

ଅଚ୍ୟୁତ

*ଦ୍ରଷ୍ଟବ୍ୟ :*

ଏଥରର ପ୍ରସ୍ତୁତି ଗତ ବର୍ଷମାନଙ୍କ ଅପେକ୍ଷା ସାମାନ୍ୟ ବଳିଷ୍ଠ ହେଲେ ମଧ ଆଦୌ ଆଗେଇ ପାରୁନାହିଁ । G.K. ମଧ ଏଥର Bank type ହେବ । ଏଥିପାଇଁ ଏକ ସ୍ୱତନ୍ତ୍ର ପ୍ରସ୍ତୁତି ଦରକାର ହେବ । କ୍ରମେକ୍ରମେ ସୁଯୋଗ ହାତରୁ ଖସିଗଲା ଭଳି ମନେହେଉଛି ।

ଘରର ଅବସ୍ଥା ମଧ ସେତେ ଭଲ ନୁହେଁ । ମାଆର ଦେହ ବେଳେବେଳେ ଭାରି ଖରାପ ହୋଇଯାଉଛି । ଅତି ବିଷର୍ଣ୍ଣ ମନରେ ମୁଁ ଏଇଠି ସବୁକଥା ମୁକ ହୋଇଯାଇ ଲକ୍ଷ୍ୟ କରୁଛି । ଘରୁ ଶୀଘ୍ର ଚାଲିଗଲେ ଭଲ ହୁଅନ୍ତା । ପ୍ରଦୀପ ମହାନ୍ତି ଆଜି ଗୋଟାଏ ମାଗାଜିନ୍ ଛପାଇବା କଥା ଖବରକାଗଜରୁ ପଢ଼ିଛି । ଯଦି ସେମାନେ ମୋତେ engagment ଦିଅନ୍ତେ ଭଲ ହୁଅନ୍ତା ।

ଏଇଠି ଆବେଗରେ ଦାରିଦ୍ର୍ୟ ଯେଉଁଭଳି ମୁଁ ଅନୁଭବ କରୁଛି ତାହା ମୋତେ ଭୀଷଣ ଆଘାତ ଦେଇଛି । କେବେ କେମିତି କିଛି କିଛି ଲେଖିବାକୁ ଆଗ୍ରହ ଆସୁଥିଲା, ଏବେ ତାହା ଯେମିତି ସ୍ୱପ୍ନ ହୋଇଯାଇଛି ।

ଅମ୍ଳାନ ଯେଉଁ ସହାନୁଭୂତି ଚାହୁଁଛି (ତମଠାରୁ ଓ ମୋଠାରୁ) ତାହାର ଫଳାଫଳ ଉପରେ ମୁଁ ଉଭୟ ଦାତା ଓ ଗ୍ରହୀତାଙ୍କୁ ସନ୍ଦେହ କରେ । ଅମ୍ଳାନ ଓ ସ୍ମିତା ଉଭୟେ ବିବାହର ବିଫଳତା ପାଇଁ ଦାୟୀ । ସ୍ମିତା ଯେଉଁ ପରିବାରରୁ ଆସିଛି, ସେଇଠି ଟଙ୍କା ଓ ଆଭିଜାତ୍ୟରେ ମଣିଷକୁ ଓଜନ କରାଯାଏ । ଅମ୍ଳାନ ସ୍ମିତାଠାରୁ ଯେଉଁ 'classical love & intimacy' ଚାହୁଁଛି, ତାହା ନପାଇବା ଦ୍ୱାରା ହିଁ ତାହାର ମନ ବିଷାକ୍ତ ହୋଇଯାଇଛି । ମୋ ମତରେ ସେମାନେ ଭୀଷଣ ବାସ୍ତବବାଦୀ । ସ୍ୱପ୍ନ ଦେଖିବା ସେମାନଙ୍କର ଏକ ବିଳାସ । ଆମମାନଙ୍କ ଭଳି ସେମାନେ ଭାବପ୍ରବଣତା ବା ସ୍ୱପ୍ନବାଦକୁ ଅପରିହାର୍ଯ୍ୟ ବୋଲି ଗ୍ରହଣ କରନ୍ତି ନାହିଁ । ଯେଉଁ ଭଳି ପାଇବାରେ ଏକାତ୍ମ ହୋଇଯିବାର ଅଭିଳାଷ ନାହିଁ ଯେଉଁଠି ଗୋଟାଏ ହୃଦୟର କଥା ଅନ୍ୟ ଜଣେ ଶୁଣିପାରେ ନାହିଁ, ସେଇଠି ଏଇଭଳି ଏକ କରୁଣ ବିଚ୍ଛେଦ ହେବା ଭଗବାନଙ୍କର ଆଶୀର୍ବାଦ । ତମେ ଅମ୍ଳାନକୁ ଯାହା ଭାବୁଛ ଲେଖିବ । କେତେ ଦିନ ହେବ ମୁଁ ତା'କୁ ଲେଖିନାହିଁ ।

□ □ □

ପ୍ରିୟ ବନ୍ଧୁ,

ବାହାରେ ବର୍ଷା । କେତେ ଦିନ ହେବ ଏଇଠି ପ୍ରଚଣ୍ଡ ଗରମ ପଡ଼ିଥିଲା । ତମେ ରାତିରେ ସେଇଠି ବର୍ଷାର ଅପୂର୍ବ ଝଙ୍କାର ଶୁଣୁଥିଲାବେଳେ ଆକାଶ ଏଇଠି ପ୍ରାୟ ମେଘମୁକ୍ତ ରହୁଥିଲା ।

ତମେ ତ ଜାଣ ମୌସୁମୀ ପ୍ରତି ଆମର ଭଲ ପାଇବା ଅଦ୍ୱିତୀୟ । ହଠାତ୍ ଯେମିତି ଅବରୁଦ୍ଧ ହୋଇ ପଡ଼ିଥିବା ଜ୍ୱାଳା ଓ ଯାତନା ବର୍ଷାର ପରଶ ପାଇଲା କ୍ଷଣ ଅଙ୍କୁରିତ ହୋଇଯାଏ । କ୍ଷଣିକର ଆବେଗ ଭିତରେ ଗତ ଓ ଅନାଗତ ଜୀବନର ପ୍ରତିଟି ସ୍ତର ଉଦ୍‌ଭାସିତ ହୋଇଯାଏ । ଆମେ ଯେମିତି ଡେଣା ଲଗାଇ କେଉଁ ଏକ ଅନାମିକା ନଭମଣ୍ଡଳକୁ ପହଁରିଯାଉ । କେତେ ସହଜରେ ଆମେ ପୂର୍ଣ୍ଣତା ପାଉ । ଆମେ ମଣିଷ ପଦବାଚ୍ୟ ହୋଇଯାଉ । ଆଜିର ବର୍ଷାରେ ମାଦକତା ଅଛି କି ନାହିଁ ମୁଁ ପଚାରିନାହିଁ ଏଇଠି ସ୍ନେହ ଉଷ୍ଣତା ମୁଁ ଖୋଜୁଛି କି ନା ଜାଣିପାରୁନାହିଁ । ଏଇ ମୁହୂର୍ତ୍ତରେ କେବଳ ଅନ୍ୟ ଏକ ସ୍ତରକୁ ରୂପାନ୍ତରିତ ହୋଇ ଯାଉଥିବା କଥା ମୁଁ ଅନୁଭବ କରିପାରୁଛି । ମୁଁ ମୁକ୍ତିର ସନ୍ଧାନ ପାଇପାରୁଛି । କ୍ରମାଗତ ଭାବେ ଶୁଷ୍କ ହୋଇ ପଡୁଥିବା ଜୀବନରେ ଆଜି ଯେମିତି ପ୍ରାଣ ସଞ୍ଚାର ହେଉଛି ।

ଗତ ଚିଠିରେ ତମେ ତମ ଜୀବନର ପଚିଶ ବର୍ଷକୁ ଏକ nostalogia ରେ ପ୍ରକାଶ କରିଥଲ । ତମେ କେତେ ସହଜ ଭାବରେ ଆପଣାକୁ ଗ୍ରହଣ କରିପାର, ସାଲିସ୍ କରିପାର, ସେଇକଥା ମୁଁ ଅନେକ ସମୟ ଧରି ଭାବିଥିଲି । ନିଜକୁ ତୁଳନା କରିଥିଲି । ଆଲୋଡ଼ିତ ହୋଇପଡୁଥିଲି ବାରମ୍ବାର ।

ଗତ ପଚିଶ ବର୍ଷ ଧରି ଆମର କେବଳ ସ୍ୱପ୍ନଭଙ୍ଗ ହୋଇଛି ବୋଲି ମୁଁ ଯଦି ଦାବୀ କରେ, କଥାଟା ଅଯୌକ୍ତିକ ଓ ଅବାନ୍ତର ବୋଲି ତମେ ଧରି ନେଇପାର । କିନ୍ତୁ ବୋଧେ ଏହା ଏକମାତ୍ର ସତ୍ୟ, ଯାହାକୁ ନେଇ ଆମେ ଆମର wisdom କୁ ହିଁ ଗଢ଼ି ବସିଛେ । ଜୀବନର ପ୍ରାକ୍‌କାଳରେ ଆମେ ଅବସର ବିନୋଦନ କରିନାହେଁ । ଜୀବନଯାତ୍ରାଟା ଆମର କେବେହେଲେ 'luxury of suffering' ନୁହେଁ । ଆମେ ଯେତିକି ଯେତିକି ଜଡ଼ିତ ହୋଇଯାଇଛେ, ସମୟ ସ୍ଥାନ ବିଶେଷକୁ ଅତିକ୍ରମ କରିବାକୁ ଚାହିଁଛେ, ସେତିକି ସେତିକି ଆମେ ଆପଣାକୁ ଧ୍ୱଂସ କରିଦେଇଛେ । ଏଇଠି ଭଲ ପାଇବାକୁ ଆମେ ମହନୀୟ ବୋଲି ବିଚାରୁଥିଲେ । କେଉଁଠି ପହଞ୍ଚିଗଲେ ଆମେ ? ଏଇଠି ଆମକୁ ଏ ପୃଥିବୀ ଆଗେଇଯିବାକୁ ପ୍ରେରଣା ଦେବ ବୋଲି ବିଚାରୁଥିଲେ । ଏଠିକାର ବାସ୍ନା, ଏହାର ରଙ୍ଗରେ ଆମେ ବିମୋହିତ ହୋଇପଡୁଥିଲେ । ଆମେ କେଡ଼େବଡ଼ ସ୍ୱପ୍ନର ପ୍ରାସାଦ ଗଢୁଥିଲେ ? ବିଭ୍ରାଟ ହୋଇଗଲାପରେ ଆଜି ସବୁ ବିକଟାଳ ହୋଇଯାଇଛି । ଆମ ଆଗରେ ଅମ୍ଳାନ ଓ ପ୍ରଫୁଲ୍ଲ

ବଦଳିଯାଆନ୍ତି; ସ୍ମିତା ଓ ରୁମୀ ହଠାତ୍ ଠକି ହୋଇଯିବା କଥାଟା ବିଚାର କରନ୍ତି । ଭଲ ପାଇବା ବଦଳରେ ଘୃଣା ଏଇଠି ରାଜତ୍ୱ କରେ, ସମ୍ପର୍କ ମଧୁମୟ ହୋଇଯିବା ପରିବର୍ତ୍ତେ ଏଇଠି ବିଷସଞ୍ଚାର ହୁଏ ।

ମୋର କାହା ବିରୁଦ୍ଧରେ ଅଭିଯୋଗ ନାହିଁ । ମୃତପ୍ରାୟ ପ୍ରାଣରେ ବାଧବାଧକତାରେ ମୁଁ ପୁଣି ଏକ ଚମକ ସୃଷ୍ଟି କରିବାର ଅଭିଳାଷ ପୋଷଣ କରୁନାହିଁ । ଗତ ପଚିଶବର୍ଷ ଧରି ମୁଁ ଭ୍ରମ ସୃଷ୍ଟି କରି ଭଲ ମଣିଷ ହେବାକୁ ଚାହିଁଛି ଓ ସେଇଥିପାଇଁ ଆଜି ମୁଁ ଭୀଷଣ କ୍ଳାନ୍ତ । ତମେକୁହ, ତମେ ଆଉ କେଉଁ ଭ୍ରମଗୁଡ଼ିକୁ ସୃଷ୍ଟି କରିବାକୁ ଅଣ୍ଟା ଭିଡ଼ିଛ, ଯାହା ତମର ଜୀବନରେ ମହକ ଆଣିଦେବ, ମହତ୍ତ୍ୱ ସୃଷ୍ଟି କରିବ ?

ତମେ 'Strength to Dream' ପଢ଼ିସାରିଛି । ତମେ ଜାଣିପାରୁଥିବ ସବୁ କଥା । କିନ୍ତୁ ଏଇଠି ଯେ 'cruelty in releigion of existence' । ତମେ କ'ଣ ଏହାର ବିରୁଦ୍ଧାଚରଣ କରିପାରିବ ? ମୁଁ ବାରମ୍ବାର କହିଛି ଯେ ମୁହୂର୍ତ୍ତକ ପାଇଁ ଯଦି ମୁଁ ମୁକ୍ତ ହେଇଯାଇଥିବା କଥା ଅନୁଭବ କରିପାରେ, ତାହାହେଲେ ସାମଗ୍ରିକ ସତ୍ତାର ସନ୍ଧାନ ମୁଁ ପାଇପାରିଛି ବୋଲି ଭାବିବାକୁ ହେବ । ଏବେ ତ ଜୀବନର ଭଙ୍ଗା ପଡ଼ିଗଲାଣି । ଅମ୍ଳାନ ଆଗରେ ମୁଁ ସବୁକଥା ସ୍ୱୀକାର କରୁଥିଲି । କହୁଥିଲି ଯେ ମୋର ବଞ୍ଚିବାର ଅର୍ଥ ଓ ଆବଶ୍ୟକତା କେଉଁଦିନୁ ସମାପ୍ତ ହୋଇଗଲାଣି । ବର୍ତ୍ତମାନର ଜୀବନ କେବଳ ଏକ ନିରସ ଉପନ୍ୟାସର ଅନ୍ତିମ ପୃଷ୍ଠା; ଏକ ପୂର୍ବ ନିର୍ଦ୍ଧାରିତ ପ୍ଲଟ୍‌ର ଯବନିକା । ତମକୁ ବି କହିଦେଉଛି ମଧ ଯେ ଯେକୌଣସି ଦିନ ମୁଁ ନିଜକୁ ଶେଷ କରି ଦେଇପାରେ । ତମର ଅନୁମତି ଲୋଡୁଛି ମଧ ।

ଅଚ୍ୟୁତ

*ବି.ଦ୍ର.:* T.E. Lawrence ଙ୍କୁ ଯଥାର୍ଥ ଭାବେ spiritual outsider ବୋଲି କୁହାଯାଇଛି । ଯେକୌଣସି ମାପକାଠିରେ 'Seven Pillars of wisdom' ଗୋଟାଏ masterpiece । ତମେ କେବେ ସମୟ ପାଇଲେ ନିଶ୍ଚୟ ପଢ଼ିବ ଏହାକୁ । Van Gogh ଭଳି ଏହାଙ୍କର ଜୀବନଯନ୍ତ୍ରଣା ହୁଏତ ନାହିଁ; ତଥାପି ଆଡ୍‌ଭେଞ୍ଚର୍ କରିବାବେଳେ ତାଙ୍କର ଭାବପ୍ରବଣତା, ଭଲ ପାଇବା ଓ ଭ୍ରମସବୁ ଅତି ଚମତ୍କାର ଭାବେ ପ୍ରକାଶିତ ହୋଇଛି । 'Lawrence of Arabia' ଫିଲ୍ମଟିକୁ ଦେଖିଥିବା କଥା କହିଥିବି । ଏକ ଅଦ୍ୱିତୀୟ ଜୀବନଗାଥା ସହ ମୁଁ ଆବେଗମୟ ସମ୍ପର୍କ ଯୋଡୁଛି ।

ଅମ୍ଳାନ ପାଖକୁ ଚିଠି ଦେଇଛି । ପୁଣି ଲେଖିବି । ତାହାର ଏକାନ୍ତ ଜୀବନରେ ଯଦି ମୋର ଚିଠି ଟିକିଏ ମାତ୍ର ଉଚ୍ଛ୍ୱାସର ସ୍ରୋତ ସୃଷ୍ଟି କରିପାରେ । ତେବେ ମୁଁ ଧନ୍ୟ ହେବି । ମୁଁ ତା'ର ବନ୍ଧୁ, ଯିଏ ତାହାରି ମୁହଁରେ ନିଷ୍କ୍ରିୟ ବୋଲି ଆଖ୍ୟା ଦେଇସାରିଛି । ତଥାପି

ମୋର ଭ୍ରମ ତୁଟିଯାଇନାହିଁ, ମୋର ବିଶ୍ୱାସ ଓ ଆସ୍ଥା ଅକ୍ଷତ ରହିଛି । ତମେ ଲେଖିବାକୁ ବିରତ କରାଉଛ । ମୁଁ ହୁଏତ ଅତି ଅପ୍ରତ୍ୟାଶିତ ଭାବେ ତମ ପାଖକୁ ଅନେକ କଥା ଲେଖି ଦେଉଛି । ତମେ ବେଳେବେଳେ କ୍ଲାନ୍ତ ହୋଇ ପଡୁଥିବ । ମୁଁ ଚେଷ୍ଟା କରିବି ନଲେଖିବାକୁ । ତଥାପି ତ ସପ୍ତାହକୁ ଗୋଟିଏ ଚିଠି ଦେବାକୁ ହିଁ ପଡ଼ିବ ।

× × × ×

ଏ ଚିଠି ୭ ଦିନ ହେବ ଲେଖି ସାରିଥିଲେ ମଧ୍ୟ ଜାଣିଶୁଣି ପଠାଇନାହିଁ । ତମେ କିଛି ଭାବିବ ନାହିଁ । ଅମ୍ଳାନ ଭାବାବେଗରେ ଗୋଟାଏ ଚିଠି ଲେଖିଛି । ଅଭୁଲା ସ୍ମୃତି ବିଜଡ଼ିତ ଘଟଣା ପ୍ରବାହ ତାକୁ ଯେମିତି ନିରନ୍ତର ଅଥୟ କରୁଛି । ଗୋପବନ୍ଧୁ ନୀଳଗିରିକୁ ଦେଇଥିବା ଚିଠି ପାଇଛି । ବାବି ମଧ୍ୟ ତା'ର ରୁଟିନ୍ ପଠାଇଛି ।

'Seven pillars of wisdom' ସରିଯାଇଛି । ଦୀର୍ଘ ଦୁଇବର୍ଷ ଧରି Lawrence ଯେଉଁଭଳି ଆରବ ମରୁଭୂମିରେ ମୁକ୍ତି ସଂଗ୍ରାମ ପାଇଁ ଜଡ଼ିତ ହୋଇ ଯାଇଥିଲେ ତାହାର ଶେଷ ପର୍ଯ୍ୟାୟ ଭାରି ଦୁଃଖପୂର୍ଣ୍ଣ ହୋଇଛି । ଶେଷବେଳକୁ ପ୍ରତାରିତ ହୋଇଯାଇଥିବା କଥା ଅନୁଭବ କରିପାରିଛନ୍ତି । 'supreme involvement'ର ସବୁବେଳେ ଏହିଭଳି ଶେଷ ପରିଣତି ଯେ ହୁଏ, ଏକଥା ବୋଧେ ବିଶ୍ୱାସ କରିବାକୁ ପଡ଼ିବ । ଏହାସତ୍ତ୍ୱେ ତଥାପି ମଧ୍ୟ ଲିପ୍ତ ହୋଇଯିବାରେ ଆନନ୍ଦ ଅଛି । ଉପଲବ୍ଧି ମଧ୍ୟ ଅଛି ।

*"There was a craving to be famous; and a horror of being known to like being known. Contempt for my passion for distinction made me refuse every honour. I cherished my independence almost as did a Beduin, but my importance of vision showed my shape best in painted pictures, and the oblique overhead remarks of others best taught my created impression. The eagerness to overhear and oversee myself was my assault upon my own inviolate citadel."*

× × × ×

*"Always feelings and illusions were at war within me, reason strong enough to win, but not strong enough to annihilate the vanquished, a refrain from liking them betterl and perhaps the truest knowledge of love might be to love what self despised. Yet I could not wish to; could see happiness in the supremany of the material, and could not surrender to it; could try to put my mind to sleep that suggestion night blow through me freely; and remained bitterly awake."*

▯ ▯ ▯

ପ୍ରିୟ ବନ୍ଧୁ,

ଭୁବନେଶ୍ୱରରୁ ଲେଖୁଛି ।

ପରୀକ୍ଷାର ପ୍ରଥମ ପର୍ଯ୍ୟାୟ ସରିଲାପରେ କିଛିଟା ଆଶ୍ୱସ୍ତ ହୋଇଛି । କ'ଣ ଲେଖିଛି ତାହା ମୁଁ ଆଦୌ ବିଚାର କରିନାହିଁ । ପ୍ରଶ୍ନ ନିଶ୍ଚିତ ଭାବେ ସହଜ ଆସିଥିଲା । ମୋର ଅଧାପନ୍ତରିଆ ପ୍ରସ୍ତୁତି କିଛି ଫଳପ୍ରଦ ହେଲାନାହିଁ ।

ଏସବୁ ପରୀକ୍ଷା କେବଳ ନିଜର ଅଯୋଗ୍ୟତା ପ୍ରମାଣିତ କରିବାକୁ ଦିଆଗଲା ବୋଲି ମନେହେଉଛି । ଭବିଷ୍ୟତରେ ଯେ ପରୀକ୍ଷା ଦେବାକୁ ହେବନାହିଁ, ତାହା ମୋର ଅନେକ କିଛି କାର୍ଯ୍ୟକଳାପକୁ ଯଥେଷ୍ଟ ପ୍ରଭାବିତ କରିବ । 'ମୁକ୍ତି' ଯେମିତି ଆଉ କିଛି ନୂତନ ସଂଜ୍ଞା ଧାରଣ କରୁଛି । ଏବେ ମୋର ପୃଥିବୀରୁ ଫେରିବାକୁ ପଡ଼ିବ, ଏବେ କେଉଁଠି ଅଟକିଯିବାକୁ ହେବନାହିଁ ।

ଅମ୍ଳାନ କଟକରେ ରହୁଛି । ସେ ଆପାତତଃ ପରୀକ୍ଷା ଭଲ କରିଥିବା କଥା ମୁଁ ଜାଣିପାରିଛି । ସମସ୍ତ ପ୍ରକାର ମାନସିକ ଅଶାନ୍ତି ପରେ ବି ସେ ଯେ ଅନେକ ପରିଶ୍ରମ କରିଛି, ତାହା ତା'ର ଦୃଢ଼ ସଂକଳ୍ପକୁ ପ୍ରମାଣିତ କରିଛି । ତା'ପାଇଁ ସଫଳତା ତ ଅନେକ କିଛି । ମୋ ଭଳି ସେ ଜୀବନରେ ତ ଜୁଆ ଖେଳିବ ନାହିଁ । ତା'କୁ ସବୁକିଛି ହାସଲ କରିବାକୁ ହେବ । ତମେ ମଧ ଭଲ କରିଥିବ । ଅନ୍ତତଃ ଏହା ମୋର ଆଶା ଓ ବିଶ୍ୱାସ । ବିଶେଷତଃ କ୍ୟାମ୍ପଗୁଡ଼ିକରେ ତମର ଫଳାଫଳ ଆଶାଜନକ ହୋଇଥିବ । ଅନ୍ୟ ପ୍ରଶ୍ନ ମୁଁ ଦେଖିନାହିଁ ।

ଗତ ଚିଠିରେ ତମେ ଅଭିମାନ କରିଥିଲ । ମୁଁ ଅବମାନନା ବୋଲି ଗ୍ରହଣ କରୁଛି । ତଥାପି ମୋର ଏତେ ଜିନିଷ ଆବଶ୍ୟକ ହେବ ଯେ ସବୁକିଛି ତମଠାରୁ ବା ଅନ୍ୟକାହାଠାରୁ 'ଚାନ୍ଦା ଉଠାଇବା' ଗୋଟାଏ ପ୍ରକାର ଶୋଷଣ ହେବ । ଦିନ ଆସିବ ମୋତେ ଏହିଭଳି ଅନେକ କିଛି ପାଇଁ ନିର୍ଲ୍ଲଜ ଭାବେ ଦ୍ୱାରସ୍ଥ ହେବାକୁ ପଡ଼ିବ । ସେଦିନ ତମମାନଙ୍କୁ ମୋତେ ବିନା ଦ୍ୱିଧାରେ ଗ୍ରହଣ କରିବାକୁ ପଡ଼ିବ । ଅମ୍ଳାନ ସାଙ୍ଗରେ ଭବିଷ୍ୟତ ପାଇଁ କିଛି ଯୋଜନା କଥା ଆଲୋଚନା କରୁଥିଲି । ଗୋଟାଏ 'farwanderer' ହେବାକୁ ଯାହା କିଛି ଆୟୋଜନ ଦରକାର, ସେ କରିବାକୁ ସମ୍ମତି ଦେଇଛି । ଏତେ ବଡ଼ ପୃଥିବୀରେ ନିଜର ଅଭିମାନ ଏବଂ ଏକ ଅଦ୍ୱିତୀୟ ଜୀବନପ୍ରଣାଳୀ ନେଇ ହଜିଯିବାର କଥା ସେ ମୋତେ ପ୍ରସ୍ତାବ ଦେଉଥିଲା । ମୁଁ ବିଚାର କରୁଛି । ଗୋଟାଏ nostalogia ଓ quest କୁ ପୁଞ୍ଜିକରି ମୁଁ ଯେ କିଛି କରିପାରିବି, ଏ ବିଶ୍ୱାସ ଆସିପାରିଲେ ଘରଦ୍ୱାର, ବନ୍ଧୁବାନ୍ଧବ ଛାଡ଼ିଦେଇ ଏକୁଟିଆ ଆପଣାର ରାସ୍ତାରେ ଚାଲିଯାଇ ହେବ । ମୁକ୍ତ ମଣିଷଟି ଭଳି କେଉଁଠି କିଛି ସମ୍ବନ୍ଧ ରଖିବାକୁ ହେବନାହିଁ । ସେଇଥିପାଇଁ ମୁଁ ମଧ ତମର ମତାମତ ଲୋଡୁଛି । ତମେ ଯଦି ନିଃସଙ୍କୋଚରେ କୁହ ଯେ ଯାହା ମୁଁ ଏତେ ବର୍ଷଧରି ଲେଖିଥିବା ଚିଠି

ଗୁଡ଼ିକର କିଛି ହେଲେ ମୂଲ୍ୟ ଅଛି, ତାହା ହେଲେ ମୁଁ ବୋଧେ ଅଧିକ ସାହସ ସଞ୍ଚୟ କରିପାରିବି । ମୁଁ ଅଧିକ ମନଯୋଗ ସହ ତମକୁ ପୁଣି ଲେଖିବି । ତମେ ମୋର ମାନସିକ ଅଭିବୃଦ୍ଧି ସମ୍ପର୍କରେ ନିରପେକ୍ଷ ମତାମତ ଲେଖିବ ।

ଆଜି ମନେ ହେଉଛି ଯେ କେତେଗୁଡ଼ାଏ ଦିନ ବ୍ୟର୍ଥତାରେ କଟିଗଲା । ସ୍ୱପ୍ନକୁ ନିମ୍ନସ୍ତରକୁ ଓହ୍ଲାଇ ଆଣି ଗଜଦନ୍ତ ପ୍ରାସାଦରେ ରହିବା କେଉଁପ୍ରକାର 'existence', ମୁଁ ଏବେ ମଧ୍ୟ ବୁଝିନାହିଁ । ତଥାପି ମଣିଷ ଗୋଟାଏ ମୁହୂର୍ତ୍ତରେ ଯେ 'debased' ହୋଇଯାଏ, ମତିହୀନତାର କବଳରେ ପଡ଼ିଯାଏ, ଏସବୁ ମୋ ଜୀବନରେ ଅତି ନଗ୍ନ ଭାବରେ ପ୍ରତିଫଳିତ ହେଲା । ଏବେ ସବୁକୁ ପୁଣି ସଜାଡ଼ିବାକୁ ହେବ । ଆଖି ସାମନାରେ ମୃତ୍ୟୁ ଓ ମୁକ୍ତି ଏକ ବୃନ୍ତର କଳିକା, ଏକତା ଓ ସମନ୍ୱୟର ଏକମାତ୍ର ପରିପ୍ରକାଶ । ଏ ଦୁହେଁ ମୋ ପାଇଁ ସଂଘର୍ଷ କରନ୍ତି ନାହିଁ; ମୁଁ ଏବେ ନିଜକୁ ଏଗୁଡ଼ିକ ସହ ସାମିଲ୍ କରୁଛି ।

ତମେ ବୋଧେ ଏହିଭଳି କିଛି କଥା ଅନୁଭବ କରୁଥିବ । ହାଲୁକା ହୋଇଯାଇଥିବା କଥା ମଧ୍ୟ ଅନୁଭବ କରୁଥିବ । ବାସ୍ତବ ଜୀବନର ସମସ୍ତ ନିଷ୍ଠୁରତାକୁ ମୁକାବିଲା କରିବାକୁ ତମେ ନିଶ୍ଚୟ ସାହସ ଲୋଡୁଥିବ ।

ସୁଧାକର ଆସନ୍ତାକାଲି ତାଳଚେର ଚାଲିଯିବ । ଏତେବଡ଼ ହଷ୍ଟେଲ୍‌ଘରେ ଏକୁଟିଆ ରହିବାକୁ ହେବ । 'Higher papers' ଦେବା ପାଇଁ ମୁଁ କିଛି ଆଗ୍ରହପ୍ରକାଶ କରୁନାହିଁ; ତଥାପି ଦେବାକୁ ହେବ । ତେଣୁ ପ୍ରାୟ ୩୧ ତାରିଖ ପର୍ଯ୍ୟନ୍ତ ଏଠାରେ ଅଛି । ତମେ ନାନୀ ଠିକଣାରେ ମୋ ପାଖକୁ ଲେଖିପାର ।

ଏପର୍ଯ୍ୟନ୍ତ ମୁଁ ନାନୀକୁ ଦେଖା କରିନାହିଁ । ଆଜି ରାତିରେ ପ୍ରାୟ ଯିବି ।

ଅଚ୍ୟୁତ

***ବି.ଦ୍ର. :*** ଅମ୍ଳାନ "Paris, I Love You" ଦେଖିବାକୁ ଭୁବନେଶ୍ୱର ଆସିଥିଲା । ରୁପସା ସିଂହଦେଓରେ ସ୍କୁଲ୍‌ରେ ମୋ ଶିକ୍ଷକତା ପାଇଁ ତାହା ସହ ଆଲୋଚନା କରିଛି । ଏକ ତାରିଖ ପରେ ତାହାର ନିଶ୍ଚିତତା ଜଣାପଡ଼ିବ । ତେବେ ଭୁବନେଶ୍ୱରରେ ଯେକୌଣସି ପ୍ରକାରର ନିଯୁକ୍ତିକୁ ମୁଁ ସାଦର ଗ୍ରହଣ କରିବି । ରେଭେନ୍‌ସା କଲେଜ୍ ଲାଇବ୍ରେରୀରୁ ବହି ମିଳିଯିବ । ଏଇଠି ଆଉ କୌଣସି ଜିନିଷର ଅଭାବ ରହିବ ନାହିଁ । ତମେ ବୋଧେ ପରୀକ୍ଷା ପରେ ଆସୁନାହଁ ।

ପ୍ରଦୀପ ସହ ଦେଖା ହୋଇନାହିଁ । କିନ୍ତୁ ଗୋପବନ୍ଧୁ ସହ ଦେଖା ହୋଇଥିଲା । ଭଲ କରିଥିବା କଥା କହୁଥିଲା ।

▯ ▯ ▯

ପ୍ରିୟ ବନ୍ଧୁ,

ତମ ଚିଠି ପାଇବା ପରଠାରୁ ମୁଁ ପ୍ରାୟ ତିନିଥର ଚେଷ୍ଟା କରିଛି କିଛି ଗୋଟାଏ ଉତ୍ତର ପଠାଇବା ପାଇଁ । କିନ୍ତୁ ମୋର ଗତ ବର୍ଷମାନଙ୍କର ବ୍ୟର୍ଥତା ତ ଭ୍ରମରୁ ସଂଗୃହୀତ ଅଭିଜ୍ଞତା; ତାହା ମୋତେ କୌଣସି ପ୍ରକାରର ସାହାଯ୍ୟ କରିପାରିନାହିଁ । ତମର ଏ ଦୁର୍ଦ୍ଦିନରେ ଗୋଟାଏ ନିର୍ଦ୍ଦିଷ୍ଟ ମତାମତ ପଠାଇବା ପାଇଁ ମୁଁ ଯେମିତି ଭାରି ଅସହାୟ ପରିସ୍ଥିତିରେ ପଡ଼ିଯାଇଛି ।

ତମର ସମସ୍ୟାଗୁଡ଼ିକୁ ଅନୁଭବ କରିହୁଏ । ମୁଁ ଜାଣେ ତମେ ଜୀବନରେ କ'ଣ ଚାହଁ, ତମେ କ'ଣ ପାଇଲେ ଖୁସି ହେବ । ସେଇଥିପାଇଁ ଚାକିରି କରି ତମେ ବ୍ୟକ୍ତିତ୍ୱକୁ ନିରାପଦ ରଖିବାରେ ଯେ ଅସମର୍ଥ ହେବ, ଏହା ମୋ ପାଇଁ କିଛି ନୂଆକଥା ନୁହେଁ । ବ୍ୟକ୍ତି ସ୍ୱାଧୀନତା ଜଣେ ସ୍ଥିତି ସଚେତନ ମଣିଷ ଆଗରେ ସବୁଠାରୁ ଅମୂଲ୍ୟ ସମ୍ପଦ । ଏଇଥିପାଇଁ ସେ ମଧ୍ୟ ଆପଣାର ମୃତ୍ୟୁ ମଧ୍ୟ ବିନିମୟ କରିପାରେ । ଖୁବ୍ ଭଲ ହୋଇଛି ତମେ ସାଧାରଣ ମଣିଷ ସ୍ତରକୁ ଓହ୍ଲାଇଯାଇନାହଁ । ତଥାକଥିତ ମୂଲ୍ୟବୋଧକୁ ଗ୍ରହଣ କରିନାହଁ ।

ଏବେ କିନ୍ତୁ ତମେ କ'ଣ କରିବା ଉଚିତ ହେବ, ମୁଁ ବୋଧେ କହିପାରୁନାହିଁ । ତମର ଅନ୍ତରଙ୍ଗ ବନ୍ଧୁ ହିସାବରେ ତମ୍କୁ ଯେକୌଣସି ପଦକ୍ଷେପରେ ବୌଦ୍ଧିକ ଓ ଆବେଗ ସମର୍ଥନ ଦେବା ମୋର ପରମ କର୍ତ୍ତବ୍ୟ । ସେଇଥିପାଇଁ ତମେ ଯାହା ଉଚିତ ମନେକରୁଛ, ତାହା ମୋ ପାଇଁ ମଧ୍ୟ ଗ୍ରହଣଯୋଗ୍ୟ ହେବ ।

ଅମ୍ଳାନ ସହ ତମ ବିଷୟ କଥାବାର୍ତ୍ତା କରୁଥିଲି । ତା'ର ମତ ଯେ ତମେ ଦୁହେଁ ଚାକିରୀ ଛାଡ଼ି industry କରିପାରିଲେ ଭଲ ହୁଅନ୍ତା । ଏଥିପାଇଁ ଯେଉଁ drive ଏବଂ incentive ଦରକାର, ତାହା ତମମାନଙ୍କ ପାଖରେ ଅଛି ବୋଲି ସେ ବିଶ୍ୱାସ କରେ । ମୋର ଏଥିରେ ମତାମତ ଦେବାର କିଛି ନାହିଁ ।

ଆମ ଦୁହିଁଙ୍କ ଛଡ଼ା ତମ ଉପରେ ଅନ୍ୟମାନଙ୍କର ଯେଉଁ କର୍ତ୍ତୃତ୍ୱ ଓ ଅଧିକାର ରହିଛି, ତାହା ତମେ ଏଡ଼ାଇପାରିବ ନାହିଁ । ମୋର ସବୁଠାରୁ ଭୟ ହୁଏ ନାନୀକୁ । ଅମ୍ଳାନ ଓ ରୁମୀ ଆଦିଙ୍କର ଦୁରାବସ୍ଥା ପାଇଁ ସେ ମୋତେ ଦୋଷ ଦେଉଥିଲା । ତମେ କିଛି ଅଯୌକ୍ତିକତା ଦେଖାଇଲେ ସେ ମୋତେ ମଧ୍ୟ ଦୋଷ ଦେବ । ସେଇଥିପାଇଁ ମୁଁ ସ୍ପଷ୍ଟ ଭାବରେ କିଛି କହିବାକୁ ସାହସ ସଞ୍ଚୟ କରିପାରୁନାହିଁ ।

ଅଚ୍ୟୁତ

***ବି.ଦ୍ର. :*** ତମେ ମୋର ନିଷ୍କ୍ରିୟତାକୁ ଭୁଲ୍ ବୁଝିବ ନାହିଁ । ମୁଁ ଗୋଟାଏ କିଛି ଲଦି ଦେଇ ପାରୁନାହିଁ । ତମ ବିଷୟରେ ମୁଁ କିଛି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ମଧ୍ୟ ଦେଇ ପାରୁନାହିଁ । ମୋର

ମାନସିକ ଉତ୍ତେଜନା ବୋଧେ ଯଥେଷ୍ଟ ବଢ଼ିଯାଉଛି । ତମ ପାଖକୁ ସ୍ଥିର ମନରେ କିଛି ଲେଖିବି । ତମେ ନାନୀ ଘର ଠିକଣାରେ ଲେଖୁଥିବ । ଦିଲ୍ଲୀ ଛାଡ଼ିବା ପୂର୍ବରୁ ମୁଁ ପୁଣି ଲେଖୁଛି ।

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ମୁଁ ଆଦୌ ଭଲ ମନରେ ଲେଖିପାରୁନାହିଁ: । କେଜାଣି କେମିତି ଅନାଗତ ଜୀବନର ଭୟ ମୋତେ ବାରମ୍ବାର ଆକ୍ରାନ୍ତ କରୁଛି । ତମମାନଙ୍କୁ ଅନୁଭବ କରିହେଉନାହିଁ । ମୁଁ ଯେମିତି ନିଜ ବିଷୟରେ ଅଧିକ ସ୍ୱଚେତନ ହୋଇଯାଇଛି ।

ଗତକାଲି higher paper ଥିଲା । କିନ୍ତୁ କଟକ ଯାଇ ମଧ ପରୀକ୍ଷା ଦେଲିନାହିଁ । ଯେଉଁଭଳି ମାନସିକ ଆଲୋଡ଼ନ ମୋ ଭିତରେ ହେଉଥିଲା ଏହା ହିଁ ବୋଧେ ଘଟିବା ନିଶ୍ଚିତ ଥିଲା । ମୁଁ ନିଜକୁ ଦୋଷ ଦେଉନାହିଁ ବା ବ୍ୟର୍ଥତା ମୋତେ ବିବ୍ରତ କରୁନାହିଁ । ବରଂ ଗୋଟାଏ ମସ୍ତବଡ଼ ବୋଝ (ଦାସତ୍ୱର) ମୁଣ୍ଡଉପରୁ ଘୁଞ୍ଚିଗଲା । ଜୀବନରେ ଏହା ଘଟିବା ଗୋଟାଏ ମସ୍ତବଡ଼ ଆଶୀର୍ବାଦ ବୋଲି ଧରିବାକୁ ହେବ ।

ତମ ବିଷୟରେ ମୁଁ କିଛି ନିଶ୍ଚିତ ସିଦ୍ଧାନ୍ତ ନେଇପାରୁନାହିଁ । ଆମେ କେତେମାତ୍ରାରେ individualistic, ତମେ ତ ବେଶ୍ ଭଲ ଭାବେ ଜାଣିଛ । ସେଥିପାଇଁ ମୁଁ ଯଦିବା କିଛି ମତାମତ ପଠାଏ, ତାହା କେବଳ academic ହେବ । ତମର ବ୍ୟକ୍ତିତ୍ୱ ଓ ସ୍ୱାତନ୍ତ୍ର୍ୟ ପ୍ରତି ଯଥାର୍ଥ ଗୁରୁତ୍ୱ ପ୍ରଦାନ ଆମ ପାଇଁ ଏକ ଶୁଭ ସମ୍ବାଦ । ଦିନେ ନା ଦିନେ ଆମକୁ ଖୋଳ ଭିତରୁ ଆତ୍ମପ୍ରକାଶ କରିବାକୁ ପଡ଼ିଥାଆନ୍ତା । ଶୀଘ୍ର ଏହା ଘଟିବାକୁ ଯାଉଥିବାରୁ ଆମେ ବରଂ ଆନନ୍ଦିତ ହେବା ଠିକ୍ ହେବ । ତମେ ତ ଜାଣ, ଯିଏ ହାକିମାତି ଚାହେଁ, ସିଏ ମଧ ଅନ୍ୟର ହାକିମାତି ସହିଥାଏ । ଆମେ ବରଂ ଏଥିରୁ ମୁକ୍ତ କରିବା ।

× × × ×

ତିନିଦିନ ହେବ ଜ୍ୱର ଯନ୍ତ୍ରଣାରେ ଏଇଠି ମୁଁ ଅତିଷ୍ଠ ହୋଇପଡ଼ିଛି । ହଠାତ୍ ଯେମିତି ଏହା ଗୋଟାଏ ଝଡ଼ ଭଳି ଆସିଯାଇଛି । ଜୀବନରେ ପୁଣି ଏକ ଅଧ୍ୟାୟ ଯେ ଆରମ୍ଭ ହେଉଛି, ତାହା ମୁଁ ଅନୁଭବ କରୁଛି । ଗତଦିନମାନଙ୍କର ଅଭିଜ୍ଞତାକୁ ନେଇ ପୁଣି ମୁଁ ଜୀବନକୁ ସଜାଡ଼ିବାକୁ ଚାହୁଁନାହିଁ । ସତର୍କ ମଣିଷଟିଏ ହେବା ମୋ ପାଇଁ ସମ୍ଭବପର ହେବନାହିଁ । ମୁଁ ଯେମିତି 'ବର୍ତ୍ତମାନ'ରେ ବଞ୍ଚିରହିଛି । ପରମୁହୂର୍ତ୍ତରେ ଯାହାକିଛି ଘଟିବ, ତା'ର କିଛି ନିର୍ଦ୍ଦିଷ୍ଟ pattern ନାହିଁ । ସେଥିପାଇଁ କିଛି ପ୍ରସ୍ତୁତି ମଧ ନିରର୍ଥକ । ଭାବିନିଅ, ମୋ ଜୀବନର cup of happiness ଭରିଯାଇଛି । ଏବେ କେବଳ ପରିତୃପ୍ତି ସହ

ନିଜକୁ ଧ୍ୱଂସ କରିବା । ସେଇଥିପାଇଁ ମୁଁ ଏବେ ଯେକୌଣସି ପଦକ୍ଷେପ ନେବାପାଇଁ ମୋଟାମୋଟି ସାହସ ସଞ୍ଚୟ କରୁଛି । ତମକୁ ତ ଲେଖିଥିଲି ଯେ ମୁକ୍ତି ଓ ମୃତ୍ୟୁ ମୋ ପାଇଁ ସମାନ ଅର୍ଥ ଓ ମୂଲ୍ୟ ପ୍ରଦର୍ଶନ କରନ୍ତି । ତେଣୁ ଭୟକୁ ଅତିକ୍ରମ କରିବାଟା ଏବେ କିଛି ନୂଆ କଥା ନୁହେଁ ।

ସମ୍ଭବତଃ ଅତିମାନବୀୟ ସ୍ତରରୁ ପଶୁସ୍ତରକୁ ମୁଁ ବେଳେବେଳେ ଓହ୍ଲାଇଆସୁଛି । କିନ୍ତୁ ସବୁବେଳେ ଭଲ ମଣିଷଟିଏ ହେବା ମୋର ସ୍ୱପ୍ନ ହୋଇ ରହିଯିବ । ଏ ପୃଥିବୀରେ ମଣିଷ ଗୋଟାଏ ମହାମାନବ ବା ପଶୁ ହେବା ଭାରି ସହଜ କଥା; କିନ୍ତୁ ମୁଁ ଯେଉଁ ଅର୍ଥରେ ମଣିଷର ଭଲ ପାଇବା କଥା ବୁଝେ, ତାହାକୁ ପୁଞ୍ଜି କରି କିଛି ଗୋଟାଏ( ? ) ହେବା ଏକ ଜଟିଳ ବ୍ୟାପାର ।

× × × ×

ଅମ୍ଲାନର ମାନସିକ ଅବସ୍ଥା କ୍ରମେ କ୍ରମେ ଭାରି ଖରାପ ଆଡ଼କୁ ଗତି କରୁଛି । ଗୋଟାଏ ପାର୍ଶ୍ୱରେ ତାହାର ଭଲ ପାଇବା ଜନିତ ସ୍ୱର୍ଗୀୟ ତାଡ଼ନାବୋଧ ଏବଂ ଅନ୍ୟ ପକ୍ଷରେ ଅତିଶୟ ମାରାତ୍ମକ ପ୍ରବୃତ୍ତି ଓ ବିକାର ତାହାକୁ ଯେମିତି ଦ୍ୱନ୍ଦ ଭିତରେ ପକାଇ ଦେଉଛନ୍ତି । କିନ୍ତୁ ଏସବୁ ଅତିଶୀଘ୍ର ସମାଧାନ ହୋଇଯିବ ବୋଲି ମୁଁ ଆଶା କରେ ।

ଭୁବନେଶ୍ୱରରେ ଗୋଟାଏ କିଛି engagement ପାଇଁ ମୁଁ ବୋଧେ ଚେଷ୍ଟା କରୁଛି । ଏଇଠି ଜୀବନର ସମସ୍ତ ସ୍ୱାଦ ଗୋଟାଏ ମୁହୂର୍ତ୍ତରେ ବିକୃତ ହୋଇଯିବ, ତାହା ଜାଣି ମଧ୍ୟ ମୁଁ ଘରକୁ ଫେରିବାକୁ ସାହସ କରିପାରୁନାହିଁ । ଅମ୍ଲାନ ସାହାଯ୍ୟ କରିବାକୁ କଥା ଦେଇଛି । ନାନୀ ଫେରିଲେ ତାହାର ସାହାଯ୍ୟ ମଧ୍ୟ ଲୋଡ଼ିବି । ସବୁ ଯୁକ୍ତିକୁ ମୁଁ ଭାଙ୍ଗିଦେଇ କେଉଁ ଏକ ଅଜଣା ଆଶା ନେଇ ମୁଁ ଅବଚେତନ ମନରେ ଆଉ କେଇଦିନ ବଞ୍ଚି ରହିବାକୁ ଚାହୁଁଛି ।

ମୁଁ ଏକ ତାରିଖ ପରେ କେଉଁଠାକୁ ଯିବି, ତାହା କିଛି ନିର୍ଦ୍ଦିଷ୍ଟ ନଥିବାରୁ ତମେ ମୋ ପାଖକୁ ଲେଖିବ ନାହିଁ । ନାନୀ ପାଖକୁ ତମେ ସବୁ କଥା ଜଣାଉଥିବ, ମୁଁ ତମର ଠିକଣା ପାଇପାରିବି ।

ଅଚ୍ୟୁତ

***ବି.ଦ୍ର. :*** ଲର୍‌ମଣ୍ଟଭଙ୍କ 'ନାୟକ ଆମ ସମୟର' ଓଡ଼ିଆ ଅନୁବାଦ ପଢ଼ିଛି । ସତେଇଶ ବର୍ଷର ସଂକ୍ଷିପ୍ତ ଜୀବନକାଳ ଭିତରେ ସେ ଏହା ଲେଖିଥିଲେ । ତମେ ପଢ଼ିଲେ ହିଁ କେବଳ ଏହି ବହିର ମହତ୍ତ୍ୱ ଅନୁଭବ କରିପାରିବ । English original ଖୋଜିବି ।

▯ ▯ ▯

ପ୍ରିୟ ବନ୍ଧୁ,

ଏ ଭାଦ୍ରବ ମାସର ଟାଣଖରା ମାତ୍ରାଧିକ ହୋଇଯାଉଥିବା କଥା ମୁଁ ଅନୁଭବ କରିପାରୁଛି । କେତେଦିନ ପରେ ଆଜି ଅସରାଏ ବର୍ଷା ହେଲା । ଅପରାହ୍ନଟା କେବଳ ଗୋଟାଏ ଖିଆଲ୍‌ରେ କଟିଗଲା, କେତେ କଥା ମନେପଡୁଥିଲା । ଗତବର୍ଷ କଥା । ଆଜି ଦିନ ତଅପୋଇ ଓଷା । ଏଇମିତି ଦିନମାନଙ୍କରେ ସୋନ୍ୟାକୁ ମୁଁ ଏଇଠି ଆବିଷ୍କାର କରୁଥିଲି । ଗୋଟାଏ ବର୍ଷ ପୁଣି ବ୍ୟର୍ଥତାର ପୁନରାବୃତ୍ତିରେ ହିଁ ସମାପ୍ତ ହେଲା ।

ସବୁ କଥାରେ ମୁଁ ଭାରି ବିକ୍ଷୁବ୍ଧ ହୋଇପଡୁଛି । ମନେକର ଏଇ ଜହ୍ନଟା ରୋମାଞ୍ଚକର ଶିହରଣ ସୃଷ୍ଟି କରୁଛି । ତଥାପି ବି ମୁଁ ନିସ୍ତେଜ ହୋଇଯାଇଛି । ଯେମିତି ଏଇ ମୁହୂର୍ତ୍ତରେ ଅନେକ କିଛି ଅଘଟଣ ଘଟିଯିବ, କିଛି ଗୋଟାଏ ଅକସ୍ମାତ୍ ହୋଇଯିବ । ଭୟସମାହିତ ମନ ମୋର ଏକ ନିଷ୍କ୍ରିୟ ଅଜଗର ଭଳି କେବଳ ଲମ୍ବିଯାଇଛି । ଏଠାକାର ନିର୍ଜନତା ଆଉ ଭଲ ଲାଗୁନାହିଁ । ଗତ ତିନିବର୍ଷରେ ମୋର ରହିବାର ସମସ୍ତ ସ୍ମୃତି କେବଳ ତିକ୍ତତାରେ ହିଁ ଭରିଯାଇଛି । ଏଇ କେତେ ବର୍ଷ କେବଳ ଗୋଟାଏ ଲମ୍ବା ହାଇଫେନ୍‌ରେ ସରିବାକୁ ହିଁ ବସିଛି । ଯଦି କିଛି ଦୁର୍ଘଟଣା ଘଟିଥାଆନ୍ତା, ତାହାହେଲେ ମଧ୍ୟ ଆପଣାଛାଏଁ ମୁଁ କିଛି ଯନ୍ତ୍ରଣା ସୃଷ୍ଟି କରି ତାହାକୁ ନେଇ ସାର୍ଥକତାର ସହ ଆପଣା ଭିତରେ ସ୍ଥାନ ଦେଇ ପାରିଥାଆନ୍ତି । ତାହା ମଧ୍ୟ ଦୁର୍ଭାଗ୍ୟବଶତଃ ହେଲା ନାହିଁ । (ଏଇଥିପାଇଁ ଏଥରର ଜନ୍ମଦିନର ମହତ୍ତ୍ୱ ମୁଁ ଅନୁଭବ କରିପାରି ନାହିଁ ।)

ତମେ କୁହ, କାହିଁକି ଆମପାଇଁ ଜୀବନଟା ଏପରି ପ୍ରହେଳିକାମୟ ହୋଇଯାଉଛି ? ପ୍ରଥମେ ବଞ୍ଚିବାକୁ ଭ୍ରମ ସୃଷ୍ଟି କରିବାକୁ ପଡ଼ିବ । ପୁଣି ଭ୍ରମ ନିଷ୍ଠୁର ପରିସ୍ଥିତିରେ ଭାଙ୍ଗିଯିବ, ଯନ୍ତ୍ରଣା ବଢ଼ିବ, ପୁଣି ନୂଆ ସ୍ୱପ୍ନ, ନୂଆ ପୃଥିବୀ, ବଞ୍ଚିରହିବାକୁ ଅଦମ୍ୟ ଚେଷ୍ଟା । ମୁଁ ବେଳେବେଳେ ବୁଝିପାରେ ନାହିଁ ଆମକୁ । ଯେମିତି କେହି ବାଛିକରି ଆମକୁ ଅଲଗା କରିଦେଇଛି, ଯାହାପାଇଁ ଏଠାକାର ମୂଲ୍ୟବୋଧ ବିଷମୟ ହେବ, ଯାହାର ବେକରେ ବାରମ୍ବାର ଖଡ୍‌ଗ ପଡ଼ିବ ।

କେଇଦିନ ତଳେ ଲେଖିଥିଲ ଯେ ରାଜା ଯେମିତି ଅପେକ୍ଷା କରୁଛି, ଆଉ କେତୋଟି ଚାଲ୍ ପରେ ସେ ନିଜେ ବନ୍ଦୀ ହୋଇ ବି ଯିବ ଏବଂ ଏ ଖେଳ ସରିଯିବ । ମୁଁ ଅନ୍ୟକଥା ଭାବୁଛି । ଏ ଖେଳ ସରିବା ନିଶ୍ଚିତ । କିନ୍ତୁ ରାଜା ବନ୍ଦୀ ହେବା ନିଶ୍ଚିତ ନୁହେଁ । ସେଇଥିପାଇଁ ଯେତିକି ଆଶା ଅଛି, ଭୟ ତାହାଠାରୁ ଅଧିକ ଅଛି । ଜିତିବାରେ ଯେତିକି ଯନ୍ତ୍ରଣା ଅଛି, ହାରିବାରେ ସେତିକି ଗ୍ଲାନି ଅଛି । ମୁଁ ଭାବୁଛି ଆମେ ସବୁ ଗୋଟାଏ ଗୋଟାଏ ଦଦରା ନୌକାର ନାବିକ । ଆମେ ପହଁରା ଜାଣିନାହୁଁ; ଅଥଚ ଆମେ ଏହି ଜୀବିକା ହିଁ ସର୍ବଶ୍ରେଷ୍ଠ ବୋଲି ଗ୍ରହଣ କରିଛେ । ଏଠାରେ ଆତ୍ମରକ୍ଷା କରିବାର ସୁଯୋଗ କୋଟିଏରେ ଗୋଟିଏ; ତଥାପି ତ ଅଛି । ତାହା ବୋଧେ ଆମପାଇଁ ଏକ ବିରାଟ ସାନ୍ତ୍ୱନା ।

ମୁଁ ବେଳେବେଳେ ଭାବୁଛି ଯେ ଲେଖିବାଟା ମୋ ଦ୍ୱାରା ହେବନାହିଁ । ଗୋଟାଏ ଧାଡ଼ି ନୂଆକରି ସୃଷ୍ଟି କରି ହେଉନାହିଁ । ଖାଲି ଅନ୍ୟଦ୍ୱାରା ପ୍ରଭାବିତ ହେବା ସାର ହେଉଛି । ମୁଁ ଅନ୍ୟ କ୍ଷେତ୍ରରେ ଆଗେଇଥିଲେ ସଫଳତା ନିଶ୍ଚୟ ମିଳିଥାଆନ୍ତା । କିନ୍ତୁ ଜୀବନର ରହସ୍ୟଭେଦ କରିବାବେଳେ ମୁଁ ଇଞ୍ଚେମାତ୍ର ଆଗକୁ ଯାଇପାରୁ ନାହିଁ । ଏତେ ଦିନ ଧରି ତମକୁ ଚିଠି ଲେଖୁଛି, ମୋର ହୃଦ୍‌ବୋଧ ହେଉନାହିଁ ଯେ ତମକୁ ମୁଁ କିଛି 'brilliant' ଲେଖିପାରିଛି ବୋଲି । ଏ ବିଷୟରେ ପୁଣି କିଛି ସିଦ୍ଧାନ୍ତ ନେବାକୁ ପଡ଼ିବ । ଯାହା ମୋ ଦ୍ୱାରା ହେବନାହିଁ, ତାହାକୁ ଶୀଘ୍ର ତ୍ୟାଗ କରିବା ମତିମାନ୍‌ର କାର୍ଯ୍ୟ ହେବ ।

ମୋ ପାଇଁ ସର୍ବଶ୍ରେଷ୍ଠ ଦଣ୍ଡ ହେବ, ଯଦି ମୁଁ ଗୋଟାଏ ସାଧାରଣ ମଣିଷ ସ୍ତରରେ ପହଞ୍ଚିଯାଏ । ମୋ ପାଇଁ ମୃତ୍ୟୁ ହେବ, ଯଦି ମୁଁ କେଉଁଠି ଅଟକିଯାଏ । ମୋତେ ଆଗେଇବାକୁ ପଡ଼ିବ; ଯଦିଓ ଏ ସବୁଯାକ ରାସ୍ତା ଅନ୍ଧାରକୁ ହିଁ ଲମ୍ବିଯାଇଛି । ଏହାହିଁ ମୋ ପାଇଁ ଏକମାତ୍ର ଗତି, ଏକମାତ୍ର ମୁକ୍ତି ।

ସମ୍ଭବତଃ ତାଳଚେରରୁ ଏହା ଶେଷ ଚିଠି । ପରୀକ୍ଷା ପରେ ମୁଁ ଭୁବନେଶ୍ୱରରେ ଗୋଟାଏ କିଛି ଜୀବିକା ପାଇଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବି । ନାନୀକୁ କିଛି ବ୍ୟବସ୍ଥା କରିବାପାଇଁ କହିଆସିଛି । ଆତ୍ମୀୟମାନଙ୍କ ଗହଣରୁ ଚାଲିଯିବା ମୋ ପାଇଁ ପଳାୟନ ନୁହେଁ । ଏକ ଇପ୍‌ସିତ ମୁକ୍ତି ଓ ସ୍ୱାଧୀନତା । ତମକୁ ତଥାପି ତାଳଚେରର ସବୁକିଛି ପରିଚୟ ଦେଇ ପାରିଲି ନାହିଁ । ତାହା ଅବଶୋଷ ରହିଗଲା ।

ଅମ୍ଳାନ ଚିଠି ଲେଖିଛି । ମାନସିକ ଦୁରାବସ୍ଥା ସହ ଶାରୀରିକ ଅସୁସ୍ଥତା ତାହାକୁ ଭାଙ୍ଗି ଦେଇଥିବା କଥା ଜଣାଇଛି । କହିଛି ଯେ, ଆମେ ଦୁହେଁ (ତମେ ଓ ମୁଁ) କୁଆଡ଼େ ତାହାକୁ ପଛରେ ପକାଇଦେଇ ଆଗକୁ ଚାଲିଯାଉଛୁ । ଆମର କ'ଣ ଘଟୁଛି ବୋଧେ, ସେ ହୃଦୟଙ୍ଗମ କରିପାରୁ ନାହିଁ । ତଥାପି ଆମମାନଙ୍କର ସାହଚର୍ଯ୍ୟ ଚାହିଁବା ତାହାର ଅଧିକାର ଅଛି । ଆମେ ଯେତେ କୁଣ୍ଠାବୋଧ ପ୍ରକାଶ କଲେ ମଧ୍ୟ । ଅମ୍ଳାନ ପାଇଁ ପଦିଏ ହେଲେ କହିବାର ମୋର ଯୋଗ୍ୟତା ନାହିଁ । ଏ ସଂସାରର ଜଟିଳତା ବିଷୟରେ ମୁଁ ବା କ'ଣ ଜାଣେ ? ଏଠାରେ ସଫଳତାର ମନ୍ତ୍ର କଅଣ ତାହା ବି ମୁଁ କେବେ ଆତ୍ମସ୍ଥ କରିନାହିଁ । ମୋ ପାଇଁ ଭଲପାଇବା ସର୍ବଶ୍ରେଷ୍ଠ, ସର୍ବଶକ୍ତିଶାଳୀ । ଏଠାରେ ସଂକୀର୍ଣ୍ଣତାର ସ୍ଥାନ ନାହିଁ, ପରାଜୟର ପ୍ରଶ୍ନ ନାହିଁ । ଏ ବିଷୟରେ ମୋର ମତାମତ ଚାହିଁଲେ ମୁଁ କିଛି କହିପାରିବି, କିନ୍ତୁ ଅନ୍ୟ କଥାରେ ମୁଁ ଏକାବେଳକେ ଅଜ୍ଞ । ଏଇଥିପାଇଁ ଅମ୍ଳାନ ପାଖକୁ ମୁଁ ମନଖୋଲି କିଛି ଲେଖିପାରୁ ନାହିଁ । ମୋର ସ୍ୱଷ୍ଟ ଶିଥିଳତା ସେ ଜାଣିପାରିଛି ।

ପରୀକ୍ଷାବେଳେ ଅମ୍ଳାନ ବା ସୁଧାକର ପାଖରେ ରହିବି । ଅମ୍ଳାନ ଯଦି ଜଗତ୍‌ପୁର ବଙ୍ଗଳା ଯୋଗାଡ଼ କରିପାରେ, ତେବେ ତାହା ପାଖରେ ରହିବା ଉଚିତ ହେବ; କାରଣ

ସେ ଭାରି ଏକୁଟିଆ ହୋଇଯାଉଥିବା କଥା ମୁଁ ଜାଣିପାରୁଛି । ଏଥରର ପରୀକ୍ଷା ପାଇଁ କିଛି ଆଶା ବା ଆକାଂକ୍ଷା ନାହିଁ । ଗତଥର ଭଳି ମୁଁ ମଧ୍ୟ ପରିଶ୍ରମ କରିନାହିଁ । ମୋର ଚିରାଚରିତ ଅଭ୍ୟାସ ଅନୁଯାୟୀ ଏବେ 'Four Quartrets', 'Stories of Mystery and Suspense' ପଢ଼ିଛି । ଗତ ସପ୍ତାହରେ 'ଦେବଦାସ' ଦେଖିଛି । ଦେବଦାସ ହୋଇଯିବାଟା କିଛି କୃତିତ୍ୱ ନୁହେଁ; କିନ୍ତୁ ଯେ କେହି ହୋଇପାରିବ, ମୁଁ ସେଥିରେ ସନ୍ଦେହ କରେ ।

ତମେ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବ । ଶୁଭେଚ୍ଛା ଜଣାଉଛି । ମୁଁ ଆଠ ତାରିଖ ସୁଦ୍ଧା ତାଳଚେର ଛାଡ଼ିବି । ତାହା ପୂର୍ବରୁ ତମେ ଇଚ୍ଛା କଲେ ଲେଖିପାର ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଚିଠି ପାଇଛି । ତମେ ବର୍ଷ ଭିତରେ ଏହିଭଳି ଗୋଟାଏ ଚିଠି ଲେଖିଲେ ମଧ୍ୟ ମୁଁ ସନ୍ତୁଷ୍ଟ । ଗତବର୍ଷମାନଙ୍କରେ ତମେ ଯାହା ପ୍ରକାଶ କରୁଥିଲ, ସେଥିରେ ସାବଲୀଳତା ଥାଇପାରେ; କିନ୍ତୁ ଗୋଟାଏ ନିବିଡ଼ ଆବେଗ ଯେ ନଥିଲା, ମୁଁ ଏହା ସ୍ପଷ୍ଟ କହିପାରେ । ଏବେବି ତମେ ଆପଣାକୁ ଖୋଲିଦେଉଛ, ଏବେ ତମେ ପାରିପାର୍ଶ୍ୱିକ ପ୍ରଭାବରୁ ଆପଣାକୁ ମୁକ୍ତ କରିପାରୁଛ ।

ଗତ ଜନ୍ମଦିନରେ ତମକୁ କିଛି ଲେଖିବା କଥା ମୁଁ ବିଚାର କରୁଥିଲି । ଆବଶ୍ୟକୀୟ ଉପାଦାନର ଅଭାବ ମଧ୍ୟ ନଥିଲା । ତଥାପି କାହିଁକି କେଜାଣି କିଛି ହେଲେ ଲେଖିପାରିଲିନି । ବୋଧେ ଏବେ ଜନ୍ମଦିନରେ ବୟସର ପ୍ରଭାବ ପଡୁଛି । ଏଦିନରୁ ବାର୍ଦ୍ଧକ୍ୟ ଆରମ୍ଭ ହୋଇଯାଇଛି । ଜୀବନରେ ତ କେବେହେଲେ prodigy ହୋଇପାରିଲି ନାହିଁ । ଏବେ ତ mediocre ହୋଇଯାଇଥିବା କଥା ନିଶ୍ଚିତ ହେଲାଣି । ଲେଖିବସିଲେ କିଛି ଭାବନା ଆସୁନାହିଁ । ଭାବିବସିଲେ କିଛି ସ୍ଥିରତା ରହୁନାହିଁ ।

ଅମ୍ଳାନ ଅଭିମାନରେ ଲେଖିଥିଲା । ମୁଁ ତାହାକୁ ଲେଖି ନଥିଲି ଏବଂ ତମେ ନିରୁତ୍ତର ଥିଲ । କେଜାଣି କାହିଁକି ଅତି ଅସ୍ୱାଭାବିକ ଭାବେ ମୁଁ ତାହା ପ୍ରତି ଶୁଷ୍କ ହୋଇଯାଉଛି । ତାହାକୁ ଚିଠି ଲେଖୁଛି ସତ; କିନ୍ତୁ ପ୍ରତି ଶବ୍ଦରେ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ପଡୁଛି । କାଳେ କେଉଁଠି ସେ ଆଘାତ ପାଇବ, ଏଥିପାଇଁ ଭୟ ସର୍ବଦା ରହୁଛି । ଚିଠିଟିଏ ଲେଖିଲେ ସପ୍ତାହ ମଧ୍ୟରେ ଶେଷ କରି ହେଉନାହିଁ । ତା' ପାଇଁ ପୃଥିବୀଯାକର ସଫଳତା ଦରକାର, ଏକଥା ତ ତମେ ଜାଣିଛ । ମୁଁ ବୋଧେ ମୋ ଅଜାଣତରେ ତାହା ପାଇଁ ପ୍ରାର୍ଥନା କରୁଛି ।

ଏବେ ପନ୍ଦର ଦିନ ହେବ, ବର୍ଷା ଓ କୋହଲା ପାଗ ଅତି ମାରାତ୍ମକ ଭାବେ ମୋତେ ଆକ୍ରାନ୍ତ କରିଛି । ପାଠ ସହ ସୁସମ୍ପର୍କ ତ ଆଦୌ ନାହିଁ । ବଡ଼ ଯନ୍ତ୍ରଣାରେ ସମୟ କାଟିଛି । ପାଖରେ ଭଲ କେତେ ଖଣ୍ଡ ବହି ଥିଲେ ଅକ୍ଳେଶରେ ସେସବୁ ସରିଯାଇ ଥାଆନ୍ତା । ଇତିହାସକୁ ତନ୍ନତନ୍ନ କରି ଗବେଷଣା କରିବାର କିଛି ମାନେ ନାହିଁ । Sartreଙ୍କର What is Literature ପଢୁଥିଲି । ଦିନେ Sartre communism ରେ ବିଶ୍ୱାସ କରି ଯାହା ଏଥିରେ ଲେଖିଛନ୍ତି, ତାହା ସର୍ବଜନପ୍ରଶଂସିତ ହେବନାହିଁ । ଗୋଟାଏ ଲେଖକ ଓ ତାହାର ପୃଥିବୀରେ ଯାହାକିଛି bourglaisic compromises ରହେ ତାହା ତ କେବେହେଲେ ଘୃଣ୍ୟ ନୁହେଁ; ତଥାପି Sartre ଭାରି ନିଷ୍ଠୁର ହୋଇପଡ଼ିଛନ୍ତି । ଏହାର ପ୍ରଭାବ ମୋ ଉପରେ ପଡ଼ିବ ନାହିଁ ।

ତମେ ନିଶ୍ଚୟ ପଢ଼ାପଢ଼ି କରୁଥିବ । ସୁସ୍ଥ ବି ଥିବ । ତଥାପି କେବେ କେମିତି ଗତଥର ଲେଖିଥିବା 'ତର୍କ' ଓ 'ବିଶ୍ୱାସ'ର ଦ୍ୱନ୍ଦ୍ୱରେ ପଡ଼ିଯାଉଥିବ । ତମେ ଜୀବନକୁ ଯେତେବେଳେ impulsive viewsରୁ ନେଉନାହଁ, ତମେ ମୋଠାରୁ ଏହାର ଜଟିଳତାକୁ ବେଶୀ ଅନୁଭବ କରିପାରୁଛ ।

*"We all carry within us our places of exile / our crimes, and our ravages. But our task / is not to unleash them our the world;/it is to fight them in ourselves and in others."*

*(Albert Camus : The Rebel)*

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

'ଧାରାଶ୍ରାବଣ'ର ଦିନମାନଙ୍କରେ ଜହ୍ନ କେଉଁ କଳାବଉଦ ତଳେ ଲୁଚିଯିବାର କଥା । କିନ୍ତୁ ଏହି ବିଚିତ୍ର ପୃଥିବୀରେ ସବୁ ସମ୍ଭବ । ଆକାଶ ନିର୍ମେଘ ନୁହେଁ; ତଥାପି ମଧ୍ୟ ଏହା ସମ୍ପୂର୍ଣ୍ଣ ମେଘାଚ୍ଛନ୍ନ ନୁହେଁ । ଜହ୍ନ ବିଷଣ୍ଣ, ନିଷ୍ପ୍ରଭ । ମ୍ଳାନ ଆଲୋକରେ ଏଇଠି ସବୁ ଜଡ଼, ଜୀର୍ଣ୍ଣ ଏବଂ ମୃତପ୍ରାୟ ।

ହଠାତ୍ କିଛି ଉଦ୍‌ବେଗରେ ଲେଖି ପକାଇବାର ସମୟ ଏହା ନୁହେଁ । କିଛି ଅନୁଭବ କରିବାର ମହାଜାଗତିକ ଶକ୍ତି ଏବେ ମଧ୍ୟ ସୁପ୍ତ । ତଥାପି କେଉଁଠୁ କେଜାଣି କିଛି ଗୋଟାଏ ରୂପ ଦେବାକୁ ଅନ୍ତରାତ୍ମା ଚିତ୍କାର କରିଉଠେ । ନିକାଞ୍ଚନତା ଓ ଏକାକୀବୋଧ ସମସ୍ତରରେ ପ୍ରତିବାଦ କରିଉଠନ୍ତି । ମନ ଉଚ୍ଚାଟ ହୁଏ ଘେରାଏ ବୁଲି ଆସିବାକୁ । ବାହାରର ମନ୍ଦମନ୍ଦ ମଳୟ ମଧ୍ୟ ଜଡ଼ତାର ବିନାଶ ପାଇଁ ଆମନ୍ତ୍ରଣ ଜଣାଏ ।

କିନ୍ତୁ ବାହାରକୁ ଯାଇହୁଏ ନାହିଁ । ପାଷାଣ ପ୍ରତିମା ଭଳି ଆଖିପତା ନଇଁଆସିଲେ ହଠାତ୍ ସବୁ ଅନ୍ଧକାର ହୋଇଯାଏ, ଶେଷ ଜ୍ୟୋତି ଟିକକ ଅକ୍ଲେଶରେ ଲିଭିଯାଏ । ଜହ୍ନ ସହ ମୋର ସମ୍ପର୍କ ସ୍ୱପ୍ନାବେଶର, ସମ୍ମୋହନର, ଭାବପ୍ରବଣତାର, କାମନାର । ସେଇଠି ଜହ୍ନ ଉଠିଲେ ମନଯମୁନାରେ ଜୁଆର ଆସେ; ସେଇଠି ଜହ୍ନ ବୁଡ଼ିଲେ ସ୍ୱପ୍ନ ଭଙ୍ଗ ହୁଏ ! ତୋଫା କିରଣରେ ମୁଁ କାହାପାଇଁ 'ସିଲ୍‌ହଟ୍' ହୋଇଯାଏ, ମୋ ପାଇଁ କିଏ 'ଭ୍ରମ' ହୋଇଯାଏ । ମୁଁ ଖଣ୍ଡାଧାରରେ ଚାଲିଯାଇପାରେ, ମୁଁ ଏକ ଅବିଚ୍ଛିନ୍ନ କାୟାର ଛାୟା ହୋଇପଡ଼େ । ମୁଁ ଜ୍ୟୋସ୍ନାସ୍ନାନ କରିବାକୁ ଆପଣାକୁ କେବେ ପ୍ରଶ୍ନ ପଚାରେ ନାହିଁ; ମୁଁ ବିନା ଦ୍ୱିଧାରେ ଆପଣାକୁ ସମର୍ପଣ କରେ ।

ଆଜି ଯଦି ଜହ୍ନରେ ମାଦକତା ନାହିଁ, ଭାବିନିଅ ମୁଁ ମରିଯାଇଛି; ମୁଁ ସେଇ ଅନ୍ଧକାରର ଗହ୍ୱରରେ ଆପଣାକୁ ଲୁଚାଇ ଦେଇଛି । ଆଜି ମୁଁ ଭୟାତୁର, ଏଇ ମୁହୂର୍ତ୍ତରେ ମୁଁ କାପୁରୁଷତାର ଏକ ବିକୃତ ଅବତାର । ମୁଁ ନିଜକୁ ସଂଯତ କରିପାରୁ ନାହିଁ, ନିଜକୁ ପୁନର୍ଜୀବନ ଦେଇପାରୁ ନାହିଁ । ଏ ଜୀବନର ସହଯାତ୍ରୀମାନଙ୍କର ପଦଶବ୍ଦ କ୍ରମଶଃ ଅସ୍ପଷ୍ଟ ହୋଇଯାଉଛି । ମୁଁ କାହିଁ କେଉଁଠି ପଛରେ ପଡ଼ିଯାଇଛି, କେଉଁ ଅପନ୍ତରାରେ ଲଟପଟ ହେଉଛି । ମଣିଷର ଐତିହାସିକ ଓ ଜୈବିକ ମୂଲ୍ୟବୋଧ ମୋ ଦେହରେ 'ଟ୍ୟୁମର୍' ଭଳି ଓହଳି ପଡ଼ିଛନ୍ତି, ସଂକୀର୍ଣ୍ଣତା ମୋ ଚାରିପାଖେ ଜାଲ ଭଳି ଘେରିଯାଇଛି ।

ଏ ଚିଠିକୁ ସମ୍ପୂର୍ଣ୍ଣ କରିପାରି ନାହିଁ । ସେଇସବୁ ମୁହୂର୍ତ୍ତମାନଙ୍କର ଭାବୋଦ୍ଦୀପନା ପରମୁହୂର୍ତ୍ତରେ କଳଙ୍କିତ ହୋଇଯାଉଛି । ଅବ୍ୟକ୍ତ ବେଦନାକୁ ପ୍ରକାଶ କରି ହେଉନାହିଁ, ପ୍ରକାଶିତ ଅଭିପ୍ରାୟକୁ ମଧ୍ୟ ଲେଖିହେଉ ନାହିଁ । ଆଜି ପାଇଁ ଏତିକି ।

ଅଚ୍ୟୁତ

× × × ×

ଆଜି ମୋର ଜନ୍ମଦିନ । ତମକୁ ଲେଖିବାକୁ ମୁଁ ଚାହୁଁଛି । କିନ୍ତୁ ଗତ ସପ୍ତାହର ଅସମ୍ପୂର୍ଣ୍ଣ ଚିଠିକୁ ହିଁ ପଠାଇ ପାରୁଛି ।

▯ ▯ ▯

ପ୍ରିୟ ବନ୍ଧୁ,

'ଗାଇସିଲଟ୍'କୁ ଫେରିବା ବାଟରେ ରାତିର ରେଳଯାତ୍ରୀ ମୋତେ ଭାବପ୍ରବଣ କରିଥିଲା । ବାହାରେ ତୋଫା ଜହ୍ନ, ଟ୍ରେନ୍ କମ୍ପାର୍ଟମେଣ୍ଟ୍ ଭିତରର ମ୍ଳାନ ଆଲୋକ ଭିତରେ ମୁଁ ନିଜକୁ ସମ୍ଭବତଃ ସଂଯତ କରିପାରୁ ନଥିଲି । ଜୀବନର ଗତି ସମ୍ପର୍କରେ ମୁଁ ବାରମ୍ବାର ପ୍ରଶ୍ନ ପଚାରୁଥିଲି କିନ୍ତୁ ଉତ୍ତର ପାଉ ନଥିଲି ।

× × × ×

ଏଠାରୁ ଏହା ସମ୍ଭବତଃ ଶେଷ ଚିଠି । ତମେ ମସୋରୀ ଯିବା ପୂର୍ବରୁ ପାଇପାରିବ ବୋଲି ମଧ ଲେଖୁଛି । କାଲି ସନ୍ଧ୍ୟାରେ ତମର ଚିଠି ପାଇଲି ।

ଏଠାରେ ଜହ୍ନରାତିଗୁଡ଼ିକୁ ମୁଁ ପ୍ରାଣ ଭରି ଉପଭୋଗ କରିପାରୁ ନାହିଁ । ତମେ ଠିକ୍ କଥା ଲେଖିଛ । ନିକାଞ୍ଚନତା ଆମ ପାଇଁ ସବୁକିଛି । ନିଜକୁ ବିଶ୍ଳେଷଣ କରିବା ଛଡ଼ା ଆବେଗମୟ ସମ୍ପର୍କ ଯୋଡ଼ିବାକୁ ହେଲେ ତମେ ବା ସେ (ମୁଁ object mean କରୁଛି) କେହିହେଲେ ଜଣେ ନୀରବ ହେବା ଆବଶ୍ୟକ । ଏହିସବୁ ଛାଇଆଲୁଅ ମୁହୂର୍ତ୍ତଗୁଡ଼ିକରେ ତମେମାନେ ମନେପଡ଼, ଭାରି ସ୍ପଷ୍ଟ ଭାବେ ଜୀବନର ଗତିପଥ ମନର ଗ୍ରାଫ୍‌ରେ ଆଙ୍କି ହୋଇଯାଏ । ଆତ୍ମା ଯେତିକି ଉଦ୍‌ବେଳିତ ହୁଏ, ମନ ଯେତିକି ଉଚ୍ଚାଟ ହୁଏ, ସେତିକି ସେତିକି ସଂବିତ୍ ହଜି ହୋଇଯାଏ । ଅଙ୍ଗପ୍ରତ୍ୟଙ୍ଗରେ ସ୍ଥାଣୁତ୍ୱ ଆସିଯାଏ, ମୁଁ 'ମୁଁ' ହୋଇ ରହେନାହିଁ ।

ତମମାନଙ୍କୁ ମୁଁ ପାଖରେ ହିଁ ସବୁବେଳେ ଖୋଜୁଛି । ଏଇଠି, ସେଇ ଏକୁଟିଆ ତାଳଗଛ ତଳେ, ସେଇ ଆମ୍ବବଉଳର ବାସ୍ନା ଭିତରେ, ସେଇ ଦିଗନ୍ତବ୍ୟାପୀ ଏକ ସ୍ୱପ୍ନସମ୍ଭବ ପୃଥିବୀରେ । ତମେସବୁ ହୁଏତ ଆପଣାର ପୃଥିବୀରେ ଲିପ୍ତ ହୋଇଯାଉଛ, ମୁଁ ଯେମିତି ଭାରି କରୁଣଭାବେ ଛିଟିକି ପଡୁଛି ।

ଏଇ ସମାଜସେବା ଜନିତ ବ୍ୟବସାୟ ବେଳେବେଳେ ମୋର ଚେତନାପ୍ରବାହରେ ଏକ ପ୍ରବାଳ ପ୍ରାଚୀର ସୃଷ୍ଟି କରୁଛି । ଏଇଠି ରଙ୍ଗ ଅଛି, ତ୍ୟାଗର ଚିରନ୍ତନ ମହତ୍ତ୍ୱ ଅଛି, ତଥାପି ଯେମିତି ବ୍ୟକ୍ତିତ୍ୱ ରହୁନାହିଁ । ଲୋକପ୍ରିୟତା ବଢୁଛି ସତ, ଭଣ୍ଡାମୀ ମଧ ବଢୁଛି । ମୁଁ ନିଜକୁ ସହଜ କରିପାରୁ ନାହିଁ । ଜୀବନକୁ ନେଇ ଯେମିତି ଜୁଆଖେଳି ହେଉନାହିଁ । କାଲିର ଜୀବନ ସ୍ମୃତିରେ ରହିଯାଇ ପାରୁଥିଲେ ମୁଁ ଏବେ ନିଜକୁ ଏ କ୍ଷେତ୍ରରେ ପ୍ରମାଣିତ କରୁଥାଆନ୍ତି; କିନ୍ତୁ ମୁଁ ତ ଜୀବନରେ ଆଉ କିଛି ଯେମିତି ଚାହିଁଥିଲି, ସେଇ ଏକ ଲକ୍ଷ୍ୟହୀନ ଯାତ୍ରାକୁ ମୁଁ ବାରମ୍ବାର ସ୍ୱପ୍ନ ଦେଖୁଥିଲି । ଭଲପାଇବାର ଏକ ଅନାବିଷ୍କୃତ ଭୂମିକାରେ ମୁଁ ଯେମିତି ଅଭିନୟ କରୁଥିଲି । ଜୀବନରେ ନିରାପଦ ରହିଯିବାଟା ମୋ ପାଇଁ ଏକ ଚରମ ଅଭିଶାପ ହୋଇଯାଉଛି । ଯେତିକି ମୋର ଚଲାବାଟ ବିପଦମୟ ହେବ, ସେତିକି ସେତିକି ମୁଁ ନିଜକୁ ଅନାବିଳ କରିଦେଇ ପାରିବି । ଯେତିକି ଯେତିକି ମୁଁ ପଙ୍ଗୁ ହୋଇଯାଉଥିବି, ମୋ ପାଇଁ ବଞ୍ଚିବାର ରଙ୍ଗ ସବୁ ସ୍ପଷ୍ଟ ହୋଇଯାଉଥିବ ।

ଏଠାକାର ମଣିଷମାନଙ୍କ ପ୍ରତି ମମତା ବଢୁଛି । ସେମାନଙ୍କ ଆଖିରେ ମୁଁ ଭିନ୍ନ ହୋଇଯାଉଥିଲେ ମଧ ମୁଁ ସେମାନଙ୍କ ଭିତରେ ଜଣେ ହୋଇଯାଉଛି । କେଉଁ ଯୁବତୀର ଅନାବୃତ ବକ୍ଷ ଦେଖି ମୁଁ ଶିହରିଯାଉ ନାହିଁ । କେଉଁ କଙ୍କାଳସାର ମଣିଷକୁ ମୁଁ ଆବିଷ୍କାର କରିବସିଲେ ବିହ୍ୱଳ ହୋଇଯାଉ ନାହିଁ । ଏଠାକାର ପାଣିପବନରେ ଏସବୁ ନିତିଦିନିଆ

କଥା, ସାଂସ୍କୃତିକ ସତ୍ୟ । ଏମାନଙ୍କ ପାଟିରୁ ଦି'ପଦ କଥା ବାହାରେ ନାହିଁ, ଏମାନଙ୍କର ପଦକ୍ଷେପରେ ଦୃଢ଼ତା ନାହିଁ । ଦାସତ୍ୱର ଭାଷା ନେଇ ଏମାନଙ୍କର ଆଖି ଯେତେବେଳେ ଭାରି ଫିକା ପଡ଼ିଯାଏ, ଆଉ ଏକ ନିଷ୍ଠୁର ପୃଥିବୀ ପଲକ ମଧ୍ୟରେ ମୋ ଭିତରେ ଉଦ୍‌ଭାସିତ ହୋଇଯାଏ । ମୁଁ ଉର୍ଦ୍ଧ୍ୱକୁ ଉଠିବା ପରିବର୍ତ୍ତେ ପାତାଳ ଭିତରକୁ ଯେମିତି ଗଳିପଡ଼େ । ବିଶ୍ୱାସ କର, ମଣିଷ ଏହିଭଳି ପଶୁର ଜୀବନ ନେଇ କାହିଁକି ବଞ୍ଚେ ମୁଁ ଆଦୌ ବୁଝିପାରେ ନାହିଁ । ଜୀବନର ସବୁ କାବ୍ୟ କେବଳ କ୍ରୀତଦାସର କାବ୍ୟ, ପଶୁପକ୍ଷୀଙ୍କର କବିତା ନୁହେଁ । ତମେ ଯେବେ କେବେ ଏହି ପ୍ରଶ୍ନ ନିଜକୁ ପଚାରିବ, ତମେ ମୋ ଭଳି ମଧ୍ୟ ଉତ୍ତର ପାଇବ ନାହିଁ । ଅତି ବୌଦ୍ଧିକତାର ସହ ନିଜକୁ ଦୟା କରିବ, ନିଜକୁ କ୍ଷମା ମଧ୍ୟ କରିଦେବ କିନ୍ତୁ ତମର ସମସ୍ୟାର ସମାଧାନ ହେବନାହିଁ ।

× × × ×

ଆମର ବାସସ୍ଥାନ ସ୍କୁଲର ଗୋଟାଏ କ୍ୱାର୍ଟର୍ । ପାଖରେ ପିଲାମାନେ "ଆହେ ନୀଳ ଶଇଳ........." ପ୍ରାର୍ଥନା କରିବାବେଳେ ମୁଁ ନିଜ ଅଲକ୍ଷ୍ୟରେ ଭକ୍ତି ଗଦ୍‌ଗଦ୍ ହୋଇଯାଏ । ଏଇସବୁ ନିଷ୍ପାପ ପ୍ରାଣମାନଙ୍କୁ ମୁଁ ମୋର ଝର୍କାରୁ ଦେଖେ । କୂଅରୁ ପାଣି ପିଇବାବେଳେ ନିରୀକ୍ଷଣ କରେ ବା ସ୍କୁଲ୍ ଛୁଟିରେ ଦୌଡ଼ିବାବେଳେ ସେମାନଙ୍କର ପଦଶବ୍ଦ ଶୁଣେ । ବେଳେବେଳେ ଇଚ୍ଛା ହୁଏ ସେମାନଙ୍କ ସହ ସମ୍ପର୍କ ଯୋଡ଼ିବା ପାଇଁ । ସେମାନଙ୍କ ମୁହଁରୁ ଦରଫୁଟା ହସ ଦେଖିବା ପାଇଁ । ସ୍କୁଲ ସରସ୍ୱତୀ ପୂଜାରେ ଆମେ ଅତିଥି ହୋଇଗଲୁ ଏଠାରେ । ଖାଇବାକୁ ମିଳିଥିଲା । ଛୋଟ ଝିଅମାନେ ସେଦିନ ଅତିଯତ୍ନରେ ଶାଢ଼ୀ ପିନ୍ଧିଥିଲେ । ଅତିଶୟ ଲଜ୍ଜାରେ ସେମାନେ ଲାଲ୍ ପଡ଼ିଯାଇଥିଲେ । ବେଣୀରେ ଈଷତ୍ ଲାଲ୍ ରଙ୍ଗର ଫୁଲ ପିନ୍ଧି ସେମାନେ ପରୀ ଭଳି ଯେମିତି ଏଇ ପାଖେ ପାଖେ ଉଡ଼ିବୁଲୁଥିଲେ ।

ଏଠାରେ ଆବେଗ ବୋଲି କିଛି ହେଲେ ନାହିଁ । ବାପ ଓ ପୁଅ, ଭାଇ ଓ ଭଉଣୀଙ୍କର ସମ୍ପର୍କରେ ଯେମିତି ନିର୍ଦ୍ଦିଷ୍ଟ ପରିମାଣର ଆବିଳତା କେଉଁଠୁ ଆସି ଆସ୍ଥାନ ଜମାଇଛି । ଅତି ସାଧାରଣ ଭାବେ ସେ କାହାକୁ ଆପଣାର ବୋଲି ଭାବୁନାହିଁ । 'ମୋ ଘର' ବା 'ମୋ ଗାଁ' କହିଲେ ସେ କିଛି ବୁଝେ ନାହିଁ । ଏଠାକାର ଘରମାନଙ୍କୁ ଦେଖିଲେ ସ୍ୱତଃ ଦୁଃଖ ଜାତ ହୁଏ । ଚାରିକାନ୍ଥ ଭିତରେ ଅନେକ ଫାଙ୍କ ଥାଏ, ଚାଳ ଭିତରୁ ଆକାଶ ଅତି ହାସ୍ୟକର ଭାବେ ଉଙ୍କିମାରେ । ଏହି 'ଆପଣାତ୍ୱ' (belongingness)ର ଅଭାବ ପାଇଁ ଦାରିଦ୍ର୍ୟ ବୋଧେ ଏକାନ୍ତ ଦାୟୀ । କାରଣ ଟିକିଏ ଅଭାବ ପଡ଼ିଲେ ସେ ଘର ଛାଡ଼ିଦେଇ କେନାଲ୍ ଅଞ୍ଚଳକୁ ବା ସହରକୁ ପାଞ୍ଚଛଅମାସ ପାଇଁ ପିଲାପରିବାର ନେଇ ପଳାଇଯାଏ । ଫେରିଆସିବା ପରେ ଜୀର୍ଣ୍ଣ ଘରଟିକୁ ସେ ସୁଧାରିପାରେ ନାହିଁ । ଏଠାକାର ଲୋକମାନେ

ଆତିଥ୍ୟ ମଧ୍ୟ ସ୍ୱୀକାର କରନ୍ତି ନାହିଁ । କେହି ଅଜଣା ଲୋକକୁ ଦେଖିଲେ ଆପେ ବାଟ ଭାଙ୍ଗି ଚାଲିଯାଆନ୍ତି । ତମେ ଅନୁମାନ କରିପାରୁଥିବ, ଏଠାରେ 'culture of silence'କୁ ଭାଙ୍ଗିବା କେତେ କଷ୍ଟକର ବ୍ୟାପାର ।

× × × ×

ଅମ୍ଲାନର ଜୀବନରେ ମୁଁ ତୃତୀୟ ପୁରୁଷ ହୋଇଯାଇଥିବା କଥା ତାରି ଆଗରେ ସ୍ୱୀକାର କରୁଥିଲି । ଯଦି ସେ କେଉଁଠି କିଛି ଅଡୁଆ ଅନୁଭବ କରୁଥାଏ, ମୁଁ ନିଜପ୍ରତି ଅସତ୍ୟ ନହେବା ପାଇଁ କେବଳ କହିପାରୁଛି । ଏଇ ବୟସରେ ଯୌବନର କ୍ଷୁଧାମାନେ ଅତି ଅଗଣିତ ସଂଖ୍ୟାରେ ବିବ୍ରତ କରୁଥିବା କଥା ତମେ ମଧ୍ୟ ଅମ୍ଲାନ ଭଳି ଅନୁଭବ କରିପାରୁଥିବ । ପାଖରେ ସ୍ତ୍ରୀ ନାହିଁ । ଦେହଜ କାମନାମାନେ ଅତି ଉଗ୍ର । ଅମ୍ଲାନ ଯେମିତି ସବୁବେଳେ ଦ୍ୱିଧାରେ ପଡ଼ିଯାଉଛି । ତା'ର ଛାତ୍ରୀମାନଙ୍କ ପାଖରେ ସେ ନିଜେ ନିଜେ ଭାରି ଦୁର୍ବଳ ହୋଇଯାଉଛି । ଗୋଟାଏ ପକ୍ଷରେ ନାରୀର ସାନ୍ନିଧ୍ୟ ଓ ଅନ୍ୟ ପକ୍ଷରେ ତା'ର ପ୍ରତିଷ୍ଠିତ aesthetics ଯେମିତି ଦଉଡ଼ିଟଣା ଖେଳରେ ମାତିଯାଇଛନ୍ତି । ସେ ଅସହାୟ ହୋଇଯାଇ ଗୋଟାଏ indicator କଣ୍ଟା ଭଳି ଏପାଖ ସେପାଖ ହେଉଛି ।

ତଥାପି ପାରୁପର୍ଯ୍ୟନ୍ତ ମୁଁ ସାହସ ଦେଉଥିଲି ତାକୁ । ତାହାର ଭଲ ପାଇବାର ପବିତ୍ରତା ସମ୍ପର୍କରେ ମୁଁ ପୁଣିଥରେ ତାକୁ ସଚେତନ କରିଦେଉଥିଲି । ଅମ୍ଲାନ ଏବେ ମଧ୍ୟ ଆମରି ଭିତରୁ ଜଣେ, ଆମମାନଙ୍କ ଭଳି ଭାରି କରୁଣ ମଣିଷଟିଏ ।

ତମର ସବୁ ଅସ୍ଥିରତା ମୋ ଭିତରେ ଝଡ଼ ସୃଷ୍ଟି କରେ । ସତରେ କ'ଣ ତମେ ବସନ୍ତ ଆସିଥିବା କଥା ଅନୁଭବ କରିପାରୁ ନାହଁ ? ସତରେ କ'ଣ ତମ ଝର୍କା ସେପାଖେ ଫୁଟିଥିବା କେଉଁ ଏକ ସୁଗନ୍ଧିକାକୁ ଆବିଷ୍କାର କରିପାରୁ ନାହଁ ? ତମେ ତଥାପି ଭଲ ମଣିଷ, ଅତି ଅସମ୍ଭବ ଭାବେ ଭଲ ମଣିଷ । ତମେ କେଉଁ ଏକ ଅଶୋଭନୀୟ ପରସ୍ଥିତିରେ ପାଷାଣପ୍ରତିମା ହୋଇଯାଇଥିବା କଥା ମୁଁ କେବେହେଲେ ସହିପାରିବି ନାହିଁ । ଭାରି ଭାଙ୍ଗିପଡ଼ିବି ।

ତମେ ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଖରିଆରରୋଡ଼୍‌କୁ ଲେଖିଥିବା ଚିଠି ଏଠାକୁ redirect ହୋଇ ଆସିଥିଲା । ତମକୁ ଆଠଦିନ ପୂର୍ବେ ଲେଖିବାକୁ ମୁଁ ଚାହିଁଥିଲି । ଏଠାରେ ପହଞ୍ଚି ମୋର କାର୍ଯ୍ୟକଳାପର ଏକ

ସଂକ୍ଷେପ ସାରାଂଶ ପଠାଇବାର ଯୋଜନା କରିଥିଲି । ତଥାପି ଲେଖିବା ସମ୍ଭବପର ହେଲନାହିଁ ।

ଗାଇସିଲଟ୍ ସମ୍ବଲପୁରର ଏକ ଅନୁନ୍ନତ ବ୍ଲକ୍ । ବଲାଙ୍ଗିର ଓ ସମ୍ବଲପୁର ସୀମାରେ ଅବସ୍ଥିତ ହୋଇ ଏହା ଶାସନକଳର ଦୃଷ୍ଟି ଆକର୍ଷଣ କରିପାରି ନାହିଁ । ମରୁଡ଼ି ଓ ଅନାବୃଷ୍ଟି ଏଠାକାର ଲୋକମାନଙ୍କୁ ପ୍ରତି ପଦକ୍ଷେପରେ ନିରାଶ କରିଦେଉଛି, ମେରୁଦଣ୍ଡ ଭାଙ୍ଗିଦେଉଛି । ଅନେକ ବର୍ଷ ପୂର୍ବେ 'ବୋଡ଼ାସମ୍ବର' ରାଜତ୍ୱ ସମୟରେ ଏ ଇଲାକା ଅନାବିଷ୍କୃତ ଥିଲା । ପ୍ରଥମ ଅଧିବାସୀ ଏଠାକୁ ଆସି ପଥର ଉପରେ ଗାଇକୁ ଦେଖିଛି ଓ ଗାଇସିଲଟ୍ ନାଁ ଦେଇଛି ।

ଆମେ ଦୁଇଜଣ ଏଠାକୁ ଆସିଛୁ । ଏ ବ୍ଲକ୍‌ରେ OXFAM ଗତବର୍ଷରୁ ବିଭିନ୍ନ କାର୍ଯ୍ୟ ହାତକୁ ନେଇଛି । Small & marginal farmerମାନଙ୍କୁ ଉତ୍ସାହିତ କରିବାପାଇଁ ଗାଁ ପଞ୍ଚାୟତଗୁଡ଼ିକରେ land reclamation ଠାରୁ irrigation ପର୍ଯ୍ୟନ୍ତ କାମ ଚାଲିଛି । ବିଭିନ୍ନ ଉପାୟରେ ସହଯୋଗ ଦିଆଯାଉଛି । ଏଠିକାର field officer ଶ୍ରୀ ଜଗଦୀଶ ପ୍ରଧାନ ପାଖରେ ଆମେ ରହୁଛୁ evaluation ପାଇଁ । 'କଠଉମାଲ୍' ଗାଁର ନାମ । ଏଠାକୁ ୬ କି.ମି. ଦୂର । ପ୍ରତିଦିନ ଥରେ ଦୁଇଥର ସାଇକେଲ୍‌ରେ ଯାଉଛୁ । beneficiaries-ମାନଙ୍କୁ ବିଭିନ୍ନ କଥା ପଚାରୁଛୁ । ଗାଁ ଲୋକଙ୍କୁ ବିଭିନ୍ନ ଉପାୟରେ ସାକ୍ଷାତକାର ଦେଉଛୁ । OXFAM କଥା ବୁଝାଉଛୁ । ଆମର ଏଠାକୁ ଆସିବାର ଉଦ୍ଦେଶ୍ୟ ମଧ୍ୟ କହୁଛୁ ।

ଏଠାକାର ଲୋକମାନଙ୍କୁ ଭାରି ଗଭୀର ଭାବରେ ବୁଝିବାକୁ ଚେଷ୍ଟା କରୁଛି । ଆଖିରେ ଏମାନଙ୍କର ସ୍ୱପ୍ନର ଝଲକ ନାହିଁ, ମୁହଁରେ ସମୟ ଓ ନିଷ୍ପେଷଣର ସ୍ପଷ୍ଟ ଛାପ । ପ୍ରତି ଗାଁରେ ଗୌନ୍ତିଆ ସର୍ବେସର୍ବା ଭଗବାନ । ଜୀବନ ଓ ପୃଥିବୀକୁ ସେମାନେ ଭିନ୍ନ ଭାବରେ ଗ୍ରହଣ କରନ୍ତି; କାହାର ବିରୁଦ୍ଧାଚରଣ କରନ୍ତି ନାହିଁ । କାହାର ହାନିଲାଭରେ ମୁଣ୍ଡ ଖେଳାନ୍ତି ନାହିଁ । ଯୁଗଯୁଗର ଅତ୍ୟାଚାର ଓ ଶୋଷଣ ତାଙ୍କର ରକ୍ତରେ ମିଶିଯାଇଛି । ଭାଗ୍ୟ ଓ ଭଗବାନ ଉପରେ ଭରସା କରି ସେମାନେ ଜୀବନର ନୌକା ବାହିନିଅନ୍ତି । ଏଠାରେ ଦାରିଦ୍ର୍ୟର ସର୍ବନିମ୍ନ ସ୍ତରରେ ସଚେତନତା ଆଣିବା କେବଳ ଜଟିଳ ନୁହେଁ, ବେଳେବେଳେ ଅସମ୍ଭବ ମଧ୍ୟ । ଯେଉଁ 'culture of silence'ର କଥା ଆମକୁ ବେଳେବେଳେ ଡରାଇଦିଏ, ଏଠାରେ ତାହାର ଦୃଢ଼ସ୍ଥିତି ଅନୁଭବ କରିହୁଏ । ଲୋକମାନଙ୍କର କଥା କହିବାର ଶକ୍ତି, ବୁଝିବାର ଶକ୍ତି, ନିଜକୁ ଉଦ୍‌ଯୋଗରେ ଜଡ଼ିତ କରିବାର ଶକ୍ତି ଯେମିତି କେଉଁ ଦିନରୁ ମରିଯାଇଛି । ତଥାପି ମଣିଷମାନେ ମୋଟାମୋଟି ଭଲ । ସେମାନଙ୍କର ଜୀବନସଂଗ୍ରାମ ଉଲ୍ଲେଖନୀୟ । ପ୍ରକୃତିର କୋଳରେ ସେମାନେ ଅମୃତର ସନ୍ତାନ । ଦେହ ସେମାନଙ୍କର ନଗ୍ନ; ତଥାପି ସେଥିରେ କବିତା ନଥିଲେ ମଧ୍ୟ

ବଳିଷ୍ଠତା ଅଛି । ସେମାନଙ୍କର ଭାଷାରେ ମୁଁ କହିପାରେ ନାହିଁ ବା ମୋର ଭାଷା ସେମାନେ ସ୍ୱଷ୍ଟଭାବେ ବୁଝିପାରନ୍ତି ନାହିଁ । କିନ୍ତୁ କଥା କହିବସିଲେ ଆମେ ଅବୋଧ ହୋଇ ରହୁନାହୁଁ ।

ଗାଈସିଲଟ୍‌ରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ସେମିତି ଆକର୍ଷଣୀୟ ନୁହେଁ । ପାଖରେ ପାହାଡ଼ ବା ନଈ ନାହିଁ । ଏଠାକାର landscape ରେ ରଙ୍ଗ ନାହିଁ । ଏବେ ଦିନେ ଭୀଷଣ ବର୍ଷା ହେଲା । ଅଦିନିଆ ବର୍ଷା ଭାରି ଭଲ ଲାଗିଲା । ଜଗଦୀଶ୍ ବାବୁ ଏକଦା ସାହିତ୍ୟାନୁରାଗୀ ଥିଲେ । ଓଡ଼ିଆ ସାହିତ୍ୟକୁ ବେଶ୍ ଭଲଭାବେ ଜାଣନ୍ତି । ମୋର ଅନ୍ୟ ଟ୍ରେନିଂ ସାଥୀ ହରପ୍ରସାଦ ମଧ୍ୟ ଅର୍ଥନୀତିର ଛାତ୍ର ହୋଇ ମଧ୍ୟ ଓଡ଼ିଆ ଭାଷା ପ୍ରତି ଆନ୍ତରିକ ସ୍ନେହ ରହିଛି । ସେମାନଙ୍କ ସହ ଅନେକ କିଛି ଆଲୋଚନା ହେଉଛି । ମୁଁ ପଢ଼ି ଅନୁପ୍ରାଣିତ ହୋଇଥିବା ବହିଗୁଡ଼ିକୁ ସେମାନଙ୍କୁ କ୍ରମେ କ୍ରମେ କହୁଛି । ଜୀବନ ଏଠି ମୋଟାମୋଟି ଭଲ । ପ୍ରତିଦିନ ନୂଆ ନୂଆ ମଣିଷମାନଙ୍କୁ ଭେଟୁଛି । ଶନିବାର ସନ୍ଧ୍ୟାରେ ବଲାଙ୍ଗୀର ଗଲାବେଳେ surrealistic paintings ଭଳି ପାହାଡ଼ ଓ ପର୍ବତ ମୋତେ 'Copper Tower' କଥା ମନେପକାଇ ଦେଉଥିଲା । ତମେମାନେ ଯଦି ଥାଆନ୍ତ, କେତେ ଭଲ ହୋଇଥାଆନ୍ତା । ଏଇଠି ମଧ୍ୟ ଆମେ ଗ୍ରୀଷ୍ମ ଅବକାଶ ପାଇଁ ଯଥେଷ୍ଟ ସାମଗ୍ରୀ ପାଆନ୍ତେ ।

୧୮ ତାରିଖ ବେଳକୁ କେଉଁ ଏକ ଗାଁରେ ରହିବାର ଯୋଜନା ରହିଛି । ଦଶଦିନ ପାଇଁ ଏକ ଅଜଣାଅଶୁଣା ଗାଁରେ । ଅଜଣା ମଣିଷମାନଙ୍କ ଗହଣରେ ରହିବାକୁ ମୁଁ ଗୋଟାଏ adventure ବୋଲି ମନେକରୁଛି । ସେସବୁ ସବିଶେଷ ତମକୁ ଲେଖିବି । ୧ ତାରିଖ ବେଳକୁ ଖରିଆର୍ ରୋଡ଼ ଫେରିଯିବି । ସେଠାକୁ ଲେଖୁଥିବ ।

ତମେ କ୍ରମେ କ୍ରମେ ଶିଥିଳ ହୋଇଯାଉଛ ବୋଲି ମୁଁ ସନ୍ଦେହ କରୁନାହିଁ । ଜୀବନରେ ଯାହାକିଛି କରିବାର କଥା, ତାହା ବିଳମ୍ବରେ ଆରମ୍ଭ କରିବାଟା ବେଳେବେଳେ ମଣିଷକୁ ପଛକୁ ଓଟାରି ଧରେ । PhD କରିବାପାଇଁ ତମେ କେତେ ଦିନ ହେଲା ଭାବିପାରିଛ । ଅଥଚ registration ବା କାମ ଆରମ୍ଭ ପାଇଁ ସୁଯୋଗ ପାଉନାହଁ । ତମେ ତ ଜାଣ ଆମକୁ କେତେବାର ବ୍ୟର୍ଥ ମନୋରଥ ହୋଇ ଯିବାକୁ ପଡ଼ିଛି । ଗ୍ଲାନିରେ କେତେଥର ଆମକୁ ଆତ୍ମଗୋପନ କରିବାକୁ ପଡ଼ିଛି । ତଥାପି ଆମେ ହାରିଯାଇ ନାହୁଁ, ବିଲୁପ୍ତ ହୋଇଯାଇ ନାହୁଁ । ତମେ ଯାହାକିଛି ନିଷ୍ପତ୍ତି ନେଇଛ କାର୍ଯ୍ୟକ୍ଷେତ୍ରରେ ଯଥାର୍ଥତା ଦେଖାଇବା ସର୍ବୋଚିତ ହେବ ବୋଲି ମୁଁ ମନେକରେ ।

ଅମ୍ଳାନକୁ ମୁଁ ଦୁଇଥର ଲେଖିଛି । ସେ କିନ୍ତୁ ଉତ୍ତର ଦେବାକୁ ବୋଧେ କୁଣ୍ଠା ପ୍ରକାଶ କରୁଛି । ମୁଁ ଏବେ ତାହା ପାଖକୁ ଲେଖିଥିବା ଚିଠି ସମ୍ପୂର୍ଣ୍ଣ କରିପାରି ନାହିଁ । ସେ ଆମ ସମସ୍ତଙ୍କୁ ଯେ ତା'ର ପୃଥିବୀରେ ଅବାଞ୍ଛିତ ବୋଲି ଗ୍ରହଣ କରୁଛି, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଯଦି ସେ ଆପଣା ବିରୁଦ୍ଧରେ ଓ ଏ ପୃଥିବୀ ବିରୁଦ୍ଧରେ ବିଦ୍ରୋହ କରିଥାଏ । ଗତବର୍ଷମାନଙ୍କର faithଗୁଡ଼ିକୁ ବଳିଦେବା ଉଚିତ ହୋଇଛି । ଅମ୍ଳାନ ତଥାପି

ମଧ୍ୟ ଭଲ ମଣିଷ । ସଫଳତା ଓ ବିଫଳତା ପର୍ଯ୍ୟାୟକ୍ରମେ ତା'କୁ ଆକର୍ଷିତ କରୁଛି । ମୁଁ ନିଶ୍ଚିତ ହୋଇଛି ଯେ ତାହାର ଦୁର୍ଦ୍ଦିନଗୁଡ଼ିକ କଟିଯିବ । ସୁଧାକରର ଖବର ମୁଁ ଜାଣିନାହିଁ । posting ନେଇ ସେ ବଡ଼ ଅଡୁଆରେ ପଡ଼ିଯାଇଥିଲା । ତାହାର ଦେହ ମଧ୍ୟ ବିଶେଷ ଖରାପ ଥିଲା । OXFAMକୁ ଆସିବା ପରେ ମାତ୍ର ତିନିଚାରୋଟି ଚିଠି ମୁଁ ପାଇଛି । ଅନ୍ୟ କାହାରି ଖବର ମୁଁ ଜାଣିନାହିଁ । World Book Fairକୁ ମୁଁ ଦେଖିବାକୁ ଚାହିଁଥିଲି । ଖରିଆର୍‌ରୋଡ଼ରେ ଥିଲେ ତମ ପାଖକୁ ବହି କିଣିବା ପାଇଁ କିଛି ଟଙ୍କା ପଠାଇପାରନ୍ତି । କିନ୍ତୁ ଏଠାରେ ସୁଯୋଗ ନାହିଁ । ତମେ ସବୁ ଷ୍ଟଲ୍ ବୋଧେ ଦେଖିବ । ଆମକୁ ଭଲ ଲାଗୁଥିବା ଲେଖକମାନଙ୍କର କିଛି କିଛି କୃତି କିଣିବ ବୋଧେ । Original writings ମଧ୍ୟ ଦେଖୁଥିବ ।

ଆଜି ଆଉ କିଛି ଲେଖିବା ପାଇଁ ଆବେଗ ନାହିଁ । ପୁଣି ଶୀଘ୍ର ଲେଖିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି । ପ୍ରତିଦିନ ଇଚ୍ଛା ହେଉଛି କିଛିନା କିଛି ତମକୁ ଲେଖିବା ପାଇଁ । କିନ୍ତୁ ଆବେଗର ଅଭାବରେ ସବୁ ପ୍ରେରଣା ଶୂନ୍ୟରେ ମିଶିଯାଉଛି । ଏଠାକାର ଜୀବନର ଉତ୍‌ଥାନ ପତନକୁ କୌତୁହଳ ସହ ମୁଁ ଲକ୍ଷ୍ୟ କରୁଛି । କିପରି ଭାବନାର ସ୍ରୋତ ଅଟକିଯାଉଛି, ସେକଥା ମଧ୍ୟ ମୁଁ ଭାବି ବିସ୍ମିତ ହେଉଛି । ମନେହେଉଛି ଆମ୍ବଗଛରେ ବଉଳ ଧରିବା ମୁଁ ଦେଖିନାହିଁ, ଝରାପତ୍ରର ମର୍ମର ମୁଁ ଶୁଣିନାହିଁ, ଅନେକ ସକାଳର ସୂର୍ଯ୍ୟୋଦୟ ମୁଁ ଅନୁଭବ କରିନାହିଁ । ଜୀବନ ଅଟକିଛି କି ନାହିଁ, ଭାର ବଢ଼ିଛି କି ନାହିଁ, ମୁକ୍ତି ହ୍ରାସ ପାଇଛି କି ନାହିଁ, ବିଶ୍ଳେଷଣ କରିବାକୁ ଆଜି ଯେମିତି ମୁଁ ସମୟ ପାଉନାହିଁ ।

ତମେ Paulo Friereଙ୍କ ନାମ ଶୁଣିଥିବ ବୋଧେ । ମୁଁ ବି କହିଥାଇପାରେ । ସେ ଦୁଇଟି ବିଶ୍ୱପ୍ରସିଦ୍ଧ ବହି ଲେଖିଛନ୍ତି, 'Pedagogy of the Oppressed' ଓ 'Cultural Action for Freedom' । ଆମର ଚଳିତ ଶିକ୍ଷାପଦ୍ଧତି ହେଉଛି teaching, knowing, believing, practising and being (or culture) । ଏ ଭିତରେ ଶେଷୋକ୍ତି ତିନୋଟି ଅନୁସରଣ କଲେ 'domestication' କୁହାଯାଏ । ଏହି 'domestication' ଫଳରେ ଛାତ୍ର ଶିକ୍ଷକ, ଚାକର ଓ ଆପଣାର ପ୍ରଭୁ କୌଣସି ପ୍ରକାରର 'culture of silence' ସୃଷ୍ଟିହୁଏ । Being ଏହି culture of silenceର ରୂପରେ ବିଦ୍ରୋହ କରିପାରେ ନାହିଁ କି ନିଜକୁ ମୁକ୍ତ କରିପାରେ ନାହିଁ । ସବୁ ମୁଣ୍ଡପାତି ସହିଯାଏ । ଏହି domestication ବଦଳରେ Paulo Friere ଏକ ଚମତ୍କାର liberation ପନ୍ଥା ସୃଷ୍ଟି କରିଛନ୍ତି । ମୁଁ ତମକୁ

ସଂକ୍ଷେପରେ ଏହା ଲେଖିବି । (ତମେ ଯଦି ବହି ଦି'ଟା ପଢ଼ିପାରନ୍ତ ଆମେ ଏ ବିଷୟରେ ଆହୁରି ବିସ୍ତୃତ ଭାବେ ଭାବ ବିନିମୟ କରିପାରନ୍ତେ ।)

Deeducation ବା liberation ପାଇଁ ମୁଖ୍ୟତଃ Dialogue, Naming the World, Problematization, Conscientization, Praxis ଓ Revolution ଦରକାର ।

ତମେ Dialogue କଥା ଗତ ଚିଠିରେ ଲେଖିଛ । Buberଙ୍କୁ Friere ନିଜର ଗୁରୁ ବୋଲି ନେଇ ଥାଇ ପାରନ୍ତି । ତେଣୁ ଶିକ୍ଷାପଦ୍ଧତିରେ ଶିକ୍ଷକ ଓ ଛାତ୍ର ଉଭୟ ଉଭୟଙ୍କଠାରୁ ଏହି Dialogue ମାଧ୍ୟମରେ ଶିଖିପାରିବେ ।

'Naming the World' ବଳରେ ମଣିଷ ଆପଣାର ମାନବିକତାକୁ ପ୍ରମାଣିତ କରିପାରେ । diological communication ହିଁ Naming the World । 'Problematization' ହେଉଛି ଶିକ୍ଷା ପଦ୍ଧତିରେ Being ର ସମସ୍ୟାଗୁଡ଼ିକୁ ବିଶ୍ଳେଷଣ କରିବା । Dialogue and problematization are part of the process of conscientization of the process in which the learner becomes critically aware. Praxis ହେଉଛି action-reflections ଏକ ଅଦ୍ୱିତୀୟ orientation । Existence is not of silence but of liberation. ତେଣୁ ଆମକୁ ମଣିଷମାନଙ୍କ ପାଖକୁ ଯିବାକୁ ହେବ, ତାଙ୍କୁ ଭଲ ପାଇବାକୁ ହେବ, ତାଙ୍କଠାରୁ ଶିକ୍ଷାଲାଭ କରିବାକୁ ପଡ଼ିବ, ସେମାନଙ୍କୁ ନେଇ development project ଆରମ୍ଭ କରାଯିବ ।

× × × ×

କାଲି field study ପାଇଁ କଳାହାଣ୍ଡିର ସବୁଠାରୁ ଅପନ୍ତରା 'ସୁନାବେଡ଼ା'କୁ ଯାଇଥିଲୁ । ଅନେକ ପର୍ବତ, ଉପତ୍ୟକା ଓ ଅରଣ୍ୟ ଦେଇ ଯାଉଥିବାବେଳେ ଆକାଶ ଯେମିତି ଛୁଇଁ ହେଉଥିଲା । ମନେହେଉଥିଲା, କେଉଁ hill station ଉପରେ ଆମେ ଅଛୁ । ଭାରି ଅବାକ୍ ଲାଗିଲା ଯେ ମଣିଷ ଏଠାରେ ମଧ୍ୟ ବଞ୍ଚିପାରେ ଓ ବଞ୍ଚିବାକୁ ସଂଘର୍ଷ କରିପାରେ । ଏଠାରେ Community Health Programme ମୁଖ୍ୟ କାର୍ଯ୍ୟ ବୋଲି ଗ୍ରହଣ କରାଯାଇଛି । ଲୁଣ ମିଳୁ ନଥିବା ଇଲାକାରେ ଆମର ପିକ୍‌ନିକ୍ ହେଲା । ଲୋକମାନଙ୍କୁ ଲକ୍ଷ୍ୟ କରୁଥିଲି; ସଲଜ୍ଜ ଓ ଭୟାତୁର ମଣିଷମାନଙ୍କୁ ଦେଖିବାକୁ ହେଲା ।

ଏହାପୂର୍ବରୁ ଆମେ field visit ନାଁରେ ଦି' ଜାଗାରେ ପିକ୍‌ନିକ୍ କରିଛୁ । 'ନୃସିଂହନାଥ'ର ଜଳପ୍ରପାତ ଏ ଅଞ୍ଚଳର 'କପିଳାସ' ଭଳି । 'ସିନାପାଲି'ର ଅନ୍ୟ ଏକ ଝରଣା ପାଖରେ ମଧ୍ୟ ଭୋଜି ହୋଇଥିଲା । ଏଠାକାର ଭାଷା, ବ୍ୟବହାର ଓ ଜୀବନଯାତ୍ରା ପ୍ରାୟ ଏକା । ଯଦି Verrier Elwinଙ୍କ ଭଳି ଲେଖି ହୋଇଥାଆନ୍ତା, କେତେ କଥା ବର୍ତ୍ତମାନ ସୁଦ୍ଧା ତମେ ଜାଣିପାରୁ ଥାଆନ୍ତ । ଏଠାରେ ଯୌବନରେ ନଗ୍ନତା ଅଛି;

ବାର୍ଦ୍ଧକ୍ୟରେ ଭୀଷଣ କରୁଣତା ଅଛି । ତଥାପି ମଣିଷ ବଞ୍ଚିପାରୁଛି, ଏହା କ'ଣ ଆଶ୍ଚର୍ଯ୍ୟର କଥା ନୁହେଁ କି ?

ଅଚ୍ୟୁତ

***ବି.ଦ୍ର. :*** ଖୁବ୍ ଭଲ ଭାବେ ଗାଁର ଜୀବନପ୍ରଣାଳୀ ଅନୁଭବ କରିବାପାଇଁ ୨ ତାରିଖଠାରୁ କେଉଁ ଏକ ଅନାବିଷ୍କୃତ ଅଞ୍ଚଳରେ ତିନିସପ୍ତାହ କାଟିବାକୁ ହେବ । ମୋର ସମ୍ବଲପୁର ଓ ବଲାଙ୍ଗୀର ସୀମାରେ ପଡ଼ିଛି । ତମକୁ ସେଠାରୁ ଲେଖିବି । କିନ୍ତୁ ତମେ ଏଇ ଠିକଣାରେ ଲେଖିବ । ମାର୍ଚ୍ଚ ମାସରେ ମସୋରୀ ଯିବାର କଥା । ସବୁ ସୁଖବର ଜଣାଇବ । ଗୋଟେ knapsackର ମୂଲ୍ୟ ମୋ ପାଖକୁ ଲେଖିବ । ଏବେ ମୁଁ ରୋଜଗାର ସକ୍ଷମ ହୋଇଥିବାରୁ ତମକୁ ଟଙ୍କା ପଠାଇଲେ ଅବମାନନା ହେବନାହିଁ ।

World Book Fairରୁ ମୋ ପାଇଁ କିଛି ବହି କିଣିଥିଲେ ଭଲ ହୋଇଥାଆନ୍ତା । ଗତ ୨୬ ତାରିଖରେ ଆମେ ରାୟପୁର ଯାଇଥିଲୁ । ମୁଁ ସେଠାରୁ 'The D evil', 'Portrait of artist as a youngman', 'How to win friends and influence people' ଓ 'Nausea' ଆଣିଛି । ଏସବୁ ବହି ତମକୁ ଏବର୍ଷ ଶେଷରେ ମୁଁ ଦେବି ।

▯ ▯ ▯

*"An existent can never justify the existence of another existent."*
*(La Nausea - Sartre)*

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି ।

ହିମାଳୟର ମଧ୍ୟଭାଗରେ ତମର ଆବେଗମୟ ତୀର୍ଥଯାତ୍ରା ଖୁବ୍ ଭଲ ହୋଇଥିବ ବୋଲି ମୁଁ ଅନୁମାନ କରିଥିଲି । ଗତଥରର ସ୍ମୃତି ଓ ଅନୁଭୂତିକୁ ପୁଞ୍ଜିକରି ତମେ ପୁଣି ତୁଷାରଚୂଡ଼ାମାନଙ୍କରେ ହିମାଳୟ ପାଇଁ ଆଉ କିଛି ଆଧ୍ୟାତ୍ମିକ ଓ ମହାଜାଗତିକ ସଚେତନତା ଆହରଣ କରିପାରିଥିବ ବୋଲି ମୋର ଦୃଢ଼ବିଶ୍ୱାସ । ତଥାପି ତମର ଚିଠିଟି ଗୋଟାଏ ସିଧାସିଧା ଭ୍ରମଣ କାହାଣୀ ବୋଲି ମନେହେଉଥିଲା । ଏହା ମୋର ହୃଦୟ ଭିତରେ ସେମିତି କିଛି ତୀବ୍ର ଆବେଗ ଉଦ୍ରେକ କରିପାରି ନଥିଲା । ସବୁ ଅନୁଭୂତି ଥାଇ ମଧ୍ୟ ଲେଖିବା ଯେ ଭାରି ଜଟିଳ କଥା ମୁଁ ଭଲଭାବେ ଉପଲବ୍ଧି କରିପାରିଛି । ଏ ବିଷୟରେ ତମକୁ ମଧ୍ୟ ମୁଁ ବେଶ୍ ବୁଝିପାରୁଛି ।

ଏଇ କେତେଦିନ ହେବ ମୁଁ ଯେମିତି ଘୋର ନିର୍ଜନତା ଦେଇ ଗତି କରୁଛି । ସନ୍ନିକଟ ପାହାଡ଼ରୁ ସୁଲୁସୁଲିଆ ପବନ ବହିବା ଭଳି ଏ ନିର୍ଜନତା ତରଙ୍ଗାୟିତ ହୋଇ

ମୋତେ ଛୁଇଁଯାଉଛି ଓ ପ୍ରାଣପୀଡ଼ାକୁ ବର୍ଦ୍ଧିତ କରୁଛି । ଗୋଟାଏ ଜୁଆରରେ ତମେମାନେ ସେ ନିର୍ଜନତା ଭାଙ୍ଗିଦିଅ, ଭଟ୍ଟାରେ ତାହା ଆହୁରି ଯନ୍ତ୍ରଣାମୟ ହୋଇଯାଏ । ସବୁ ମଣିଷଙ୍କର ଏକାକୀବୋଧଠାରୁ ମୋର ଏକାନ୍ତ ଜୀବନ ଯେମିତି ସମ୍ପୂର୍ଣ୍ଣ ଭିନ୍ନ । ଗୋଟାଏ ପାଖରେ ଆବେଗହୀନ ସ୍ଥିତି ଓ ଅନ୍ୟ ପକ୍ଷରେ ସ୍ଥିତିହୀନ ଆବେଗ । ଏ ଭିତରେ ମୁଁ ଯେମିତି ଚାପି ହୋଇପଡୁଥିବା ଗୋଟାଏ ଅସହାୟ ମଣିଷ । OXFAMର ସମସ୍ତ କାର୍ଯ୍ୟନିର୍ଘଣ୍ଟ ମୋ ପାଇଁ ଗ୍ରହଣଯୋଗ୍ୟ ହେଉଥିଲେ ମଧ୍ୟ ଯେଉଁମାନଙ୍କର ଗହଣରେ ମୁଁ ନିଜକୁ ସାମିଲ୍ କରିଛି, ସେମାନଙ୍କ ପାଖରେ ମୁଁ ନିଜକୁ ସମର୍ପଣ କରିପାରୁ ନାହିଁ । କାର୍ଯ୍ୟ ଓ ଚିନ୍ତାଧାରାର ଫାଙ୍କକୁ ମୁଁ ଯେତିକି ଯେତିକି ଦେଖିପାରୁଛି, ମୋର ଏ ପ୍ରକାରର ଲୋକହିତକର କାର୍ଯ୍ୟ ପାଇଁ ଘୃଣା ଜନ୍ମୁଛି । ଏଠାକୁ ଆସି ମୋର ଯେମିତି ମସ୍ତବଡ଼ ଭୁଲ୍ ହୋଇଯାଇଛି । ଜଡ଼ିତ ହୋଇଗଲେ ଯେ ମୁକ୍ତି ମିଳେ, ଏହା ହିଁ ମୋତେ ଏପ୍ରକାର ଭ୍ରମାତ୍ମକ ରାସ୍ତାକୁ ଟାଣିଆଣିଛି । ରୂପସୀର ସ୍କୁଲ ଅନେକ ଗୁଣରେ ଭଲ ଥିଲା । କିନ୍ତୁ ମୁକ୍ତିର ସନ୍ଧାନରେ ବାହାରି ଆସି ମୁଁ କେବଳ ଶୃଙ୍ଖଳ ପିନ୍ଧିବାକୁ ସକ୍ଷମ ହୋଇଛି ।

ଯଦି OXFAM ସହ ମୋର incompatibility ଥାଏ, ତାହା ବଡ଼ କଥା ନୁହେଁ । ମୋ ନିଜ ସହ ମୋର ଆବେଗମୟ ସମ୍ପର୍କ ଦିନକୁଦିନ କ୍ଷୀଣତର ହୋଇଯାଉଛି । ବାହ୍ୟ ଜୀବନର ସୀମାରେଖା ଡେଇଁ ମୁଁ ଯେମିତି ମୋ ହୃଦୟର ଗଭୀରତମ ପ୍ରଦେଶକୁ ଯାଇପାରୁ ନାହିଁ । ଏ ହୃଦୟ ଦିନେ କେତେ କ'ଣ ଚାହୁଁଥିଲା, କେଉଁ ଅଜଣା ସ୍ରୋତ ସହ ମିଳିତ ହେବାକୁ ଆଶା ପୋଷିଥିଲା । ଆଜି କେଉଁ ଏକ ଶୁଷ୍କ ମରୁଭୂମିରେ ତାହା ମୃତ ହୋଇଯାଇଛି । ତୁମୁଳ ଆନ୍ଦୋଳନ ଦେଇ ମୁଁ ମୋ ନିଜସହ କ୍ଷଣିକ ପାଇଁ ହେଲେ ସମ୍ବନ୍ଧ ରଖିପାରୁ ନାହିଁ । ଜୀବନର ସବୁ ଜଟିଳତା, ଜୈବିକ କାମନା ଓ ସ୍ଥିତପ୍ରଜ୍ଞତା ଜାଣିସାରିଲା ପରେ ମୁଁ ବଞ୍ଚିବା ପାଇଁ ବୀତସ୍ପୃହ ହୋଇପଡ଼ିଛି । ଏ ପୃଥିବୀରେ କାହା ପାଇଁ ମଧ୍ୟ ଦୋଷମୁକ୍ତ ହୋଇପାରୁ ନାହିଁ । ମୁଁ କରୁଥିବା ଅପରାଧମାନଙ୍କ ପାଇଁ ନିଜକୁ ମଧ୍ୟ କ୍ଷମା ଦେଇପାରୁ ନାହିଁ । ତମମାନଙ୍କର ଜୀବନରେ ମୁଁ କୌଣସି ପ୍ରକାରର ସାର୍ଥକତା କେବେ ଆଣିନାହିଁ ବା ଭବିଷ୍ୟରେ ଆଣିପାରିବି ନାହିଁ । ତମମାନଙ୍କ ପାଇଁ ମୁଁ ଖୁସି ହୋଇପାରିବି ନାହିଁ ବା ଅଶ୍ରୁ ଢାଳିପାରିବି ନାହିଁ । କେବଳ ଗୋଟାଏ ଶୁଷ୍କ ପଥର ଭଳି ତମମାନଙ୍କର ଜୀବନରେ ମୁଁ ବୋଝ ହୋଇଯାଉଥିବି ।

ଅମ୍ଲାନକୁ କେତେ ଦିନ ତଳେ ଲେଖିଥିଲି ଯେ absolute consciousnessର ସ୍ତରକୁ ଉଠିସାରିଲା ପରେ କ'ଣ ହୁଏ, ତାହାକୁ ନେଇ ମୁଁ ଏବେ ପରୀକ୍ଷାନିରୀକ୍ଷା କରୁଛି । ନିଜ ଉପରେ କରୁଥିବା ଏ ପରୀକ୍ଷା ପରେ ଏ ଜୀବନରୁ ଛୁଟି ମିଳିଯିବ, ସବୁକିଛି ଉତ୍କଣ୍ଠାର ସମାପ୍ତି ହେବ । ଏ ପରୀକ୍ଷା ମୋର ଏକାନ୍ତ ନିଜସ୍ୱ । ଏହାର ଫଳାଫଳ ପାଇଁ

ମୁଁ ଏକାନ୍ତ ଭାବେ ଦାୟୀ । ଏଥିରେ ମୁଁ କାହାକୁ ଭାଗ ଦେଉନାହିଁ । ସଚେତନତାର ସ୍ତରୀକୃତ ଆଲୋକକୁ ଜୀବନାଲୋକ ବୋଲି ମୁଁ କହିବି । ବଞ୍ଚିବା ମାନେ ଏଇଭଳି ସ୍ତରମାନଙ୍କୁ ଭିନ୍ନ ଭିନ୍ନ ଉପାୟରେ ଆବିଷ୍କାର କରିବା ଓ ଆବିଷ୍କାରର ପାଗଳାମୀ ସରିଗଲା ପରେ ଏକ ମହନୀୟ ଜୀବନର ଅଧିକାରୀ ହୋଇପାରିବା । ନିଜର ସଚେତନତା ବଢ଼ିଲେ ନିର୍ଜନତା ବଢ଼ିଯାଏ । ନିଜର ନିର୍ଜନତା ବଢ଼ିଲେ ଅସହାୟତା ବଢ଼ିଯାଏ । ମୁଁ ଆଜି ସଚେତନ ବୋଲି ଭାରି ଅସହାୟ, ମୁଁ ଆଜି କେବଳ ଅସହାୟ ବୋଲି ସଚେତନ । ତମମାନଙ୍କ ସାଙ୍ଗରେ ଭବିଷ୍ୟତର ସମ୍ପର୍କ ଯେମିତି କେତେ ଦିନର, କେତେ ଘଣ୍ଟାର ବା କେତୋଟି ମୁହୂର୍ତ୍ତର । ତମେମାନେ (ମୋ ପରିବାରକୁ ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ କରୁଛି) ଆଶ୍ଚର୍ଯ୍ୟ ହେବନାହିଁ ଯେ ମୁଁ ତମମାନଙ୍କ ପାଖରେ ପୁଣି ଅଜଣା ହୋଇଯାଇଛି, ତମମାନଙ୍କ ପାଇଁ କେବଳ ଗୋଟାଏ ଇତିହାସ ହୋଇପଡ଼ିଛି ।

କ୍ରମାଗତ ଭାବେ ଏଠାରେ ବର୍ଷା ହେଉଥିଲା । ଏବେ ମଧ୍ୟ ଆକାଶ ଯଥେଷ୍ଟଭାବେ ମେଘାଚ୍ଛନ୍ନ । ପୃଥିବୀର ଆଲୋକ ଖୁବ୍ ମଳିନ । ବର୍ଷାରେ ମୁଁ ଭାରି ଉତ୍ତେଜିତ ହୋଇଯାଏ, ଉନ୍ମାଦଗ୍ରସ୍ତ ମଣିଷ ଭଳି ମୁଁ କେବଳ ଭିଜିବା କଥା ଭାବୁଥାଏ । ବର୍ଷାର ଶୀତଳ ସ୍ପର୍ଶରେ ଯେମିତି ଗୋଟାଏ ନିର୍ଦ୍ଦିଷ୍ଟ ଉତ୍ତାପ ପ୍ରଶମିତ ହୁଏ । ଗତ କେତେ ଦିନର ରହଣି ପରେ ବର୍ଷା ଏଠାରେ ମୋ ପାଇଁ ଗୋଟାଏ ନୂଆ ଚମକ ସୃଷ୍ଟି କରୁଛି ବୋଲି ଧରିନେବାକୁ ହେବ । ପାହାଡ଼ର ବକ୍ଷଦେଶରେ ଶ୍ୱେତ ରଙ୍ଗର ବାଦଲ, ତାହାର ମଥାନରେ କଳାମେଘ ଗୋଟାଏ ଚମତ୍କାର ବର୍ଣ୍ଣବିନ୍ୟାସ ବୋଲି ମନେହେଉଛି । ପ୍ରତି ମୁହୂର୍ତ୍ତରେ ମନେହେଉଛି ମୁଁ ସେହି ପାହାଡ଼ର ଉପରେ ମେଘକୁ ଛୁଇଁ ଲମ୍ଫ ଦିଅନ୍ତି ଗୋଟାଏ ଅର୍ଥପୂର୍ଣ୍ଣ ଜୀବନ ପାଇଁ, କିନ୍ତୁ ଏ ଘରର ବାରଣ୍ଡା ବାହାରକୁ ମୁଁ ଯେମିତି ଯାଇପାରୁ ନାହିଁ ।

× × × ×

ବର୍ଷା ଆସିଗଲା ପରେ ଆମର ଏଇ ତିନିଚାରି ମାସ କାମ ଖୁବ୍ କମିଯାଏ । project ବଦଳରେ village contact କରାଯାଏ । ଲୋକମାନଙ୍କର 'culture of silence'କୁ ଭାଙ୍ଗିବା ପାଇଁ meeting ମାନ ଡକାଯାଇଥାଏ । ଲୋକମାନଙ୍କର ସମସ୍ୟାମାନଙ୍କୁ ମଧ୍ୟ ଅନୁଧ୍ୟାନ କରାଯାଏ । ତମେ ଜୁଲାଇ ମାସରେ ଆସୁଛ ବୋଲି ଲେଖିଛ । ସମ୍ଭବତଃ ତମର ଗସ୍ତବେଳକୁ ମୁଁ ଏ ସ୍ଥାନ ଛାଡ଼ିପାରୁ ନାହିଁ । ଦେଖା ନହେଲେ ତମେ ଦୁଃଖ କରିବ ନାହିଁ । ଅଗଷ୍ଟ ପ୍ରଥମ ସପ୍ତାହରେ ପନ୍ଦର ଦିନ ଛୁଟି ନେଇ ମୁଁ ଘରକୁ ଯିବାକଥା ଭାବୁଛି । ଆମ ଘରେ ପ୍ରାୟ ସମସ୍ତଙ୍କର ସ୍ୱାସ୍ଥ୍ୟହାନୀ ଘଟିଛି ବୋଲି ବାବା ଲେଖିଥିଲେ । ମାଆର ଦେହ ବହୁତ ଖରାପ, ମୋର ଆଉ ଜଣେ ଭାଇଙ୍କର ଆଖିରେ ଆଘାତ ଲାଗିଛି ଓ ଅପରେସନ୍ ହେବାର ଅଛି । ପାରିବାରିକ ଅଶାନ୍ତି ନେଇ ମୁଁ ଭାରି ବିବ୍ରତ ହୋଇପଡୁଛି ।

ମୁଁ ଲେଖିପାରୁ ନଥିଲେ ମଧ୍ୟ ତମେ ଯେତେବେଳେ ଅନୁଭବ କରୁଛ ମୋ ପାଖକୁ ଲେଖିବ । ପ୍ରଫୁଲ୍ଲ ଏବେ ପ୍ରାୟ ଲେଖୁଛି । କିନ୍ତୁ କୌଣସି ଉଲ୍ଲେଖନୀୟ ବସ୍ତୁର ଅଭାବ ହେତୁ ମୁଁ ତାହାକୁ ମଧ୍ୟ ଲେଖିନାହିଁ । ଅମ୍ଳାନ ପାଖକୁ ଓ ତମ ପାଖକୁ ଏକାଦିନେ ଲେଖିଥିଲି । ଚିଠି ଏଠାରେ ପହଞ୍ଚିବାକୁ ଦଶ ଦିନରୁ ଊର୍ଦ୍ଧ୍ୱ ହୋଇଯାଉଛି । ବାବି ଲେଖିଥିଲା, ତାହାକୁ ମଧ୍ୟ ମୁଁ ଉତ୍ତର ଲେଖିପାରି ନାହିଁ ।

ତମେ ଭଲ ଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି । ଆଉ କିଛି ମଧ୍ୟ ଅପେକ୍ଷା କରୁଥିଲି । ତଥାପି ତମର ବ୍ୟସ୍ତତାକୁ ମୁଁ ବୁଝିପାରୁଛି । ତମର ଗାଁକୁ ପୁନଃଆବିଷ୍କାର କଥା ତମ ଜୀବନର ସ୍ମରଣୀୟ ଘଟଣାଟିଏ କି ନାହିଁ ମୁଁ ଜାଣିନାହିଁ । କିନ୍ତୁ ତମର ଲେଖାଟି ଜୀବନ୍ତ ବୋଲି ମୁଁ ମନେକରୁଛି । ନୀଳଗିରିକୁ ଭାବାବେଗରେ ଏବେ ମଧ୍ୟ ମୁଁ ଭଲ ପାଇବସିଛି । ଏବେ ମଧ୍ୟ ସେଠିକାର ଅପୂର୍ବ ବର୍ଣ୍ଣବିନ୍ୟାସ ମୋ ସ୍ମୃତିରେ ସତେଜ ଅଛି ।

ତମର ଚିଠି ଖୁବ୍ ଡେରିରେ ପାଇଲି । ଖରିଆର୍‌ରୋଡ଼୍‌ରେ ବିଭିନ୍ନ କାର୍ଯ୍ୟ ନେଇ ପ୍ରାୟ ଦଶଦିନ ମୁଁ ଅଟକିଯାଇଥିଲି । ଏ ଭିତରେ ତମେ କେତେ ସନ୍ତର୍ପଣରେ ଓଡ଼ିଶା ଆସି ଫେରିଯାଇଛ, ତାହା ମୁଁ ଅନୁଭବ କରିପାରିନାହିଁ । ଅନ୍ତତଃ ଭୁବନେଶ୍ୱରରେ ତମ ସହ ମୋର ଦେଖାହେବାଟା କିଛି ଅସମ୍ଭବ ନଥିଲା । ଗତଥର ମାନଙ୍କ ଭଳି କିନ୍ତୁ କେଜାଣି କାହିଁକି ମୋର ସ୍ପୃହା ନାହିଁ । ଅଗତ୍ୟା ଭାବପ୍ରବଣତାରେ ମୁଁ ଥକିଯାଇଛି ବୋଲି ମନେକରୁଛି । ଆମମାନଙ୍କର ଜୀବନର ଗତିପଥ ଏତେ ଅଚାନକଭାବେ ବଦଳିଯାଉଛି ଯେ ଅତି ଅସ୍ୱାଭାବିକ ଭାବେ ଆମେ ପରସ୍ପରର ଅବିଭକ୍ତ ଉପସ୍ଥିତି ଅନୁଭବ କରିପାରୁନାହୁଁ (?) । ତଥାପି କେବେହେଲେ ଆମେ କାହାରିକୁ ଦୋଷ ଦେଇପାରିବା ନାହିଁ; କଦାପି ନୁହେଁ ।

ଅତି ଆଶ୍ଚର୍ଯ୍ୟଜନକ ଘଟଣାଭାବେ ତମେ ଓ ପ୍ରଫୁଲ୍ଲ 'Crime and Punishment' ପଢୁଥିବା ବେଳେ ମୁଁ ଦସ୍ତୋଭସ୍କିଙ୍କର 'Memoirs from the House of the Dead' ପଢୁଥିଲି । କାରାଗାରର ଆତ୍ମଲିପି ମୋ ପାଇଁ କିଛି ନୂଆ ନୁହେଁ । ବିଭିନ୍ନ ରୁଚିର ବହି ପଢୁଥିବା ବେଳେ ଆମେ ଅତି ଅଦ୍ଭୁତ ଭାବେ କିଛି ନା କିଛି ଚିନ୍ତାର ଶିକାର ହୋଇପଡୁଛେ । ତଥାପି ଏହାକୁ ଏଡ଼ାଇ ଦେଇ ହେବନାହିଁ । ଠିକ୍ ତମଭଳି

ଦସ୍ତୋଭସ୍କିଙ୍କର ପ୍ରତ୍ୟେକ ଲେଖା ମୋ ଉପରେ ଏକ ବିଚିତ୍ର ପ୍ରଭାବ ପକାଏ । ଏ ବହିଟି କିଛି ସ୍ୱତନ୍ତ୍ର ନୁହେଁ । ଦ୍ୱିତୀୟବାର ପଢୁଥିବା ସତ୍ତ୍ୱେ ବି ଏ ବହିଟି ଯେମିତି ମୋତେ ନୂଆ ଲାଗୁଥିଲା । ରେଭେନ୍‌ସା ଦିନମାନଙ୍କରେ ଏ ବହିଟି ମୋତେ ପ୍ରଥମେ ବୌଦ୍ଧିକ ସ୍ତରରେ ଦସ୍ତୋଭସ୍କିଙ୍କ ସହ ପରିଚିତ କରାଇପାରିଥିଲା ।

ଅଙ୍ଗେ ଲିଭାଇଥିବା ବନ୍ଦୀଶାଳାର ଜୀବନକୁ ଦସ୍ତୋଭସ୍କି ଅତି ଭୟଙ୍କର ଭାବେ ବର୍ଣ୍ଣନା କରିଛନ୍ତି । ଗୋଟାଏ ମାତ୍ର କାରଗାର ଅଥଚ ଏକ ବିଚିତ୍ରମୟ ସଂସାରର ଅଗଣିତ ଅପରାଧ । ଅଗଣିତ ଅପରାଧ ଅଥଚ ସଂସାରର ଅତି ସହଜ ନିୟମ ଓ ଅତି ଜଟିଳ ପରିପ୍ରକାଶ । ରାଜନୈତିକ ବନ୍ଦୀ ହିସାବରେ ଚାରିବର୍ଷର ଅକଥନୀୟ ଯନ୍ତ୍ରଣା ଓ ସାଇବେରିଆର ନିଷ୍ଠୁର ଜଳବାୟୁ । ଯୌବନ ଓ ଜୀବନର ଦୀପ ଲିଭିବାକୁ ବସିଥିବାର କରୁଣ ସଚେତନତା । (ଦସ୍ତୋଭସ୍କି ଶେଷ ମୁହୂର୍ତ୍ତରେ firing squad ସମ୍ମୁଖରୁ କ୍ଷମାଦେଶ ପାଇଥିଲେ) ଏସବୁ ପ୍ରତି ଶବ୍ଦରେ ପରିସ୍ଫୁଟ । ଗୋଟାଏ ବନ୍ଦୀ ପାଇଁ ଅତି ସାମାନ୍ୟ ମୁକ୍ତିଟିଏ କେତେ ସ୍ୱପ୍ନ ତାହା ଏବହିରୁ ସହଜରେ ଅନୁମେୟ ।

*"..... in consequence of our day-dreams and our long divorce from it, freedom, that is, that exists in fact, in real life. The prisoners exaggerated the idea of real freedom, and that is very natural and characteristic of all prisoners. Any ragamuffin of an officer's batman was for us all but a king, all but the ideal of the freeman, compared with the prisoners, because he could go about unshaved and without fetters or guards."*

ମୁଁ ୨୮ ତାରିଖରୁ ପନ୍ଦର ଦିନ ଘରକୁ ଛୁଟିରେ ଯାଉଛି । ଅତି ଏକୁଟିଆ ହୋଇପଡ଼ିଥିବା ମୋର ବାବାମାଆଙ୍କ ସହ ମୁଁ କିଛି ଦିନ କାଟୁଛି । ସମ୍ଭବତଃ ଭୁବନେଶ୍ୱର ଆସିପାରେ । ନାନୀ ଆଦିଙ୍କୁ ଅନେକଦିନ ହେବ ଦେଖିନାହିଁ । ପଦ୍ମପୁର କଲେଜ୍‌ରେ ମୋର ଅଗତ୍ୟା ପରିଚୟ ହେବା ପରେ ସେଠାରେ ଲାଇବେରୀରୁ ବହି ମିଳିବା ସୁଗମ ହୋଇଛି । ମୋର ପରବର୍ତ୍ତୀ ଯୋଜନା ଅନୁସାରେ 'Jean Christopher' ପଢ଼ିବା କଥା । ତମର ଯଦି ମନେଥିବ ଏହାର ଉଚ୍ଚାରଣ ନେଇ ଆମେ ଯୁକ୍ତି କରୁଥିଲେ । ପ୍ରଫୁଲ୍ଲର ମତ ଅନୁସାରେ ତା' ଜୀବନର ଏହା ସର୍ବଶ୍ରେଷ୍ଠ ବହି ଓ ଏହାର କୁଆଡ଼େ ମୋ ଜୀବନ ସହ ଭାରି ସାମଞ୍ଜସ୍ୟ ଅଛି । ମୁଁ ଏହା ଅନୁସନ୍ଧାନ କରିବି ଓ ତମମାନଙ୍କ ପାଖକୁ ଲେଖିବି ।

ଅଶୋକ ଏକ ଦୀର୍ଘ ଚିଠି ଲେଖିଛି, ଯାହାର କୌଣସି ନିର୍ଦ୍ଦିଷ୍ଟ ଦିଗ ନାହିଁ । ତଥାପି ତା'ର ଘଟଣାବହୁଳ ଜୀବନର ଗୋଟାଏ ଅଧ୍ୟାୟ ଆବେଗରେ ଲେଖିଲେ ମୋର ଆତ୍ମାକୁ ସ୍ପର୍ଶ କରେ ଓ ମୁଁ ଭାରୀ ଦୋଷୀ ମନେକରେ । ଅମ୍ଳାନ ଯଦି ଜୀବନର ସାମାନ୍ୟ ସ୍ତରକୁ

ଅତିକ୍ରମ କରି ଜୀବନ ସତ୍ୟ ପାଇଁ ଆଉ ଏକ ପରୀକ୍ଷା କରେ, ତାହା ଆମ ପାଇଁ ନିଶ୍ଚିତ ଭାବେ ନୂଆ ଆଲୋକ ଆଣିଦେବ । ଦିଲ୍ଲୀରେ ମୋର ପଢ଼ିବା ନେଇ ସେ ଯେଉଁ ପ୍ରସ୍ତାବ ଦେଉଛି, ତାହା ଆପାତତଃ ଗ୍ରହଣଯୋଗ୍ୟ ନୁହେଁ । ମୁଁ ଏବେ ସମସ୍ତଙ୍କଠାରୁ ମୁକ୍ତି ଚାହୁଁଥିବାବେଳେ ତମମାନଙ୍କ ଉପରେ ବୋଝ ହେବାଟା ଅମାନୁଷିକତା ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ପାଇକ୍‌ମାଲ୍‌ରେ ପ୍ରଥମବର୍ଷାର ଅନୁଭୂତି ରୋମାଞ୍ଚକର କି ନା, ଆଜି ମୁଁ ନିର୍ଦ୍ଧାରଣ କରିପାରୁନାହିଁ । ବାହାରେ କେତେ ସମୟ ଧରି ଅବାରିତ ବାରିପାତ, ଗୋଟାଏ ଉଚ୍ଛୃଙ୍ଖଳ ପବନ, ଗୋଟାଏ ବର୍ଷର ପ୍ରଥମ ଶୀତଳତା ସହ ମୋ ଭିତର ତିକ୍ତତା, ମୋର ଅକାଳ ବାର୍ଦ୍ଧକ୍ୟ, ମୋର ବେହିସାବ ସମୟ ସଚେତନତା ଯେମିତି ଅତି ସନ୍ତର୍ପଣରେ ଫେଣ୍ଟି ହୋଇପଡୁଛନ୍ତି । ବର୍ଷା ଭଲଲାଗେ ବୋଲି ମୁଁ ଯେମିତି କେତେ ଦିନ ହେବ ତାହାର ଅପେକ୍ଷାରେ ଥିଲା । ସେ ହୁଏତ ଅବଗୁଣ୍ଠନବତୀ ନାରୀ ନହେଉ ପଛକେ ଗୋଟାଏ ଉଦ୍ଭଟ ପରିକଳ୍ପନା ଭଳି ଆସିଛି । ମୁଁ ଯେମିତି ତାହା ସହ ସମ୍ପର୍କ ଯୋଡ଼ି ପାରୁନାହିଁ, ମୁଁ ଭାରି ବ୍ୟଥା ପାଉଛି ।

ଏ ବର୍ଷାର ରୂପ ଯେତେବେଳେ କୁହୁଡ଼ି ଭଳି ହୋଇପଡୁଛି, ଛୁଇଁ ହେଉଥିବା ( ? ) ପାହାଡ଼ଟି ନିମିଷକ ମଧ୍ୟରେ ହଜିଯାଉଛି । ଯାହାର ବିଶାଳ ଉପସ୍ଥିତି ମୋ ଜୀବନରେ ଅନେକ କିଛି ଭାବାନ୍ତର ସୃଷ୍ଟି କରୁଛି । ସେ ମଧ୍ୟ ଅନ୍ୟ କାହା ପାଖରେ ଆତ୍ମସମର୍ପଣ କରୁଛି । ଅମ୍ଲାନକୁ ମୁଁ ଏଇ ସମୟରେ ଲେଖିଥିଲି । ଜୀବନରେ ଆମ ପାଖରେ ଯାହାର ମୂଲ୍ୟ ଅକଳନୀୟ, ତାହାର ପ୍ରଭାବ ପୁଣି କେତେ ସଂକ୍ଷିପ୍ତ ଓ ସ୍ୱଳ୍ପ । ତେଣୁ ଦର୍ଶନ କୁହ, ଭୌତିକ ଅନୁଭୂତି କୁହ ବା ମହାଜାଗତିକ ପରିପ୍ରକାଶ କୁହ, ସବୁ ପୁଣି କେମିତି ଏଇ ବର୍ଷାଧାର ଭଳି ମୁହୂର୍ତ୍ତକ ପାଇଁ ଭାରି ମହାନ୍ ହୋଇଯାଆନ୍ତି । କିନ୍ତୁ ପର ମୁହୂର୍ତ୍ତରେ ଆମର ସ୍ୱପ୍ନଭଙ୍ଗ ହୁଏ ।

ବର୍ଷାରେ ଭିଜିବାକୁ ମୋର ଅଦମ୍ୟ ଇଚ୍ଛା କେଜାଣି କାହିଁକି ରୂପାୟିତ ହେଲା ନାହିଁ ଏଠାରେ । ବାହାରେ ଲକ୍ଷ୍ୟହୀନ ଭାବରେ ହଜିଯିବାକୁ ମନ ମଧ୍ୟ ଉଚାଟ ହେଉନାହିଁ । ଅତି ଅକର୍ମଣ୍ୟ ଭାବେ ଘରଭିତରୁ ସେସବୁକୁ କେବଳ ଦେଖିବାକୁ ପଡ଼ିଲା, ସେସବୁକୁ ପାଠ୍ୟପୁସ୍ତକ ଭଳି ପଢ଼ିବାକୁ ପଡ଼ିଲା । ବର୍ଷାର ସମସ୍ତ ଅନବଦ୍ୟ ଆବେଗ ମୋତେ ତମମାନଙ୍କ ପାଖକୁ ଟାଣିନିଏ, ତମମାନଙ୍କର ଜୀବନଯାତ୍ରାରେ ସାମିଲ୍ ହେବାକୁ ଯେମିତି

ଅତିଶୟ ଆକୃଷ୍ଟ କରେ । ଅନେକ ନିଦାଘର ଶୁଷ୍କତା ସତ୍ତ୍ୱେ ବି ପୁଣି କେଉଁ ଏକ ଇଲାକାରେ କବିତାର ଝଲକ ଦେଖାଦିଏ । ଦିନକୁଦିନ ଯେଉଁଭଳି ମୁଁ ଜଡ଼ ହୋଇପଡୁଛି, ଦିନକୁ ଦିନ ପରିବେଶ ସହ ମୋର ଯେଉଁଭଳି ସଂଘର୍ଷ ବଢ଼ିଚାଲିଛି ଆଉ କେତେଦିନ ବା ହାତରେ ଅଛି ଏଇସବୁ ବର୍ଷାମାନଙ୍କୁ ଆପଣା ଭିତରେ ସ୍ଥାନ ଦେବା ପାଇଁ? ତଥାପି ପୁନର୍ଜୀବିତ ହୋଇପଡ଼ି ପୁଣି ମୁଁ ନିଜକୁ ଆବିଷ୍କାର କରୁଛି, ନିଜର ପଙ୍ଗୁ ଜୀବନକୁ ପୁଣି ଭଲ ପାଉଛି ।

ଅଚ୍ୟୁତ

*ବି.ଦ୍ର.:* Erich Frommଙ୍କ "The Anatomy of Human Destructiveness" ପଢୁଛି । ମଣିଷ ଓ ସଭ୍ୟତା ଦିନକୁଦିନ କାହିଁକି 'aggressive' ହୋଇପଡୁଛି ତାହାର ବିଶଦ୍ ବିଶ୍ଳେଷଣ ଏଠାରେ କରାଯାଇଛି । Freud, Lorenz ଆଦିଙ୍କ ଠାରୁ ଆରମ୍ଭ କରି ବର୍ତ୍ତମାନର ମନସ୍ତତ୍ତ୍ୱବିଦ୍ ଓ ସମାଜବିଜ୍ଞାନୀମାନଙ୍କର ଦୃଷ୍ଟିକୋଣକୁ ମଧ୍ୟ ଆଲୋଚନା କରାଯାଇଛି । ପୁଣି ସବୁ ବହି ପଢ଼ିବା ପରେ ଏବେ ମନେହେଉଛି academic line କୁ ଫେରିଗଲେ ଭଲ ହୁଅନ୍ତା । ଚିଠି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ପାଇକ୍‌ମାଲ୍‌କୁ ଫେରିବା ପରଠାରୁ ମୁଁ ଯେମିତି ମାନସିକ ସ୍ତରରେ ଭାରି ଅସୁସ୍ଥ ହୋଇପଡ଼ିଛି । ଦେହର ଯନ୍ତ୍ରଣା ସହ ତାଳଦେଇଥିବା ଏ ବ୍ୟଥା ମୁଁ ଆଦୌ ସହି ପାରୁନାହିଁ । ମୋର ପାରିପାର୍ଶ୍ୱିକ ଅବହାଓ୍ୱା ମଧ୍ୟ ମୋତେ ଅନୁକୂଳ ଜଣାପଡୁନାହିଁ । ଏଠାରେ ଅତି ବିରକ୍ତିକର ଭାବେ ବର୍ଷା ଲାଗି ରହୁଛି । ଦିନତମାମ୍ ମୁଁ ଘୋଡ଼ି ହୋଇ କେବଳ ଆକାଶ ପାତାଳ ଭାବୁଛି । OXFAM ମୋଠାରୁ ଦାବୀ କରୁଥିବା କର୍ତ୍ତବ୍ୟବୋଧ ସମ୍ଭବତଃ ମୁଁ ପ୍ରଦର୍ଶନ କରିପାରୁନାହିଁ ।

ତମର ଯଦି ମନେପଡୁଥିବ, ଆଜି ମୋର ଜନ୍ମଦିନ ଥିଲା । ସେଥିପାଇଁ ମୋଟାଏ ସଚେତନତା ଛଡ଼ା ମୁଁ ଆଜି ଭାରି ଉଦାସ ହୋଇଯାଉଛି । ଜୀବନ ଇତିହାସକୁ ଘାଣ୍ଟିବାରେ ଆଜି ବା କ'ଣ ମାଧୁର୍ଯ୍ୟ ଅଛି? ନିଜକୁ ଭାବପ୍ରବଣ କରିଦେବାର ଅର୍ଥହୀନତା ମଧ୍ୟ ମୋତେ ଭୀଷଣ ଯନ୍ତ୍ରଣା ଦେଉଛି । ନିଜକୁ କୌଣସି ଏକ ଆବିଷ୍କାରକ ବୋଲି ମନେକରି ଯେଉଁ ଅଭିନୟ ମୁଁ ଗତବର୍ଷମାନଙ୍କରେ କରିଆସିଛି ତାହା ବୋଧେ ଶେଷ ହୋଇଯାଇଛି । ମୁହଁ ଉପରର ମୁଖା ଖୋଲି ଦେଲା ପରେ ଦାମ୍ଭିକତାର ଯେଉଁ ଶେଷ ରଙ୍ଗ ମୋ ପାଖରେ

ଥିଲା, ତାହା ମଉଳି ଯାଇଛି ବୋଲି ଅନୁଭବ କରିହେଉଛି । ତମେ ବୋଧେ ଜାଣନାହଁ ଯେ ମୋ ନିଜ ଆଗରେ ମୁଁ ନପୁଂସକ ବୋଲି ପ୍ରମାଣିତ ହୋଇଯାଇଛି । ଭଲ ପାଇବାର ସବୁ ମହତ୍ତ୍ୱ ଉପରେ ଗବେଷଣା କରି ମଧ୍ୟ ସେଥିପ୍ରତି ନିସ୍ପୃହ ହୋଇପଡ଼ିବା ଏବଂ ନିଷ୍ଠୁରତାର ଜାଲ ଭିତରେ ସମ୍ମୋହିତ ହୋଇ ପଡ଼ିଯିବା ଆଜି ବୋଧେ ମୋ ଜୀବନର ସବୁଠାରୁ ଗୁରୁତର ପରିବର୍ତ୍ତନ ବୋଲି ମୁଁ ଭାବୁଛି । ମୁଁ ଆଜି କରୁଣ ଭାବେ ଅମାନୁଷିକ ହୋଇପଡୁଛି ।

ଆଗାମୀ ଜୀବନ ଯେ ଭୟାନକ ହୋଇପଡ଼ିବ, ସେକଥା ଚିନ୍ତା କରି ମୁଁ ଭାରି ସଙ୍କୁଚିତ ହୋଇପଡୁଛି । ଗତବର୍ଷମାନଙ୍କର ବଞ୍ଚିବାର ତୀବ୍ର ଲାଳସା ଓ ଜୀବନ ସହ ଅସାଧାରଣ ପ୍ରତିକ୍ରିୟା ମୋତେ ସଜୀବ କରି ରଖିଥିଲା ବୋଲି ପ୍ରମାଣିତ ହୋଇଯାଇଛି । ଏବେ ଯେମିତି ନିଜକୁ ମୁଁ ଚିହ୍ନିପାରୁନାହିଁ । ନିଜକୁ ମୁଁ ମଧ୍ୟ ଭଲ ପାଇ ପାରୁନାହିଁ । ବଞ୍ଚିବାର ପାଥେୟ ଆଜି ଭାରି ଭ୍ରମାତ୍ମକ ଜଣାପଡୁଛି । ଏତେ ବଡ଼ ପୃଥିବୀରେ ଗୋଟାଏ ବର୍ଗ ଇଞ୍ଚ ସ୍ଥାନ ମୋର ବୋଲି ନାହିଁ, ଯାହା ଉପରେ ମୁଁ ଆଶ୍ରୟ ନେଇପାରିବି ଓ ନିଜ ଉପରେ କରୁଥିବା ପରୀକ୍ଷାକୁ ଆଉ କିଛି ଦିନ ଆଗେଇ ନେଇପାରିବି । ମୋର ବଞ୍ଚିବାର ଅଧ୍ୟାୟ ସମାପ୍ତ ହୋଇଛି ।

ବୌଦ୍ଧିକ ସ୍ତରରେ ମଣିଷ ବଞ୍ଚି ରହିପାରିବ କି ନାହିଁ, ମୋ ଉପରେ ଏ ପ୍ରଶ୍ନ ବୋଝ ହୋଇଯାଇଛି । ଆବେଗ ସ୍ତରରେ ବନ୍ଧୁତା ଓ ଭଲ ପାଇବା ହୁଏତ ସବୁକିଛି; କିନ୍ତୁ ଯେମିତି ସେସବୁର ଅର୍ଥ ମୋ ପାଖରେ ଦୁର୍ବୋଧ୍ୟ ହୋଇଯାଉଛି । ଏ ସାରା ସୃଷ୍ଟିଟା ହିଁ ଏକ ଭଲ ପାଇବାରେ ଭରିଯାଇଛି; କେବଳ ମୋ ଭଳି ଏକ ସୃଷ୍ଟିଛଡ଼ା ତାହାର ମହକରେ ମହକିତ ହୋଇପାରୁନାହିଁ । ମୁଁ ଯେ ତଥାପି ବଞ୍ଚି ରହିପାରୁଛି ମୋ ପାଇଁ ଏହା ଆଶ୍ଚର୍ଯ୍ୟ ହୋଇପଡୁଛି ।

× × × ×

ପାଇକ୍‌ମାଲ୍‌କୁ ଲେଖିଥିବା (୧୧ ତାରିଖ) ଚିଠି ମୁଁ ପାଇଛି । କିନ୍ତୁ ଏହା ପୂର୍ବରୁ ତମେ ବୋଧେ ଏଠାକୁ ଲେଖିଥିଲ (ଏକାଡ଼େମୀରେ ଯୋଗ ଦେଲା ପରେ) ତାହା ମୁଁ ପାଇନାହିଁ । ତମର ଏକାଡେମୀ ସହ ଅନୁରାଗ ଓ ଘୃଣାର ସମ୍ପର୍କ ମୁଁ ଅନୁଭବ କରିପାରୁଛି । ଗୋଟାଏ ସ୍ୱୟଂଚାଳିତ ମେସିନ୍ ଭାବରେ ତମକୁ ଯେ ଗଢ଼ାଯାଉଥିବ ଏହା ମୋର କଳ୍ପନାର ବାହାରେ ନୁହେଁ । ତଥାପି ତମ ଭିତରେ ଥିବା ଅଦ୍ୱିତୀୟ ବ୍ୟକ୍ତିତ୍ୱ ମଳିନ ହେବନାହିଁ, ଏହା ମୋର ଦୃଢ଼ ବିଶ୍ୱାସ । ତମେ ପଢୁଥିବା ବହିଗୁଡ଼ିକ ଯଦି ତମର ନିଜର ହୋଇଥାଏ, ତେବେ ମୋ ପାଖକୁ ପାର୍ସଲ କରି ପଠାଇବାଟା ଠିକ୍ ହେବ । ଅନ୍ତତଃ ଏଠାରେ ସମୟ କାଟିବାକୁ ସାମଗ୍ରୀ ମିଳିଯିବ ।

ଦଶହରା ଛୁଟିରେ ତମେ ଓଡ଼ିଶା ଆସୁଛ କି ? ଅମ୍ଳାନ ଆସିବ ବୋଧେ ଓ ଫେରିଲାବେଳକୁ ଯଦି ସମ୍ଭବ ହୁଏ, ମୁଁ ତମର ଏକାଡେମୀ ବୁଲିବା ଉଦ୍ଦେଶ୍ୟରେ ତା'ସାଙ୍ଗରେ ଯାଇପାରେ । କିନ୍ତୁ ତମେ ଓଡ଼ିଶା ଆସୁଥିଲେ କେଉଁଠି ଗୋଟାଏ ସ୍ଥାନରେ ଆମ୍ଭେ ତିନିଜଣ କିଛି ସମୟ କାଟିଲେ ଭଲ ହୁଅନ୍ତା । ତମର ମତାମତ ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଏଇଠି ହଠାତ୍ ଯେମିତି ମୁଁ ମନେକରୁଛି ଆମ୍ବଗଛରେ ବଉଳ ଆସିଯାଇଛି । ଯେଉଁଆଡ଼େ ଯିବ, ସିଆଡ଼େ କେବଳ ଝରାପତ୍ରର ମୃଦୁଗୁଞ୍ଜନ । ମୁଁ ଅନୁଭବ କରେ ବା ନକରେ, ବସନ୍ତ ଆସିଛି । ମୁଁ ଭଲ ପାଏ ବା ନପାଏ, ପୃଥିବୀ ଯେମିତି ଶୀତର ଖୋଳ ଭିତରୁ ଆତ୍ମପ୍ରକାଶ କରୁଛି । ଶୀତନିଦ୍ରା ଯେମିତି ଗତକାଲି ରାତିଠାରୁ ଶେଷ ହୋଇଯାଇଛି ।

ଏଥରର ଅପ୍ରେଲ୍ ମାସରେ ପାଇକମାଲ୍‌ରେ ମୋର ଗୋଟାଏ ବର୍ଷ ପୁରିଥାଆନ୍ତା । କିନ୍ତୁ ମୁଁ ବୋଧେ ରହୁନାହିଁ । ଏଠିକାର ପରିବେଶ ସହ ମୁଁ ଅନ୍ତରଙ୍ଗ ହୋଇପାରିଲି ନାହିଁ । ଏଇଠି ଗନ୍ଧମାର୍ଦ୍ଦନ ପର୍ବତ ନୃସିଂହନାଥର ପ୍ରପାତ ବା ଅର୍ଦ୍ଧମାନବତା ସବୁକିଛି ଏବେ ଭାରି ଅର୍ଥହୀନ ଜଣାପଡୁଛନ୍ତି । ମୁଁ ହୁଏତ ଭଲ ପାଇବା ପାଇଁ ଅଯୋଗ୍ୟ । ମୁଁ ନିଶ୍ଚିତ ଭାବେ ଏକ ମାନସିକ ରୋଗୀ । ସେଇଥିପାଇଁ ମୋ ଭିତର ଜଡ଼ତ୍ୱକୁ ମୁଁ ଭାଙ୍ଗି ପାରୁନାହିଁ । କିଛି ଦିନ ତଳେ ମୁଁ ସମ୍ଭବତଃ ବିପ୍ଳବ ଓ ତାହାର ଏକ ଅଂଶୀଦାର ଭାବରେ ନିଜକୁ ଗଢୁଥିଲି । ମୋ ଭଳି ଅସ୍ଥିର ଓ ଅସହଜ ମଣିଷଟିଏ ସେସବୁକୁ ବି ବୋଧେ ବୌଦ୍ଧିକ ସ୍ତରରେ ବୁଝିପାରେ ନାହିଁ । ଯେଉଁଠି ଦେଖିବ ସେଇଠି ସ୍ୱାଭିମାନ ଉପରେ ଆକ୍ରମଣ, ଯେଉଁଠି ଖୋଜିବ ସେଇଠି କେବଳ ପାର୍ଥିବତାର ଚମତ୍କାର ଆକର୍ଷଣ । ଜୀବନକୁ ଓ ନିଜକୁ ଗୋଟାଏ ସ୍ତରରୁ ଆଉ ଗୋଟାଏ ଊର୍ଦ୍ଧ୍ୱ ସ୍ତରକୁ ଉଠାଇ ପାରିବାରେ ମୁଁ ବ୍ୟର୍ଥ ହୋଇଛି ଏଠାରେ । ନିଜକୁ ନିର୍ମଳ କରିପାରିବାରେ ମୁଁ ଭାରି ଅସହାୟ ଅନୁଭବ କରିଛି । ଏ ଜୀବନ କେବଳ ଅପରାଧମାନଙ୍କ ସହ ସନ୍ଧି କରିପାରୁଛି, ଅନ୍ୟକୁ ଫାଙ୍କି ଦେବା ପାଇଁ ରାସ୍ତାମାନେ ଆପଣା ଛାଏଁ ଖୋଲିଯାଉନ୍ତି । ପାଇକମାଲ୍‌ରେ ମୋର ମୃଗତୃଷ୍ଣାମାନେ ଜୀବନ୍ତ ମନେ ହେଉଛନ୍ତି, ଦୁର୍ବଳତାମାନେ ପ୍ରାଗ୍‌ଐତିହାସିକ ପ୍ରାଣୀମାନଙ୍କ ଭଳି ମୋ ଉପରେ ଅତ୍ୟାଚାର କରୁଛନ୍ତି । ମୋର ବିନା ସ୍ୱୀକାରରେ ମୁଁ ଯେମିତି ବଞ୍ଚିବା ପାଇଁ ଗୋଟାଏ ଜଘନ୍ୟ ରାସ୍ତା ଖୋଜି ବୁଲୁଛି । ମୁଁ ନିଜକୁ ଚିହ୍ନିପାରି ନାହିଁ; ପାରିବି ନାହିଁ ମଧ୍ୟ ।

ତମେ ଭାବୁଥିବ ମୁଁ କାହିଁକି ଏଇଭଳି ଗୋଟାଏ ଅପଦାର୍ଥରେ ପରିଣତ ହୋଇଯାଉଛି । ତମେ ବୁଝିପାରୁ ନଥିବେ ମୁଁ କାହିଁକି ଏମିତି ତ୍ରିଶଙ୍କୁ ଅବସ୍ଥାରେ ଝୁଲିରହିଛି । ମୋର ଜୀବନକୁ ମୁଁ ଯେତିକି ଜାଣେ ମୁଁ କହିପାରିବି ଯେ ସମୟ ଓ ଜୀବନ, ପ୍ରେମ ଓ ବନ୍ଧୁତା ଏସବୁରେ ମୁଁ ଯେମିତି ବିଶ୍ୱାସ କରୁନାହିଁ । ମୋର ଆଜି କାହା ପ୍ରତି ସମ୍ମାନ ନାହିଁ, କାହାର ଦୀର୍ଘଶ୍ୱାସ ମୋ ଭିତରେ କୌଣସି ସ୍ପନ୍ଦନ ଆଣି ଦେଉନାହିଁ । ବରଂଚ ମୁଁ ଅତି ଦୁର୍ବୋଧ୍ୟ ଭାବରେ ନିଜକୁ ଅପରାଧୀ କରି ଦେଉଛି । ଅତି ନିମ୍ନସ୍ତରରେ ପହଞ୍ଚିଯାଇ ଯେତେବେଳେ ମୁଁ ଅଣନିଃଶ୍ୱାସୀ ହୋଇପଡୁଛି, ସେତିକିବେଳେ ମୁଁ ଫେରିବାର ରାସ୍ତା ଖୋଜି ମଧ୍ୟ ପାଉନାହିଁ । ମୋର ଏକକ ଜୀବନର ସ୍ଥାନ କେଉଁଠି ନାହିଁ । ଦ୍ୱନ୍ଦ ଓ ଦ୍ୱିଧା ମଧ୍ୟରେ ମୁଁ ନିଜକୁ ଜାଳିପୋଡ଼ି ନଷ୍ଟ କରିଦେବି । ମୁଁ କାହାକୁ ନିଜର କରିପାରିବି ନାହିଁ; ମୁଁ କାହାର ମଧ୍ୟ ନିୟନ୍ତ୍ରଣରେ ରହିବି ନାହିଁ ।

× × × ×

ଅମ୍ଳାନ ସାଙ୍ଗରେ ତମର ଦେଖା ହୋଇଥିବ ଦିଲ୍ଲୀରେ । ସେ ଓ ତମେ ଅନେକ କଥା ଆଲୋଚନା କରିଥିବ ନିଶ୍ଚୟ । ମୁଁ ଭାବୁଛି, ତମେ ଏବେ ତାହାକୁ ସାହାଯ୍ୟ କରିବାରେ କୁଣ୍ଠାବୋଧ କରିବନାହିଁ । ଆବେଗ ସ୍ତରରେ ଆମ ଦୁଇଜଣଙ୍କୁ ଛାଡ଼ିଦେଲେ ତାହାର ଆଉ କେହି ନାହାନ୍ତି । ତାହାର ସଦ୍ୟ ସମସ୍ୟାଗୁଡ଼ିକରେ ତମେ ତମର ମତାମତ ଦେଉଥିବ ବୋଲି ମୁଁ ଆଶା କରୁଛି ।

ମାର୍ଚ୍ଚ ମାସରେ ମୁଁ ଇସ୍ତଫା ଦେଇ ଦିଲ୍ଲୀ ଯିବା କଥା ନିଷ୍ପତ୍ତି ହୋଇଛି । ତମର ଏ ବିଷୟରେ ଧାରଣା କ'ଣ ମୁଁ ଜାଣିନାହିଁ । ପରୀକ୍ଷା ଦେବାର ଆଳରେ ମୁଁ ଯେମିତି ଅନ୍ଧାର ଭିତରକୁ ଲମ୍ଫ ଦେଉଛି, ତାହା ମୋ ପାଇଁ ଏକମାତ୍ର ରାସ୍ତା; ଅନ୍ତତଃ ନିଜକୁ ଚିହ୍ନିବା ବିଷୟରେ ମୁଁ ଆଉଥରେ ପରୀକ୍ଷା କରୁଛି । ପଳାୟନର ଆଶ୍ରା ନେଇ ମୁଁ ଠିକ୍ ବୁଲାକୁକୁରଙ୍କ ଭଳି ଘୁରି ବୁଲୁଛି ।

ଆଶା ତମେ ଭଲ ଅଛ । ମସୌରୀ କେବେ ପହଞ୍ଚିବ ଲେଖିବ ।

ଅଚ୍ୟୁତ

*ବି.ଦ୍ର. :* Jean Christopher ବହି ସରିଯିବାକୁ ଆଉ କେତେ ପୃଷ୍ଠା ବାକି ରହିଯାଇଛି । ଏ ଭିତରେ ମୁଁ Graham Greene ଙ୍କ 'The Honoraty Consul' ପଢ଼ିଛି । Updike ଙ୍କ 'Couples' ପଢ଼ିବା ପରେ ଏବେ 'Rabit Run' ପଢ଼ିବା ଆରମ୍ଭ କରିଛି । John Wainଙ୍କ ବହିଟିଏ ଆଣିଥିଲି; କିନ୍ତୁ ସେତେ ଭଲ ଲାଗିଲା ନାହିଁ । ତାହାର ନାଁ ମୁଁ ଭୁଲିଯାଇଛି ।

ଅମ୍ଳାନ ଏବେ ରାଉରକେଲା ଆସିଥିଲା । ଆମର ସାକ୍ଷାତ ସମ୍ଭବପର ହୋଇନାହିଁ । ମୁଁ ସୁଧାକର ପାଖକୁ ଏ ଭିତରେ ଦୁଇଦିନ ପାଇଁ ଯାଇଥିଲି । ଡଙ୍ଗରିଆ କନ୍ଧମାନଙ୍କ ସହ କିଛି ସମୟ କାଟିଥିଲି । ଯେଉଁଠାରେ ଗୋପୀ ମହାନ୍ତି ପରଜା ଓ ଅମୃତର ସନ୍ତାନ ଲେଖିଥିଲେ, ସେସବୁର landscape ଦେଖିଆସିଲି । ସେଠାରେ ଏକାକୀ ରହି କିଛି development work କରିହେବ ବୋଲି ମୋର ଧାରଣା ହେଲା । କିନ୍ତୁ fundର ଅଭାବରେ ସେସବୁ କଳ୍ପନା ସ୍ତରରେ ରହିଯିବ । ସୁଧାକର ଓ ଅନ୍ୟ କେତେଜଣ ସାଙ୍ଗ ଅଫିସରମାନଙ୍କର ଚାଲିଚଳନ ଲକ୍ଷ୍ୟ କରୁଥିଲି । କେତେ ସହଜରେ ସେମାନେ ସାଧାରଣ ଜୀବନକୁ ଗ୍ରହଣ କରିପାରୁଛନ୍ତି ଜାଣି ଆଶ୍ଚର୍ଯ୍ୟ ହେଲି । ମୋ ଦ୍ୱାରା କ'ଣ ହୋଇପାରିବ ଏବଂ ନହୋଇପାରିବ ତାହା ମୁଁ ହୃଦୟଙ୍ଗମ କରିପାରିଲି । ଜୀବନର ବ୍ୟର୍ଥତାର ସ୍ତୂପ ଭିତରୁ ଯଦି ମୁଁ କିଛି ଏବେ ଉଦ୍ଧାର କରିପାରୁଛି, ତେବେ ବଞ୍ଚିବାର ସାର୍ଥକତା ଅନୁଭବ କରିହେବ ।

ତମେ ଶୀଘ୍ର ଲେଖିବ । ମୁଁ କେଜାଣି କାହିଁକି ଭାରି ଏକାକୀ ଅନୁଭବ କରୁଛି ।

▯ ▯ ▯

*"Outside the instincts of species, the cosmic force which is the lever of the world, nothing exists save a scattered dust of emotion. The majority of men have not vitality enough to give themselves wholly to any passion. They spare themselves and save their force with cowardly prudence. They are a little of everything and nothing absolutely. A man who gives himself without counting the cost to everything that he does, everything that he suffers, everything that he loves, everything that he hates, is a prodigy, the greatest that is granted to us here on earth. Passion is like genius; a miracle, which is as much as to say that it does not exist.". (Jean Christopher, Vol-IV, Journey's End)*

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି । କିନ୍ତୁ ଦୀର୍ଘ ଦୁଇମାସ ହେବ ତମକୁ ଲେଖିପାରିନାହିଁ । ଏଇମିତି ଉଦାସୀନ ରହିବାଟା ତମେ ସମ୍ଭବତଃ କ୍ଷମା କରୁନଥିବ । କିନ୍ତୁ କେଜାଣି ମୁଁ ତମକୁ ଏ ନୀରବତାରେ ଖୁବ୍ ଅନୁଭବ କରିପାରିଛି । ତମର ଅପରିମିତ ଅସ୍ତିତ୍ୱ ମୋ ଜୀବନରେ ଆହୁରି କେନ୍ଦ୍ରୀଭୂତ ହୋଇଛି । ତମର ସୀମିତ ପୃଥିବୀ ( ? ) କେମିତି ଭାରି ସୁନ୍ଦର ମନେହେଉଛି । ଏବେ ଆମେ ଦୁହେଁ ଭିନ୍ନ ରୁଚରି କଥା ଓ ଭାବପ୍ରବଣତାକୁ ଗୁରୁତ୍ୱ ଦେଉଛେ ବୋଧେ । ଆମେ କିନ୍ତୁ ଅନ୍ୟମାନଙ୍କ ଭଳି ବଦଳିନାହୁଁ ।

ଏଇ ଦୁଇମାସ ଭିତରେ ଘଟଣା କିଛି ଘଟିନାହିଁ । ଦୁର୍ଘଟଣା କିନ୍ତୁ ଭିନ୍ନ ଢଙ୍ଗରେ ମୋତେ ଆକ୍ରାନ୍ତ କରିଛି । ମୋଟର୍‌ସାଇକେଲ୍‌ରୁ ପଡ଼ି ମୁଁ ପ୍ରାୟ କୋଡ଼ିଏ ଦିନ ପଙ୍ଗୁ ଅବସ୍ଥାରେ ରହିଥିଲି । ମୃତ୍ୟୁ ସହ ଗୋଟାଏ ପ୍ରକାରର ସାକ୍ଷାତ ହୋଇଯାଇଥିଲା । ଏଇସବୁ ସମୟରେ ପୃଥବୀର ଭିନ୍ନ ଲୋକମାନଙ୍କୁ ମୁଁ ପରୀକ୍ଷା କରୁଥିଲି । ସହାନୁଭୂତି ଭିତରେ ସେମାନେ ସବୁ ମରଣକୁ ଯେମିତି ସମ୍ମାନ କରୁଥାଆନ୍ତି, ସେମାନେ ହୁଏତ ବୁଝନ୍ତି ନାହିଁ ଯେ ଆମ ପାଇଁ ବଞ୍ଚିରହିବା ବା ମରିବାର ପାର୍ଥକ୍ୟଟା ବିଶେଷ କିଛି ନୁହେଁ ।

ଏଥରର ନୂଆବର୍ଷରେ ମୁଁ ସେମିତି କିଛି ଉଲ୍ଲେଖନୀୟ କଥା ଅନୁଭବ କରିନାହିଁ । ସୋନ୍ୟା ସହ ଗୋଟାଏ ପ୍ରେମମୂଳକ ସମ୍ପର୍କର ଅବସାନ ପରେ ମୁଁ ଯେମିତି ମୋର ନିଜ ପ୍ରତି ତଥା ପୃଥିବୀର ଅଭିଯୋଗମାନଙ୍କ ପ୍ରତି ନିସ୍ପୃହ ହୋଇଯାଇଛି । ଜୀବନର ଏଇ ପର୍ଯ୍ୟାୟରେ ଅପରାଧମାନେ ମୋ ଭଳି ଅସହାୟ ମଣିଷମାନଙ୍କୁ ବୋଧେ ଗ୍ରାସ କରନ୍ତି । ମୁଁ ବଞ୍ଚିବାର ମାଧୁର୍ଯ୍ୟ ଯେମିତି ଅନୁଭବ କରୁନାହିଁ । ନିଜର ତଥା ଅନ୍ୟମାନଙ୍କର ପାପଗୁଡ଼ିକ ପାଇଁ ମୁଁ ଠିକ୍ Kirilov ଭଳି ପ୍ରତି ମୁହୂର୍ତ୍ତରେ metaphysical suicide କରୁଛି । ମୋର ନପୁଂସକତା ସମ୍ପର୍କରେ ମୁଁ ଠିକ୍ ବୁଝିପାରୁଛି କି ନାହିଁ ଜାଣିପାରୁନାହିଁ । ନିଜତ୍ୱକୁ ଫାଙ୍କି ଦେଇ ପାରିବାରେ ମୋର ଅହମିକା ବଢ଼ିଯାଇଛି । ପୃଥିବୀର ନୀତିନିୟମକୁ ପଦାଘାତ କରିଦେଇ ପାରିବାରେ ମୁଁ ଭାରି ଗର୍ବାନ୍ୱିତ ମନେକରୁଛି । ତମେ ଭାବୁଥିବ ମୋ ଭିତରର aesthetics ମାନେ ତେବେ କେଉଁଠାରେ ଆତ୍ମଗୋପନ କରିଛନ୍ତି । ମୁଁ ଏକମତ ହେଉଛି ।

ମୋ ଜୀବନର ପରୀକ୍ଷାମାନଙ୍କର ଗୋଟାଏ ଚମତ୍କାର ପଦ୍ଧତି ଅଛି, ଚମତ୍କାର ଫଳାଫଳ ସଦାସର୍ବଦା ରହିଆସିଛି । ବଞ୍ଚିରହିବା ଗୋଟାଏ ଚରମ ଆତ୍ମପ୍ରବଞ୍ଚନା । (Human existence is a terrible self-deception) ହୁଏତ ଆମେ ବୁଝନ୍ତି ନାହିଁ ଯେ ଏପ୍ରକାରର ଆତ୍ମପ୍ରବଞ୍ଚନାକୁ ଏଡ଼ାଇ ଦେଇପାରିବା ସବୁଠାରୁ କଠିନ କଥା । ବରଂ ଆମେ ସାଲିସ୍ କରନ୍ତି । ଆମେ ସାଲିସ୍‌ପନ୍ଥୀ ହୋଇଯାଆନ୍ତି । ଏହାଦ୍ୱାରା ଆମର ରୁଚି ବିକୃତ ହୁଏ । ଆତ୍ମନିରୀକ୍ଷଣ ପରିବର୍ତ୍ତେ ବିକାର ବଢ଼େ, Luxury of suffering ବି ବଢ଼ିଯାଏ । ତମେ କେବେ କେମିତି ନିଜକୁ ଏଇ ଆତ୍ମପ୍ରବଞ୍ଚନାର ମାପକାଠିରେ ମାପିଥିବ, ଅଲକ୍ଷ୍ୟରେ ହେଉ ପଛକେ । ତମେ ମଧ୍ୟ ମୋ ଭଳି ଏଇ ସିଦ୍ଧାନ୍ତ ନେଇଥିବ ଯେ ନିଜତ୍ୱ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଅପେକ୍ଷା ନିଜକୁ ଗୋଟାଏ ଅଷ୍ଟବକ୍ରରେ ରୂପାନ୍ତର କରିବା ଖୁବ୍ ଶ୍ରେୟସ୍କର । ତେଣୁ ତମେ ବା ମୁଁ ଆଶ୍ଚର୍ଯ୍ୟ ହେବା ନାହିଁ ଯେ ଆମ ଭିତରେ ଚରମ ଆବେଗମାନଙ୍କର କ୍ଷୟ ହେଉଛି ବଞ୍ଚିରହିବାର ଉଲ୍ଲାସ ଯଥେଷ୍ଟ ଭାବେ ହ୍ରାସ ପାଉଛି । ଆଜି ହୁଏତ ତମ ଆମମାନଙ୍କ ଭିତରେ physical forces ବିରାଜମାନ କରୁଛନ୍ତି । ଆମେ ବୋଧେ fantasy କୁ ଭଲ ପାଉଛେ । ଏ ପ୍ରକାରର ନିଷ୍ଠୁର ପୃଥିବୀରୁ ପଳାୟନ କରିବା ପାଇଁ ଆଜି ଆମେ ବୋଧେ ବାଟ ଖୋଜୁଛେ ।

ମୋରଜୀବନର fantsy ରେ ଯେତିକି physical element ରହିଛି, ସେତିକି ମାତ୍ରାରେ metaphysical aspects ରହିଛି । ସେଇଥିପାଇଁ ଗୋଟାଏ କ୍ଷତ ଅନ୍ୟ ଗୋଟାକ ପାଇଁ ଔଷଧ ହୋଇଯାଉଛି । ଗୋଟାକର ଯନ୍ତ୍ରଣା ଅନ୍ୟର ଆନନ୍ଦ ହେଉଛି । ମୁଁ ଯଦି ସୁସ୍ଥ ଅନୁଭବ କରୁନାହିଁ, ମୁଁ ତାହାର ଯଥାର୍ଥତା ପ୍ରମାଣିତ କରିପାରୁଛି । ଯଦି ମୁଁ ଗୋଟାଏ ମୁହୂର୍ତ୍ତର ମୁକ୍ତି ସହ ସ୍ୱର ସଂଯୋଜନା କରି ପାରୁଛି, ମୁଁ ଜୀବନର ସାମଗ୍ରିକ ସତ୍ତା ଅନୁଭବ କରିପାରୁଛି । ଯଦି ମୁଁ ମରିପାରୁଛି, ମୁଁ ମୋର ମୁକ୍ତିମାନଙ୍କୁ ଭେଟିପାରୁଛି ।

ଚିଠି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଗୋଆରୁ ଲେଖିଥିବା ଚିଠି ପାଇଛି । ତମେ ମୋର ଚିଠିକୁ ଅପେକ୍ଷା କରି ନିରାଶ ହେଉଥିବ । ଲେଖିବାକୁ ମୁଁ ସବୁବେଳେ passion ସଂଗ୍ରହ କରିପାରୁନାହିଁ । ବିଶେଷ କରି ସ୍ୱତନ୍ତ୍ର ବିଚାରଧାରା ସହ ନିଜର ଭାବ ବ୍ୟକ୍ତ କରିବା ବିଷୟରେ ମୁଁ ଭାରି ଅସହାୟ ମନେକରୁଛି ।

ଅତି ବିପଦଜନକ ଭାବେ ମୁଁ ମୋର ଜୀବନଯାତ୍ରା ଆରମ୍ଭ କରିଥିବାବେଳେ ଆଜି ମୁଁ ସାଧାରଣ ମୂଲ୍ୟବୋଧକୁ ଗ୍ରହଣ କରୁନାହିଁ । ଏତେ ବର୍ଷ ଧରି କେବଳ ଆବେଗ ଦ୍ୱାରା ପରିଚାଳିତ ହୋଇ ମୁଁ ଯେତିକିଟା କ୍ଳାନ୍ତ ଅନୁଭବ କରୁଛି, ସେତିକି ମଧ୍ୟ ନିଃସ୍ୱ ମନେକରୁଛି । ହୁଏତ world of creativity ରେ କେବଳ ଆବେଗ ବା ଧୀଶକ୍ତି ଯଥେଷ୍ଟ ନୁହେଁ । ଗୋଟାଏ 'Will to live'ର ଆବଶ୍ୟକତା ମଧ୍ୟ ଏଥିପାଇଁ ସର୍ବଦା ରହିଆସିଛି । ଏ ଜୀବନ ନିରର୍ଥକତାର ଏକ କାହାଣୀ ହେବା ପରେ ଏବେ ନିଜକୁ ସଂଗଠିତ କରିପାରିବା ଦୁଃସାଧ୍ୟ ହେଉଛି ।

ଅନେକ ଦିନ ପରେ ମୁଁ ଗତ କେତେ ଦିନର ଜହ୍ନରାତିମାନଙ୍କରେ ଶୋଇ ପାରିନାହିଁ । ଉଦାସ ଏବଂ ଭଗ୍ନଜାନୁ ହୋଇଯାଇ ମୁଁ ଯେମିତି ପୃଥିବୀର ଅନେକ ଚିରନ୍ତନ ସ୍ରୋତ ସହ ମିଳିତ ହୋଇ ପାରିନାହିଁ । ସ୍ୱପ୍ନମାନଙ୍କର ସମାପ୍ତି ହୋଇଚି । ଜଣେ romantic outsider ପାଇଁ ସତରେ କ'ଣ ସ୍ୱପ୍ନମାନେ ମରିଯାଆନ୍ତି । ମୁଁ ବୁଝେ ନାହିଁ ନିଜର ଯନ୍ତ୍ରଣା ଛଡ଼ା ଆଉ କେହି ନିଜର ଅଛି ବୋଲି । ନିଜକୁ ଅନାବିଳ କରି ଦେବାକୁ ହେଲେ କ୍ରସ୍ ଉପରେ ଝୁଲିବାକୁ ହୁଏ ଓ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ସଚେତନତାର ଯନ୍ତ୍ରଣାରେ ଆକ୍ରାନ୍ତ ହେବାକୁ ହୁଏ । ମୁଁ ମୁକ୍ତି ଖୋଜୁଛି କିନ୍ତୁ ମୁକ୍ତି ଏବଂ ଜୀବନ ଉଭୟେ ବିପରୀତଧର୍ମୀ । ମରିଯିବାଟା ଆଜି ମୋ ପାଇଁ ସବୁଠାରୁ ଶ୍ରେଷ୍ଠ ନିଷ୍ପତ୍ତି ହୋଇଯାଇଛି ।

'self-deception' କୁ John Updike 'couples'ରେ ଚମତ୍କାର ବର୍ଣ୍ଣନା କରିଛନ୍ତି । ତମେ କେବେ କ'ଣ ଭାବିନାହଁ ଯେ ଆଜିପର୍ଯ୍ୟନ୍ତ ବଞ୍ଚି ରହିବାଟା କେବଳ ଘୋର ପ୍ରବଞ୍ଚନା । ସଂସାରର କରୁଣ ନିୟମ ଓ ଅପରାଧମାନଙ୍କ ସହ ଲକ୍ଷ୍ୟ ଅଲକ୍ଷ୍ୟରେ ସନ୍ଧି କରିବାଟା ଗୋଟାଏ ପ୍ରତାରଣା । ଆମମାନଙ୍କର ସମ୍ପର୍କ (ରକ୍ତର ଓ ଆବେଗର) ମଧ୍ୟ ଏଇଭଳି ଏକ ନିଜଦ୍ୱାରା ସୃଷ୍ଟ ମୃଗତୃଷ୍ଣା । ମୁକ୍ତିର ପଥରେ ଏସବୁ ଗୋଲାପ ଗଛର କଣ୍ଟା ।

× × × ×

ତମର ଭାରତଦର୍ଶନ ଉପାଦେୟ ହୋଇଥିବ ବୋଲି ମୁଁ ଅନୁମାନ କରୁଛି । ତଙ୍କ ଚିଠିମାନଙ୍କରେ ଚମତ୍କାର ଭାଷା ରହିଆସିଛି; କିନ୍ତୁ objectivity ବହୁତ ପରିମାଣରେ ସେସବୁର ଗୁରୁତ୍ୱ ହ୍ରାସ କରୁଛି । ମୁଁ ଭାବୁଛି ତମେ ଖୁବ୍ ଭଲ ଲେଖୁଛ । ତମର ଚିଠିକୁ ମୁଁ ପ୍ରତିଦିନ ଅପେକ୍ଷା କରୁଛି ।

ଗୋପବନ୍ଧୁଙ୍କୁ ମଧ୍ୟ ଶୁଭେଚ୍ଛା ଜଣାଇଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କେଜାଣି କାହିଁକି ମୁଁ ଦିନକୁ ଦିନ ଭାରି ଅସହାୟ ମନେକରୁଛି । ଗୋଟାଏ ପାର୍ଶ୍ୱରେ ମୋର ନିଜର ସ୍ଥିତିପ୍ରଜ୍ଞତା ଓ ଅନ୍ୟ ପାଖରେ ମୋର କ୍ରମବର୍ଦ୍ଧିଷ୍ଣୁ ଆଦିମତା । ମୁଁ ଯେମିତି ଝରାପତ୍ର ଭଳି ବୃନ୍ତଚ୍ୟୁତ । ମୋର ଆଦିମତାକୁ ତମେ ଏକ ଅପରିହାର୍ଯ୍ୟ ଅଭିବୃଦ୍ଧି ବୋଲି ଗ୍ରହଣ କରିପାର, ମୋର ସ୍ଥିତପ୍ରଜ୍ଞତାକୁ ତମେ ଗ୍ରହଣୀୟ ନୁହେଁ ବୋଲି ମାନି ନେଇପାର ।

ହଠାତ୍ ଆକସ୍ମିକ ଭାବରେ ବିଂଝାଲ୍ (ଏ ଅଞ୍ଚଳର ଆଦିବାସୀ)ମାନଙ୍କର ଏକ ବିବାହ ଉତ୍ସବରେ ଯୋଗ ଦେଇଥିଲି । ସମ୍ଭବତଃ ଗୋଟାଏ ବର୍ଷର ସର୍ବଶ୍ରେଷ୍ଠ ଦିନ ହିସାବରେ ମୁଁ ଏହାକୁ ଗ୍ରହଣ କରିବି । କନ୍ୟା ବିଦାୟ ନେବାର ବେଳ । ତାହାକୁ ବିଶ୍ୱାସ ଓ ବନ୍ଧୁତା ଦେବା ପାଇଁ ଯେ ସମସ୍ତ ପ୍ରସ୍ତୁତି ହୋଇଛି, ଏକଥାକୁ ଜଣାଇ ଦେବାପାଇଁ ବରପକ୍ଷର ଅଭିଆଡ଼ୀ ତରୁଣୀମାନେ ଦଳବାନ୍ଧି ନାଚୁଥାଆନ୍ତି । ବାଦ୍ୟ ଓ ସଙ୍ଗୀତରେ ସାମାନ୍ୟ ଆଦିମତା ଓ ଉଚ୍ଛୃଙ୍ଖଳତା, କିନ୍ତୁ ଛନ୍ଦ ସେମାନଙ୍କର ନିର୍ଭୁଲ୍ । ସେମାନଙ୍କର ନାଚିବା ଓ ଗୀତ ଗାଇବାର ଶୈଳୀକୁ ମୁଁ ମୋ ଭିତରେ ବିଶ୍ଳେଷଣ କରୁଥିଲି । ଆଜି ସେସବୁ ଭିତରେ ବାହ୍ୟ ପ୍ରଭାବ ଯଥେଷ୍ଟ ଅଛି; କିନ୍ତୁ କେତେ ବର୍ଷ ପୂର୍ବେ ସେସବୁ ଅନାବିଳ ଓ ମୁକ୍ତ ନିଶ୍ଚୟ ହୋଇଥିବ ବୋଲି ମୁଁ ଭାବିପାରୁଛି ।

ସେମାନେ ସବୁ ନାଚୁଥିଲେ, ଅଣ୍ଟାରେ ହାତ ଭିଡ଼ି । ଗୋଡ଼ରେ ପାଉଁଜି, ହାତରେ ବଳା, ମୁଣ୍ଡରେ ସମ୍ବଲପୁରୀ ଖୋସା । ସବୁ ଚମତ୍କାର । ରାତିତମାମ୍ ସେମାନେ ନାଚି ନାଚି ତଥାପି ଯେମିତି କ୍ଳାନ୍ତ ନୁହଁନ୍ତି; ରାତିସାରା ଗୀତ ଗାଇଗାଇ ସେମାନଙ୍କ ସ୍ୱର ବିକୃତ ହୋଇନାହିଁ । ମୁହଁସବୁ ଉଜ୍ଜ୍ୱଳ, ଆଖିମାନେ ବ୍ରୀଡ଼ାବତୀ ନାରୀ ଭଳି ସଲଜ୍ଜ !

ସେମାନଙ୍କୁ ନିର୍ଲିପ୍ତ ଭାବରେ ଭଲ ପାଇହୁଏ ଆବେଗ ସ୍ତରରେ ସେମାନଙ୍କ ଭଳି ଆଦିମ ହୋଇଯିବାକୁ ଇଚ୍ଛା ତୀବ୍ର ହୁଏ । ବିବାହ ଦିନ ହେଉ ବା ଚଇତି ପର୍ବ ହେଉ, ସବୁଠି ସେଇ ଚଳଚଞ୍ଚଳତା । ଦାରିଦ୍ର୍ୟ ଓ କ୍ଷୁଧା ସତ୍ତ୍ୱେ ସେମାନେ ଯେମିତି ଆନନ୍ଦର ଅବତାର ।

× × × ×

ତମେ ଭାବୁଥିବ, ମୁଁ କାହିଁକି ଦିନକୁଦିନ ଗୋଟାଏ ଶୁଷ୍କ ସ୍ରୋତ ଭଳି ବିସ୍ତାରିତ ହେଉଛି । ବିଶ୍ୱାସ କର, ମୋ ପାଇଁ କେଉଁଠାରେ ମଧ୍ୟ ମୁଁ ଆଶ୍ରୟ ଖୋଜି ପାରୁନାହିଁ । ବୌଦ୍ଧିକ ସ୍ତରରେ ଜୀବନକୁ ଭଲ ପାଇବା ଭୀଷଣ କଷ୍ଟକର । ଜୈବିକ ସ୍ତରରେ ନିଜକୁ ସାମିଲ୍ କରିବା ମଧ୍ୟ ଜଟିଳ ବ୍ୟାପାର । ଏ ଭିତରେ ସନ୍ଧି କରିବା ମଧ୍ୟ ଅସମ୍ଭବ । ମୁଁ ମୋର ନିଜ ପାଇଁ ଦୁର୍ବୋଧ୍ୟ ହୋଇଯାଇଛି । ଏଇ ଦୁର୍ବୋଧ୍ୟତା ଭିତରେ ମୁଁ ଯେମିତି ମୋ ଉପରେ ଆକ୍ରମଣ କରୁଛି ଓ ଅନ୍ୟମାନଙ୍କ ଉପରେ ମଧ୍ୟ । ନିଜକୁ ମୁକ୍ତ କରିବାକୁ ହେଲେ ଏକମାତ୍ର ଉପାୟ ହେଉଛି ନିଜକୁ ହତ୍ୟା କରିବା । ନିଜର ଚେତନାବୋଧକୁ ଆହୁତି ଦେବା । ଜୀବନସାରା ମୁଁ ମୁକ୍ତ ବୋଲି ପ୍ରବଞ୍ଚନା କରିବି; ଅଥଚ ଦେହର କ୍ଷୁଧା, ମନର ପାପ, ଆତ୍ମାର ଅବିବେକିତାକୁ ନେଇ କେବଳ ଯନ୍ତ୍ରଣାଗ୍ରସ୍ତ ହୋଇରହିଯିବି । ତମମାନଙ୍କ ପାଇଁ ମୁଁ ବଞ୍ଚିରହିଛି ବୋଲି କହିପାରିବି ନାହିଁ । ମୋର ଆତ୍ମୀୟମାନଙ୍କର ସ୍ନେହ ମୋତେ ବାନ୍ଧି ରଖିଛି, ତାହା ମଧ୍ୟ ମୁଁ ସ୍ୱୀକାର କରୁନାହିଁ । ମୁଁ ଠିକ୍ ଏକ କିମ୍ଭୂତକିମାକାର ଜନ୍ତୁ, ଯିଏ ସୁଯୋଗ ଖୋଜୁଛି ନିଜକୁ ନିଜର ନଖଦନ୍ତ ଦ୍ୱାରା କେବଳ ଟିକିଟିକି କରିପାରିବ ।

× × × ×

ତମେ ମୋଠାରୁ ଯଥେଷ୍ଟ ସଂଖ୍ୟାରେ ଚିଠି ପାଉନାହଁ ବୋଲି ନିଶ୍ଚୟ କ୍ଷୁବ୍ଧ ହେଉଥିବ । ମୁଁ ଜାଣେ ତମର ଏକାନ୍ତ ସମୟମାନଙ୍କରେ ମୋର ଆବଶ୍ୟକତା ଅନୁଭବ କରିହେଉଥିବ । ଯେପର୍ଯ୍ୟନ୍ତ ମୋର ଶେଷ ନିଃଶ୍ୱାସ ଚାଲୁଛି, ବନ୍ଧୁତା ଉପରେ ମୋର ଅଖଣ୍ଡ ବିଶ୍ୱାସ କେବଳ ପ୍ରମାଣିତ ହେଉଥିବ । ତମମାନଙ୍କୁ ମୁଁ ଭଲ ପାଏ, ମୋତେ ବୁଝୁଥିବା ମଣିଷମାନଙ୍କର ସଂଖ୍ୟା ହ୍ରାସ ହୋଇଯିବା ପରେ ଏବେ ତମମାନଙ୍କ ପ୍ରତି ମୁଁ ସାମାନ୍ୟ ଶିଥିଳ ହୋଇଯାଇଛି, କିନ୍ତୁ ମୁଁ ବିମୁଖ ହୋଇନାହିଁ । ମୁଁ ମୋର ଲକ୍ଷ୍ୟପଥରୁ ଚ୍ୟୁତ ହୋଇନାହିଁ ।

ଲେଖିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମେ ବୋଧେ ମୋର ଚିଠିକୁ ଅପେକ୍ଷା କରୁଥିବ, ମୁଁ ଯେମିତି ତମର ଚିଠିକୁ ଅପେକ୍ଷା କରୁଛି । ତମେ ମୋତେ ଭୁଲି ଯାଇଥିବ, ମୁଁ ଯେମିତି ତମକୁ ମନେରଖିନାହିଁ ! ! ଏହା ଭାରି ଭଲକଥାଟିଏ ନିଶ୍ଚୟ । ଭଦ୍ରତା ଖାତିରରେ କିଛି ଆଜେବାଜେ ଲେଖିବା ଆଦୌ ବାଞ୍ଛନୀୟ ନୁହେଁ । ଆମେ ବରଂ ବର୍ଷ ବର୍ଷ ଧରି ନୀରବ ରହିଯିବା; କିନ୍ତୁ ଗୋଟାଏ ମଧ୍ୟ ଛଳନାକୁ ଆଶ୍ରୟ ଦେବା ନାହିଁ ।

ବାରମ୍ବାର ସ୍ୱାସ୍ଥ୍ୟହାନୀ ହେଉଥିବା ଘଟଣାରେ ମୁଁ ଆଦୌ ବିଚଳିତ ହେଉନାହିଁ । ଏ ଦେହର ଯନ୍ତ୍ରଣା ଉପଶମ ନହେଲେ ମଧ୍ୟ କିଛି ଯାଏ ଆସେ ନାହିଁ । ଜୀବନ ତାହା ବାଟରେ ଧ୍ୱଂସ ଆଡ଼କୁ ଗତି କରୁଛି, ମୁଁ ମୋ ନିଜସ୍ୱ ଉପାୟରେ ନିଜକୁ ସ୍ଥିତିହୀନ କରିଦେଉଛି । ଜୀବନ କାହା ସହ ସାଲିସ୍ କରୁନାହିଁ, ମୁଁ କାହା ସହ ମଧ୍ୟ ସାଲିସ୍ କରୁନାହିଁ । ତଥାପି ଜୀବନ ଓ ମୁଁ ଭିତରେ କିଛି ହେଲେ ସମ୍ପର୍କ ନାହିଁ । ଏ ବଞ୍ଚିବା ଆଉ ମୋର ହୋଇ ନାହିଁ ।

ବାହାରର ଜହ୍ନରାତି ଆଜି ଖୁବ୍ ମଳିନ । ଆକାଶରେ ଘନମେଘ, କିଛି କ୍ଷଣ ପୂର୍ବେ ଯେତେବେଳେ ସନ୍ଧ୍ୟା ନଇଁ ଆସିଥିଲା, ପଶ୍ଚିମାକାଶ ରକ୍ତିମ ହୋଇଗଲା । ଅତି ଅସ୍ୱାଭାବିକ ଭାବେ ସମ୍ମୋହିତ ହୋଇ ମୁଁ ଯେ ଭାବପ୍ରବଣ ହୋଇ ଯାଇଥାଆନ୍ତି, ତାହା କିନ୍ତୁ ଘଟିଲା ନାହିଁ । ବରଂଚ ମୋର ବାରଣ୍ଡାକୁ ଲାଗି ଥିବା ଅନାବନା ଗଛର ଅରଣ୍ୟରେ ସମ୍ମୋହିତ ହୋଇ ଚାରଣ କରୁଥିବା ହଡ଼ାଗାଈଟିକୁ ମୁଁ ଲକ୍ଷ୍ୟ କରୁଥିଲି । ଆହୁରି ମଧ୍ୟ ଲକ୍ଷ୍ୟ କରୁଥିଲି ମୋ ଘରକୁ ଲାଗି ରହିଥିବା ଭୃତ୍ୟ ଦମ୍ପତ୍ତିଙ୍କୁ । ସେମାନଙ୍କ ଭାଗ୍ୟରେ ଯେ ସନ୍ତାନସନ୍ତତି ନାହିଁ,ଏକଥାରେ ମୁଁ ବୋଧେ କିଛିଟା ଉଦାସ ହୋଇଯାଇଥିଲି । ଏଠାକାର ପରିବେଶରେ ଶୁଷ୍କତା ଅଛି, କ୍ଷୁଧା ଅଛି, ନିଷ୍ଠୁରତା ଅଛି; କିନ୍ତୁ ପ୍ରାଣପୀଡ଼ା ନାହିଁ ବା ଭଲ ପାଇବା ନାହିଁ । ମୁଁ ସଙ୍କୁଚିତ ହୋଇଯାଇଛି ।

କେତେ ଦିନ ହେବ ମୁଁ ଭାରି ଆନ୍ଦୋଳିତ ହୋଇଯାଇଛି । ଗୋଟାଏ ଉତ୍ତେଜନାରେ ମୁଁ ସୋନ୍ୟା ସହ ମୋର ସମ୍ପର୍କ ଛିନ୍ନ କରିଦେଲି । ଗୋଟାଏ ପ୍ରଗଲ୍‌ଭତାରେ ମୁଁ କିଛି ଦିନ ତଳେ ମୋର ଜନ୍ମଦାତାଙ୍କୁ ଅପମାନିତ କରିଥିଲି । ପାଇକମାଲ୍‌କୁ ଆସି କିଛି କାରଣ ନଥାଇ ମୁଁ ସମସ୍ତଙ୍କ ସହ କଳହ କରୁଛି ଓ ଚାକିରୀରୁ ଇସ୍ତଫା ଦେବା ସମ୍ପର୍କରେ ନିଷ୍ପତ୍ତି ନେଉଛି । ଯାହା ବି କିଛି ବଞ୍ଚିବାର ଅର୍ଥ ମୁଁ ମୋର ବୌଦ୍ଧିକ ଭଣ୍ଡାରରେ ସାଇତି ରଖିଥିଲି, ତାହାକୁ ଜାଳି ପାଉଁଶ କରି ଦେଉଛି । ଅତି ଅପଦାର୍ଥ ଭାବରେ ଭଲ ପାଇବା ଓ ମୁକ୍ତିକୁ ମୁଁ ଯେତେବେଳେ ଖୋଜି ପାଇପାରିଲି ନାହିଁ, ଅତି ଭୟଙ୍କର ମଣିଷରେ ମୁଁ ପରିଣତ ହୋଇଯାଇଛି । ମୋର ଭଲପାଇବାକୁ ଯଦି ଏ ପୃଥିବୀ ଗ୍ରହଣ କରିନାହିଁ,

ତେବେ ମୋର ବିକୃତ ବ୍ୟକ୍ତିତ୍ୱରେ ମଧ୍ୟ ସ୍ଥାନ ମିଳିବ ନାହିଁ । ମୋର ହିଂସାସମାହିତ ସ୍ଥିତି ମଧ୍ୟ କାହାକୁ ଗ୍ରହଣଯୋଗ୍ୟ ହେବନାହିଁ । ଏହା ନିଶ୍ଚିତ; କାରଣ ହିଂସା ଓ ନିଷ୍ଠୁରତା ପଛରେ ମଧ୍ୟ ମୋର ଅଦ୍‌ଭୁତ ଭଲ ପାଇବା ଓ ମୁକ୍ତି ଜଡ଼ିତ ହୋଇଛି ।

× × × ×

ଅତିଶୟ ଉତ୍‌କ୍ଷିପ୍ତ ହୋଇ ମୁଁ administration ବିରୁଦ୍ଧରେ ଆମର Programme Co-ordinator ଙ୍କ ପାଖକୁ ଲେଖିଥିଲି । ସେ ମଧ୍ୟ ଅତି ସ୍ୱାଭାବିକ ଢଙ୍ଗରେ ଉତ୍ତର ଦେଇଛନ୍ତି ଓ ମୋର 'Holier than Thou' attitude କୁ ନିନ୍ଦା କରିଛନ୍ତି । ମୁଁ ଯେଉଁଭଳି ବିଦ୍ରୋହ ଘୋଷଣା କରିଛି, ତାହା କାହାକୁ ଭଲ ଲାଗିବ ନାହିଁ । ତାଙ୍କ ସହ ମୁହାଁମୁହିଁ ହୋଇଗଲେ ଏ ଚାକିରୀର ଶେଷ କେବେ କହିହେବ । OXFAM ରେ ମୋର ବେଶୀ ଦିନ ଆଉ ବୋଧେନାହିଁ ।

Paulo Friere ଙ୍କ ପୌଢ଼ ଶିକ୍ଷାପ୍ରଣାଳୀକୁ ଆମର programme ରେ ନୀତିଗତ ଭାବେ ଅନ୍ତର୍ଭୁକ୍ତ କରାଯାଇଛି । ଏହା ଅକ୍ଟୋବର ପରେ ଆରମ୍ଭ ହେବ । ପ୍ରଥମେ ଆମେ ସବୁ ନିର୍ଲ୍ଲଜ ଭାବରେ କହୁଥିଲୁ (ବା ଦାବୀ କରୁଥିଲୁ) ଯେ ଏହି ଯେଉଁ movement ପଶ୍ଚିମଓଡ଼ିଶାରେ ଆରମ୍ଭ ହୋଇଛି ତାହାର ବାହକ ଆମେ ଓ ଗୋଟାଏ ନୂଆଯୁଗ ସୃଷ୍ଟି କରିବାରେ ଆମେ ପଥପ୍ରଦର୍ଶକ ! କିନ୍ତୁ ହଠାତ୍ ଆମେ ଅନୁଭବ କଲୁ ଯେ ଗୋଟାଏ ସମୟ ସୂଚୀ ଥିବା କାର୍ଯ୍ୟକ୍ରମରେ ଆମେ କିଛି କରିପାରିବୁ ନାହିଁ । ଏଥିପାଇଁ ଗାଁ ଗହଳିରେ Frierେଙ୍କ ବର୍ଣ୍ଣିତ 'change agent'ମାନଙ୍କର ଆବଶ୍ୟକତା ଅଛି । ତେଣୁ OXFAM ଏଠାରୁ କାର୍ଯ୍ୟଶେଷ କଲେ ମଧ୍ୟ ଅଟକିଯିବ ନାହିଁ । ଆଗରୁ ତ କହିଛି, professional social worker ହେବା ମୋ ଜୀବନର ଲକ୍ଷ୍ୟ ନଥିଲା । ଏମାନେ ଯେଉଁଭଳି ବ୍ୟବହାର କରୁଛନ୍ତି ଓ ଅତି ଉଲଗ୍ନ ଭାବରେ କ୍ରୀତଦାସତ୍ୱ ଗ୍ରହଣ କରୁଛନ୍ତି, ଆଦର୍ଶଗତ ପ୍ରଶ୍ନଗୁଡ଼ିକ ଅତି କରୁଣ ଭାବରେ ସମାଧି ନେଉଛି । କେତେ ଜଣ ତଥାକଥିତ ସମାଜସେବୀ ଅର୍ଥନୈତିକ ଫାଇଦା ହାସଲ ପାଇଁ ଏଠାକାର status quo କୁ କେବଳ perpetuate କରୁଛନ୍ତି । ଅତି ସହଜଭାବରେ ସେମାନେ ଏ ପୃଥିବୀକୁ ଫାଙ୍କି ଦେଉଛନ୍ତି ।

Paulo Friere ଙ୍କର ଶିକ୍ଷା ସମ୍ପର୍କରେ ଲେଖାମାନ ମୁଁ ପଢ଼ିଛି । ଆମର ଲାଇବ୍ରେରୀରେ ମଧ୍ୟ ତାହା ଭାରି ସତର୍କତା ସହ ସଂଗୃହୀତ ହୋଇଛି । ତମେ ବୋଧେ ଜାଣିନାହଁ ଯେ ସେ ଲାଟିନ୍ ଆମେରିକାରେ ଏହାକୁ ପରୀକ୍ଷା କରି ବିଫଳ ହୋଇଥିଲେ । ବିଭିନ୍ନ ସ୍ଥାନମାନଙ୍କରେ peasant workshop ମାନ ମୁଣ୍ଡ ଟେକିଥିଲା ଓ ପ୍ରତିବାଦର ସ୍ୱର ମଧ୍ୟ କିଛି ଦୂରକୁ ଶୁଭିଥିଲା । କିନ୍ତୁ ସହଯୋଗ ଅଭାବରୁ ଅରାଜକତା ନାମରେ ତାହା ଦବାଇ ଦିଆଯାଇଥିଲା ଓ ଫଳତଃ ଏକଛତ୍ରବାଦ ଶାସନକଳକୁ ଗ୍ରାସ କରିଥିଲା ।

Problematization ଓ Dialogue ସମ୍ପର୍କରେ କିଛିଟା ନୂଆ କଥା ନାହିଁ । ତେବେ ଏହାକୁ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ କରିବାକୁ ଯେଉଁଭଳି ନେତୃତ୍ୱ ଦରକାର (Humanized Leadership), ତାହାର ଘୋର ଅଭାବ ରହିଛି । ମୁଁ ବେଳେବେଳେ ଏ ଚିନ୍ତାଧାରାର ପ୍ରଭାବରେ ଭାରି ଉତ୍ତେଜିତ ହୋଇଥାଏ । କିନ୍ତୁ OXFAM ର cadre based system ଭିତରେ ମୁଁ ଭାରି ଅସନ୍ତୁଷ୍ଟ ହୋଇପଡ଼େ ଓ ଭାରି ଅଣନିଃଶ୍ୱାସୀ ହୋଇଯାଏ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଅନୁପସ୍ଥିତିରେ ଏ ଚିଠି ମସୌରୀରେ ପହଞ୍ଚିବ । ତମର ଚିଠିର ଉତ୍ତର ମଧ ମୁଁ ଲେଖିପାରି ନାହିଁ । ତମେ କୁଲୁମନାଲିର ଅଭିଜ୍ଞତା ଯେ ମୋ ପାଖକୁ ଜଡ଼ିତ ହୋଇ ଲେଖିପାରିବ, ସେଥିରେ ମୋର ଦ୍ୱିମତ ନାହିଁ; କିନ୍ତୁ ଆଗରୁ ତ ତମକୁ ଜଣାଇଛି ଯେ ଅଭିଜ୍ଞତା ଓ ପ୍ରକାଶ କରିବାର କ୍ଷମତା ଉଭୟେ ଅସଂଲଗ୍ନ । ତୁମେ ବୁଝୁଥିବ ।

ତମପାଖକୁ ଯିବାକୁ ଯୋଜନା କରୁଥିବାରୁ ମୁଁ ତାଳଚେର ଯାଉନାହିଁ । ଏକେତ ଛୁଟିର ଅଭାବ । ତା'ପରେ ମୁଁ ବି ଗୋଟାଏ ପ୍ରକାରର ଆର୍ଥିକ ଶୋଚନୀୟତା ଦେଇ ଗତି କରୁଛି । କିନ୍ତୁ ତମ ପାଖକୁ ଯିବାଟା ମୁଁ ଗୁରୁତର ସହ ଚିନ୍ତା କରୁଛି । ଅନେକ ଦିନ ପରେ ତମସଙ୍ଗେ ବୋଧେ ଦେଖାହେବ, କହିବାର ଅନେକ କିଛି ଥାଇ ମଧ କହିହେବ ନାହିଁ । ମୋର ବେଳେବେଳେ ଭୟ ହୁଏ ଯେ ତମେ ଗୋଟାଏ ଆବର୍ତ୍ତ ଭିତରେ ପଡ଼ିଯାଉଛ । କ୍ରମେ ତମେ ଆଗରୁ ଲୁକ୍‌କାୟିତ ହୋଇ ରହିଥିବା ଗୋଟାଏ ଫାନ୍ଦରେ ଜାଣି ଜାଣି ଧରାଦେଉଛ । ତମେ ଅତି ସାଧାରଣ ଚେତନା ସ୍ତରକୁ ଓହ୍ଲାଇଆସୁଛ ।

ପ୍ରଫୁଲ୍ଲ Jean Christopher ବହିକୁ ମୋର ଜୀବନକାହାଣୀ ସହ ତୁଳନା କରିବାକୁ ପଛଘୁଞ୍ଚା ଦିଏ ନାହିଁ । ସେ ବୋଧେ ଭାବେ ଯେ Jean ଭଳି ମୁଁ ଅତି କ୍ରମାଗତ ଭାବେ ଗୋଟାଏ ଚେତନା ସ୍ତରରୁ ଆଉ ଗୋଟାଏ ଚେତନାସ୍ତରକୁ ଉଠୁଛି ଓ ଏ ଉଠିବାର ସଂଘର୍ଷ ଓ ଉତ୍ତେଜନା ଦ୍ୱାରା ଭାରି ଦୁଃଖ ପାଉଛି । ତା' ଜୀବନ ପ୍ରତ୍ୟୁଷରେ (The Dawn) ସେ ହୁଏତ ସଙ୍ଗୀତ ଆବିଷ୍କାର କରୁଛି ।

*"Everything is music for the born musician. Everything that throbs, or mores, or stirs, or palpitats-sunlit summer days, the nights when the wind howls, slikering light, the twinkling of stars,*

*the sterms, the song of birds, the buzzing of insects, the murmuring of trees, voices, loved or loathed, familiar fireside sounds, a creaking door, blood moving in the veins in the silence of the night-everything that is music...."*

ଏଇ ସଙ୍ଗୀତକୁ ଆଧାର କରି ତାହାର ଜୀବନ ଗଢ଼ି ଉଠିଛି । ଏ ପୃଥିବୀରେ ସେ ନିଷ୍ଠୁର ଭାବେ ଆବିଷ୍କାର କରିଛି ଯେ କେତେଜଣ ଏଠାରେ ଆଦେଶ ଦିଅନ୍ତି । ଅନ୍ୟମାନେ ତାହା ପାଳନ କରନ୍ତି । Jeanକୁ ଜୀବନର ମନୋରମ ସକାଳରେ ଭଗବାନ୍‌ଙ୍କର ଅସ୍ତିତ୍ୱକୁ ପ୍ରଶ୍ନ ପଚାରିବାକୁ ହୋଇଛି ।

*"Life was a battle without armistice, without mercy, which he who wished to be a man worthy of the name of a man must for every fight against whole armies of invisible enemies: against the murderers forces of Nature, uneasy desires, dark thoughts treacherously leading him to degradation and destruction."* ସେ ଭାବୁଛି : *"Go on to Death, you who must die ! Go and suffer; you who must suffer ! you do not live to be happy. You live to fulfil my Law; die. But what you must be-a Man."* Jeanକୁ ମଣିଷ ହେବାକୁ ପଡ଼ିଛି ।

Jean Christopher ସହ ମୋର ସାମଞ୍ଜସ୍ୟ ଥିବା କଥା ମୁଁ ଜାଣେ ନାହିଁ । ତଥାପି ମୁଁ ଏ ବହିକୁ ଶାମୁକାଗତିରେ ପଢୁଛି ଓ ପ୍ରଭାବିତ ମଧ୍ୟ ହେଉଛି । ଦସ୍ତୋଭସ୍କିଙ୍କର କେତେଗୁଡ଼ିଏ ଉକ୍ତିର Anti-thesis କୁ ଲେଖାଯାଇଛି ଏଠାରେ । କ୍ରମେକ୍ରମେ ଯୌବନରେ ପଦାର୍ପଣ କରୁଛି Jean । ଅତିକ୍ରାନ୍ତ ଜୀବନର ଫାନ୍ଦରେ ଶିକାର ହେଉଛି ସେ । ପ୍ରବୃତ୍ତିର ଦାସ ହୋଇଯାଉଛି ସଚେତନ ଭାବେ । ପୁଣି ଆସନ୍ତା ଥରକୁ ଲେଖୁଛି ।

× × × ×

ଆମର staff meeting ହେଉଛି ୧୭ରୁ ୨୧ ତାରିଖ ପର୍ଯ୍ୟନ୍ତ । ସେଇଦିନ (୨୧ ତାରିଖ) ମୁଁ ଦିଲ୍ଲୀଯାତ୍ରା ଆରମ୍ଭ କରିବି ବୋଧେ । ୨୩/୨୪ ଅମ୍ଳାନ ସାଙ୍ଗରେ କାଟିବି । ୨୫/୨୬ତମ ସାଙ୍ଗରେ ୨୮/୨୯ ସୁଦ୍ଧା ମୋତେ ଫେରିବାକୁ ହେବ । ତମେ ଏହିସବୁ ଦିନମାନଙ୍କରେ ସାଙ୍ଗରେ ରହିପାରିବ କି ନାହିଁ ଲେଖିଥିବ । ତା'ହେଲେ ଯୋଜନାର ପରିବର୍ତ୍ତନ କରିବା ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଦସ୍ତୋଭସ୍କି ଯଦି ନିତ୍ସେଙ୍କ ଭଳି 'non-believer' ହୋଇଥାଆନ୍ତେ, ତେବେ 'The devils'ର ଅନ୍ତିମ ପୃଷ୍ଠାଗୁଡ଼ିକ ଏତାଦୃଶ କରୁଣ ହୋଇ ନ ଥା'ନ୍ତା । ବାଇବେଲ୍‌ରୁ 'ସଇତାନ୍'ର ମଣିଷ ଦେହକୁ ପ୍ରବେଶ କିମ୍ବଦନ୍ତୀକୁ ଆଧାର କରି ଏ ବହି ଲେଖା ହୋଇଛି ସତ କିନ୍ତୁ ଦସ୍ତୋଭସ୍କି ତତ୍‌କାଳୀନ ରୁଷୀୟ ସମାଜକୁ 'possessed' ବୋଲି ଗ୍ରହଣ କରିଛନ୍ତି ଏବଂ ଇତସ୍ତତଃ ଭାବେ ଉନ୍ମେଷିତ ହେଉଥିବା ବିପ୍ଳବର ଏକ ରୁଗ୍‌ଣ ଚିତ୍ର ପ୍ରଦାନ କରିଛନ୍ତି । ସେ ହୁଏତ ସତକଥା ଲେଖିଛନ୍ତି । ପରବର୍ତ୍ତୀ କାଳରେ ବିପ୍ଳବ ସେଠାକାର ମୂଲ୍ୟବୋଧକୁ ଅତିକଠୋର ଭାବେ ପଙ୍ଗୁ କରିଦେଇଛି ବୋଲି ଅନୁମାନ କରିହେଉଛି । ସେ ଯାହାହେଉ ପଛକେ, ଏ ବହିର ଦୁଇଟି ମୁଖ୍ୟ ଚରିତ୍ର ଜୀବନର ଅନ୍ତିମ କାଳରେ ଅନୁତାପ ଓ ଅନୁଶୋଚନା ଦ୍ୱାରା 'ସଇତାନ୍' କବ୍‌ଳରୁ ଉଦ୍ଧାର ପାଇଛନ୍ତି । ସେମାନେ ମରିଛନ୍ତି ସତ, କିନ୍ତୁ ଅତିଶୟ ଯନ୍ତ୍ରଣା ବି ପାଇଛନ୍ତି । ମୁଁ ଏହା ପର ଚିଠିରେ ଗୋଟାଏ ଚରିତ୍ରକୁ ଉପସ୍ଥାପନା କରିବି ବୋଲି ଯୋଜନା କରୁଛି ।

× × × ×

Stepan Verkhovensky ଙ୍କୁ ବହିରେ ସମସ୍ତ ସଇତାନପଣିଆର ସୃଷ୍ଟିକର୍ତ୍ତା ହିସାବରେ ନିଆଯାଇଛି । ତାଙ୍କର ଅଧ୍ୟୟନ ଓ ଅଧ୍ୟାପନା, ଅନୁଭୂତି ଓ ଅନୁପ୍ରେରଣା ସମାଜରେ ତାଙ୍କର ଉଚ୍ଚସ୍ଥାନ ନିରୂପଣ କରିଛି । ପିଲାଦିନରୁ St Luke ପଢ଼ିଲାବେଳେ gospelଙ୍କର devils ସମ୍ପର୍କରେ ଏକ କାହାଣୀ ଦ୍ୱାରା ପ୍ରଭାବିତ ହୋଇଛନ୍ତି । ସେଦିନରୁ ସେ ଜୀବନର ପ୍ରତ୍ୟେକ ପଦକ୍ଷେପରେ ସେହି devils କୁ ଦେଖିଛି । ତାଙ୍କର ସବୁ ସମ୍ପର୍କ ପଛରେ ଭୋଗଲାଳସା ବା ସଂକୀର୍ଣ୍ଣତା ରହିଯାଏ । ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିବା ଉଦ୍‌ଭ୍ରାନ୍ତ ଯୁବକମାନେ ପରିଶେଷରେ ଜଣେ ଜଣେ devils ହୋଇଯାଆନ୍ତି ।

ସେ କହନ୍ତି : *"These devils who go out of the sick man and eater the swine, those are all the sores, all the poisonous exhalations, all the impurities, all the big and little devils, that have accumulates in our great and beloved invalid, in our Russia, for centuries, for centuries... But a great idea and a great will shields her from on high, as with the madman possessed of the devils, and all those devils, all those impurities, all those abominations that were festering on the surface, all of them will themselves ask to enter into the swine. And, indeed, they may have entered into them already! There are we, we and them and perhaps I at the head of them all and, we shall cast ourselves down, the raving and the possessed, from the clift into the sea*

*and shall all be drowned, and serves us right, for that is all we are good for."*

ତାଙ୍କ ଜୀବନର ଅନ୍ତିମ ଯାତ୍ରାକୁ ଦସ୍ତୋଭସ୍କି ଯଥାର୍ଥ ଭାବେ 'Stepan Verkhovensky's Last Pilgrimage' ବୋଲି ନାମିତ କରିଛନ୍ତି । ଏଇ ଯାତ୍ରାକାଳ ଭିତରେ ତାଙ୍କର ସ୍ୱୀକାରୋକ୍ତି, ତାଙ୍କର ଅର୍ଦ୍ଧସଚେତନତାର ପ୍ରଳାପ ଭାରି ଜୀବନ୍ତ ହୋଇଛି । ସବୁ ବିକ୍ଷିପ୍ତ ସୂତାଖିଅକୁ ଏକାଠି କରି ସେ ପୁଣି ତାଙ୍କର ଜୀବନକୁ ପୁନରୁଦ୍ଧାର କରିଛନ୍ତି । ଗୋଟାଏ ପାରମ୍ପରିକ aesthetics ରେ ପୁଣି ତାଙ୍କର ବିଶ୍ୱାସ ଫେରିଆସିଛି ।

*"God is necessary to me, if only because he is the only being whom we can love eternally... My immortality is necessary for only because God would not do anything unjust to extinguish completely the flame of love for him and kindled in my heart. And what is more precious than love ? Love is higher than existence. Love is the crown of existence. And how is it possible that existence should not be subjected to it ? If I have came to love Him and rejoice in my love- is it possible that He should extinguish both me and my joy and turn us into nothingness ? If God exists, then I, too, am immortal !....*

*To know every moment, and to believes that somewhere there exists perfect peace, and happiness for everyone and for everything, is much more important to a man than his own happiness. The whole law of human existence consists merely to making it possible for every man to bow down before what is infinitely great. If Man were to be deprived of the infinitely great, he would refuse to go on living, and die of despair. The infinite and the immeasurable is as necessary to man as the little planet which he is habits. My friends – all, all my friends ! long live the Great Idea ! The eternal, immeasurable Idea !"*

× × × ×

ଏହାପରର ଜୀବନ ସମ୍ପର୍କରେ ମୁଁ ସମ୍ପୂର୍ଣ୍ଣ ଅନ୍ଧକାରରେ ରହିଛି । ଭାବୁଛି spiritualisation ରେ ଗୋଟେ ପରୀକ୍ଷା କଲେ ହୁଅନ୍ତା । ଦେହ ଓ ମନକୁ ଆହୁତି ଦେଲେ କୁଆଡ଼େ ଆତ୍ମାକୁ ଛୁଇଁହୁଏ । ଏହା ନିଶ୍ଚୟ ଭାରି exciting । ତମେ ମତାମତ ଲେଖିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମର ଚିଠି ପାଇ ମଧ୍ୟ ନ ଲେଖି ପାରିବାଟାକୁ ମୁଁ ନିଷ୍କ୍ରିୟତା ବୋଲି କହିବି । ଏଠାକାର ପରିସ୍ଥିତି ସମ୍ପର୍କରେ ମୁଁ ଯେତିକି ଉଦାସୀନ ହୋଇପଡୁଛି, ମୋର ସୃଜନୀଶକ୍ତି ସେତିକି ମାତ୍ରାରେ ହ୍ରାସ ପାଉଛି । ତିନିଦିନ ଧରି ଟୁରିଷ୍ଟ ବଂଗ୍ଳୋରେ ଆମେ ଆମ ପଶ୍ଚିମ ଓଡ଼ିଶା କାର୍ଯ୍ୟକ୍ରମ ପାଇଁ evaluation indicators ପ୍ରସ୍ତୁତ କରୁଥିଲୁ । ତର୍କ ଓ ତର୍ଜମାରେ ଯେମିତି ଆମର ମନେହେଲା ଯେ ମାଟିପିଣ୍ଡୁଳା ଭଳି ଆମକୁ ଗୋଟାଏ ଛାଞ୍ଚରେ ପକାଇ ଦିଆଯାଉଛି । ଆମେସବୁ ବିଭିନ୍ନ Cadre based Professional worker ମାନଙ୍କର ଭଣ୍ଡାମୀ ଭିତରେ ଆତ୍ମସମର୍ପଣ କରିବା ପାଇଁ ଯେମିତି ଏଇଠି କାର୍ଯ୍ୟ କରୁଛୁ । ଗୋଟାଏ କାର୍ଯ୍ୟକ୍ରମ କେତେବେଳେ ଗୋଟାଏ ଆନ୍ଦୋଳନ ହୋଇପାରିବ, ତାହା ଆମେ କେହି ଜାଣୁନାହିଁ । ସାଧାରଣ ମଣିଷଟିଏ ଯିଏକି ଏତେ ଦିନ ଧରି ସାଂସ୍କୃତିକ ନୀରବତା ଭିତରେ ଆତ୍ମଗୋପନ କରିଛି ସେ ତାହାର ପରିବେଶ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିପାରିବ, ଏ ବିଷୟରେ ଆମେ ଏତେ ଦିନ ଧରି କେବଳ ବୌଦ୍ଧିକ ସ୍ତରରେ ପର୍ଯ୍ୟାଲୋଚନା ହିଁ କରୁଛୁ । କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଆମେ ଯେମିତି କେଉଁ ଦକ୍ଷବ୍ୟବସାୟୀ ଭଳି ଏଠାରେ ଅକ୍ସ୍‌ଫାମ୍‌ର ଉପନିବେଶବାଦକୁ ପ୍ରଚାର କରୁଛୁ ।

× × × ×

ଶୀତ ସକାଳରେ ଏଠାରେ ଯେତେବେଳେ ପୃଥିବୀର ନିଦ୍ରାଭଗ୍ନ ହୁଏ, ଯେତେବେଳେ ପାହାଡ଼ର ଅପରପାର୍ଶ୍ୱରେ ସୂର୍ଯ୍ୟର ଲାଳିମା ଗୋଟାଏ ତରଙ୍ଗଭଳି ପ୍ରସାରିତ ହୋଇଯାଏ ଓ ଯେତେବେଳେ ମୁଁ ମୋର ରାତିତମାମ୍‌ର ସଚେତନତାକୁ ସାଉଁଟି ଡଷ୍ଟବିନ୍ ଭିତରକୁ ଫୋପାଡ଼ିବା ପାଇଁ ପ୍ରସ୍ତୁତ ହୁଏ, ବୋଧେ ସେତେବେଳେ ମୋ ପାଇଁ ଏ ପୃଥିବୀଟା ଭାରି ଅଚିହ୍ନା ଜଣାପଡ଼େ, ସବୁକିଛି ଅପହଞ୍ଚ ବୋଲି ପ୍ରତୀୟମାନ ହୁଏ । ରାତିରେ ସବୁ କିଛି ଫିକା ଜହ୍ନ ଆଲୁଅର, ଅନ୍ଧାରୁଆମାନଙ୍କର, ମୋ ଭଳି ବିକୃତ ମଣିଷମାନଙ୍କର । ମୁଁ ଜାଣେ ଜୀବନର ଅର୍ଦ୍ଧାଧିକ ସମୟ ଏ ରାତିମାନଙ୍କ ପାଇଁ, ମୋ ପାଇଁ ନୁହଁ । ମୁଁ କିଛି ନୁହେଁ, ଦିନରେ ନୁହେଁ ବା ରାତିରେ ନୁହେଁ ।

ସେମାନେ କିନ୍ତୁ ପ୍ରାଣ ଭରି ବଞ୍ଚିବାକୁ ଭଲ ପାଆନ୍ତି । ବଞ୍ଚିରହିବାର ଯେଉଁ ଜୀବନସଙ୍ଗୀତ ସେମାନେ ପ୍ରତି ମୁହୂର୍ତ୍ତରେ ଶୁଣିପାରନ୍ତି । ପାହାଡ଼ ଏଇଠି ସବୁକିଛି । ତଙ୍ଗର ତଳର ସମତଳ ପଦବାଚ୍ୟ କେଉଁ ବର୍ଗ ଇଞ୍ଚ ସ୍ଥାନ ସବୁ କିଛି ନୁହେଁ । ସେମାନେ ଜନ୍ମ ହୁଅନ୍ତି ଏକ ବିକଳାଙ୍ଗ ଜୀବ ଭାବରେ । ଗୋଡ଼ହାତ କାଉଁରୀହାଡ଼ ଭଳି । ପେଟଟି ହାଣ୍ଡି ସଦୃଶ ବର୍ତ୍ତୁଳାକାର । ସେମାନେ ମଧ୍ୟ ଭଲ ପାଆନ୍ତି ମଉଳି ଆସୁଥିବା ସକାଳର କଇଁଫୁଲମାନଙ୍କୁ । ସେମାନେ ମଧ୍ୟ କାହାକୁ ତାହାର ମାଳା କରି ଉପହାର ଦିଅନ୍ତି ।

ସେମାନେ ମଧ୍ଯ ଜନ୍ମ ନିଅନ୍ତି ଓ ମାଆ ହୁଅନ୍ତି । ସେମାନେ ଭୁଲିଯାଆନ୍ତି ଯେ ଏ ସନ୍ତାନର ଜନକ ସ୍ୱାମୀ ଛଡ଼ା ଅନେକ ହୋଇପାରନ୍ତି । କିନ୍ତୁ କଅଁଳିଆ ସୂର୍ଯ୍ୟକିରଣରେ ସେମାନେ ମଧ୍ଯ ଶିଶୁଟିକୁ ସ୍ତନ୍ୟଦାନ କରନ୍ତି ।

× × × ×

*Some extracts from 'Jean Christopher'*

*"The flickering light of the garden is dead. All is dead... Night ...The abyss... Neither light not consciousness... Being. The obscure, devouring forces of Being. Joy all powerful. Joy rending. Joy which sucks down the human creature as void a store. The spout of desire sucking up thought. The absurd delicious law of the blind entoxicated worlds which go rolling through the night...*

*A night which is many nights, hours that are centuries, seconds, which are death... Dreams shared, words spoken with eyes closed, tears and laughter, the happiness of loving in the voice, of sharing the nothingness of sleep, the swiftly passing images floating in the brain, the hallucinations of the roaring night..."*

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ବେଳେ ବେଳେ ମୁଁ ଆଶ୍ଚର୍ଯ୍ୟ ହୋଇଯାଏ, ଯେତେବେଳେ ମୁଁ ଉପଲବ୍ଧି କରେ ଯେ ଆମେ କେହି କାହାପାଇଁ ଅପରିହାର୍ଯ୍ୟ ନୁହଁନ୍ତି । ସଂସାରର ଯେଉଁ ନିଷ୍ଠୁର ସ୍ଥିତିବାଦ ଶାସନ କରୁଛି, ସେଠାରେ ପରସ୍ପର ପାଇଁ କେତୋଟି ନଗଣ୍ୟ ଦରଦ ଛଡ଼ା ଆମେ ଆଉ ଯେମିତି ଲିପ୍ତ ହେବାପାଇଁ ସମ୍ପୂର୍ଣ୍ଣ ନାରାଜ । ଜୀବନଯନ୍ତ୍ରଣାରେ ନିଜେ ସମ୍ପୂର୍ଣ୍ଣ ଏକାକୀ, କାହାକୁ ଭାଗ ଦେଇ ହୁଏନାହିଁ, କାହା ସହ ଅଂଶୀଦାର ମଧ୍ଯ ହେବା ସମ୍ଭବପର ହୁଏନାହିଁ । ଏପ୍ରକାର ଆତ୍ମକୈନ୍ଦ୍ରିକତା ବୋଧେ ଭଲ । କାହା ଉପରେ ବୋଝ ଲଦିଦେବା ଅମାନୁଷିକତା ।

ସେଦିନର ରାତିଟି ସେ ଗାଁର ସେ ପଡ଼ାର ଲୋକମାନଙ୍କ ସହ ମୁଁ କାଟିଲି । ଉପରେ ନିର୍ମେଘ ନକ୍ଷତ୍ରଖଚିତ ଆକାଶ । ବାହାରେ ଏକ ନିର୍ମମ ନିର୍ଜନତା । ଶୀତର ହାଲୁକା ସ୍ପର୍ଶ । ଆମେ ଉଷୁମ ଟାଣିବା ପାଇଁ କାଠଗଡ଼ାରେ ନିଆଁ ଧରାଇଲୁ, ଚଷୁ ପକାଇଦେଲୁ । ଧୂଆଁ ଉଠିଲା; ନିଆଁ ଉଠିବାକୁ ଅନେକ ଡେରି । ଆମେ ସବୁ ଅସ୍ପଷ୍ଟ

ସ୍ୱରରେ ଆଳାପ ଆରମ୍ଭ କଲୁ । ମୁଁ ଜାଣେ ମୋର ନିଜର ବୋଲି କିଛି ନାହିଁ, କାହାଣୀଟିଏ ଫାନ୍ଦି ମଧ୍ୟ କହିପାରିବା ମୋ ଦ୍ୱାରା ହେବନାହିଁ । ସେମାନେ କିନ୍ତୁ ମୋ ଠାରୁ ଶୁଣିବା ପାଇଁ ଆଗ୍ରହୀ । ମୋ ପାଇଁ ସେମାନଙ୍କର ଅସୀମ ଧୈର୍ଯ୍ୟର ଭଣ୍ଡାର । କିନ୍ତୁ ମୋ ପାଟିରୁ ଶବ୍ଦଟିଏ ମଧ୍ୟ ସ୍ଫୁରିଲା ନାହିଁ । ସେମାନେ ନିରାଶ ହେଲେ ବୋଧେ, ସେମାନେ ପର ବୋଲି ମନେକଲେ । ତଥାପି ମୁଁ ପଦଟିଏ ମଧ୍ୟ ଉଚ୍ଚାରଣ କରିପାରିଲି ନାହିଁ ।

ଆମେ ସବୁ ରାତି ପାଇଁ ଅଚିହ୍ନା ହୋଇଯାଉଥିଲୁ । କ୍ରମଶଃ ଶତାବ୍ଦୀ ଶତାବ୍ଦୀର ଅହଙ୍କାର, ଅଭିମାନ, ଭୟ ଓ ଦ୍ୱେଷ ଯେମିତି ଆମରି ଭିତରେ ପୁଞ୍ଜିଭୂତ ହେଉଥିଲା । ଆମ ଭିତରେ ଯେମିତି ଅଦୃଶ୍ୟ ଭାବେ କାନ୍ଥ ଗଢ଼ା ହେଉଥିଲା ।

× × × ×

Jean Christopher ର ଦୁଇଟି volume ଶେଷ କରିଛି । ଆଉ ଦୁଇଟି ଏବର୍ଷ ଶେଷ ପୂର୍ବରୁ ମୁଁ ପଢ଼ିପାରିବି । ଏବେ Scott Fitzgeraldଙ୍କ 'The Beautiful and Damned' ପଢୁଛି । 'Love Story' ସହ କେତେକାଂଶରେ ଏହାର ସାମଞ୍ଜସ୍ୟ ରହିଛି । ୧୯୭୯ ପାଇଁ ମୁଁ Complete Works of Shakespeare ଆଣିଛି । Kafkaଙ୍କର ଗ୍ରନ୍ଥାବଳୀ ମଧ୍ୟ ଆଣିବି । ଏହାଛଡ଼ା କେତେଗୁଡ଼ିଏ development and social changeର ବହି ପଢ଼ିବାକୁ ମୁଁ ନିଷତ୍ତି କରୁଛି । M.N. Srinivasଙ୍କ ଦ୍ୱାରା ସଙ୍କଳିତ 'Dimensions of Social Change In India' ପଢୁଥିଲି । ସେଥିରେ 'Social Change and Diagnostic Research' ବୋଲି Ramkrishna Mukherjeeଙ୍କ ପ୍ରବନ୍ଧଟିଏ ଅଛି । ତମେ ସୁଯୋଗ ପାଇଲେ ପଢ଼ିବ ।

Rural Development ବିଷୟରେ ମୁଁ ତମକୁ "Attacking Rural Poverty" by Coombs and Ahmed ପଢ଼ିବାକୁ ପ୍ରସ୍ତାବ ଦେଉଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଘରକୁ ଛୁଟିରେ ଆସିଛି । ତମକୁ ଛାଡ଼ି ଆସିବା ପରେ ମୁଁ ବାଟସାରା ଅନେକ କିଛି ଭାବୁଥିଲି । ଗୋଟାଏ ଅସତ୍ୟ ପୃଥିବୀରେ ମୋର ସ୍ଥାନ ନିରୂପଣ କରୁଥିଲି । ଏଇମିତି ଗୋଟାଏ ଯାତ୍ରା ଯାହାର ଜୀବନ ସହ ଆବେଗମୟ ସମ୍ପର୍କ ନାହିଁ, ଯାହାର ଆତ୍ମା ସହ ପରିଚୟ ନାହିଁ, ସେଥିରେ ଜଡ଼ିତ ହୋଇପାରିବାଟା ସମ୍ଭବ ନୁହେଁ । ଅନ୍ତତଃ ମୁଁ ପାରୁ ନାହିଁ ।

ଇଣ୍ଟରଭ୍ୟୁରେ ମୁଁ ଜାଣିଶୁଣି ଖରାପ କରିବାଟା ଆଦୌ ଭୁଲ ହୋଇ ନାହିଁ । ଯେଉଁ ମୁକ୍ତିର କଥା ମୁଁ ସ୍ୱପ୍ନ ଦେଖୁଥିଲି ତାହା ମୁଁ ଏଇଭଳି ଏକ ଚାକିରୀରେ ପାଇବାଟା ସମ୍ଭବ ନୁହେଁ । ଭଲ ହେବ ଯଦି ମୁଁ ନ ପାଏ । କିନ୍ତୁ ପାଇଗଲେ ପୁଣି ଦ୍ୱନ୍ଦ୍ୱରେ ପଡ଼ିଯିବାକୁ ହେବ । ଅନେକଙ୍କୁ ଅନେକ ପ୍ରଶ୍ନର ଉତ୍ତର ଦେବାକୁ ହେବ । ମୁଁ ଗୋଟାଏ ପଦାର୍ଥ ଭଳି କେବଳ ନିଷ୍କ୍ରିୟ ହୋଇଯିବି ।

ଦିଲ୍ଲୀରୁ ଫେରିବା ପରେ ଅକସ୍‌ଫାମ୍‌ରେ ଶେଷଦିନଗୁଡ଼ିକ ଭାରି ତିକ୍ତ ହୋଇଯାଇଥିଲା । ପ୍ରତି ମୁହୂର୍ତ୍ତରେ ମୁଁ ନୈତିକତାକୁ ଅସ୍ତ୍ର କରି ତର୍କ କରୁଥିଲି । କହୁଥିଲି ଯେ ଆମେ ଯେଉଁମାନେ ନେତୃତ୍ୱ ନେଇଛୁ ଏପର୍ଯ୍ୟନ୍ତ ଚିରାଚରିତ ସଂସ୍କୃତିରୁ କେତେ ମାତ୍ରାରେ ଉଦ୍ଧାର ପାଇଛୁ ? ଲୋକଙ୍କୁ ମୁକ୍ତି ଓ ସ୍ୱାଧୀନତା ସମ୍ପର୍କରେ ବକ୍ତୃତା ଦେଉଥିଲାବେଳେ ଆମେ କେତେମାତ୍ରାରେ ମୁକ୍ତ ହୋଇପାରିଛୁ ? ଏଠି କେହି ଅତି ସହଜ ହୋଇଯାଇ କାହା ସହ dialogue ଉଠାଇବା ପାଇଁ ପ୍ରସ୍ତୁତ ନୁହଁନ୍ତି । ଲୋକମାନଙ୍କର ସେବା କରିବାର ବାହାନାରେ ଏଇଠି ଆମେ ଯେମିତି ପରସ୍ପର ପ୍ରତି ଭାରି ନିଷ୍ଠୁର ହୋଇଯାଉଛୁ । ବିଶ୍ୱାସ ଓ ଭଲ ପାଇବା, ବୁଝାମଣା ଓ କର୍ତ୍ତବ୍ୟନିଷ୍ଠା ଏଇଠି ଅତି ଅସମ୍ମାନଜନକ ପରିସ୍ଥିତିରେ ଲୁଚିଯାଇଛି ।

ସମ୍ଭବତଃ OXWORPର ନାମତାଲିକାରୁ ମୋତେ ଶୀଘ୍ର ଅନ୍ତର କରାଯିବ । ଏଠାକାର ପରିସ୍ଥିତି ମୋ ପାଇଁ ଆଦୌ ଅନୁକୂଳ ନୁହେଁ । ସେମାନେ (authority) ଆଦୌ ସନ୍ତୁଷ୍ଟ ନୁହଁନ୍ତି । ମୋତେ କହୁଛନ୍ତି ଯେ କୁଆଡ଼େ ମୁଁ ଖୁବ୍ 'Self-virtuous' ହୋଇଯାଉଛି । ତଥାପି ମୁଁ ମୋର ନିଜତ୍ୱ ହରାଉନାହିଁ । ସେମାନଙ୍କୁ ଜଣାଇ ଦେଇଛି ଯେ ମୁଁ ଖୁବ୍ ଶୀଘ୍ର ଏଠାରୁ ଚାଲିଯିବି । ସୁଯୋଗ ଅପେକ୍ଷାରେ ଅଛି । ଅତି ଭୟଙ୍କର ପଥ ଦେଇ ଗତି କରିବାକୁ ନିଷ୍ପତ୍ତି ନେଉଥିଲା ବେଳେ ମୁଁ ଆଉ ପଛକୁ ଫେରୁ ନାହିଁ ବା ସାଲିସ୍ କରୁନାହିଁ ।

ତମ କଥା ଭାବୁଥିଲି । କେତେ ନିଶ୍ଚିନ୍ତରେ ତମେ ଜୀବନକୁ ଗ୍ରହଣ କରୁଛ, କେତେ ସହଜରେ ମଧ୍ୟ । ଜୀବନର ଯେତେବେଳେ ନୂଆ ଅଧ୍ୟାୟ ଆରମ୍ଭ ହେଉଛି, ତମେ ଦ୍ୱିମତ ହେଉ ନାହଁ, ନୂଆ ଇଲାକାରେ ତମେ ଅନାହୂତ ବୋଲି ପ୍ରମାଣିତ ହେଉନାହଁ । ଏହାସତ୍ତ୍ୱେ ମୁଁ ତମର ସ୍ୱପ୍ନର ସମାପ୍ତି ହୋଇଥିବା କଥା ସ୍ୱୀକାର କରୁ ନାହିଁ । ତମେ ସବୁବେଳେ ମୋ ପାଇଁ ଭଲ ପାଇବାର ମଣିଷ ହୋଇ ରହିଯିବ ।

ଘରକୁ ଯେତେବେଳେ ମୁଁ ଆସେ ଅତି ଅସହାୟ ଭାବେ ସବୁକିଛି ଲକ୍ଷ୍ୟ କରେ । ଯେତେବେଳେ ଏ ଘର ମୋର ଆତ୍ମକୈନ୍ଦ୍ରିକତାକୁ ଗତିଶୀଳ କରିପାରିଛି, ଏହାପ୍ରତି ମୁଁ କୃତଜ୍ଞ । ଏଠାରେ ସବୁ ଖବର ଭଲ । ମୁଁ ଏଠାରେ କାହା ସହ ଯୁକ୍ତି ନ ବାଢ଼ିବାକୁ ମନସ୍ଥ

କରିଛି । ସେଇଥିପାଇଁ ଏଥର ଅନ୍ତତଃ ଭଲଭାବେ ଛୁଟିଟା କଟିବ । ୩ ତାରିଖରେ ଖଡ଼ିଆଳ ରୋଡ୍ ଫେରିବି । ସେଠାକୁ ଲେଖିବ ନିଶ୍ଚୟ ।

ଏଥର ଫେରିଲା ପରେ ଆମକୁ ସ୍ୱାବଲମ୍ବୀ ହେବା ପାଇଁ ନୂଆ ସ୍ଥାନମାନଙ୍କୁ ଯିବାକୁ ହେବ । ଗୋଟାଏ ମାସ ଭିତରେ ଆମର କାର୍ଯ୍ୟପଦ୍ଧତିକୁ ଲକ୍ଷ୍ୟ କରାଯିବ ଓ ସେ ସ୍ଥାନମାନଙ୍କରେ ଆମକୁ ସମ୍ଭବ ହେଲେ ନିଯୁକ୍ତି ମିଳିବ । ଏହା ପରେ ପରେ ବୋଧେ ଆମର ନୂଆ ଜୀବନ ଆରମ୍ଭ ହେବ । ଦିଲ୍ଲୀର ଝଡ଼କଥା ଲେଖିବ । ତମେ ଭଲରେ ମସୌରୀ ଫେରିଥିବ ।

ଅଚ୍ୟୁତ

*ବି.ଦ୍ର. :* ମୋର ଅନୁପସ୍ଥିତିରେ ମିଃ ଡୁନୁ ରାୟ ଖରିଆର୍ ରୋଡ୍ ଆସିଥିଲେ । ସେ ମୋତେ ସମ୍ବଲପୁରରେ ଇଣ୍ଟରଭ୍ୟୁ କରିଥିଲେ ଓ ଯାହାଙ୍କ ସହ ସେଇ କେଇଟି ମୁହୂର୍ତ୍ତରେ ମୋର ବନ୍ଧୁତା ହୋଇଥିଲା । Bombay IITରୁ chemical Engineeringରେ ଉଚ୍ଚଉପାଧି ପାଇଛନ୍ତି । ମଧ୍ୟପ୍ରଦେଶର ସିଡୋଲ୍ ଜିଲ୍ଲାରେ ନିଜେ ଓ ତାଙ୍କ ଦଳ development work କରୁଛନ୍ତି । ଡୁନୁ ରାୟଙ୍କର FRIA ସଂସ୍ଥାକୁ ପ୍ରଥମେ ଓଡ଼ିଶାରେ ରୂପ ଦେବାକୁ ଚାହୁଁଥିଲେ ସ୍ୱାଧୀନ ପଟ୍ଟନାୟକ । ସେମାନେ OXWORPର methodologyରେ ବିଶ୍ୱାସ କରନ୍ତି ନାହିଁ । Marxist outlook ସେମାନଙ୍କର ବେଶୀ ଅଛି । ମୁଁ ଭାବୁଛି ସେ ଦଳରେ ମିଶିଯିବାଟା ସମ୍ମାନଜନକ ହେବ । ଆମକୁ ନିମନ୍ତ୍ରଣ ମିଳିଛି ।

▯ ▯ ▯

ପ୍ରିୟ ବନ୍ଧୁ,

ଏଇ ଘର ଭିତରକୁ ଯେତେବେଳେ ବିଳମ୍ବିତ ଜହ୍ନର ତୀର୍ଯ୍ୟକ୍ କିରଣଚେନାକ ଗୋଟାଏ ଅନାହୂତ ଅତିଥି ଭଳି ଚାଲିଆସେ, ମୁଁ ଅକସ୍ମାତ ଭାରି ସଚେତନ ହୋଇଉଠେ । ସହସା କେଉଁ ଏକ ଅନ୍ଧାକାରାଚ୍ଛନ୍ନ ଜୀବନରେ ପ୍ରଥମ ଥର ପାଇଁ ଆଲୋକ ଯେମିତି ପାଦ ପକାଏ, କେଉଁ ଗୋଟାଏ ସ୍ମୃତିହୀନ ଯାତ୍ରା ପୁଣି ସ୍ମୃତିବହୁଳ ହୋଇଯାଏ ।

ଘରକୁ ଆସିବା ଦିନଠାରୁ ମୋର ଜ୍ୟୋତ୍ସ୍ନାସ୍ନାତ ରାତିଗୁଡ଼ିକରେ ନିଜସ୍ୱ ବିଶ୍ଳେଷଣ ବଢ଼ିଯାଇଛି । ଜୀବନର ପ୍ରତିଟି ଅକ୍ଷତ ମୁହୂର୍ତ୍ତଗୁଡ଼ିକ ପାଇଁ ମୁଁ ଭାରି ଭୟାତୁର ହୋଇଯାଇଛି । ଗତ ଦିନମାନଙ୍କରେ ମୋର ଶାରୀରିକ, ମାନସିକ ଓ ଆବେଗମୟ ବୃଦ୍ଧିକୁ ମୁଁ ମୋ ସହ ଆଲୋଚନା କଲାବେଳେ ପ୍ରଶ୍ନବାଚକ ଚିହ୍ନରେ ସେ ସବୁକୁ ମୁଁ ରଖିଦେଇଛି । ଏଠାକାର ପୃଥିବୀରେ ସବୁ ପରିପକ୍ୱତା ଗୋଟାଏ ପ୍ରକାରର କ୍ଷୟ ବୋଲି ମୁଁ ବିବେଚନା କରୁଛି । ଦିନକୁଦିନ ମୁଁ ଯେମିତି ଅତି ଭୟାନକ ଭାବେ ଅମଣିଷରେ ପରିଣତ ହୋଇଯାଉଛି ।

ଚିରାଚରିତ ପ୍ରଥା, ନୀତିନିୟମଗୁଡ଼ିକୁ ଆଡ଼େଇଦେଇ ଯେମିତି ଆଉ ଗୋଟାଏ ଇଞ୍ଚ ଆଗେଇବା ସମ୍ଭବ ନୁହେଁ । ଯେମିତି 'outsider' ହେବା ଗୋଟାଏ ମସ୍ତବଡ଼ ଅଭିଶାପ । ଏଇଠି ଏ ଘର ନିଜର ବୋଲି ମନେ ହେଉନାହିଁ । ତମକୁ ତ ଆଗରୁ ଆମର ଭଗ୍ନ ପାରିବାରିକ ଜୀବନ କଥା କହିଥିଲି । ସେସବୁକୁ ବାସ୍ତବତା ଓ ସତ୍ୟତାର ଦୃଷ୍ଟିରୁ ଗ୍ରହଣ କଲାମାତ୍ରେ ମୁଁ ଯେମିତି କ୍ଳୀବ ହୋଇଯାଇଛି । ସବୁଆଡ଼େ ମୋତେ ହତାଶାର ଦୀର୍ଘଶ୍ୱାସ ଶୁଣିବାକୁ ମିଳୁଛି । ମୋର ଅସହାୟତା ହିଁ ବଢୁଛି ।

ମୁଁ ଜାଣେ ମୋର 'ଭଲ ପାଇବା'କୁ ନେଇ ମୁଁ ଯେମିତି ଗୋଟାଏ ଶେଷ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଛି । ଏଇଠାରେ ହାରିଗଲେ ଏତେଦିନ ଧରି ଅତିସ୍ୱଷ୍ଟ ଭାବେ ଦେହଧାରଣ କରିଥିବା, ସ୍ଥିତି 'ଜାଗ୍ରତ' ହୋଇଥିବା ଅଚ୍ୟୁତର ଅକାଳ ମୃତ୍ୟୁ ହୋଇଯିବ । ଏଇଠାରେ ଜୀବନର ଗତିପଥ ଭାରି ଭୟସଙ୍କୁଳ ହୋଇଯିବ । ମୁଁ ଏଇଠାରେ ମୋର ସହଜାତ ଅମାନୁଷିକତାକୁ ବିଦାୟ ଦେଇପାରିବି ନଚେତ୍ ତାହାର ଶିକାର ହୋଇଯାଇ ନିଜର ପରିଚୟ ହରାଇବସିବି ! ଦିନକୁ ଦିନ ମୁଁ ଭାରି ଏକୁଟିଆ ହୋଇଯାଉଛି । ପ୍ରତିଦିନ କେଉଁ ଏକ ସୁପରିକଳ୍ପିତ ଚିନ୍ତାକୁ ନେଇ ମୁଁ ଖେଳିବସୁଛି, ମୁଁ ନିଜର ମନସ୍ତାପ ହିଁ ବଢ଼ାଉଛି । ଏବେ ମଧ୍ୟ ସତର୍କ ମଣିଷମାନେ ମୋର ଅବାଞ୍ଛିତ ମନୋବୃତ୍ତି ପାଇଁ ଦୁଃଖ କରୁଛନ୍ତି; ସମ୍ବେଦନଶୀଳ ହୋଇଯାଉଛନ୍ତି । ଏଠାରେ ମୋତେ କେହି ବୁଝିବାରେ ଆଗଭର ହେଉ ନାହାନ୍ତି ।

× × × ×

'The Devils'ର ପ୍ରତି ପୃଷ୍ଠାରେ ମୋର ବିଗତ ଜୀବନ, ଆମର ବିଗତ ସ୍ମୃତି କଥା ଯେମିତି ଲେଖାଯାଇଛି । ଏଠାରେ ଆମେ ପ୍ରତ୍ୟେକ ଆମର ଅପରିମିତ ବୌଦ୍ଧିକତାର ନିୟନ୍ତ୍ରଣରେ ଯେମିତି ରହିଯାଇଛେ ନ ହେଲେ ପ୍ରତ୍ୟେକ ସ୍ଥଳବିଶେଷରେ ଆମେ ଏଇଭଳି ଭିନ୍ନ ମଣିଷ ବୋଲି ଗଣା ଯାଇ ନ ଥା'ନ୍ତେ । ଏପର୍ଯ୍ୟନ୍ତ ସରି ନ ଥିବା ବହିଟିରେ Kirilovର କଥା ଭାରି ଚମକପ୍ରଦ । ତାହାର ବିଶେଷ ଆଗ୍ରହ ଆତ୍ମହତ୍ୟା ସମ୍ପର୍କରେ ସମ୍ବାଦ ରଖିବା ଓ ତାହାକୁ ଅନୁଧ୍ୟାନ କରିବା ! ତାହାର ବକ୍ତବ୍ୟଗୁଡ଼ିକୁ ମୁଁ ତଳେ ଲେଖୁଛି । ତମେ ଅନୁଭବ କରିପାରିବ ବୋଲି ମୁଁ ବିଶ୍ୱାସ କରୁଛି ।

*"I am afraid I don't know much yet. Two prejudices deter them (men of committing suicide), two things. One a very little one and the other a very big one. But the little are is also big."*

*"The little are is pain. Those who kill themselves from great sorrow, or from spite, and those who are mad or whatever is they do it suddenly. They think little about pain. But those who do it from reason-they think a lot."*

*"Evereyone must judge from himself. Full freedom will come only when it makes no difference whether to live or not to live. That is the goal for everybody."*

*"Life is pain, life is fear, and man is unhappy. Now all is pain and fear. Now man loves life... Now man is not what he will be. A new man will come, happy and proud. To whom, it won't matter whether he lives a no. He'll be a new man! He who conquers pain and fear will himself be a God. And that other God will not be."*

*"Everybody thinks and at once think of something else. I can't think of something else. All my life I think of one thing. God has lamented me all my life".*

ଚିଠି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ସକାଳର ନିର୍ଜନତା ଏଠାରେ ସହଜରେ ଭାଙ୍ଗେନାହିଁ । ପାଖରେ ଗନ୍ଧମାର୍ଦ୍ଦନ ପର୍ବତ । ତାହା ଯେମିତି ଏହାକୁ ଆହୁରି ପ୍ରତିଭୂତ କରେ । ସକାଳୁ ଉଠି ମନେହୁଏ ଯେମିତି ଗତ ରାତିସାରା ମୁଁ ପାହାଡ଼ର ନିଆଁ ଭଳି ଜଳୁଥିଲି । ଏବେ ଉଜ୍ଜ୍ୱଳ ଶିଖାମାନେ ଲୁଚିଯାଇଛନ୍ତି । କିନ୍ତୁ ଧୂଆଁର ସ୍ଥିତି ଆହୁରି ସ୍ପଷ୍ଟ ହୋଇଛି ।

ପାଇକ୍‌ମାଲ୍‌କୁ ଆସିବାର ସପ୍ତାହ ହେବାକୁ ବସିଲାଣି । କିନ୍ତୁ ଏଠାକାର ସମସ୍ୟାମାନେ ଅନେକ ମାତ୍ରାରେ ମୋ ଭଳି ଅନଭିଜ୍ଞ ଲୋକକୁ ଆମୂଳ ଗ୍ରାସ କରିଛନ୍ତି । ଏଠାରେ ଚାଲିଥିବା ପ୍ରୋଜେକ୍ଟ୍‌ଗୁଡ଼ିକୁ ପ୍ରତ୍ୟକ୍ଷଭାବେ ସମ୍ଭାଳିବା କଠିନତର କଥା ହୋଇଯାଉଛି । ଆମର field staff ଙ୍କ ଆକସ୍ମିକ ଇସ୍ତଫା ପରେ ଏଠାରେ ମୋତେ ନିଯୁକ୍ତି ମିଳିଛି । ଟ୍ରେନିଂ ସରିନାହିଁ । ହୀରାପୁର ଗାଁରେ ଏଇ କେତେ ଦିନ ଭିତରେ ଲୋକମାନଙ୍କ ସହ ସମ୍ପର୍କ ସ୍ଥାପିତ ହୋଇସାରିଲାଣି । ପିଲାମାନେ, ବୁଢ଼ାମାନେ ମୋତେ ପ୍ରଶ୍ନ ଓ କୌତୂହଳର ଆଖି ନେଇ ଚାହୁଁଛନ୍ତି । ଗାଁ କୂଳବଧୂମାନେ ମୋତେ ଦେଖି ଆତ୍ମଗୋପନ କରୁଛନ୍ତି ।

ଏବେ ମହୁଲର ଦିନଗୁଡ଼ିକ ଭାରି ସୁଗନ୍ଧିଯୁକ୍ତ ବୋଲି ତୁମେ ଜାଣିଥିବ । ଏହି ମହୁଲ ଏଠାକାର ସୁନା ଭଳି । ପ୍ରତିବର୍ଷ କୋଟିଏ ଟଙ୍କାର କାରବାର ଏଠାରେ ହୁଏ,

ଯେଉଁଥିରୁ ବ୍ୟବସାୟୀମାନେ ପ୍ରାୟ ୩୦/୪୦ ଲକ୍ଷ ଟଙ୍କା ଲାଭ ପାଆନ୍ତି । ହୀରାପୁର ଗାଁର ଲୋକେ ସମବାୟ ଭିତ୍ତିରେ ଏଥର ମହୁଲ ବ୍ୟବସାୟ କରୁଛନ୍ତି । ମୂଳର ଅକ୍‌ସ୍‌ଫାମ୍‌ର । ଲାଭ ଗାଁ ବାଲାଙ୍କର, ଯେଉଁଠାରୁ ସେମାନେ ଆବଶ୍ୟକ ହେଲେ ଋଣ ଆସିବେ । Development dynamics କୁ ଏଠାରେ ଯେମିତି ପ୍ରତ୍ୟକ୍ଷ ଭାବେ ବ୍ୟବହାର କରାଯାଇଛି । ମାତ୍ର ଲୋକମାନଙ୍କ ଭିତରେ ଥିବା ଭୟ, ସନ୍ଦେହ ଓ ନିରାଶା ବେଳେବେଳେ ସବୁକୁ ଓଲଟପାଲଟ କରିଦେଉଛି । ମହୁଲ ବ୍ୟବସାୟ ପରେ ସେଠାରେ ଗୋଟାଏ ଛୋଟ ଧରଣର ଜଳସେଚନ ଯୋଜନା ଅକ୍‌ସ୍‌ଫାମ୍‌ର ସହଯୋଗରେ ହେବ । ତେଣୁ ଆସନ୍ତା ମାସେ ଦି'ମାସ ପାଇଁ ମୁଁ ଭାରି କାର୍ଯ୍ୟବ୍ୟସ୍ତ ରହିବି ବୋଲି ମନେକରୁଛି ।

ହୀରାପୁର ଗାଁରେ ରହିଯାଇ ମୋତେ ମଣିଷ ସହ ସମ୍ପର୍କକୁ ଅନୁଧ୍ୟାନ କରିବାକୁ ପଡ଼ିବ । ବେଳେବେଳେ ସବୁକଥା ବିଚିତ୍ର ଲାଗୁଛି । ଗାଁର ପରିବେଶରେ ଆବିଳତା ଆସିଯାଇଥିବା କଥା ଜାଣିପାରିଲେ ମନରେ ଖୁବ୍ ବ୍ୟଥା ଆସୁଛି । ନିଜକୁ ସଚେତନ କରିବାକୁ ପଡୁଛି । ତଥାପି ମୋର ଆତ୍ମବିଶ୍ୱାସ ଅଛି ଯେ ହୀରାପୁର ଗାଁକୁ ପୁଞ୍ଜିକରି ମୁଁ ଏକ ନୂତନ ସ୍ୱପ୍ନ ସଫଳ କରିପାରିବି । ମୁଁ ଜୀବନରେ ବୋଧେ ଶେଷଥର ପାଇଁ ଗୋଟାଏ ସ୍ୱପ୍ନ ସହ ଜଡ଼ିତ ହେଉଛି ।

ଅବଲୀଳାକ୍ରମେ ମୁଁ ମୋର ଶରୀରକୁ ନିଶ୍ଚିହ୍ନ ହୋଇଯିବାକୁ ବାଧ କରିବି । ମୋ ପାଇଁ ମୋର ଆତ୍ମା ବଡ଼ । ଏ ଶରୀରର କ୍ଳାନ୍ତି ଓ ଦୁର୍ବଳତା, କ୍ଷୁଧା ଓ କ୍ଷିପ୍ରତାସବୁକୁ ମୁଁ ଯେମିତି ଶେଷଥରପାଇଁ ଆହୁତି ଦେବାକୁ ନିଷ୍ପତ୍ତି କରିଛି । ତମେ ମୋ ଠାରୁ କ'ଣ ଆଶା କର ବା ଏ ପୃଥିବୀ ମୋଠାରୁ କ'ଣ ଆଶା କରେ ମୁଁ ଜାଣିନାହିଁ । ମୁଁ ଯେମିତି ସମସ୍ତ ପ୍ରବଣତାରୁ ମୁକ୍ତ ହୋଇଯିବାକୁ ଚାହୁଁଛି ।

× × × ×

ତମେ ଏକାଡ଼େମୀର କାର୍ଯ୍ୟରେ ବ୍ୟସ୍ତ ରହୁଛ ବୋଲି ଲେଖୁଛ; ତଥାପି Erich Fromm ପଢ଼ିପାରୁଛ । ତମେ କେଉଁଠି କେତେ ମାତ୍ରାରେ ବାନ୍ଧି ହୋଇଯାଉଛ ତମେ ଜାଣିପାରିଥିବ । ତଥାପି ଯେ ତମକୁ ମୁକ୍ତ ମଣିଷ ହିସାବରେ ମୁଁ ଗ୍ରହଣ କରୁଛି, ଏଥିରେ ଦ୍ୱିରୁକ୍ତି ନାହିଁ । ବେଳେବେଳେ ସମୟ ଆସେ ମଣିଷ ଜୀବନକୁ ନିର୍ଘାତଭାବେ ବିଦାୟ ଦେଇ ଦାର୍ଶନିକତତ୍ତ୍ୱରେ ହଜିଯାଏ । ଆମେ ବୋଧେ ସେ ସ୍ତରକୁ ପହଞ୍ଚିବାକୁ ବ୍ୟାକୁଳ ହେଉଛେ( ? ) ଆମେ ବୋଧେ kirilov ଭଳି ଭୟ ଓ ବ୍ୟଥାକୁ ଅତିକ୍ରମ କରିବାକୁ ଚାହୁଁଛେ । ଆମେ ଉଚ୍ଚତର ମଣିଷକୁ ଆଖି ଆଗରେ ହିଁ ରଖୁଛେ ।

× × × ×

ଅମ୍ଳାନ ଅଭିମାନରେ ଚିଠିଟିଏ ଲେଖିଛି । ଏବେ ଜୀବନର ସଂଦିଗ୍ଧତା ଓ ସନ୍ଦେହ ତା'ପାଇଁ ଏକାକାର ହୋଇଯାଉଥିବେ । ମୁଁ ଯେମିତି ଭାରି ନିଷ୍କ୍ରିୟ ହୋଇଯାଇଛି ଓ ତାହାକୁ ସେ ଧ୍ୱଂସମୁଖରୁ ଓଟାରି ରଖି ପାରୁନାହିଁ । ଜଣେ ସ୍ଥିତପ୍ରଜ୍ଞ ମଣିଷ ପାଇଁ ନୀରବତା ବା ଶିଥିଳତା ଯଥାର୍ଥ ନୁହେଁ । ଅମ୍ଳାନ ଏକଥା ବୁଝିପାରୁଥିଲେ ମଧ୍ୟ ନ ବୁଝିଲା ଭଳି ରହିଯାଉଛି । ସମ୍ଭବତଃ ସେ ଭାବୁଛି ଯେ ବଞ୍ଚିବା ତୁଳନାରେ ଦର୍ଶନଟା କିଛି ନୁହେଁ ।

ପ୍ରଫୁଲ୍ଲ ପାଖକୁ ମୁଁ ଲେଖିପାରିନାହିଁ । ତା'ପାଇଁ କ୍ରୀତଦାସ ହୋଇଯାଏ ପଛକେ, କିନ୍ତୁ ସେ ବିଲୀନ ହୋଇଯିବା କଥା ମୁଁ ଘଟିବାକୁ ଦେବିନାହିଁ ।

ଆଉସବୁ ଭଲ । ନୃସିଂହନାଥର ପ୍ରପାତକଥା ପୁଣି ଲେଖୁଛି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ନୀଳଗିରି କଥା କାହିଁକି ମୋର ବହୁତ ମନେପଡୁଛି । ଏବେ ବିବାହ ଆୟୋଜନ ପାଇଁ ସେଇଠି ଗୋଟାଏ ଅପୂର୍ବ ସମାବେଶ ହୋଇଥିବ ଅନେକ ଚିହ୍ନା ମଣିଷମାନଙ୍କର, ଅଚିହ୍ନା ମଣିଷମାନଙ୍କର ବି । ସଂସାରର ନିୟମ ପ୍ରତି ଯେ ଆମର ଯଥେଷ୍ଟ ସମ୍ମାନ ଅଛି, ତାହା ପୁଣି ପ୍ରମାଣିତ ହୋଇଯିବ । ନୀଳଗିରି ଗାଁରେ ତମେ ପୁଣି ଆଉଥରେ ସଚେତନତାର ସହ ସାମାଜିକ ପଦ୍ଧତିମାନଙ୍କୁ ଅନୁଧ୍ୟାନ କରିପାରିବ ।

ତମରି ଚିଠି ପାଇଁ ମୁଁ ସାମାନ୍ୟ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଇଛି । ଆମେ ଯେଉଁମାନେ ଭାରତୀନାନୀଙ୍କର ଶୁଭେଚ୍ଛୁ ଥିଲୁ, ସମସ୍ତେ ତାଙ୍କୁ ବିଦାୟବେଳାରେ ନିଶ୍ଚିତ ଭାବେ ସାହସ ଦେଇଥାଆନ୍ତୁ ଯେ ଆମେ କେହି କାହାର ପର ହୋଇ ଯାଉନାହୁଁ । ମୋର ବନ୍ଧନ ପ୍ରତି ଯେତିକି ମାତ୍ରାରେ ଦ୍ୱିଧା ଓ ସମାଲୋଚନା, ଅନ୍ୟର ସ୍ୱର୍ଗୀୟ ସମ୍ପର୍କ ପ୍ରତି ସେତିକି ମାତ୍ରାରେ ସମ୍ମାନ । ସବୁ କିଛି ମୋ ପାଇଁ ଏବେ ମଧ୍ୟ ବୋଧଗମ୍ୟ ନୁହେଁ । ମୁଁ ସମସ୍ତ ଅନିଶ୍ଚିତତ କଥା ବୁଝିପାରି ମଧ୍ୟ ଅନ୍ୟ ଆପେକ୍ଷିକତା ପାଇଁ ସବୁ ଦରଦ ରଖିଆସିଥାଏ ।

ନୀଳଗିରିରେ ଶୀତ ଅନୁଭୂତ ହେଉଥିବ । ଗୋଟାଏ ପ୍ରକାରର ଉଷ୍ଣତା ମଧ୍ୟ ପ୍ରଖର ଭାବେ ଅନୁଭବ କରିହେଉଥିବ । ବେଦୀ ପାଖର ନଡ଼ିଆଗଛ ତଳେ ଶିଶିର ଟୋପାମାନ କେଉଁ ଗୋଟାଏ ପାଗଳ ଚିତ୍ରକରର ତୂଳିକା ସ୍ପର୍ଶଭଳି ବିକ୍ଷିପ୍ତ ହୋଇଯାଇଥିବ । କୋଠାଉପରୁ କିମ୍ବାଗାଭଳି ସେ ପାଖର ସୂର୍ଯ୍ୟାସ୍ତ ଖୁବ୍ ରଙ୍ଗୀନ୍ ମନେହେଉଥିବ । ବାବି,

ମୁନ୍ନା, ଫେଲୁ କି ପାପୁ ସମସ୍ତେ ଗୋଟାଏ କିଛି ନୂତନତା ପାଇଁ ଚେଷ୍ଟିତ ଥିବେ; ଅଳି ବି କରୁଥିବେ। ଭାରତୀ ନାନୀଙ୍କର ଭଲ ପାଇବାକୁ ଅବଚେତନ ମନରେ ସେମାନେ ମଧ୍ୟ ଯେ ସ୍ୱୀକାର କରିଛନ୍ତି, ତାହା ପ୍ରମାଣିତ କରିବା ପାଇଁ ସେମାନେ ବି ଉପହାର କଥା ଚିନ୍ତା କରୁଥିବେ।

× × × ×

ଭାରତୀନାନୀ ଆମର ପାଗଳାମୀକୁ ବୁଝୁଥିଲେ। ଆମର ସଂକ୍ଷିପ୍ତ ପରିସର ଭିତରେ ବି ତାଙ୍କ ଅଜାଣତରେ ସେ ଜଣେ ହୋଇଯାଇଥିଲେ ବୋଧେ। ମୋତେ ବି ତାଙ୍କର ଅଧିକାରବୋଧରୁ ଭାଗ ଦେଉଥିଲେ। ଆଜି ଏଇ ଉପଲକ୍ଷରେ ଭଞ୍ଜ ଥାଆନ୍ତା, ଅମ୍ଳାନ ଥାଆନ୍ତା, ପ୍ରଦୀପ ଥାଆନ୍ତା (ଥିବ ବୋଧେ)। ଆମେ ଆମର ଜଣେ co-religionistଙ୍କୁ ସଂସାରର ନିଷ୍ଠୁରତା ଭିତରକୁ ଶୁଭଯାତ୍ରା ପାଇଁ ବିଶ୍ୱାସ ଦେଇଥାଆନ୍ତେ। ସମସ୍ତ ଗମ୍ଭୀରତା ଭିତରେ ମଧ୍ୟ ଆମେ ହସିପାରୁଥାଆନ୍ତେ।

× × × ×

ତମର ଏଇସବୁ ମୁହୂର୍ତ୍ତମାନଙ୍କର ଭାବାବେଗକୁ ମୁଁ ବେଶ୍ ହୃଦୟଙ୍ଗମ କରିପାରୁଛି। ବଡ଼ ବିଚିତ୍ରମୟ ଭାବେ ଯେଉଁଠି ସମ୍ପର୍କ ଗଢ଼ାହୁଏ, ସେଠାରେ ଅଦୃଷ୍ଟ ଆପେ ତାହାର ଭୂମିକା ଗ୍ରହଣ କରିଥାଏ। ତମେ ଭାରତୀନାନୀଙ୍କୁ ଜଣେ ନିକଟତମ ମଣିଷ ହିସାବରେ କେଉଁଭଳି ସ୍ନେହ ଦେଇଛ ଓ ଦେଇପାରିବ, ତାହା ତମ ଭଳି ମୁଁ ମଧ୍ୟ ଜାଣେ। ପାଇକମାଲ୍‌ରେ ମୁଁ ମଧ୍ୟ ଏ ମଧୁରତାକୁ ପ୍ରତି ମୁହୂର୍ତ୍ତରେ ଉପଭୋଗ କରୁଛି। ଅତି ସାଧାରଣ ଭାବେ ତମର ପାଖେ ପାଖେ ମୁଁ ମଧ୍ୟ ସେଠାରେ ଅଛି।

ତମର ବାପାମାଆଙ୍କୁ ମୋର ନମସ୍କାର। ବୁଢ଼ୀନାନୀ ଓ ଆରତୀନାନୀଙ୍କୁ ମୋ କଥା ମନେପକାଇଦେବ। ଅନ୍ୟ କେହି ସାଙ୍ଗ ଉପସ୍ଥିତ ଥିଲେ ମୋତେ ତାଙ୍କ କଥା ଲେଖିବ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଏକାଡେମୀକୁ ମୁଁ ଯଥେଷ୍ଟ ପରିମାଣରେ ଲେଖିନାହିଁ। ଏବେ ସେଠାରେ ଶେଷ କେତେ ଦିନ ତମେ କ'ଣ ଭାବୁଥିବ, ମୁଁ ଅନୁମାନ କରିପାରୁଛି। ବାଲେଶ୍ୱର ତମର ଆବେଗକୁ ଯେଉଁଭଳି ପ୍ରଭାବିତ କରିଥିଲା, ଅବଶ୍ୟ ମସୌରୀରେ ସେସବୁ ହୋଇନାହିଁ। ମୋ ମତରେ ତମର ଆବେଗ ବା ମାନସିକ ଅଭିବୃଦ୍ଧିରେ ମସୌରୀ ଆଦୌ

ଅନୁକୂଳ ହୋଇନାହିଁ । ଯେହେତୁ ଏପ୍ରିଲ୍ ମାସରେ ତମେ ଓଡ଼ିଶା ଆସୁଛ, ଏସବୁ ଚିଠି ମୋର ସେଠାକୁ ବୋଧେ ଶେଷ ଚିଠି ହୋଇଥିବ । ଗୋପବନ୍ଧୁ ଓଡ଼ିଶା ଆସୁଛି କି ? ଟ୍ରେନିଂ ପରେ ସେ କେତେ ମାତ୍ରାରେ ବଦଳିପାରିଛି, ମୁଁ ଜାଣିବାକୁ ଆଗ୍ରହୀ । ତା'ପାଇଁ ମୋର ମୁକ୍ତ ସମର୍ଥନ ସବୁବେଳେ ରହିଆସୁଥିବ ।

× × × ×

ନିଜର ପାପାସକ୍ତ ବିଚାରଧାରାରୁ ଭଲ ଭାବରେ ବିଶ୍ଳେଷଣ କରିବାକୁ ମୁଁ ବିଶେଷ ଜରୁରୀ ବୋଲି ମନେକରୁଛି । ବର୍ତ୍ତମାନ ମୋର ବୌଦ୍ଧିକ ଯଥାର୍ଥତାର ଆବଶ୍ୟକତା ରହିଛି; କାରଣ ଅତି ସାଧାରଣ ଭାବେ ମୋର ଅପରାଧମାନେ ସମର୍ଥନ ଚାହାନ୍ତି । ହୁଏତ ଅତି ଅବଚେତନ ସ୍ତରରେ ମୁଁ ନୈତିକତାର ତାଡ଼ନା ଦ୍ୱାରା ଭୀଷଣ ଯନ୍ତ୍ରଣାଗ୍ରସ୍ତ, ଭୀଷଣ ଭୟଭୀତ । ଏବେ ମୁଁ ଯାହାକିଛି ଭାବୁଛି ବା କରୁଛି, ସବୁ ପଛରେ ମୋର ବିବେକର ସମର୍ଥନ ନାହିଁ । ମୋର ବୌଦ୍ଧିକ ଅଭିସାର ସାଧାରଣ ମଣିଷତ୍ୱ ହ୍ରାସ କରିବାରେ ସମ୍ଭବ ହୋଇଛି ।

'ମଣିଷ କାହିଁକି ଅପରାଧ କରେ', ଏ ସମ୍ପର୍କରେ Frommଙ୍କ 'The Anatomy of Human Destructiveness' ବା Verrier Elwin ଙ୍କ 'Maria Murder and Suicide' ବୋଧେ ଯଥେଷ୍ଟ ନୁହେଁ । ଉଭୟେ କହନ୍ତି ଯେ ମଣିଷର ଅପରାଧ ପ୍ରବୃତ୍ତି ଆଦିମ ମଣିଷ ପାଖରେ କମ୍ ଥିଲା । ପ୍ରକୃତି କୋଳରେ ଯିଏ ବଢ଼ିଛି, ତାହା ପାଇଁ ହିଂସା ଓ ହତ୍ୟା କରିବାଟା ଅତିଶୟ ଜଘନ୍ୟ କଥା ଥିଲା । ଏସବୁ ବିଷୟରେ ପ୍ରତ୍ୟକ୍ଷ ଭାବରେ ପରୀକ୍ଷା କରାଗଲେ ଭଲ ହୁଅନ୍ତା । କୋରାପୁଟର ଡଙ୍ଗରିଆ କନ୍ଧମାନଙ୍କର ସଂଖ୍ୟା ହ୍ରାସ ହେଉଥିବାରୁ ସରକାରଙ୍କ ତରଫରୁ ସେଇଠି ଉନ୍ନୟନ କାମ ଚାଲିଛି । ସେଠାରେ କିଛି ଦିନ ରହିବାର ଯୋଜନା କରି ମୁଁ ସୁଧାକରକୁ ଲେଖିଛି । ସେ ମୋ ପାଇଁ କିଛି ବ୍ୟବସ୍ଥା କରିପାରିବ ବୋଲି ମୁଁ ଆଶା ରଖୁଛି ।

× × × ×

ତମର ଚିଠି ପାଇଲି । ନୀଳଗିରି ବା ଦିଲ୍ଲୀ ଯାଇ ପଢ଼ିବା ମୋ ପକ୍ଷରେ ସମ୍ଭବ ନୁହେଁ । ଘରୁ ଆବଶ୍ୟକ ପରିମାଣର ସମର୍ଥନ ମିଳୁନାହିଁ । ଏ ବୟସରେ ନିର୍ଭରଶୀଳ ହୋଇଯିବାଟା ଭାରି ଲଜ୍ଜାଜନକ କଥା । ସେଇଥିପାଇଁ ଅମ୍ଳାନ ବା ତମର ସବୁପ୍ରକାରର ପ୍ରସ୍ତାବକୁ ମୁଁ ବାତିଲ୍ କରିଦେଇଛି । ଏଇଠି ଆଉ କିଛି ଦିନ ସଢ଼ିବାକୁ ହେବ । ଏ ସଂସ୍ଥା ସହ ସମ୍ଭବତଃ ସାଲିସ୍ କରିବାକୁ ହେବ । ନିଜର ବିବେକକୁ ଶୀତଳଭଣ୍ଡାରରେ ରଖିଦେଇ ମୁଁ ଯେମିତି ବଞ୍ଚିବା ସପକ୍ଷରେ ଯୁକ୍ତି ବାଢୁଛି, ମୁଁ ଯେମିତି ମୋର ବିରୁଦ୍ଧାଚରଣ କରୁଛି ।

ଅତ୍ୟନ୍ତ ବାସ୍ତବତାର ସହ ମୁଁ କହିପାରେ ଯେ ଆମ ତିନିଜଣଙ୍କର ଜୀବନର ଗତି ଏବେ ଭାରି ସ୍ୱତନ୍ତ୍ର । ଜୀବନ ସହ ଅତିଶୟ ଜଡ଼ିତ ହୋଇଗଲା ପରେ ଆମେ ଅତି ସହଜ ଭାବରେ ଏବେ ନିଜର ପରିଧି ଭିତରେ ଆବଦ୍ଧ ଓ ନିଜର ମୂଲ୍ୟବୋଧ ଦ୍ୱାରା ବନ୍ଦୀ । ତମପାଇଁ ପ୍ରତିମୁହୂର୍ତ୍ତ କେଉଁ ଭଳି ମନେହେଉଛି, ମୁଁ ଏବେ ଜାଣିପାରୁନାହିଁ । ମୁଁ ଯଦି କହେ ଯେ ଗୋଟାଏ ପ୍ରକାରର ବୌଦ୍ଧିକ ଦୁଃସାହସ ପ୍ରତି ଆମେ କ୍ରମେ ଉଦାସୀନ ହୋଇପଡୁଛେ, ତମେ ଅସ୍ୱୀକାର କରିପାରିବ ନାହିଁ । ଅତି ନିର୍ବିକାର ଭାବରେ ଅଜଣା ସଚେତନତାକୁ ଲମ୍ଫ ଦେବାପାଇଁ ଆମେ ଆଜି ଭାରି ସତର୍କ ହୋଇଯାଇଛେ । ଏବେ ମୂଳଲକ୍ଷ୍ୟ ହେଲା କେଉଁଠି ଲାଖିଯିବା; କେଉଁଠି ନିଜର ସ୍ଥିତିକୁ ପ୍ରତିପାଦିତ କରିବା ।

ଜୀବନରେ ଭୟ କ'ଣ ମୁଁ ଜାଣିନାହିଁ । ତଥାପି ଆମେ ସବୁ କ୍ରମେ ନିଜକୁ ଅପସାରଣ କରି କେଉଁଠି ଲୁଚାଇ ରଖିବା, ଏ ବିଷୟରେ ମୁଁ ଭାରି ଅସହାୟ ଅନୁଭବ କରେ । ତମେ କ'ଣ ଭାବୁଥିବ ଯେ ଜୀବନକୁ ଭଲ ପାଇବା ଛଡ଼ା ଆଉ କିଛି ରାସ୍ତା ନାହିଁ ? ତମେ କ'ଣ ଅନୁଭବ କରୁଥିବ ଯେ ସଂସାରର ନିୟମ ଏଡ଼ାଇଦେଇ ପାରିବା ସମ୍ଭବ ନୁହେଁ ? ତମେ ନିଶ୍ଚିତ ଭାବରେ ସବୁ ବିଚାରକୁ ନେଇପାରୁଛ । ମୋ ଠାରୁ ଏ ବିଷୟରେ ଯଥେଷ୍ଟ ନିଃସନ୍ଦେହ ହୋଇପାରିଛ ।

ଅମ୍ଳାନ ଲେଖିଛି । ତାହାର ବିବାହ ସମ୍ପର୍କରେ ତମ ସହ ମୁଁ ଏକମତ । ତାଙ୍କର ଘରୁ ଯେତେ ପ୍ରସ୍ତାବ ଆସୁପଛକେ ସେ କ୍ଷଣିକ ଉତ୍ତେଜନାରେ କିଛି ଗୋଟାଏ ନିଷ୍ପତ୍ତି ନେବା ଠିକ୍ ହେବନାହିଁ । ବେଳେବେଳେ ଗୋଟାଏ ଅନିର୍ଦ୍ଦିଷ୍ଟ ଜୀବନଯାତ୍ରା ପ୍ରତି ସେ ଯେତିକି ଆଗ୍ରହ ଦେଖାଇଥାଏ ମୁଁ ବିସ୍ମିତ ହୁଏ ଯେ ସେସବୁ ପଛରେ ତାହାର ସମର୍ଥନ ଅଛି କି ନାହିଁ । ତଥାପି ମୁଁ ବିଶ୍ୱାସ କରେ ଯେ ସେ କେଉଁଠି ଅଟକି ଯିବା କଥା ଭାବୁନାହିଁ ।

ତମେ ଏପ୍ରିଲ୍ ମାସରେ ଓଡ଼ିଶା ଆସିଲେ ଆମେ ଭେଟିବା କଥା ଚିନ୍ତା କରନ୍ତେ । ତମର ପୋଷ୍ଟିଂ ଉପରେ ତାହା ନିର୍ଭର କରୁଛି । ଗତ ବର୍ଷ ଧରି ମୋର ନାନୀ ଆଦିଙ୍କ ସଙ୍ଗେ ସମ୍ପର୍କ ନାହିଁ । ଭୁବନେଶ୍ୱର କଥା ମୁଁ ସମ୍ପୂର୍ଣ୍ଣ ପାଶୋରି ଦେଇଛି ।

ତମେ ଭଲ ଥିବ ।

□ □ □

*"How good it is to think, at the end of life that I have never been alone even in my greatest loneliness! ..... Souls that I have met on the way, brothers, who for a moment have held out their hands to me, mysterious spirits spring from my mind. Living and dead - all living. O all that I have loved: all that I have created! You surround me with your warm embrace, you watch over me.*

*I hear the music of your voices. Blessed be destiny, that has given you to me! I am rich. I am rich. My heart is full!....."*

*(Dying monologues of Jean Christopher, Vol-IV, Journey's End)*

ପ୍ରିୟ ବନ୍ଧୁ,

ଆଜିର ସକାଳ ଏଠାରେ ସାମାନ୍ୟ ମେଘାଚ୍ଛନ୍ନ । ସବୁଆଡ଼େ ଗୋଟାଏ ନିସ୍ତବ୍ଧତା । ଅନେକ ଦିନ ପରେ ମୁଁ ଖୁବ୍ ଶୀଘ୍ର ଉଠିପଡ଼ିଛି । ଆଜି ରବିବାର । ଏତେ ଦୀର୍ଘ ଦିନଟାକୁ ଅତିକ୍ରମ କରିବା ପାଇଁ ମୁଁ ଯେମିତି ସାହସ ସଞ୍ଚୟ କରିପାରୁନାହିଁ । ହୁଏତ ମୁଁ ଆଉ ଟିକିଏ ପରେ ନୃସିଂହନାଥ ପ୍ରପାତକୁ ଗାଧୋଇବା ପାଇଁ ଯାଇପାରେ । ନଚେତ୍ ଏଠାରେ ବସି ଅନେକ ଦିନରୁ ଅସମାପ୍ତ ଥିବା Erich Fromm ଙ୍କ 'The Anatomy of Human Destructiveness' ପଢ଼ିବା କଥା ଚିନ୍ତା କରିପାରେ । ଗୋଟାଏ ଦିଗରେ ବନ ଝରଣା ଭଳି ଅମାନିଆ ହେଉଥିବା ମୋର ଭାବପ୍ରବଣତା, ଯାହା ଆଗରେ ମୁଁ କେବଳ ବାଲିବନ୍ଧଟିଏ ଓ ଅନ୍ୟପାର୍ଶ୍ୱରେ ମୋ ଭିତରେ ଧ୍ୱଂସର ସଙ୍କେତ ନେଇଆସୁଥିବା ମୋର ବୌଦ୍ଧିକ ସଚେତନତାମାନେ । ସତରେ କ'ଣ ମଣିଷଟିଏ ମଣିଷସ୍ତରରେ ବଞ୍ଚିବା ସମ୍ଭବ ନୁହେଁ? ଯେଉଁଠାରେ ବି ହେଲେ ତାହାକୁ ଛଳନା କରିବାକୁ ହେବ, ମୁଖା ପିନ୍ଧିବାକୁ ହେବ, ଝରଣା ଓ ପାହାଡ଼ମାନେ ଯେତେ ଅସୁନ୍ଦର ହୁଅନ୍ତୁ ପଛକେ ସେମାନଙ୍କୁ ଭଲ ପାଇବାକୁ ହେବ, ନିଜେ ଯେ ଜ୍ଞାନ ଅନୁରାଗୀ ସେଇଥିପାଇଁ ବୌଦ୍ଧିକତାର ପ୍ରଦର୍ଶନୀ ଖୋଲିବାକୁ ହେବ ! !

ଆଜି ରବିବାର ବୋଲି ମୁଁ ଯନ୍ତ୍ରବତ୍ ଦିନଟାକୁ ଉପଭୋଗ କରିବାର ରାସ୍ତାମାନ ଖୋଜିବି । କିଛି ସମୟ ଧରି ରୋଷେଇ କରିବି । ନଚେତ୍ ସମୟ କାଟିବା ପାଇଁ ଏଇଠି ଚୌକୀରେ ବସିରହି ପାହାଡ଼ଟିର ଭଳିକି ଭଳି ରଙ୍ଗରୂପ ପରିବର୍ତ୍ତନ ଦେଖୁଥିବି । ନିଜ ଅଜାଣତରେ ସେଇସବୁ ମୁହୂର୍ତ୍ତମାନଙ୍କରେ ମୋର ତମମାନଙ୍କ କଥା ମନେପଡ଼ିବ, ବିଶ୍ୱବିଦ୍ୟାଳୟ ଦିନମାନଙ୍କରେ ରବିବାର କେମିତି କାଟୁଥିଲି, ସେକଥା ମଧ୍ୟ ଆଖି ଆଗରେ ନାଚିଯିବ । ମୋର ଅସହାୟତା ପାଇଁ ମୁଁ ମୋର ଦୃଷ୍ଟିକୋଣ ବଦଳାଇଦେବି । ଏଇଠି ବସିବସି ପୁଣି ଗୋଟାଏ କିମ୍ଭୂତକିମାକାର ଅନୁଚିନ୍ତାରେ ମୁଁ ଲିପ୍ତ ହେବି । ସମୟର ଫାଶୀଖୁଣ୍ଟ ମୁହଁରୁ ବଞ୍ଚିବା ପାଇଁ ବିଭିନ୍ନ ଚିନ୍ତାମାନଙ୍କର ଆଶ୍ରୟ ନେବି ।

× × × ×

ରବିବାରମାନେ ଗୋଟାଏ ରତିକ୍ଳାନ୍ତା ନାରୀ ଭଳି ଶିଥିଳ । ଦ୍ୱିପ୍ରହରର ଛାଇନିଦରେ ଜୀବନର ଭୟଙ୍କର ସ୍ୱପ୍ନସବୁ କ୍ରମିକତାର ଦୂରତ୍ୱ ରଖି ଆସିଥାଆନ୍ତି । ଯେତେବେଳେ ନିଜକୁ ଦୁର୍ବଳ ବୋଲି ମନେହେଉଥାଏ, ସେତିକିବେଳେ ଅପରାଧର ଏକ ସୁନ୍ଦର ପୃଥିବୀଟିଏ ଦେହ ଭିତରେ ଟ୍ୟୁମର୍ ଭଳି ସୃଷ୍ଟି ହୁଏ ।

× × × ×

କୌଣସି ଏକ ଦୁର୍ଘଟଣାରେ ଏ ଚିଠି ଅସମ୍ପୂର୍ଣ୍ଣ ରହିଗଲା । ଗତ ରବିବାରଟି ଗୋଟାଏ ଲୁପ୍ତ ସଭ୍ୟତା ଭଳି ଐତିହାସିକ ସତ୍ୟ ସହ ଫସିଲ୍ ହୋଇଗଲା । ଦିନଟିର ଅସ୍ତିତ୍ୱ ଲୋପ ହୋଇଗଲା । ଯାହାକିଛି ମୁଁ ସମୟଠାରୁ ଆଶା କରୁଥିଲି, ତାହା ମିଳିଲା ନାହିଁ । ସ୍ୱପ୍ନସବୁ ସମ୍ଭବ ହେଲାନାହିଁ । ନିର୍ଜନତାର ସ୍ୱର ଭାରି ଗମ୍ଭୀର ଶୁଣାଗଲା । ତମମାନଙ୍କର ଅସ୍ପଷ୍ଟ ପ୍ରତିଛବି ଦୂର ଦିଗ୍‌ବଳୟରେ ମିଳାଇଗଲା । ପାହାଡ଼ର ବନ୍ୟତା ଭୀଷଣ କରୁଣ ହେଲା । ରବିବାର ସୋମବାର ହୋଇଗଲା । ପୁଣି ଆଉ ଏକ ରବିବାର ପାଇଁ ଆଶାୟୀ ଦୃଷ୍ଟିରେ ଅପେକ୍ଷା କରିବାକୁ ହେଲା ।

× × × ×

ତମେ ଅମ୍ଳାନ ସହ ସମ୍ଭବତଃ ଦୀର୍ଘ ସମୟ ଧରି ଭିନ୍ନ ଭିନ୍ନ ବାସ୍ତବ ଦୃଷ୍ଟିକୋଣରୁ ଆଲୋଚନା କରିଛ । ମୋ ମତରେ ଅମ୍ଳାନ ଯେତିକି ଅଚେତନ ଅବସ୍ଥାରେ ଆଉ ଏକ ନୂତନ ଜୀବନ ପାଇଁ ଉତ୍‌ଫୁଲ୍ଲିତ । ମୋତେ କିନ୍ତୁ ସବୁକଥା ଭୀଷଣ ଅହେତୁକ ବୋଧ ହେଉଛି । କାରଣ ଅମ୍ଳାନ-ସ୍ମିତା ସମ୍ପର୍କଟା ମୋ ପାଇଁ ଗୋଟାଏ ସହଜଜନକ କଥା ଥିଲା, ଯେଉଁଥିରେ ସେମାନେ ମୋର ଭାଷା କହୁଥିଲେ, ମୋ ସହ communicate କରିପାରୁଥିଲେ । କଥା ହେଉଛି ଅକ୍ସଫାମ୍ ଛାଡ଼ିବା ବିଷୟରେ ମୁଁ ଯେମିତି ନିଶ୍ଚିତ ଭାବରେ ବଦ୍ଧପରିକର । କିଛି ଗୋଟାଏ ପ୍ରତାରଣା ଖୋଜିବା ପାଇଁ ମୁଁ ବାଧ୍ୟ ହେଉଛି । କୋରାପୁଟରେ ଡଙ୍ଗରିଆ କନ୍ଧମାନଙ୍କ ସହ କିଛି ସମୟ କାଟିବା ମଧ୍ୟ ମୋ ପାଇଁ ଭାରି ରୋମାଞ୍ଚକର ହେବ । ସାଧାରଣ ପୃଥିବୀର ବନ୍ଦୀଶାଳାରୁ ରେଲିଂ ବାହାରର ପୃଥିବୀକୁ ମୁଁ ସ୍ପର୍ଶ କରିବା ପାଇଁ ଚେଷ୍ଟା କରୁଛି । ଅଥଚ ରେଲିଂ ଭାଙ୍ଗି ଦେବାପାଇଁ ମୋ ଦେହରେ ବପୁ ନାହିଁ ।

ତମେ ଗୋଟାଏ ପ୍ରକାରର ପଦବୀ ସହ ଓଡ଼ିଶା ଆସୁଛ । ମୋ ପାଇଁ ତମର ପ୍ରତ୍ୟେକଟି ଅନୁଭୂତି ଖୁବ୍ ମୂଲ୍ୟବାନ । ତମେ ଚୁମ୍ବକରେ ସବୁକଥା ଲେଖୁଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କେତେ ଶୀଘ୍ର ପୁଣି ନବବର୍ଷ ଆସିଗଲା; କିଛି ପୂର୍ବାଭାସ ନାହିଁ, କିଛି ଶିହରଣ ନାହିଁ । କେତେ କଥା ମୁଁ ହଜାଇ ଦେଲି, ହରାଇ ଦେଲି । ନିଜକୁ ନିନ୍ଦା କଲି, ସମୟ ଓ ଭାଗ୍ୟକୁ ଦୋଷ ଦେଲି । ଏଇଠି ଦାରୁଣ ଖରା ମୁଁ ସହିପାରିଲି, ବର୍ଷାରେ ଭିଜିବାର ଆତ୍ମସନ୍ତୋଷ ପାଇଲି । ସେମାନେ ସବୁ ମୋତେ ନିର୍ଲିପ୍ତ ଭାବେ ନିଷ୍ଠୁର ହୋଇଯିବାକୁ

ଉପଦେଶ ଦେଇଗଲେ, ସେମାନେ ମୋର ଶେଷ ପରିଚୟଟିକକ ଅପହରଣ କରିନେଲେ । ଏଇ ବାଟଘାଟରେ ସେମାନେ ଆଙ୍ଗୁଠି ଦେଖାଇଦେଲେ ଏ ମଣିଷଟିକୁ ଅପଦାର୍ଥ ବୋଲି ପ୍ରମାଣ କରିଦେଲେ । ମୋର ଭଲ ପାଇବା ଓ ସମ୍ପର୍କ ରଚିବା ଅନେକ କ୍ଷେତ୍ରରେ ଅସଫଳ ପ୍ରମାଣିତ ହୋଇଗଲା । ବଞ୍ଚିବାର ଅଭିପ୍ସା ପେଣ୍ଡୁଲମ୍‌ର ଦୋଳନ ଭଳି ମୋତେ ଅଶାନ୍ତ କରିଦେଲା ।

ତଥାପି ମୁଁ ପ୍ରାୟ ଅଟକି ଯାଇନାହିଁ । ଏ ବର୍ଷରେ ଅନେକ କିଛି ପଢ଼ା ହୋଇପାରିଲା ନାହିଁ । War and Peace ମୋ ପ୍ରତି ସମୟର ନିର୍ଯ୍ୟାତନା ଯଥେଷ୍ଟ କମାଇପାରିଥିଲା । The Fall ମୋତେ ତଥାକଥିତ fornication ସହ ପରିଚିତ କରାଇପାରିଥିଲା । The Human Comedy ଭିତରେ ମୁଁ ଯେମିତି ଅନେକ କିଛି ହଜିଲା ଅତୀତକୁ ଖୋଜୁଥିଲି । ଭାବୁଥିଲି, ସତରେ ଯଦି ମୁଁ trapରେ ପଡ଼ିଯାଇଥା'ନ୍ତି, ଆଇସ୍‌କ୍ରୀମ୍ ବା ଚକୋଲେଟ୍ ମାଗିଥାଆନ୍ତି, କେବେହେଲେ Homer ଭଳି ଭାବପ୍ରବଣ ହୋଇପାରି ନ ଥା'ନ୍ତି । Islands in the Stream ତ ଏବେ ପଢ଼ିଥିବା କଥା ଲେଖିଥିଲି । ଏ ବର୍ଷ Dostoevsky, Camus. Tolstory, Gorkyଙ୍କର କାହାଣୀ ପଢ଼ାଗଲା । Gorkyଙ୍କ My Universities ଏବଂ My World ମୋତେ ଯେ ପ୍ରଭାବିତ କରିପାରିଛି, ମୁଁ ସ୍ୱୀକାର କରୁଛି । ଏ ବର୍ଷ ମଧ୍ୟ 'The Importance of Living by Lin Yutang, The story of Philosophy, The Discovery of India, St Joan' ପଢ଼ିବାକୁ ସୁଯୋଗ ମିଳିଲା । Goethe ପଢ଼ାଚାଲିଛି; ଏ ବର୍ଷ ସରିବ ନାହିଁ ।

ଏସବୁ ସତ୍ତ୍ୱେ ବି ଏ ବର୍ଷର ଶ୍ରେଷ୍ଠ ବହି ପ୍ରାୟ ନିର୍ବାଚନ କରିପାରି ନାହିଁ । ସବୁ ମୋତେ ମୋର ଅବେଳରେ ଭାରି ସାହାଯ୍ୟ କରିଛନ୍ତି । ମୋତେ ସବୁ ଖୁବ୍ ଭଲ ଲାଗିଛି ।

ଏ ବର୍ଷ ଭିତରେ ତମେମାନେ ମୋର ଆହୁରି ନିକଟତର ହୋଇପାରିଛ । ମୋର ଦୁର୍ଦ୍ଦିନରେ କାୟମନୋବାକ୍ୟରେ ମୋ ପାଖକୁ ଚାଲିଆସିଛ । ଯଦିଓ ପ୍ରଫୁଲ୍ଲ ସହ ପ୍ରାୟ ସମ୍ପର୍କ ବିଚ୍ଛିନ୍ନ ହୋଇଯାଇଛି । ତମମାନଙ୍କ ସହ ଭାରି ସୁଦୃଢ଼ ହୋଇଛି । ତମେ ତ କିଭଳି ଉପକାର କରିଛ ଲେଖିବା ନିଷ୍ପ୍ରୟୋଜନ ଏବଂ ଅତିରଞ୍ଜନ । ଅମ୍ଳାନ ବେଳେବେଳେ ନୀରବ ହୋଇଗଲେ ମଧ୍ୟ ତମ ଭଳି ସେ ମୋତେ ନୈତିକ ପ୍ରୋତ୍ସାହନ ଦେବାକୁ ଭୁଲିଯାଇ ନାହିଁ । ମୋଟାମୋଟି ମୋ ଉପରେ ମୁଁ ଲେଖୁଥିବା ଚିଠିଗୁଡ଼ିକୁ ସେ ବୁଝିପାରିଛି । ପରିଡ଼ା, ଗୁରୁ, ନିରୋଦ ଆଦି ମଧ୍ୟ ଚିଠି ଲେଖିଛନ୍ତି । ଯୋଗୀ ଭାଇନା ମୋର ଖୁବ୍ ଅନ୍ତରଙ୍ଗ ହୋଇଯାଇଛି ।

ଏ ବର୍ଷଟି ମୋତେ ସମୟର ଦୃଷ୍ଟିକୋଣରୁ ଭାରି ଲମ୍ବା ଜଣାପଡ଼ିଛି । ମୁଁ ବୁଝିପାରି ନାହିଁ ଯେ ଗୋଟାଏ ବର୍ଷ ଭିତରେ କେତେ କଥା ଘଟିଯାଏ । ମୋ ପାଇଁ ଏତେ ବଡ଼

ସାମୟିକ ପ୍ରସାରଣ ସଞ୍ଜ ଓ ସକାଳର ଦୂରତ୍ୱ ହୋଇନାହିଁ । ମୁଁ ଭାରି ସ୍ୱପ୍ନବିହ୍ୱଳ ହୋଇଯାଇଥିବା କଥା ତମକୁ ଲେଖିଥିବି । ଅନେକ ପ୍ରତିଫଳନ, ଅନେକ ଅପରିଚିତ ମୁହଁ, ଅନେକ ବିସ୍ମୃତ ଘଟଣାବଳୀ ଏ ବର୍ଷସାରା ମୋତେ ଅତିମାନସ ସ୍ତରରେ ପ୍ରଭାବିତ କରିଛନ୍ତି । ଏଥର ସିନ୍ଧୁବାଳା ମୋତେ ଯନ୍ତ୍ରଣା ଦେଇନାହିଁ, ସୋନ୍ୟା ମୋତେ ମୋହାଚ୍ଛନ୍ନ କରିପାରିଛି ।

ହଁ, ଗୋଟାଏ ବର୍ଷ ବିତିଗଲା । ମୁଁ ଜାଣେ ନାହିଁ ତମମାନଙ୍କୁ ବର୍ଷସାରା କେଉଁଭଳି ସାହାଯ୍ୟ ଦେଇଛି । ଆହୁରି ମଧ ମୁଁ ଜାଣିନି, ମୁଁ ତମମାନଙ୍କ ପ୍ରତି ଶିଥିଳ ହୋଇଯାଇଛି କି ବିମୁଖ ହୋଇପଡ଼ିଛି । ତମେମାନେ ସବୁ ମୋର ଅତି ଆପଣାର । ଅନେକ ବାର କହିଛି ଯେ ତମମାନଙ୍କ ବିନା ମୋ ସ୍ଥିତିର ପରିଚୟ ନାହିଁ; ତମମାନଙ୍କର ପ୍ରଭାବ ବିନା ମୋର ଆଉ କିଛି ନିଜତ୍ୱ ନାହିଁ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ସବୁକଥା କାଲିଭଳି ଲାଗୁଛି । ବାଲେଶ୍ୱରରେ ତମର ଜୀବନଯାତ୍ରା ମୋତେ ରୋମାଞ୍ଚକର କାହାଣୀର ଅନୁଭୂତି ଦେଉଛି । ମୁଁ ଯେମିତି ବାରମ୍ବାର ସେସବୁକୁ ମନେପକାଉଛି, ବାରମ୍ବାର ପୁଲକିତ ହେଉଛି ।

କେତେ କମ୍ ଦିନରେ କେତେ କ'ଣ ଘଟିଗଲା ! ଜୀବନର ଏକ ଅଧ୍ୟାୟର ଅତି ଶୁଷ୍କ ସମାପ୍ତି ଘଟିଲା । ତମେ ଚାହିଁଥିଲ କ'ଣ ହେବାକୁ ? କ'ଣ ହେଲା ଶେଷରେ ! ପରିଧି ଭିତରକୁ ହଠାତ୍ ଯେମିତି ଗୁଡ଼ାଏ ବୃହସ୍ପତି ଏବଂ ଗୁଡ଼ାଏ ଧୂମକେତୁ ହଠାତ୍ ଚାଲି ଆସିଥିଲେ, ଯେଉଁମାନେ ତମକୁ ଶାନ୍ତିରେ ରଖାଇ ଦେଉ ନ ଥିଲେ । ହଠାତ୍ ସବୁକିଛି ଓଲଟପାଲଟ ହୋଇଗଲା । ତମ ଜୀବନରେ ଅଚ୍ୟୁତ, ଅମ୍ଳାନ, ପ୍ରଦୀପ ସବୁକିଛି ଆବୋରି ବସିଥିଲେ ଅନେକ ଛନ୍ଦ ତମ ପାଇଁ ଅନାବିଷ୍କୃତ ହୋଇ ଯାଇଥାଆନ୍ତା । ମୁଁ ତ କହିଛି, ଏ ପ୍ରକାର ବନ୍ଧୁତା ତମକୁ ଆହୁରି ଅନୁଭବୀ କଲା । ସତ୍ୟ ବାବୁ, ଫଣିବାବୁ, ବିଧୁ, ଅରୁଣ, ରାଜେଶ ଓ ଅନ୍ୟ ଯେଉଁମାନେ ତମକୁ ବିଭିନ୍ନ ପରିସର ଓ ସମୟରେ ସାଥୀ ରୂପେ ଗ୍ରହଣ କରିଛନ୍ତି, ସେମାନେ ମଧ କେବେ କେମିତି ବାଲେଶ୍ୱରର ପ୍ରତିକୂଳ ଜୀବନରେ ଅନେକ କିଛି ଅର୍ଥ ଭରି ଦେଇଛନ୍ତି । ଏମାନେ ପ୍ରତ୍ୟେକ ନିର୍ଦ୍ଦିଷ୍ଟ ଏକ ଗୋଷ୍ଠୀକୁ ତମ ସହ ପରିଚିତ କରାଇପାରିଛନ୍ତି । ବାଲେଶ୍ୱରରେ ହୋଇପାରେ ତମେ ବେହେଲାରେ ନୂଆ ସୁର ଦେଇ ପାରି ନାହିଁ । ତଥାପି ଯଦି ବାଲେଶ୍ୱରର ବର୍ଷା, କୁହୁଡ଼ି, କାକର, ସୂର୍ଯ୍ୟୋଦୟ

ଏବଂ ସୂର୍ଯ୍ୟାସ୍ତ, ଜ୍ୟୋତ୍ସ୍ନା ଏବଂ ପରିବେଶ କେବେ କେମିତି ପ୍ରଲୋଭିତ କରିଛି । ତେବେ ତମେ ଅଟକିଯାଇ ନାହିଁ; ତମେ ଆଗେଇ ଚାଲିବାର ମୂଳମନ୍ତ୍ରକୁ ଭୁଲି ନାହଁ ।

କିଏ ଜାଣେ, ହଠାତ୍ କିଛି ଘଟିଯାଇପାରେ ! ଏହି ଯେଉଁ ଜୀବନକୁ ତମେ ଆରମ୍ଭ କରିବାକୁ ଯାଉଛ, ମୋତେ ଭୟ ଆଣିଦିଏ । ଗୋଟାଏ ସ୍ରୋତରୁ ଖସିଯାଇ ଏକ ସୀମିତ ପରିସର ଭିତରେ ତମେ କେମିତି ନିଜକୁ ଆବଦ୍ଧ କରି ପାରିବ ମୁଁ ଭାବିପାରୁ ନାହିଁ । ଅମଲାତନ୍ତ୍ରର ସବୁକିଛି ବିଷ ତମ ଦେହରେ ପଶିଗଲା ପରେ ତମେ କେଉଁଭଳି ହେବ, ମୁଁ ଜାଣିପାରୁ ନାହିଁ । ବାସୁ ମହାନ୍ତି ଭଳି ପିଲାଙ୍କ ଗହଣରେ ତମେ ପୁଣି adjust କରିବ, ପୁଣି ବନ୍ଧୁତା ଖୋଜିବ, ଯେଉଁମାନେ liberated ଅନୁଭବ କରୁଥିବେ, ବୃଥା ଅହମିକାରେ ନାକତଳେ ନିଶ ନ ଥିଲେ ମଧ୍ୟ ତାହା ମୋଡ଼ୁଥିବେ । Affluences ର ସବୁ ଦ୍ୱାର ଉନ୍ମୋଚିତ ହୋଇଗଲା ପରେ ଜୀବନ କେଉଁ ରୂପ ନେବ, ଗତିପଥ କେଉଁଭଳି ବଦଳିଯିବ, କିଏ କହିବ ? ମୁଁ କିନ୍ତୁ ତମ ପାଖେ କେବେହେଲେ ନିରାଶ ହେବି ନାହିଁ । ଜୀବନର ଗୋଟାଏ ସ୍ତର ଆମେ ଅତିକ୍ରମ କରିସାରିଛେ, ଯାହାକି ଏ ପୃଥିବୀର କ୍ୱଚିତ୍ ଲୋକ କରିଥାଆନ୍ତି । ଏହି ବୟସରେ ପୃଥିବୀକୁ ଭଲ ପାଇବାର କଥା କେବଳ Dostoevsky ଲେଖିଛନ୍ତି । ଆମେ ତାହା ବାସ୍ତବତାରେ ପରିଣତ କରିବାକୁ ପ୍ରୟାସ ହିଁ କରିଛେ । ଯିଏ ଯେଉଁଠି ଥାଉନା କାହିଁକି, ଏ ଭଲ ପାଇବାକୁ ପାଥେୟ କରି ଆମ ଜୀବନଯାତ୍ରାର ଦୁର୍ବାର ପଥ ଅତିକ୍ରମ କରିଯିବା । କେଉଁଠି ଏ ସ୍ରୋତ ଶୁଖିଯିବ ନାହିଁ । କେବେ ମଧ୍ୟ ନୁହେଁ । ମୁଁ ତୁମକୁ ଶୁଭେଚ୍ଛା ଜଣାଉଛି ।

ଅଚ୍ୟୁତ

***ବି.ଦ୍ର. :*** ଯିବାକୁ ଚେଷ୍ଟା କରୁଥିଲି । ସମୟ ହାତରେ ଯଥେଷ୍ଟ କମ୍ । ଏଣୁ ହତାଶ ହେଲି । ତମେ ଦିଲ୍ଲୀ ପହଞ୍ଚି ଲେଖିବ । ବାଲେଶ୍ୱରର ଠିକଣାରେ ଏହା ମୋର ଶେଷ ଚିଠି । ତମ ଦିଲ୍ଲୀ ଯିବା କଥା ଜଣାଇଥିବ ।

▯ ▯ ▯

ପ୍ରିୟ ବନ୍ଧୁ,

ଶେଷ ମୁହୂର୍ତ୍ତରେ ତମେ ଯେତେବେଳେ କହିଗଲ ଯେ ଆଉ ଅନେକ କିଛି ବାକି ରହିଗଲା କହିବାକୁ; ତା' ପର ମୁହୂର୍ତ୍ତରେ ମୁଁ ନିମିଷକ ମଧ୍ୟରେ ଆମର ବନ୍ଧୁତାକୁ ଅନୁଭବ କରିପାରିଲି । ଏବେ ତାହା ଆବେଗ ସ୍ତରରୁ ଉଠି ଯେମିତି ବୌଦ୍ଧିକ ପର୍ଯ୍ୟାୟର ଚରମ ସ୍ତରରେ ପହଞ୍ଚିଯାଇଛି । ଆମର ଅନ୍ୟ କ୍ଷେତ୍ରରେ ବିଭାଜନ ହେଉଥିଲା ବେଳେ ଏହି କ୍ଷେତ୍ରରେ ହିଁ କେବଳ ସମନ୍ୱୟତା ପ୍ରକାଶ ପାଉଛି ।

ତଥାପି ତମକୁ ମୁଁ ଲକ୍ଷ୍ୟ କରୁଥିଲି । (ତମେ ମଧ୍ୟ ମୋତେ ଆତ୍ମିକ ଭାବେ ଅନୁଭବ କରିଥିବ) ତମର ଏବେ ସାମୁଦାୟିକ ସ୍ଥିତିରେ କେତେ ପରିବର୍ତ୍ତନ ଆସିଯାଇଛି, କଥାକଥାକେ ତମର ରୁଚି ଓ ଆଭିମୁଖ୍ୟ ବଦଳିଯାଇଥିବା କଥା ଅନୁମାନ କରିହେଉଛି । ଜୀବନରେ ନିର୍ଦ୍ଦିଷ୍ଟ ଦିଗ ନ ଥିଲା, ଏବେ ମଧ୍ୟ ନାହିଁ । ମୋ ଛଡ଼ା ଅନ୍ୟମାନଙ୍କର ଗୁରୁତ୍ୱ ଯେ ତମ ଉପରେ ଚାପ ପକାଉଛି, ତାହା ମଧ୍ୟ ସହଜ ଭାବେ ପରିଲକ୍ଷିତ ହେଉଛି । ମୋର ଯେଉଁ ଧାରଣା ଥିଲା, ମାନେ ତମେ ଯେ ପୃଥିବୀର ମଣିଷ ହେବାକୁ ଚାହଁ, ତାହା ପ୍ରମାଣିତ ହୋଇଛି । ତମ ପାଇଁ ମୋର ପରୀକ୍ଷା କିଛି ନାହିଁ, ବନ୍ଧୁତ୍ୱରେ ବି ନୁହେଁ । ସୃଷ୍ଟିଛଡ଼ା ମଣିଷ ହିସାବରେ ଏ ପୃଥିବୀରୁ ସବୁଠାରୁ ଉତ୍ତମ ମଣିଷକୁ ମୁଁ ବାଛିକରି ଯେମିତି ସମ୍ପର୍କ ଯୋଡୁଛି । ମୋର ବିଶ୍ୱାସ ତମେ ମୋତେ ନିରାଶ କରିବ ନାହିଁ ।

'ହୁଏତ ଅତି ସ୍ପଷ୍ଟ ଭାବେ ମୁଁ କହିବାକୁ ଚାହୁଁଥିଲି ଯେ ଯେକୌଣସି ମୁହୂର୍ତ୍ତରେ ମୁଁ ମରିଯାଇପାରେ । ବଞ୍ଚିବା ସପକ୍ଷରେ ମୁଁ ଗୋଟାଏ ହେଲେ ଯୁକ୍ତି ଖୋଜି ପାଉ ନାହିଁ । ମୋର 'ମୁକ୍ତି' ମୋ ପାଇଁ ସବୁକିଛି; ସବୁଠାରେ ମୁକ୍ତ ହୋଇଯିବା ମାନେ ପୃଥିବୀ ଛାଡ଼ି ଚାଲିଯିବା । ଗୋଟାଏ ନିର୍ଦ୍ଦିଷ୍ଟ ସ୍ରୋତରେ ଭାସି ଚାଲିଲେ, ଗୋଟାଏ ନିର୍ଦ୍ଦିଷ୍ଟ frame of reference ରେ ସ୍ଥିତି ମାପିଲେ 'ମୁକ୍ତି' ଯେ academic ହୁଏ, ତାହା ମୁଁ ଅନୁଭବ କରୁଛି । ଜୀବନର ଗୋଟାଏ ପାର୍ଶ୍ୱରେ ମୋର ଅନନ୍ତ ଓ ମହାଜଗତ ସହ ମିଳନ ଓ ଅନ୍ୟପକ୍ଷରେ self-annihilation ଏକାକଥା । ସେଇଥିପାଇଁ ମୁଁ ଜାଣିଜାଣି କାଳ ଓ ସ୍ଥାନକୁ ନିର୍ବାସିତ କରିଦେଇଛି । ବଞ୍ଚିବାର ମୂଳମନ୍ତ୍ର ଆହରଣ ପାଇଁ ଲାଇବ୍ରେରୀ ପରେ ଲାଇବ୍ରେରୀର ଆବଶ୍ୟକତା ନ ଥାଏ । ଏହା ମୂଳତଃ ବିଶ୍ୱାସ ଓ ଅବିଶ୍ୱାସର ଏକ କିମ୍ଭୁତକିମାକାର ସମ୍ମିଶ୍ରଣ । ବିଶେଷ କରି କାହାକୁ ଠକିବା କଥା ମୁଁ ସ୍ୱାସ୍ଥ୍ୟଜନକ ବୋଲି ମନେକରୁ ନାହିଁ ।

ନାନୀ ଆଦିଙ୍କର ଯଦି ବିଶ୍ୱାସ ହେଉଥାଏ ଯେ ମୁଁ ତମକୁ କୌଣସି ପ୍ରକାରେ ପ୍ରଭାବିତ କରିଛି । ମୁଁ ବରଂ ତମ ପ୍ରତି ଉଦାସୀନ ହୋଇଯିବି । ମୋର ଅଦ୍ଭୁତ ଜୀବନର ସ୍ଥାନ କେଉଁଠି ନାହିଁ ବୋଲି ଥରେ ମୁଁ ଧାରଣା କଲାପରେ ସେଇଠି ପୁନର୍ବାର ମୁଁ ପାଦ ଦିଏ ନାହିଁ । ଅବସ୍ଥାଚକ୍ରରେ ମୁଁ ନାନୀଆଦିଙ୍କୁ ଦୂରେଇଦେବି । ତମ ସହ ସମ୍ପର୍କ କମିଆସିଲେ ମଧ୍ୟ ମୁଁ ଆଦୌ ଆଶ୍ଚର୍ଯ୍ୟ ହେବି ନାହିଁ । ତମେ କେବଳ ଭଲ ମଣିଷ ହୁଅ ଏକଥା ମୁଁ ବାରମ୍ବାର କାମନା କରିବି । ଏଥିପାଇଁ ମୋର ବନ୍ଧୁତା ବୋଧେ ଏକମାତ୍ର କଣ୍ଟା । ଏଥିପାଇଁ ମୁଁ ସଜାଗ ଓ ସଚେତନ ହେବି । ମୋର ଚିଠି ବା ଲେଖାଗୁଡ଼ିକୁ ତମ ପାଖକୁ ପଠାଇବି କେବଳ ମୋର ତମ ପ୍ରତି

ଅନନ୍ତ ସ୍ନେହ ପାଇଁ । ତମେ ହୁଏତ ମୋର ସବୁକିଛି କାର୍ଯ୍ୟକଳାପକୁ ହୀନଦୃଷ୍ଟିରେ ଦେଖିପାର, କିନ୍ତୁ ମୁଁ ନର୍କରୁ ଲେଖିଥିଲେ ମଧ ତାହା ମୋର ନିଜସ୍ୱ କଥନ ବୋଲି ତମେ ଗ୍ରହଣ କରିବ । ଅନ୍ତତଃ ଏହା ମୋର ଅନୁରୋଧ ।

ଅମ୍ଳାନ ପାଖକୁ ଲେଖିଛି । ତା' ସହ କିଛି ଦିନ କାଟିବାକୁ ମୁଁ ନିଶ୍ଚୟ ଚାହିଁଛି । ସୁଯୋଗକୁ ଅପେକ୍ଷା କରୁଛି । ଅମ୍ଳାନ କ୍ଷେତ୍ରରେ ମୁଁ ହାରିଯାଇଥିବା କଥା ଭାବୁନାହିଁ । ମୋ ପାଇଁ ଏ ସଂସାରର ନୀତିନିୟମ ଯାହା ହେଉନା କାହିଁକି କେବେ ଗ୍ରହଣଯୋଗ୍ୟ ନୁହେଁ । ମୁଁ କାହାପାଇଁ (ମୋ ନିଜ ପାଇଁ ମଧ) ଏ ପୃଥିବୀକୁ ଫେରୁନାହିଁ, ସାଲିସ୍ ମଧ କରୁ ନାହିଁ ।

ବାପା ମାଆଙ୍କୁ ମୋର ପ୍ରଣାମ । ବୁଢ଼ୀମାଆ ଓ ବାବିକୁ ମୋ କଥା ମନେ ପକାଇଦେବ । ତମର ସାଙ୍ଗମାନେ ନୀଳଗିରି ପହଞ୍ଚିଥିଲେ ଶୁଭେଚ୍ଛା ଜଣାଇଦେବ ।

ପୁଣି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ଆଗରୁ ଘରଠିକଣାରେ ଲେଖିଛି ।

ମୋର ଚିଠିମାନେ ତମକୁ ଘରେ କିଛି ସମୟ ପାଇଁ ମୋତେ ମନେ ପକାଇ ଦେବେ ବୋଲି ଆଶା କରୁଛି । ମୋର ବିଶ୍ୱାସ, ତମେ ଏ ଚିଠି ପାଇବ ।

ଖରିଆର୍ ରୋଡ୍‌ରୁ ଏ ଚିଠି ଲେଖୁଛି । କାଲି ପାଇକ୍‌ମାଲ୍ ଫେରିଯିବି । ଏଠାରେ ଗତ ଦଶଦିନ ହେବ ସୂର୍ଯ୍ୟର ଆଦୌ ଦେଖା ବି ନାହିଁ । କୋହଲା ପାଗ ମାତ୍ରାଧିକ ହେବାରୁ ବିରକ୍ତ ଲାଗୁଛି । ଏଠାକୁ ଆସି ମୁଁ ପୁଣି ନିଜକୁ କେଜାଣି କାହିଁକି ସଂଯତ କରୁଥିଲି । ଚିରଦିନ ଲାଗି ସମାଜସେବୀ ହିସାବରେ ଆମକୁ ଯେଉଁଭଳି ଉତ୍ସାହିତ କରାଯାଉଛି, ତାହାକୁ ବିଶ୍ଳେଷଣ କରୁଥିଲି । କାହାର ଛାଇତଳେ ଆମକୁ ଯେମିତି ଗଢ଼ିଉଠିବାକୁ ସୁଯୋଗ ଦିଆଯାଉ ନାହିଁ ବରଂ ପରସ୍ପର ପ୍ରତି ବିଦ୍ୱେଷ, ଅବିଶ୍ୱାସ ଓ ପରଶ୍ରୀକାତରତା ବଢ଼ାଇବାରେ କେହି ସାହାଯ୍ୟ କରୁଛି । ଏମିତି ହେଲେ administration ପାଖରେ କିଛି ହେଲେ ଅଜଣା ରହିବ ନାହିଁ, ଏପରିକି ବ୍ୟକ୍ତିଗତ ଜୀବନର କଥା ମଧ ଆମ ଭିତରୁ କେହିନା କେହି ପ୍ରିୟପାତ୍ର ହେବ ବୋଲି ମୁଖ୍ୟ ଅଧିକାରୀଙ୍କ କାନରେ ଫୋଡ଼ିଦେଉଛି ।

ଏଠାରେ ଜଣେ କର୍ମୀ ହୋଇପାରିବ, କିନ୍ତୁ ଶୋଷଣ ଓ ଅନ୍ୟାୟ ବିରୋଧରେ ନେତୃତ୍ୱ ନେବାର ବ୍ୟକ୍ତିତ୍ୱ ବା ସାମର୍ଥ୍ୟ ପାଇପାରିବ ନାହିଁ । ଅକ୍ସଫାମ୍‌ର set-pattern ଭିତରେ ବାଧ୍ୟ ହୋଇ ପଡ଼ିବାକୁ ପଡ଼ିବ । କାଗଜପତ୍ରରେ ଉଚ୍ଚତମ କର୍ତ୍ତୃପକ୍ଷକୁ ଆନନ୍ଦ ଦେଲାଭଳି ଲେଖିବାକୁ ହେବ, ଗରିବ ପାଇଁ ଯେମିତି ସତରେ ପ୍ରାଣ କାନ୍ଦୁଛି, ଏହାର ମଧ୍ୟ ଅଭିନୟ କରିବାକୁ ହେବ । ମୁଁ କିନ୍ତୁ ପାରୁ ନାହିଁ ଏବଂ ଏଠାରେ ମୋର ସହକର୍ମୀଙ୍କ ପାଖରେ ଏପର୍ଯ୍ୟନ୍ତ ଗୋଟାଏ oddman out ହୋଇ ରହିଯାଇଛି । ଅତି ନିଷ୍ଠାପର ଭାବରେ ନିଜକୁ ଗଢ଼ିତୋଳି ଗୋଟାଏ 'promised load'ର କଥା ସ୍ୱପ୍ନ ଦେଖିବାକୁ ଏମାନେ ଯେମିତି ଯୋଗ୍ୟ ହୋଇ ନାହାନ୍ତି । ଏଠାରେ ମୋର ସହକର୍ମୀମାନେ ମଦ୍ୟପାନ କରନ୍ତି, ଯାବତୀୟ ଅଶ୍ଳୀଳ କଥାବାର୍ତ୍ତା କରନ୍ତି; ଅଥଚ କେମିତି କେଜାଣି ସେମାନେ ଭଲ କାମ କରୁଛନ୍ତି ବୋଲି ପ୍ରଶଂସା ପାଆନ୍ତି ମୁଁ ବୁଝିପାରେ ନାହିଁ ।

ଜୀବନକୁ ବାଜି ରଖି ମୁଁ ଏଠାରେ ଯୋଗ ଦେଇଥିଲି । Hegelଙ୍କର କଥା ମୋର କାନେକାନେ ବାଜୁଥିଲା, "for freedom you have to risk your life" । ଭାରି ଆତ୍ମପ୍ରବଞ୍ଚନା ଓ ଶଠତାକୁ ପ୍ରଶ୍ରୟ ନ ଦେବା ପାଇଁ ସ୍ଥିର କରୁଛି । ପୁଣି ଆଉ କିଛି ଦିନର ବ୍ୟର୍ଥତା ମୋତେ ଘାରିବ, ମୋତେ ପଛଘୁଞ୍ଚା କରିଦେବ । ତଥାପି ମୋର ଆଗେଇ ଚାଲିବାର ପ୍ରତିଜ୍ଞା ଏବେ ମଧ୍ୟ ଭାଙ୍ଗିଯାଇ ନାହିଁ ।

× × × ×

ନୀଳଗିରିର ଗ୍ରାମ୍ୟ ପରିବେଶ ମସୌରୀଠାରୁ କେତେ ଭିନ୍ନ କ୍ଷଣିକ ଭିତରେ ତମେ ଅନୁଭବ କରିପାରୁଥିବ । ସଭ୍ୟତାର ବ୍ୟବଚ୍ଛେଦ ହେଉଥିବା ଏକୋଡେମୀମାନଙ୍କରେ ତମର ଦୃଷ୍ଟି ସୁଦୂରପ୍ରସାରୀ ହେବାର କଥା । ଏଠାରେ ମଣିଷ ଗଡୁଗଡୁ ମାଙ୍କଡ଼ ସୃଷ୍ଟି ହୋଇଥାଏ, ପ୍ରତି କ୍ଷେତ୍ରରେ ମାନବିକତାକୁ ବୋଧେ ହତ୍ୟା କରାଯାଇଥାଏ । ଗାଁଗହଳରେ ସମସ୍ତ ଶସ୍ତା ଓ ଭଣ୍ଡ ରାଜନୀତି ସତ୍ତ୍ୱେ ବି ତମେ ତମର ଗାଁକୁ ଭଲ ପାଇପାରିବ, ନୀଳଗିରିର ଭାରି ସୁନ୍ଦର କେତୋଟି ଚାଳଘର ତମର ସ୍ମୃତି ହେବ ନାହିଁ, ସବୁଦିନେ ବର୍ତ୍ତମାନ ହୋଇ ରହିଥିବ । ଏବେ ଯେଉଁଭଳି ସବୁ ସହରୀ ସଭ୍ୟତା ଗାଁକୁ ପ୍ରବେଶ କରୁଛି ଓ ସେଠାକାର ମଣିଷ ଶଠତାର ଶିକାର ହେଉଛି, ସେସବୁକୁ ରୋକିବାର ବ୍ୟର୍ଥଚେଷ୍ଟା ଆମ ସମସ୍ତଙ୍କ ପାଇଁ ଭାରି ଦୁଃଖଦାୟକ ହେବ । ନୀଳଗିରିରେ ଗତବର୍ଷ ଥିବାବେଳେ ମୁଁ ତମକୁ ପ୍ରତିଶ୍ରୁତି ଦେଇଥିଲି ଯେ ତମର ଗାଁର ରଙ୍ଗବିଶେଷକୁ ତମ ପାଖକୁ ରୂପଦେଇ ଲେଖିବି । ବୋଧେ ଅନ୍ୟ ରୂପରେ ତାହା ସମ୍ଭବ ହେଲା ନାହିଁ । ତଥାପି ବଞ୍ଚିରହିଲେ ତାହା ମୁଁ ସମ୍ପୂର୍ଣ୍ଣ କରିବି ।

ମୁଁ ଚିଠି ଲେଖୁ ନ ଥିଲେ ମଧ୍ୟ ତମେ ଲେଖୁଥିବ । ମୋ ପାଖକୁ ଫର୍ମୁଲା ଚିଠି ଲେଖିବାର ଆବଶ୍ୟକତା ନାହିଁ । ତମେ ଚିଠି ଲେଖିପାରୁ ନ ଥିଲେ ମୁଁ ବୁଝିପାରିବି । କିନ୍ତୁ ମୋତେ ପ୍ରଭାବିତ କରୁଥିବା ଭଳି କୌଣସି କଥା ତମର ମନକୁ ଆସିଲେ ତମେ ଲେଖିବସିବ । ଅମ୍ଳାନ ପାଖକୁ ତା'ର ଅଫିସ୍ ଠିକଣାରେ ଦୁଇଟି ଚିଠି ପଠାଇଛି । ସେ ଉତ୍ତର ଦେଇ ନ ଥିବା ମୋ ପାଇଁ ଆଶ୍ଚର୍ଯ୍ୟର କଥା ନୁହେଁ । ଅତି ସହଜଭାବେ ଦିଲ୍ଲୀର ଗତିଶୀଳ ଜୀବନ ସହ ସମ୍ପୃକ୍ତ ହୋଇଯାଇ ସାରିଲାପରେ ଅତିମାନବୀୟ ଚିନ୍ତାଧାରା ତାହାର ପାଖ ପଶୁ ନ ଥିବ । ତା'ର ଭଙ୍ଗା ଜୀବନ ଗଢ଼ିବାକୁ ଏବେ ମଧ୍ୟ ସମୟ ଅଛି । ମୁଁ ଚାହିଁବି ସେ ତା'ର ଜୀବନ ପୁଣି ନୂଆକରି ଆରମ୍ଭ କରୁ, ପୁଣି ତାହାର ରାସ୍ତା କୁସୁମିତ ହେଉ । ତମର ବାପା ମାଆଙ୍କୁ ନମସ୍କାର ଜଣାଇଦେବ । ଭାରତୀ ନାନୀ ଥିଲେ ମଧ୍ୟ ସମ୍ମାନ ଜଣାଇଦେବ । ବାବିକୁ ସ୍ନେହ । ତମେ ଫେରିଯାଇ କେବେ ମସୌରୀ ପହଞ୍ଚୁଛ ତାହା ଜଣାଇବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ଲେଖିପାରୁନାହିଁ ବୋଲି ମୁଁ ଭାରି କଷ୍ଟ ପାଉଛି । କାହାକୁ ମଧ୍ୟ ଲେଖିପାରୁ ନାହିଁ । ସମସ୍ତଙ୍କର କଡ଼ା ତାଗିଦ୍ ସତ୍ତ୍ୱେ ବି କେଇଧାଡ଼ିର ଚିଠିଟିଏ ପଠାଇବାକୁ ମୁଁ ସକ୍ଷମ ହୋଇପାରୁ ନାହିଁ । ଏକଦା ମୁଁ ଭାବୁଥିଲି ଯେ ଚିଠି ଲେଖିବା ହିଁ ସମ୍ପର୍କର ସବୁଠାରୁ ଶ୍ରେଷ୍ଠ ପରିପ୍ରକାଶ; ନିଜ ସହ, ତମ ସହ, ପୃଥିବୀ ସହ, ଆପଣାର ଯାହାକିଛି ତାହାସହ ବି ଏକ ଆବେଗମୟ ମିଳନ ପରେ କିଛି ଲେଖିହୁଏ; କିଛି ଆପଣାଛାଏଁ ପରିସ୍ଫୁଟ ହୁଏ । ଏବେ ଯେମିତି ତାହା ଭାରି ଶୁଷ୍କ ଜଣାପଡୁଛି । ତାହା ଅବାନ୍ତର ବୋଲି ମନେହେଉଛି । ତମେ କେବେହେଲେ ମୋର ଅଭାବ ଅନୁଭବ କରିବ ନାହିଁ ବୋଲି ମୁଁ ଜାଣିପାରୁଛି । ମୋର ନୀରବତା ତମ ପ୍ରତି କେବେହେଲେ ଅପ୍ରୀତିକର ହୋଇଯିବ ନାହିଁ ବୋଲି ମୁଁ ବିଶ୍ୱାସ କରୁଛି । ଯେଉଁ ମୁହୂର୍ତ୍ତରେ ମୋର ବୌଦ୍ଧିକ, ଆବେଗ ବା ପାଶବିକ ପ୍ରାଣରେ କୌଣସି ପ୍ରକାର ଚମକ ଖେଳିବ, କିଛି ନୂଆ ଉନ୍ମାଦନାର ଉନ୍ମେଷ ଘଟିବ, ସେହି ମୁହୂର୍ତ୍ତମାନଙ୍କରେ ମୁଁ ତମମାନଙ୍କ ପାଖକୁ ଲେଖୁଥିବି । କିନ୍ତୁ ଅତି ଚିରାଚରିତ ଓ ଅଯୌକ୍ତିକ ଜୀବନର ଘଟଣା ପ୍ରବାହକୁ ଅତି ନିଷ୍ଠୁର ଭାବରେ ତମ ଉପରେ କେବେହେଲେ ମୁଁ ଲଦି ଦେବି ନାହିଁ । ତମେ ମୋତେ ବୁଝୁଥିବ ।

× × × ×

ତମର ଚିଠି ପାଇଲି । ତମେ ପୁଣି କେତେ ଦିନ ପରେ 'Crime and Punishment' ପଢୁଥିବା ଜାଣି ଖୁସି ବି ହେଲି । ଏବେ ସବୁ ପ୍ରତିକୂଳ ଅବସ୍ଥାପରେ ବି ତମେ Dostoevsky's Luxury of Suffering ପ୍ରତି ଆକୃଷ୍ଟ ହୋଇପାରୁଛ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ମୁଁ 'The Devils' ସହ ପ୍ରାଣ ଭରି ସମ୍ପର୍କ ରଚନା କଲାପରେ ଏବେ କେତେ ଦିନ ଧରି ମୁଁ ଗୋଟାଏ ପ୍ରକାରର purgation ଦେଇ ଗତି କରୁଛି । ତମେ 'Crime and Punishment'ର ଶେଷ କେଇ ପୃଷ୍ଠାରେ ସୋନ୍ୟା ଓ ବାଇବେଲ୍ ପ୍ରତି ରାସୋଲ୍‌ନିକୋଭ୍‌ର ଆବେଗମୟ ସମ୍ବନ୍ଧ ସମ୍ପର୍କରେ ଅନୁଭବ କରିବାକୁ ଚେଷ୍ଟା କରିବ ଓ ମୋତେ ମନେ ପକାଇବ । ତେବେ 'Brother's Karamazov' ବା 'The Devils' ତୁଳନାରେ ଏ ବହିଟି ସେତେ ଗଭୀର ହୋଇପାରି ନାହିଁ ।

ତମର ଏକାଡେମୀରୁ ଆରମ୍ଭ ହୋଇଥିବା ଫର୍ମୁଲା ଜୀବନ ସହ ମୁଁ ଯେତେ ବୀତସ୍ପୃହ ହେଲେ ମଧ୍ୟ ଜଡ଼ିତ ହେବାକୁ ଆଶା କରିଛି । ଅମଲାତନ୍ତ୍ରର ଅସାଧାରଣତାକୁ ସମ୍ପୂର୍ଣ୍ଣରୂପେ ପରିହାର କରି ତମେ ତମର ସ୍ୱତନ୍ତ୍ର ପରିଚୟ ଜାହିର କରିବା ବୋଧେ ଅମଲା ହିସାବରେ ସମ୍ଭବ ହେବ ନାହିଁ । ତମର ମନ ଦବିଯାଉଛି ବୋଲି ଲେଖିଥିଲ; ମୁଁ ତମ ସମ୍ପର୍କରେ ବା ଅମ୍ଳାନ ବିଷୟରେ କୌଣସି ପ୍ରକାରରେ ଭୟ ପାଉନାହିଁ । ଅବଶେଷରେ ଜୀବନର ପରିଣତି ଓ ସଚେତନତାର ଶେଷ ପାହାଚକୁ ହୃଦୟଙ୍ଗମ କରିସାରିଲା ପରେ ମୁଁ ତମମାନଙ୍କର ଭବିଷ୍ୟତ ଭାରି ଉଜ୍ଜ୍ୱଳମୟ ବୋଲି ସ୍ପଷ୍ଟ ଧାରଣା କରିପାରୁଛି । ଏକାଡେମୀର ଜୀବନ ତମକୁ କ୍ରମେ ପ୍ରଭାବିତ କରିଦେଉଛି ବୋଲି ମୁଁ ଡରିଯାଉଥିଲି । କିନ୍ତୁ ଏବେ ମଧ୍ୟ ଅତି ନିର୍ଦ୍ଦିଷ୍ଟ ପଥରୁ ତମର ବିଚ୍ୟୁତି ଘଟିନାହିଁ ଓ ଭବିଷ୍ୟତରେ ଘଟିବ ନାହିଁ । ତମେ କେବେ ସୁଯୋଗ ପାଇଲେ 'The Castle' ପଢ଼ିବାକୁ ଚେଷ୍ଟା କରିବ । (Joseph K ଭଳି ତମେ ଯେମିତି କେଉଁ ଏକ Castle କୁ ସର୍ଭେ କରିବାକୁ ଯାଉଛ ଓ ଶେଷରେ ସେଠାରେ ବନ୍ଦୀ ହୋଇପଡୁଛ ।)

ପାଇକମାଲ୍ ଠିକଣାରେ ଚିଠି ଦେବ ଓ ଅନ୍ୟମାନଙ୍କୁ ମୋ କଥା କହିଦେବ ।

*ବି.ଦ୍ର. :* ଏବେ Alex Haley ଙ୍କ Roots ପଢୁଛି । ଖୁବ୍ ବଡ଼ ବହିଟାଏ । ତେବେ ସମୟ କାଟିବା ପାଇଁ ମନ୍ଦ ନୁହେଁ । Naipaul ଙ୍କ 'The Loss of El Dorado : A History' ବୋଲି ମୁଖ୍ୟତଃ ଇତିହାସ ବହିଟିଏ ପାଇଛି । ପଢ଼ିବି କି ନ ପଢ଼ିବି ସନ୍ଦେହରେ ପଡ଼ିଛି ।

□ □ □

ପ୍ରିୟ ବନ୍ଧୁ,

ମୁଁ 'ଅକ୍ସଫାମ୍'ରୁ ଇସ୍ତଫା ଦେଇଛି ଓ ତାହା ମଧ୍ୟ ଗ୍ରହଣ କରାଯାଇଛି । ଏ ମାସର ତୃତୀୟ ସପ୍ତାହ ଆଡ଼କୁ ମୁଁ ଏଠାରୁ ବିଦାୟ ନେବି । କେବଳ ଦାୟିତ୍ୱ ହସ୍ତାନ୍ତର କରିବା ବାକି ରହିଛି । ତମେ ଏ ପ୍ରକାରର ନିଷ୍ପତ୍ତିରେ କିଛିଟା absurdity ଦେଖୁଥିବ । ମୁଁ ନିଜେ ତାହା ଉପଲବ୍ଧି କରିପାରୁଛି । ଏହାପରେ ଜୀବନଟାର ରୂପରେଖ ସମ୍ପର୍କରେ ମୁଁ କିଛି ନିର୍ଦ୍ଦିଷ୍ଟ ଭାବେ ଭାବିପାରୁ ନାହିଁ । ସମ୍ଭବତଃ ଏଇଭଳି ମେଞ୍ଚାଏ ଆତ୍ମଅଭିମାନକୁ ନେଇ ବଞ୍ଚିବା ସମ୍ଭବପର ହେବ ନାହିଁ । ବଞ୍ଚିରହିବାକୁ କିଏ କେଉଁଭଳି ଗ୍ରହଣ କରୁଛି, ଏବେ ମୁଁ ତାହା ଆଉ ବିଶ୍ଳେଷଣ କରୁନାହିଁ ।

ମୋର ଇସ୍ତଫାରେ ଏଠାରେ କେହି ଆତଙ୍କିତ ହେଲେ ନାହିଁ । ବରଂ ସଂସ୍ଥା ଖୁସି ହୋଇଛି ଯେ ମୋଭଳି ଅସହିଷ୍ଣୁ ମଣିଷ କବଳରୁ ରକ୍ଷାପାଇବା ଏବେ ସହଜରେ ସମ୍ଭବ ହୋଇଛି । ପାଇକମାଲ ଛଡ଼ା ବୌଦ୍ଧିକ ଓ ଆବେଗସ୍ତରରେ ଏଠାରେ ମୁଁ ଦାରିଦ୍ର୍ୟ ସମ୍ପର୍କରେ ଯେଉଁ ପରୀକ୍ଷା କରୁଥିଲି, ତାହା ବ୍ୟର୍ଥ ହୋଇଛି । କେବଳ ମୁଁ ନିଜକୁ ଆଶ୍ୱାସନା ଦେଇଛି ଯେ ସମାଜ ସେବା ଭିତରେ ଯେଉଁ ବ୍ୟବସାୟିକ ଚିନ୍ତାଧାରା ଲୁପ୍ତ ଅବସ୍ଥାରେ ଥାଏ, ତାହା ମୋତେ ସ୍ପର୍ଶ କରି ପାରିନାହିଁ । କିଏ ନ କହିବ ଯେ ମୁଁ ବି ଏଠାରେ art and action ର ସମନ୍ୱୟ ପାଇଁ ଚେଷ୍ଟିତ ନ ଥିଲି ବୋଲି । ଗାଁଗହଳରେ ଦାରିଦ୍ର୍ୟ ଏକ ସର୍ବଗ୍ରାସୀ ରୋଗ ଯାହା ପାଇଁ ନିଜକୁ ପ୍ରସ୍ତୁତ କରିବା ଗୋଟାଏ ମସ୍ତବଡ଼ challenge ।

ମୁଁ ଘରକୁ ଯାଇ ସେଠାରେ ପଢ଼ାପଢ଼ି କରିବି । ଅମ୍ଳାନ ଫେରିଲା ପରେ ମୋର କ'ଣ ଯୋଜନା ହେବ, ଆଜିଠାରୁ କହିହେବ ନାହିଁ । କିନ୍ତୁ ଦିଲ୍ଲୀ ସେଣ୍ଟରରେ ପରୀକ୍ଷା ଦେବାପାଇଁ ମୁଁ ବାଛିଚି । ନୀଳଗିରି ସମ୍ପର୍କରେ ତମର ପ୍ରସ୍ତାବ ସମ୍ଭବ ନୁହେଁ । ଏବେ ମୁଁ ନିଜର ମଣିଷମାନଙ୍କ ଛଡ଼ା ଅନ୍ୟମାନଙ୍କୁ ମୁକାବିଲା କରିବାକୁ ସାହସ ସଞ୍ଚୟ କରିପାରୁ ନାହିଁ । ପୁଣି ଯିଏ ପଚାରିବ, ସେ ଏ ପୃଥିବୀରେ ମୋର ଅପାରଗତା କଥା ମନେପକାଇଦେବ ।

ତମର ସବୁ ଚିଠି ମୁଁ ପାଇଛି । ତମେ ସବୁ ଆକର୍ଷଣ ଓ ମୋହ ଭିତରେ ଯଦି ନିଜକୁ ଅକ୍ଷୁଣ୍ଣ ଅବସ୍ଥାରେ ରଖିପାରିଛ, ଏହା ଏଇ କେତେ ବର୍ଷ ଭିତରେ ଆମର ସବୁଠାରୁ ଶ୍ରେଷ୍ଠ କୃତିତ୍ୱ ବୋଲି ମୁଁ ମନେକରୁଛି । ତମେ ପୁଣି ଭବିଷ୍ୟତରେ ଆହୁରି ଭୟାନକ ପୃଥିବୀର ସମ୍ମୁଖୀନ ହେବ, ସେତେବେଳେ ଯଦି ତମେ କହିପାରିବ ଯେ ମୁଁ ନିଜକୁ ସାଇତି ରଖିପାରିଛି ବୋଲି, ତାହାହେଲେ ଏ ଜୀବନର ସାର୍ଥକତା ତମ ପାଇଁ ସ୍ୱପ୍ନ ହୋଇ ରହିବ ନାହିଁ ।

ମୋର କିନ୍ତୁ ଓଲଟା ଚିନ୍ତା । ନିଜକୁ ଅକ୍ଷତ ଅବସ୍ଥାରେ ମୁଁ ରଖିଛି, ଏହା ମୁଁ କହିପାରିବି ନାହିଁ । ଯେତେବେଳେ ଝଡ଼ ଆସିଛି, ମୁଁ ସେଥିରେ ବିକ୍ଷିପ୍ତ ହୋଇଛି; ଆଉ ଯେତେବେଳେ ମୁଁ ଉନ୍ମାଦ ହୋଇଛି, ଏ ପୃଥିବୀର ଜଘନ୍ୟ କାର୍ଯ୍ୟ କରିବା ପାଇଁ ମୁଁ ପ୍ରସ୍ତୁତ ହୋଇଯାଇଛି । ଆମର ଲକ୍ଷ୍ୟ ହୁଏତ ଗୋଟିଏ । କିନ୍ତୁ ଆମେ ସବୁ ଭିନ୍ନଭିନ୍ନ ପଥରେ ଅଗ୍ରସର ହେଉଛେ । ଜୀବନରେ variation ପାଇଁ ମୁଁ ବାରମ୍ବାର ପ୍ରସ୍ତୁତ ହୋଇଛି ଓ ଭବିଷ୍ୟତରେ ହେବି ।

ତମେ ଭୁବନେଶ୍ୱର ଆସିଲାପରେ ଲେଖୁଥିବ । ମୁଁ ଘରକୁ ଫେରିଲାପରେ ତମ ସାଙ୍ଗରେ ଭେଟ ପଡ଼ିବାକୁ ଚେଷ୍ଟା କରିବି । Pear's Encyclopaedia ଓ Sociology Notes ମୋ ପାଇଁ ଆଣିଥିବ । ଭୁବେନଶ୍ୱର ଫେରିଆସିଲେ ତମକୁ ପୁରୁଣା ପୃଥିବୀକୁ ଫେରିଆସୁଥିଲା ଭଳି ଲାଗୁଥିବ । ତମର ମନୋଭାବ ଲେଖିବ ।

ମଉସାମାଉସୀଙ୍କୁ ମୋର ନମସ୍କାର । ବାବିର ପରୀକ୍ଷା ପାଖରେ ଥିବ । ତାହାକୁ ମୁଁ କୌଣସି ଉପାୟରେ ସାହାଯ୍ୟ ନକରିପାରିଥିବାରୁ ଦୁଃଖିତ । ତାହାର ଭଲ ଫଳାଫଳ କାମନା କରୁଛି । ମୋର ଶୁଭେଚ୍ଛା ତାହାକୁ ଜଣାଇଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ମୋର ଚିଠି ପାଇଥିବ । ମସୌରୀରୁ ତମେ ଲେଖିଥିବା ଶେଷ ଚିଠିଟି ମଧ୍ୟ ମୁଁ ପାଇଛି । ଦିଲ୍ଲୀରେ ଅମ୍ଳାନଠାରୁ ମୋର ଇସ୍ତଫା ଦେଇଥିବା ଖବର ପାଇଁ ଆଶ୍ଚର୍ଯ୍ୟ ହୋଇନଥିବ । ଅବଶ୍ୟ ମୋର ନିଷ୍ପତ୍ତିରେ ଦ୍ୱିଧା ଓ ଦ୍ୱନ୍ଦ୍ୱକୁ ଅମ୍ଳାନ ଭଳି ତମେ ମଧ୍ୟ ପସନ୍ଦ କରିନଥିବ ।

ମୋର ନିଜ ଜୀବନରେ ବଞ୍ଚି ରହିବା ଗୋଟାଏ 'ଅର୍ଥହୀନ ସଂଧାନ' ବୋଲି ପ୍ରମାଣିତ ହୋଇଥିଲେ ମଧ୍ୟ ମୁଁ କେବେ ହତାଶ ଅନୁଭବ କରିନାହିଁ । ମୋର ଅନ୍ୟର ବଞ୍ଚିବା ପ୍ରତି ଯଥେଷ୍ଟ ସମ୍ମାନ ରହିଆସିଛି । ମୁଁ ଜୀବନର ଶ୍ରେଷ୍ଠତମ ମୁହୂର୍ତ୍ତମାନଙ୍କରେ ଅନୁଭବ କରିପାରିଛି ଯେ ମଣିଷକୁ ଘେରି ରହିଥିବା ପୃଥିବୀରେ ଅନେକ କିଛି ଚିରନ୍ତନ ସତ୍ୟ ସବୁବେଳେ ଆକର୍ଷଣ ହୋଇ ରହିଛି । ଏଇ ସତ୍ୟକୁ ନେଇ ଜଡ଼ିତ ହୋଇପାରିଲେ କେବେହେଲେ ନୈରାଶ୍ୟ ସ୍ପର୍ଶ କରେନାହିଁ ବା ଶୂନ୍ୟତା ଅନୁପ୍ରବେଶ କରେ ନାହିଁ । କିନ୍ତୁ ସବୁଠାରୁ ଜଟିଳ କଥା ହେଉଛି ଏଇ ଆକର୍ଷଣର ପରିସୀମାକୁ ଅତିକ୍ରମ କରିପାରିବା ଅଥବା ବିକାରଶୂନ୍ୟ ଭାବେ ସଚେତନତାର ସ୍ତରମାନଙ୍କୁ ଅତିକ୍ରମ କରି ଊର୍ଦ୍ଧ୍ୱକୁ ଉଠିପାରିବା ।

ମୋର 'ଅକ୍ସଫାମ୍'ରେ ସ୍ୱଳ୍ପ ଦିନର ରହଣି ମୋତେ କେବେହେଲେ ଅର୍ଥହୀନ ମନେ ହୋଇନାହିଁ । ଏଠାକାର ସହକର୍ମୀମାନେ ମୋର ସହଯାତ୍ରୀ ନୁହଁନ୍ତି । ଏସବୁ ସତ୍ତ୍ୱେ ବି ମୁଁ ପ୍ରତିଟି କ୍ଷଣ ଜଣେ ଛାତ୍ର ଭଳି କଟାଇପାରିଛି । ମୋର ପୃଥିବୀରେ ସ୍ଥିତିବାଦ ଶାସନ କରେ, ପ୍ରତି ମୋଡ଼ର ମୁଁ ଦାର୍ଶନିକ ଯଥାର୍ଥତା ଆଲୋଚନା କରିବସେ । ତଥାପି ଦାରିଦ୍ର୍ୟର ମୁକାବିଲା କରି ବସିଲା ବେଳେ ଯେଉଁ ମଣିଷପାଖରୁ ବଞ୍ଚିବା ସପକ୍ଷରେ ଯେଉଁ ଯୁକ୍ତିମାନ ମୁଁ ଶୁଣେ, ମୋତେ ତାହା ଅକାଟ୍ୟ ବୋଲି ମନେହୁଏ । ନିଜର ବଞ୍ଚି ରହିବାର ସତ୍ୟତାକୁ ପ୍ରଶ୍ନବାଚକ ଦୃଷ୍ଟିରେ ଦେଖିବା ସମ୍ଭବତଃ ନିଜ ପ୍ରତି ଅନ୍ୟାୟ କରିବା, ନିଜର ଆତ୍ମବିଶ୍ୱାସକୁ ହରାଇ ବସିବା । Rural development ମୋ ଜୀବନରେ ଗୋଟାଏ ନୂତନ ଅଧ୍ୟାୟ ଆରମ୍ଭ କରିଛି । Paulo Friere ଙ୍କ Conscientization ଏବେ ମୋ ଜୀବନରେ ଗୋଟାଏ ସଦ୍ୟ ବୌଦ୍ଧିକ ସମସ୍ୟା ସୃଷ୍ଟି କରିଛି । ବାହାରକୁ ଏତେ ସୁନ୍ଦର ଦେଖାଯାଉଥିବା, ଏତେ ବିଶ୍ୱାସଯୋଗ୍ୟ ମନେହେଉଥିବା ଥିଓରୀମାନଙ୍କୁ ବାସ୍ତବ କ୍ଷେତ୍ରରେ ରୂପାୟିତ କରିପାରିବା ଗୋଟାଏ system ମାଧ୍ୟମରେ ସମ୍ଭବ ନୁହେଁ । ତଥାପି କେଉଁଠାରୁ ହେଲେ ତ ତାହାର ଶୁଭାରମ୍ଭ କରିବାକୁ ପଡ଼ିବ । ଏଠାରେ ତାହାର ମୂଳଦୁଆ କେବଳ ପଡ଼ିପାରିଛି । ଏବେ ଯେଉଁ ସ୍ଥାନ, କାଳ, ପାତ୍ରରେ ମୁଁ ଯଦି ଚାହିଁବି, ମୁଁ ନିଶ୍ଚୟ କିଛି କରିପାରିବି । ମୋର ନିଜର self-destruction କୁ ମୁଁ ଭୁଲିଯାଇପାରିବି ।

× × × ×

ଗତ ଦୁଇବର୍ଷ ତଳେ ଏଇ ସମୟରେ ମୁଁ ନୀଳଗିରିରେ ଥିଲି । ତମର ଗାଁ କଥା ଏଇ ଅଞ୍ଚଳର ଗ୍ରାମ୍ୟ ପରିବେଶରେ ମୋର ଭାରି ମନେପଡ଼େ । ମୋତେ ଏଠାକାର ଲୋକମାନେ ଭିନ୍ନ ଜଣାପଡ଼ନ୍ତି ନାହିଁ; ଗାଁର ସମସ୍ୟାମାନଙ୍କରେ କୌଣସି ଫରକ୍ ମୁଁ ଦେଖିପାରେ ନାହିଁ । ତଥାପି ଯେମିତି ନୀଳଗିରିର ଗୋଟାଏ କିଛି ବିଶେଷତ୍ୱ ଉପଲବ୍ଧି କରିପାରେ । ଗତ କେତେ ବର୍ଷ ଧରି ତମେ ବା ମୁଁ ସହରାଞ୍ଚଳର କୃତ୍ରିମତା ଭିତରେ ଅଳ୍ପ ବହୁତ dehumanized ହୋଇଯାଇଛେ, neurotic ମଧ୍ୟ । ଆଜିକାଲି ଗାଁମାନଙ୍କୁ ସହରାଭିମୁଖୀ କରିବାରେ ସରକାରଙ୍କର ଯୋଜନାକୁ ମୁଁ ପସନ୍ଦ କରେ ନାହିଁ । ତମେ ବି କରୁନଥିବ । ଗାଁମାନଙ୍କର ମୂଳରୂପ ପରିବର୍ତ୍ତନ ନକରି କିପରି ଉନ୍ନୟନ କାର୍ଯ୍ୟ ହୋଇପାରିବ, କେହି ହୁଏତ ଚିନ୍ତା କରୁନାହାନ୍ତି । ଗ୍ରାମ୍ୟ ସରଳତା କିପରି ବଜାୟ ରହିବ, କେହି ଚାହୁଁ ନାହାନ୍ତି ।

ଘରକୁ ଫେରି ଆସିବାବେଳେ ତମର ଆନନ୍ଦଉଲ୍ଲାସ ମୁଁ ଗଭୀର ଭାବେ ଅନୁଭବ କରିପାରେ । ଆମର ନିଜର ବୋଲି ଗଣି ହେଉଥିବା ମଣିଷମାନଙ୍କ ଗହଣକୁ ଫେରିଆସିଲା ପରେ କେମିତି ଗୋଟାଏ ସହଜ ଲାଗେ, କେମିତି ନିରାପଦ ମନେହୁଏ । ଆମ ପାଇଁ

(ଆମର ଭଲ ପାଇଁ) ଯେଉଁମାନେ ବୋଝ ବୋହିଛନ୍ତି, ସେମାନଙ୍କର ମନ ଭିତରେ ଆମ ପାଇଁ କେତେ ସ୍ନେହ, କେତେ ଆଶଙ୍କା ସବୁ ବୁଝିପାରିଲେ ସଂସାରର ନୀତିନିୟମକୁ ବାସନ୍ଦ କରି ହୁଏନାହିଁ । ଏହା ବି ବୋଧେ ବିଞ୍ଚିରହିବାର ଆଉ ଏକ ପ୍ରକାଶ, ଆଉ ଏକ ପୂର୍ଣ୍ଣତା ।

ମଉସା ମାଉସୀଙ୍କୁ ନମସ୍କାର । ବାବିକୁ ଶୁଭେଚ୍ଛା ।

ଅଚ୍ୟୁତ

*ବି.ଦ୍ର. :* ମୋର ଇସ୍ତଫା ସମ୍ପର୍କରେ ଅମ୍ଳାନର ପ୍ରତିକ୍ରିୟା ଯଦିଓ ସାମାନ୍ୟ ତିକ୍ତ ହୋଇଛି, ତାହା ମୁଁ ଗ୍ରହଣ କରିଛି । ଅବଶ୍ୟ ଯେତେଦିନ ମୁଁ ବଞ୍ଚି ରହିଛି; ମୋ ଉପରେ ଅନେକଙ୍କର ଅଧିକାର ନିଶ୍ଚୟ ରହିବ । ମୁଁ ସେମାନଙ୍କୁ ଉତ୍ତରଦେବା ଏକ କର୍ତ୍ତବ୍ୟ ବୋଲି ମନେକରିବି । ଏହା କରିପାରିବା ବୋଧେ ପୃଥିବୀର ମୂଲ୍ୟବୋଧକୁ ମୋର ଶେଷ ସମ୍ମାନ ।

□ □ □

ପ୍ରିୟ ବନ୍ଧୁ,

'ଅକ୍ସଫାମ୍'ର ବିଦାୟବେଳାର ଏଇ ଶେଷ କେଇଦିନ ମୋ ପାଇଁ ସ୍ମରଣୀୟ ହୋଇରହିବ । ଯେଉଁ ଗାଁମାନଙ୍କରେ ମୁଁ ମୋର ସମୟ କାଟୁଥିଲି, ସେମାନଙ୍କର କଥା ମୋର ସ୍ମୃତିର ଭୂଗୋଳରେ ଆଙ୍କି ହୋଇ ରହିଯିବ । ଯେଉଁ ଲୋକମାନଙ୍କ ଦାରିଦ୍ର୍ୟ ବିରୁଦ୍ଧରେ ସଂଗ୍ରାମ ସହ ମୁଁ ସାମିଲ ହୋଇଥିଲି । ସେମାନଙ୍କର ମୁହଁ ମୋ ଆଖିଆଗରେ ବାରମ୍ବାର ନାଚିଉଠିବ । ଏଇ ଆତ୍ମସମୀକ୍ଷାର ମୁହୂର୍ତ୍ତମାନଙ୍କରେ ମୁଁ ଭାବୁଥିଲି, ସେମାନେ କିପରି ମୋତେ ଗ୍ରହଣ କରିଥିବେ । ମୋର ଇସ୍ତଫାର କଥା ସେମାନଙ୍କ ପାଇଁ କିଛି ବିସ୍ମୟ ନୁହେଁ । ଚାକିରୀରେ ଏ ପରିବର୍ତ୍ତନ କିଛି ନୂଆ ନୁହେଁ । ମୁଁ ସେମାନଙ୍କୁ ଭଲ ପାଇଥିଲି, ସେମାନଙ୍କ ଦଳଗତ ଶକ୍ତିକୁ ଏବଂ ସାଂସ୍କୃତିକ ଦୁର୍ବଳତାକୁ ବି । ମୁଁ ସେମାନଙ୍କୁ ଦୋଷ ଦେଇନାହିଁ କେବେ । ଆମ ସଂସ୍ଥାର କୃତ୍ରିମ ପରିଚାଳନା ମୁଁ ସେମାନଙ୍କ ଉପରେ ଲଦି ଦେଇନାହିଁ । ସେମାନେ କିଛି ନିଷ୍ପତ୍ତି ନେଇଥିଲେ ମୁଁ ତାହା ସର୍ବଦା ସମ୍ମାନ ଦେଇଆସିଛି । ସେମାନଙ୍କ ପାଖରୁ 'ମଣିଷ କାହିଁକି ବଞ୍ଚିରହେ'କୁ ମୁଁ ରୂପରେଖ ଦେଇପାରିଛି ।

ଆମେ ଯେଉଁମାନେ ଏଠାରେ ଛଳନାର ମୁଖା ପିନ୍ଧି development movementର ସ୍ଲୋଗାନ୍ ଦେଇଆସୁଛୁ, ସେମାନଙ୍କର ବୌଦ୍ଧିକ ସଂହତିକୁ ତମେ ପ୍ରଶ୍ନ ପଚାରିପାର । ସାମାଜିକ ପରିବର୍ତ୍ତନ ପାଇଁ ଯେଉଁମାନେ ସବୁ ଅଣ୍ଟା ଭିଡ଼ିଛନ୍ତି, ତମରି ଭାଷାରେ ସେମାନେ କିପରି ନାମ କମାଇପାରିବେ, ସେଥିପାଇଁ ଭାରି ବ୍ୟାକୁଳ । ମୋଟା

ଦରମା ଆଉ ଏକ ଆକର୍ଷଣ । କିନ୍ତୁ ଦାରିଦ୍ର୍ୟ ସହ ଗୋଟାଏ ଆବେଗମୟ ସଂଘର୍ଷ, ସବୁବେଳେ ଗୋଟାଏ ପ୍ରହସନ ।

ଆଜି ମୁଁ କାହାକୁ ଦୋଷ ଦେଉନାହିଁ । ମୋର ଅସ୍ତିତ୍ୱ ସମ୍ପର୍କରେ ଆମ ସଂସ୍ଥା ଯେଉଁ ପ୍ରକାର ଗୁଜବ ପ୍ରଚାର କରୁନା କାହିଁକି ସେମାନଙ୍କ ପ୍ରତି ମୁଁ ନିଷ୍ଠୁର ନୁହେଁ । ଅସହାୟ ହୋଇ ପଡ଼ିଥିବା ମଣିଷମାନଙ୍କୁ ନେଇ ଏଠାରେ ଯନ୍ତ୍ରଣା ଉପରେ ଯେମିତି ଗବେଷଣା ଚାଲିଛି । ତମେ ଲେଖିଥିବା 'One flew over the Cuckoo's Nest'ର କଥା ଭଳି ଏହା ସତ୍ୟ । ମୋର ଇସ୍ତଫା ଦେବାକୁ ଆମର ଡାଇରେକ୍‌ଟର୍ ଏକ ହତାଶାର କାହାଣୀ ବୋଲି କହୁଛନ୍ତି । ମୋର ସାଲିସ୍ ନକରିବାରେ ସେ ଖୁବ୍ ଉତ୍‌କ୍ଷିପ୍ତ ହୋଇଛନ୍ତି । ଆମର କଥାବାର୍ତ୍ତା ଏପର୍ଯ୍ୟନ୍ତ ହୋଇନାହିଁ । କିନ୍ତୁ ଏକଥା ସମ୍ଭବ ଯେ ଆମେ ପରସ୍ପର ପ୍ରତି ବିମୁଖ ହେବାରେ ଯେମିତି ଅନୁତପ୍ତ ହୋଇନାହୁଁ । ମୁଁ ଯଦି ଚାହିଁବି ତାଙ୍କୁ ହଜାର ବାଟରେ ଗାଳି ଦେଇପାରିବି । ପଶ୍ଚିମ ଓଡ଼ିଶା କାର୍ଯ୍ୟକ୍ରମରେ ମୁଁ ଯେଉଁ ହୃଦୟ ପରିବର୍ତ୍ତନ ଆନ୍ଦୋଳନ କରୁଥିଲି, ତାହା ବ୍ୟର୍ଥ ହେବା ପରେ ଏପ୍ରକାର କଳହର ମୂଲ୍ୟ କିଛି ନାହିଁ । ଶେଷ ମୁହୂର୍ତ୍ତରେ ମୁଁ ଗୋଟାଏ ବ୍ୟବସାୟିକ ପୃଥିବୀକୁ ଉପେକ୍ଷା କରିବା ମୋର ବ୍ୟକ୍ତିତ୍ୱର ଏକ ଚରମ ବିଜୟ ବୋଲି ମୁଁ ଭାବୁଛି । ନିଜତ୍ୱକୁ ଯେ ମୁଁ ବିକ୍ରୟ କରିନାହିଁ (କେଇ ଶହ ଦରମା ବିନିମୟରେ), ଆଜି ମୁଁ ଗର୍ବ ଅନୁଭବ କରୁଛି । ଏଠାରେ art and action ମୋ ପାଇଁ ପ୍ରତ୍ୟକ୍ଷ ଭାବରେ ପରୀକ୍ଷାଗାରର ଉପାଦାନ ଥିଲେ । Andre Malraux ଙ୍କ ଭଳି T.E. Cawrence ଓ Hemingway ବି art and action ର ଚମତ୍କାର ସମନ୍ୱୟ ରଖିପାରୁଥିଲେ । ଏଇଠି ରହିବା ଭିତରେ ଯଦି ମୁଁ ସାମୟିକ ଭାବେ କଳାନୁରାଗୀ ହୋଇପଡ଼ିଥିଲି, ତାହା ସଂସ୍ଥାର ଦୃଷ୍ଟିକୋଣରୁ ଅବିଧେୟ ଥିଲା । ଏଠାରେ ନିରସତା ଭରି ରହିଥିଲା ।

× × × ×

ଆଜିକାଲି ସବୁଆଡ଼େ ଧୂସର । ଜଙ୍ଗଲ ସାରା ଲଣ୍ଡା ଗଛ । ସମ୍ପୂର୍ଣ୍ଣ ଅସୁନ୍ଦର ଓ ଶୁଷ୍କ । ରାତିରେ ପାଖ ଜଙ୍ଗଲରେ ନିଆଁର ଉତ୍ତାପ ସବୁଠି ଅନୁଭବ କରିହୁଏ । ଖରା ପାଇଁ ଯେମିତି ପୃଥିବୀ ଶୋକାକୁଳ । ଏଠାକାର ମଣିଷମାନେ କିନ୍ତୁ ଭାରି ବ୍ୟସ୍ତ । ଦିନସାରା ମହୁଲଗଛ ତଳେ କଟିବ ଓ ରାତିରେ ଖୋଳତାଳ ସହ ନାମଯଜ୍ଞ (ଅଷ୍ଟପ୍ରହରୀ) ପାଇଁ ପ୍ରସ୍ତୁତି ଚାଲିବ । ମହୁଲ ଫୁଲ ଏଠାକାର ସାଧାରଣ ଜୀବନର ଏକମାତ୍ର ସଫଳ ପରିପ୍ରକାଶ । ବାହାଘରରେ ବା କରମା (ଲୋକନୃତ୍ୟ) ନାଚିବାବେଳେ ମହୁଲ ଫୁଲର ବାସନାକୁ ନେଇ ସବୁ ଗୀତ ଯେମିତି ରଚନା କରାଯାଇଛି । କ୍ଷୁଧାର ନିଷ୍ଠୁର ଆକ୍ରମଣରୁ ରକ୍ଷା ପାଇବା ପାଇଁ ମହୁଲ ମଦ ଯେମିତି ଏକ ଅବ୍ୟର୍ଥ ଔଷଧ ! ଜଙ୍ଗଲର ସହଜ ନିୟମ ଭିତରେ ମହୁଲ ଗଛ ଯେମିତି ଏକମାତ୍ର ବିଚାରକ ! !

ସକାଳରୁ ଶୀତଳ ପବନରେ ଯେତେବେଳେ ମୁଁ ମଟରସାଇକେଲ୍‌ରେ ଫେରୁଥାଏ, କେତେ ଚିନ୍ତା ମନକୁ ଆସେ । ମହୁଲ ଫୁଲର ଗନ୍ଧ, ପଳାଶ ଫୁଲର ଝରିପଡ଼ିଥିବା ପାଖୁଡ଼ା ଆଉ କୋଇଲିର ମଧୁର କଣ୍ଠ ମୋର ବିକୃତ ପ୍ରାଣ ଭିତରେ ଅନେକ ପୁଲକ ସୃଷ୍ଟି କରେ । ମୁଁ ସେଇସବୁ ମୁହୂର୍ତ୍ତମାନଙ୍କରେ ସତରେ ସଚେତନତାର ଯନ୍ତ୍ରଣାମାନଙ୍କୁ ଭୁଲିଯାଇପାରେ । ମୁଁ ଅତି ସହଜ ଅନୁଭବ କରିପାରେ । ମଣିଷର ବଞ୍ଚିବା ଯଦି ଏଇଭଳି ସ୍ୱପ୍ନରେ ଓ ସତ୍ୟରେ ପୁଲକମୟ ହୋଇପାରନ୍ତା, ମୃତ୍ୟୁ ତା' ପାଇଁ ଭୟାନକ ମନେହୁଅନ୍ତା ନାହିଁ । ସମୟର ଅତର୍କିତ ଆକ୍ରମଣ ତା' ପାଇଁ କଷ୍ଟକର ହୁଅନ୍ତା ନାହିଁ ।

× × × ×

ସୁଧାକର ଲେଖିଥିଲା ଯେ ଡଙ୍ଗରିଆ କନ୍ଧମାନଙ୍କ ଉପରେ ଗବେଷଣା କରିବା ପାଇଁ ଜଣେ ଆମେରିକାନ୍ ଗବେଷକ ଆସିଛନ୍ତି । ସେଠାରେ special officer ଚାହାନ୍ତି ଯେ ମୁଁ ତାଙ୍କର anthropological research ରେ ସହାୟକ ହୁଏ, ନିଜ ଖର୍ଚ୍ଚରେ । ତାହା ଏବେ ସମ୍ଭବ ହେବ ନାହିଁ । ଆସନ୍ତା ନଭେମ୍ବର ପର୍ଯ୍ୟନ୍ତ ମୁଁ ଆଗକୁ ବା ପଛକୁ ଚାହୁଁ ନାହିଁ । ମୋର ସ୍ଥିତି ଯେତେବେଳେ ବିପଦଗ୍ରସ୍ତ, ମୁଁ ଆଜି ସାଧାରଣ ମଣିଷ ଭଳି ଯେତିକି ରାଗଜର୍ଜରିତ, ସେତିକି ମାତ୍ରାରେ ଶଙ୍କାକୁଳ ।

କେବେ ଏଠାରୁ ମୁଁ ବିଦାୟ ନେବି, ସଠିକ୍ କହିହେବ ନାହିଁ । ତେବେ ଅନ୍ତତଃ ପନ୍ଦର ତାରିଖ ପୂର୍ବରୁ ନୁହେଁ । ତମେ ଭୁବନେଶ୍ୱରକୁ ଆସିବା ପରେ ଆମର ଦେଖାସାକ୍ଷାତ ହେବାର କଥା ଚିନ୍ତା କରନ୍ତେ । ବର୍ତ୍ତମାନ ପାଇଁ ତମେ ଏ ଠିକଣାରେ ଲେଖିପାର ।

ମଉସାମାଉସୀଙ୍କୁ ନମସ୍କାର ଓ ବାବିକୁ ଶୁଭେଚ୍ଛା ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ନାନୀ ଓ ତମ ଭିତରର ସଦ୍ୟ ଓ ଅଭିନବ ସମୀକରଣକୁ ଗୁରୁତ୍ୱର ସହ ମୁଁ ଚିନ୍ତା କରିପାରୁ ନାହିଁ । ଅବଶ୍ୟ ଏପ୍ରକାର ଅକ୍ଷମତା ମୋ ପାଇଁ କିଛି ନୂଆ କଥା ନୁହେଁ । ଏକ ଜଟିଳ ପାରିବାରିକ ସମସ୍ୟା (!) ଏକାନ୍ତ ଭାବେ ନିଜର- ନିଜର ତଥାକଥିତ ରାଜ୍ୟ ଓ ନିର୍ବାସନ । ତମେ ବରଂ ଏହାକୁ ଗଭୀର ଦୃଷ୍ଟିରେ ଅବଲୋକନ କରୁଥିବ । ମୋର ବିଶ୍ୱାସ, ତମେ ସ୍ଥିତପ୍ରଜ୍ଞ ହୋଇପାରୁଥିବ ।

କିନ୍ତୁ ସାଧାରଣ ବିଚାରରେ ଗୋଟାଏ ସଚେତନ ମଣିଷଟିଏ ଯେ ଅନ୍ୟର ସ୍ୱଚ୍ଛ ସାନ୍ନିଧ ଭିତରେ ଉଚ୍ଛ୍ୱାସ ଭରି ଦେଇପାରିବ, ଭଲ ପାଇବାର ଅନବଦ୍ୟ ପ୍ରେରଣାର ମହକ ଆଣି ଦେଇପାରିବ, ଏଥିରେ ମୋର ବିଶ୍ୱାସ ସବୁଦିନେ ରହିଆସିଛି । ସୃଜନୀର ଏହା ସବୁଠାରୁ ବଡ଼ ଚାଲେଞ୍ଜ୍; ବଡ଼ ଜୁଆଖେଳ । ଆମେସବୁ ଯେଉଁମାନେ ରକ୍ତମାଂସର ଦୁର୍ବଳ ଓ ଅସହାୟ ମଣିଷ ଚାଲେଞ୍ଜ୍‌କୁ ମୁକାବିଲା କରିପାରୁ ନାହୁଁ ବା ଜୀବନକୁ ବାଜି ଲଗାଇପାରୁ ନାହୁଁ ।

ଏଇ କେତେଦିନ ଭିତରେ ତମ ଭିତରେ ଗୋଟାଏ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଯାଇଥିବା କଥା ତମେ ବେଶ୍ ଜାଣିପାରୁଥିବ ବୋଧେ । ଅନ୍ତତଃ ଶବ୍ଦର ବିନ୍ୟାସ ମୁଁ କରୁ ନାହିଁ ବା କହୁ ନାହିଁ ଯେ ବ୍ୟବସ୍ଥାର ଅନେକ ଭ୍ରମ ଭିତରେ ତମେ ଆଜିକାଲି ନିଜକୁ ଲୁଚାଇବାକୁ ଭଲପାଉଛ ବୋଲି । 'ଗଲିଭର୍' ଲିଲିପୁଟ୍‌ମାନଙ୍କ ଦେଶରୁ ଫେରିଲା ପରେ ଲଣ୍ଡନର ରାଜରାସ୍ତାରେ କୁଆଡ଼େ ଅତି ସନ୍ତର୍ପଣରେ ଚାଲୁଥିଲା । କୁଆଡ଼େ ଭାବୁଥିଲାଯେ ତା'ର ପାଦତଳେ ଅନେକ ମଣିଷ ଚାପି ହୋଇଯାଉଥିବେ । ଆଶା କରୁଥିଲା ସେ ସମ୍ମାନିତ ହେଉ, ଲୋକେ ତାକୁ ଆଶ୍ଚର୍ଯ୍ୟର ସହ ଦେଖନ୍ତୁ ଓ ଡରିଯାଆନ୍ତୁ । ତମେ ବୋଧେ ଏଇଭଳି ଅତି ସନ୍ତର୍ପଣରେ ଆପଣାକୁ ଗତିଶୀଳ କରୁଥିବ । ଅବଚେତନ ସ୍ତରରେ ତମେ ବି ଠିକ୍ ଏଇଭଳି ବ୍ୟବହାର କରୁଥିବ । ମୁଁ ତମ ଅପେକ୍ଷା ବ୍ୟବସ୍ଥାକୁ ଏଥିପାଇଁ ଦୋଷଦେଉଛି । ତମକୁ ସବୁ ସମ୍ମାନ କରନ୍ତୁ, ତମର ଦୟାର ପାତ୍ର ହୁଅନ୍ତୁ ଏହାତ ଆମେ କେବେ ଭାବିନାହେଁ । ଏ ବ୍ୟବସ୍ଥାରେ ଆବେଗର ସ୍ଥାନ ନାହିଁ, ଭଲ ପାଇବାର କାରୁଣ୍ୟ ନାହିଁ । ଏଇଠି ସେଇ ପ୍ରବଞ୍ଚନା, ସେଇ ମିଥ୍ୟା ଅହମିକା ଓ ଦାମ୍ଭିକତାର ରାଜତ୍ୱ । ଏଇଠି ଯେଉଁ ମଣିଷ ବିଦ୍ରୋହ କରିବ ସେ ଲାଞ୍ଛିତ ହେବ, ଅବାଞ୍ଛିତ ବୋଲି ଘୋଷିତ ହେବ । ଏ ବ୍ୟବସ୍ଥାର ରଥଚକ୍ର ତଳେ ପେଶି ହୋଇଯାଇ ଆନନ୍ଦ ପାଉଥିବା ଆମ ସମସ୍ତଙ୍କୁ ମୁଁ ଘୃଣା କରୁଛି – ପଦାଘାତ କରୁଛି । ଏମାନଙ୍କର ଅସହାୟତା ପାଇଁ ମୋର ତିଳେମାତ୍ର ସମ୍ବେଦନଶୀଳତା ନାହିଁ । ମୁଁ ବରଂ pagan ହୋଇଯିବି; କିନ୍ତୁ କେବେହେଲେ ସାଲିସ୍ କରିବି ନାହିଁ, କେବେହେଲେ ନୁହେଁ ।

ମନେହୁଏ, ଆମେ ଆଗାମୀ ଝଡ଼ ଓ ଝଙ୍କାରକୁ ଏକାଠି ଅନୁଭବ କରିବା ନାହିଁ । ମନେହୁଏ ଆମେ ପର୍ବତ ଶିଖରରେ ପହଞ୍ଚିଯାଇ ଦୁଇଟି ବିପରୀତମୁଖୀ ଗଡ଼ାଣି ରାସ୍ତାର ଯାତ୍ରୀ । ଆମର ସହଯାତ୍ରା ବୋଧେ ଶେଷ ହୋଇଯାଇଛି । ଆମେ ପୁଣି ବୋଧେ ଭେଟିବା ନାହିଁ – ଅନ୍ତତଃ ସେଇ ଏକ ପୃଥିବୀରେ ଯେଉଁଠି ଦିନେ ଲଳିତ କହୁଥିଲା, ''ଏଠାରୁ ଆମର ଯାତ୍ରା ଶେଷ ହେଲା...'' ଓ ତମେ ତା'ର ସ୍ମରଣରେ ଲେଖିଥିଲ, ''ଏଠାରୁ ଆମର ଯାତ୍ରା ଶେଷ ହେଲା ନାହିଁ... !''

ତମେ ଅନେକଥର କହିଲଣି ଯେ ମୋ ଲାଖି ଚିଠିଟିଏ ଲେଖିବାକୁ ତମେ ସମର୍ଥ ହେଉ ନାହଁ । ଆଜିକାଲି ତମକୁ ମୁଁ ବିପାସନା ଅର୍ଥରେ ହିଁ ନେଉଛି । ତମେ ହୁଏତ ଲେଖୁ ନାହଁ । ମୁଁ ସେଇଥିପାଇଁ ଖୁବ୍ ଆଲୋଡ଼ିତ ହେଉନାହିଁ । ତମେ ଯେ ଧାଡ଼ିଟିଏ କେବେକେମିତି ଲେଖୁଥିବ, ସେ ଆଶା ମୋର ରହିଛି – ଅବଶ୍ୟ ଦାବୀ ଅଛି କି ନାହିଁ ତାହାର ଅର୍ଥ ମୁଁ ଖୋଜୁ ନାହିଁ । ଅତି ନିବିଡ଼ ଭାବେ ଯଦି ତମେ ମୋତେ ଅନୁଭବ କରିପାରୁ ନାହଁ; ବନ୍ଧୁତାର ପିରାମିଡ୍ ତଳେ ମଣି ଭଳି ରହିଥିବା ବନ୍ଧୁତାରେ କେବେ କାହିଁକି ପ୍ରାଣ ଦେଇ ଅଚାନକ୍ ତମେ ମୋତେ ଅବାକ୍ କରିଦେବ ? (!)

ଚାଲ, ଆମେ ସମସ୍ତେ ସେଇ ଉଜ୍ଜ୍ୱଳ ପ୍ରଭାତକୁ ଆଶାୟୀ ହୋଇ ଚାହିଁ ରହିବା, ଯେଉଁ ବେଳାରେ ଆମେ ଅତିକ୍ରାନ୍ତ ନୁହେଁ, ଜ୍ୱାଳା ଜର୍ଜରିତ ନୁହେଁ, କେଉଁ ଏକ ବ୍ୟବସ୍ଥାର କ୍ରୀତଦାସ ନୁହେଁ । ଆମେ ଅପେକ୍ଷା କରିବା ଓ ଆମେ ଅପେକ୍ଷା କରିବା ସେଇ ମୁହୂର୍ତ୍ତକୁ ।

ଅଚ୍ୟୁତ

***ବି.ଦ୍ର. :*** ରାତ୍ରିର ସବୁ ତାମସିକ ସ୍ୱପ୍ନ ଶେଷ ହେଲାପରେ ଅକସ୍ମାତ୍ ସଂବିତ୍ ଫେରିଆସେ । ଏଇଠି କୁହୁଡ଼ିର ଏକ ହାଲୁକା ଆସ୍ତରଣ ଲେପି ହୋଇଯାଏ । ଚମ୍ପାଗଛର ଉହାଡ଼ରେ ଲୁଚିଯାଇଥିବା ପକ୍ଷୀଟିର କାକଳି ଶବ୍ଦମାନଙ୍କର ତରଙ୍ଗ ସୃଷ୍ଟି କରୁଥାଏ । ସବୁ ଶୁଭ୍ର ସକାଳରେ ନିଜକୁ ପୁଣି ଥରେ ନୂଆ କରି ଦେଖିହୁଏ; ଚିହ୍ନି ହୁଏ ନାହିଁ ।

▯ ▯ ▯

ପ୍ରିୟ ବନ୍ଧୁ,

ଆୟୁରୁ ଗୋଟିଏ ଦିନ କମିଗଲେ କ'ଣ ସେହି ଅନୁପାତରେ ବୋଝ ଲାଘବ ହୋଇଯାଏ ? ଜୀବନରେ ବୋଝ କାହାକୁ କୁହାଯାଏ ? ପୁଣି କାହାକୁ ନ କୁହାଯାଏ ? ସମସ୍ତେ ତ ସିସିଫସ୍ ନୁହନ୍ତି ! ସମସ୍ତେ ପୁଣି ଆସ୍ୟୁରସ୍ ନୁହନ୍ତି । (To Ahasuerus immortal life was sent as the heaviest punishment.) Time and spaceର frame of referenceରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମସ୍ତେ ଏ ମଣିଷର ମୁଣ୍ଡକୁ ଭାରାକ୍ରାନ୍ତ କରିପକାଉଛନ୍ତି । ଯେଉଁ ମଣିଷ ସମୟର ଏ ଅଲଂଘ୍ୟ ସ୍ରୋତକୁ ପହଁରିଯିବାକୁ ଚାହିଁଛି, ଜୀବନରେ ବାରମ୍ବାର ଲିପ୍ତ ହୋଇଯାଇଛି ସେ ମଧ୍ୟ ଶେଷପର୍ଯ୍ୟନ୍ତ ସହଜ ହୋଇପାରି ନାହିଁ, ଖୋଜୁଥିବା ଚିଜ୍‌ଟିକୁ ପାଇନାହିଁ । ଆଉ ଯିଏ ମଧ୍ୟ ଏ ସମୟର କଷାଘାତକୁ ନ ସହିପାରି ଆତ୍ମଗୋପନ କରିଛି, ସିଏ ମଧ୍ୟ ପାଗଳାଗାରଦରେ ସୁଦ୍ଧା ଆଶ୍ରା ପାଇନାହିଁ ।

ତଥାପି ଏ ମଣିଷ ବଞ୍ଚୁଛି, ବଞ୍ଚିପାରୁଛି ।

ତମେ ପ୍ରଶ୍ନ କରିପାର ଯେ 'ବୋଝ' ବୋହି ଗୋଟେ ବୌଦ୍ଧିକ ଅଭିମାନରେ ଭାଙ୍ଗିପଡ଼ିବା କ'ଣ ଏକମାତ୍ର ପନ୍ଥା, ଯାହାଦ୍ୱାରା ଆକ୍ରାନ୍ତ ମଣିଷଟି ନିଜକୁ ରକ୍ଷା କରିପାରିବ। ମୁଁ ମଧ୍ୟ ଏହିଭଳି ପ୍ରଶ୍ନ କରୁଥିଲି, ଦିନେ ଏସବୁର ହିସାବନିକାଶ କରୁଥିଲି। 'ବୋଝ'ଟିକୁ କାହାକୁ ଦେବ, କେଉଁଠି ଥୋଇବ, କେଉଁ କେଉଁ ତୀର୍ଥରେ ସ୍ନାନତର୍ପଣ କରିବାକୁ ପଡ଼ିବ, କ'ଣ କଲେ (ଦାନ, ଧର୍ମ ଇତ୍ୟାଦି) ଏ ପାପରୁ ମୁକ୍ତ ହୋଇଯିବ? ଯଦି Christ ନିଜର crossଟିକୁ ଆଉ କାହାକୁ ଦେଇ ପାରିଥାଆନ୍ତେ! ସିସିଫସ୍ ଯଦି ଆଉ କେଉଁ ମଣିଷର ମୁଣ୍ଡ ଉପରକୁ ନିଜର ପଥରଟି ବଢ଼ାଇ ଦେଇ ପାରିଥାଆନ୍ତା! (ଏମାନେ first grade conformist। ମଣିଷ କାଳେ ଡରିଯିବ, ଆପଣାର ବୋଝ ବୋହିପାରିବନି, ଏଇଥିପାଇଁ ଏ ଚରିତ୍ରଗୁଡ଼ିକୁ ସୃଷ୍ଟି କରାଯାଇଥିବା କଥାରେ ମୁଁ ପୂର୍ଣ୍ଣମାତ୍ରାରେ ବିଶ୍ୱାସ କରେ।)

ଭଲ ପାଇବାର ବୋଝ ଯେତିକି ମୋର ମେରୁଦଣ୍ଡ ନୁଆଇଁ ଦେଇଛି, ଭଲ ନ ପାଇବାର ବୋଝ ମୋର ଅସ୍ତିତ୍ୱକୁ ସେତିକି ଭାଙ୍ଗିଦେଇଛି। ପୃଥିବୀରେ ହଜିଯିବାର ଓଜନ ଯେତିକି, ଏକୁଟିଆ ହୋଇପଡ଼ିବାର ଭାର ସେତିକି। ବାସୁକି ହୋଇଗଲେ ସବୁ ଯନ୍ତ୍ରଣା କମିଯାଏ ନାହିଁ।

ମୋର ଅବଚେତନ ମନରେ ସୁଦ୍ଧା ମୋର ବୋଝ କାହା ଉପରେ ଲଦିଦେବାକୁ ଚାହିଁ ନାହିଁ। ସମ୍ଭବତଃ ଗୋଟାଏ ନୈତିକ ପ୍ରକ୍ରିୟା ଦ୍ୱାରା ସଚେତନ ହୋଇଯିବା ଦ୍ୱାରା ମୁଁ ଏହିକଥା କାହା ଆଗରେ କହିନାହିଁ। Raskolnikov ମୋଠାରୁ ଅନେକ ଗୁଣରେ ଭାଗ୍ୟବାନ୍ ପୁରୁଷ। ତା'ରି ବୋଝ ବୋହିବାକୁ ସେହି prostituteଟି ସାଇବେରିଆ ପର୍ଯ୍ୟନ୍ତ ଯାଇ ଅପେକ୍ଷା କରୁଥିଲା। ତା'ରି ପାଇଁ ଲୁହ ଢାଳିଥିଲା। ତା'ରି ପାଇଁ ଚର୍ଚ୍ଚରେ ମହମବତୀ ଜାଳି ରଖୁଥିଲା। Jean-Baptist Clemence (The Fallର ନାୟକ)ର ଜୀବନରେ 'Monsieur'ର ଆବିର୍ଭାବ ହେବା ଗୋଟାଏ ମହାନ୍ divine concidence ବୋଲି ମୁଁ ବିବେଚନା କରେ। ତାହାରି ଆଗରେ ମନର ଅନେକ ବୋଝ କହିବାକୁ Jean-Baptist ଯେମିତି ଅନେକ ଜନ୍ମରୁ ଅପେକ୍ଷା କରୁଥିଲା!

ବେଳେବେଳେ ତମକୁ ମୁଁ ମୋର 'Monsieur' ବୋଲି ଗ୍ରହଣ କରିନିଏ। ସମସ୍ତ hypocrisy, ego ଏବଂ confessionsକୁ ତମରି ଆଗରେ କହିଦେଇ ମୋର ଅନେକ ବୋଝ ହାଲୁକା କରିଦିଏ। ତମପାଖରେ ଏଇଥିପାଇଁ ମୁଁ କୃତଜ୍ଞ। ମୁଁ ଜାଣେ ଜୀବନର ଶେଷକାଳ ପର୍ଯ୍ୟନ୍ତ ମୋର ବୋଝକୁ ନେଇ ବାରମ୍ବାର ନଇଁ ପଡୁଥିବି, ବାରମ୍ବାର ଭାଙ୍ଗି ପଡୁଥିବି। ଯେତେବେଳେ ଅଥୟ ହୋଇପଡୁଥିବି, ତମକୁ ବା Raskolnikovର ସେହି ବେଶ୍ୟାଟିକୁ ଖୋଜିଥିବି, ଯେଉଁମାନେ ମୋର ବୋଝ ଅନ୍ତତଃ

ହାଲୁକା ନ କରିପାରିଲେ ମଧ୍ୟ କ୍ଷଣିକ ପାଇଁ ହେଲେ ସୁଦ୍ଧା ମୋର ଯନ୍ତ୍ରଣାକୁ ଆପଣାର ବୋଲି ଭାବିପାରିବେ ।

ଅଚ୍ୟୁତ

***ବି.ଦ୍ର. :*** ତମରି ଚିଠି ପାଇଲି । ତମର ଜନ୍ମଦିନ ବେଳକୁ ଏହି ଚିଠିଟି ପହଞ୍ଚିଯାଇଥିବ । କେତେ ବର୍ଷ ତମକୁ ହେଲା ଏବେ ? କ'ଣ ବା ତମେ ପାଇଲ ? ସେଦିନ ତମେ ହୁଏତ ହଜିଲା ଅତୀତକୁ ହିଁ ଖୋଜିବ । ବିଗତ ଦିନଗୁଡ଼ିକୁ ନେଇ 'In Memorium' ଲେଖିବ । ଏହିଭଳି ଦିନଟିରେ ତମେ ଆପଣାକୁ ଭାବିବସିବ । ଆପଣାର ମଣିଷମାନଙ୍କୁ ଖୋଜିବ । ମୁଁ ତମକୁ ଏବେ ବେଶ୍ ଅନୁଭବ କରିପାରୁଛି । ତମର ତ ସଫଳତାର ଯଥେଷ୍ଟ ଆବଶ୍ୟକତା ରହିଛି । ତେଣୁ ତମର ଜନ୍ମଦିନରେ ମୁଁ କିଛି ଉପହାର ଦେଇପାରୁନି, କେବଳ ସବୁ ଆତ୍ମବିଶ୍ୱାସ ଓ ଭଲ ପାଇବାକୁ ତରଳାଇ ମୁଁ ତମକୁ ଶୁଭେଚ୍ଛା ପଠାଉଛି । ନୀଳଗିରିକୁ ମୁଁ ଦୁଇଟି ଚିଠି ଲେଖିଥିଲି । ତମେ ସେ ଚିଠି ପାଇନାହଁ ବୋଧେ ।

▯ ▯ ▯

ପ୍ରିୟ ବନ୍ଧୁ,

ଆମର ଅସମାପ୍ତ ସଂଳାପରେ ଖିଅକୁ ଧରି ମୁଁ ଏ ଚିଠି ଲେଖୁଛି । ମୁଁ ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁସାରେ ଖରିଆରରୋଡ଼ ଦେଇ ଆସିଲି । ସ୍ୱାମୀ ଟେଲିଗ୍ରାମ ଜରିଆରେ ବାର ତାରିଖ ସୁଦ୍ଧା ପହଞ୍ଚିବାକୁ ଅନୁରୋଧ କରିଥିଲା । ଘରେ ମାଆର ଆଖି ଖରାପ ଥିବାରୁ କଟକ ନିଆଯାଇଛି । ତେଣୁ ଆସିଲାବେଳକୁ ତା'ସହ ମୋର ଦେଖା ହେଲା ନାହିଁ । ଅକ୍ସଫାମ୍‌ରେ ମୋର ଆଲୋଚନା ନିଷ୍ଫଳ ହୋଇଥିଲା । ମୁଁ ସେଠାରେ ଅଧିକ ସମୟ ନ ରହି ଏଠାକୁ ଆସିଛି ଓ ଅମ୍ଳାନକୁ ଓଡ଼ିଆରେ ସାହାଯ୍ୟ କରିବା ପାଇଁ ମୁଁ ରହିଯାଇଛି ।

ତମକୁ ମୋର ଅନେକ କଥା ଅକୁହା ରହିଗଲା । ତମ ସହ ସହଜଭାବେ ଭାବବିନିମୟ ମୁଁ କରିପାରିଲି ନାହିଁ । ଏଥିରେ ମଧ୍ୟ ମୁଁ ଆଶ୍ଚର୍ଯ୍ୟ ହୋଇନାହିଁ । ମୋର ବ୍ୟକ୍ତିଗତ ସମସ୍ୟାରେ ତମର ପ୍ରତିକ୍ରିୟା ହୁଏତ ମୁଁ ଜାଣିବାରେ କିଛିଟା ଆଶାୟୀ ହୋଇ ଯାଇଥିଲି । ମୋର ସର୍ବନୂତନ ଅଭିପ୍ରାୟ ଓ ନିଷ୍ପତ୍ତିର କିଛି ଆଭାସ ତମକୁ ମୁଁ ଦେଇଥିଲି ସତ୍ ତାହାର ସର୍ବଶେଷ ବ୍ୟାଖ୍ୟା ମୁଁ କରିନାହିଁ । ମୋର 'ମୁକ୍ତି'ର ସପକ୍ଷରେ ସଂଗ୍ରାମ ଓ ଆତ୍ମୋତ୍ସର୍ଗ ଯେତେ ଉଭଟ ଜଣାପଡୁଥିଲେ ମଧ୍ୟ ମୁଁ ସେଥିରୁ ବିଚ୍ୟୁତ ନ ହେବାକୁ ଶପଥ ହିଁ ନେଇଛି । ମୋ ପାଇଁ ଅତୀତ ମୃତ । ମୋ ପାଇଁ ମୋର ବନ୍ଧନ ମଧ୍ୟ ଗୋଟାଏ ଅପ୍ରମାଣଯୋଗ୍ୟ ଉପପାଦ୍ୟ । ଆଜି ମୁଁ କିଛି ଭାବିପାରୁ ନାହିଁ । ତମେ କହୁଥିବା 'ସାଂସାରିକ ଦାୟିତ୍ୱ',

ମୁଁ ବାରମ୍ବାର ଅତିଷ୍ଠ ହୋଇପଡୁଥିବା ତୀବ୍ର 'ଯୌନକାମନା', ଅସ୍ପଷ୍ଟ ହୋଇ ଆକ୍ରାନ୍ତ କରୁଥିବା 'ଉପଲବ୍ଧି' ସବୁକୁ ମୁଁ ଆଜି ଆଡ଼ ଆଖିରେ ଦେଖୁଛି । ସବୁକୁ ମୁଁ ଭାରି ନିକଟତମ ପ୍ରଦେଶରୁ ଅନୁସନ୍ଧାନ କରି ବହିଷ୍କାର କରିବା ପାଇଁ ସଂଗ୍ରାମ କରୁଛି । ଆଜି ମୋ ଆଗରେ ଦୁଇଟି ରାସ୍ତା ନାହିଁ । ମୋ ପାଖରେ ଦୀର୍ଘ ଜୀବନ ନାହିଁ । ମୁଁ କେବଳ ଜୀବନ ଓ ଭଲ ପାଇବା ଉପରେ ଆସ୍ଥା ରଖିଲେ ଆସ୍ୱସ୍ତି ଅନୁଭବ କରୁ ନାହିଁ ।

ତମେ ହୁଏତ ଜାଣନାହିଁ ଯେ ତମକୁ ମୁଁ ଗଭୀର ଭାବେ ନିରୀକ୍ଷଣ କରୁଥିଲି । ଜଣେ ଅନୁସନ୍ଧିତ୍ସୁର ପ୍ରାଣ ନେଇ ତମକୁ ମୁଁ ଲକ୍ଷ୍ୟ କରୁଥିଲି । ତମେ ଆପଣାର ଅଲକ୍ଷ୍ୟରେ ହୁଏତ ଜୀବନ ଓ ଯୌବନର ଘୂର୍ଣ୍ଣି ଭିତରକୁ ଆକର୍ଷିତ ହୋଇପଡୁଛ । ସେଇଥିପାଇଁ ତମ ପ୍ରତି ମୋର ସମ୍ମାନ ବଢୁଛି ଓ ସମବେଦନା କମିଯାଉଛି । ଜୀବନକାଳ ଭିତରେ ଯିଏ ବାରମ୍ବାର ସନ୍ଧି କରୁଥାଏ, ଗୋଟାଏ ତଥାକଥିତ ମୂଲ୍ୟବୋଧ ସହ ହାତ ମିଳାଇଥାଏ, ସେ ହୁଏତ ଜିତିଯାଏ; ସେ ହୁଏତ ମାନବବାଦୀ ଚେତନାକୁ ଗ୍ରହଣ କରିପାରିଥାଏ । ତମେ ହୁଏତ ଅନୁଭବ କରୁଛ ଯେ ଜୀବନର ନିର୍ଦ୍ଦିଷ୍ଟ ଅଭିବୃଦ୍ଧି ଅଛି । ତମେ ବି ଆଶା କରୁଛ ଯେ ମହାସ୍ରୋତରେ ସାମିଲ୍ ହୋଇପାରିଲେ ତମେ ଉର୍ଦ୍ଧ୍ୱକୁ ଉଠିପାରିବ । ଆଜି ତମେ ଅଭିନୟ କରୁନାହଁ । କେଉଁଠି ହେଲେ ତମେ ସଙ୍କୁଚିତ ହୋଇ ପାରୁନାହଁ । ବରଂ 'ତମେ ଯାହା' ତାହାକୁ ସର୍ବସ୍ୱ କରି ବଞ୍ଚି ରହିପାରିବାକୁ ସର୍ବଶ୍ରେଷ୍ଠ ସଫଳତା ବୋଲି ମନେକରୁଛ । ଅମ୍ଳାନ କହୁଥିଲା ଯେ ମୋ ଅପେକ୍ଷା ସେ ତମକୁ ବେଶ୍ ଅନୁଭବ କରିପାରୁଛି । ମୁଁ ବରଂ ଅତି ସଂକୀର୍ଣ୍ଣଭାବେ ତମକୁ ଏକ ଅନିର୍ଦ୍ଦିଷ୍ଟ ଚେତନାଛାଞ୍ଚରେ ପକାଇ ଦେବାର ଜଘନ୍ୟ କାମ କରୁଛି ।

ଅମ୍ଳାନ ଆଜି ଯଦି କ୍ରୀତଦାସତ୍ୱ ସପକ୍ଷରେ ଯୁକ୍ତି କରୁଥାଏ, ଏଥିରେ ତାହାର ବୌଦ୍ଧିକ ସଂହତି ଯେ ଆଂଶିକ ଭାବେ ଅକର୍ମଣ୍ୟ, ଏକଥା ମଧ୍ୟ ମୁଁ ଭାବୁନାହିଁ । ସେ ତାହାର 'ବାସ୍ତବ ପରିବେଶ'କୁ ଆବିଷ୍କାର କରି ପାରିଛି ବୋଲି ଗର୍ବ କରୁଛି । ତା'ପାଇଁ ମଧ୍ୟ ଗତ ବର୍ଷମାନଙ୍କର 'ଅସଫଳ ଚେତନା' ଆଜି ଅର୍ଥହୀନ । ସେ ଜୀବନର ଖେଳରେ ହାରିଯାଇଛି ବୋଲି ଗଣା ନ ଯାଉ, ଏକଥାରେ ସେ ବେଶ୍ ସଚେତନ । ସେଇଥିପାଇଁ ପ୍ରଚଳିତ ମୂଲ୍ୟବୋଧରେ ସେ ଚମତ୍କାର ଆସ୍ଥା ଫେରାଇଆଣିଛି । ବନ୍ଧୁତା ଓ ଦର୍ଶନ ତା'ପାଇଁ ଆଜି କବର ଭିତରେ । ଗତବର୍ଷମାନଙ୍କର ରୋମାଣ୍ଟିକ୍ ଚିନ୍ତାଧାରା ତୁଳନାରେ ଆଜି ଯଦି ସେ ଆତ୍ମହତ୍ୟା କଥା ଭାବୁଛି ବା ସନ୍ନ୍ୟାସ ନେବା କଥା ବିଚାରକୁ ନେଉଛି, ଏହା ତାହାର ଏକ ବଳିଷ୍ଠ ଜୀବନରେ ବିଶ୍ୱାସ ବୋଲି ମୁଁ କହିବି । ମୁଁ ବିଶ୍ଳେଷଣ କରି ଦେଖୁଥିଲି ଯେ ଯେଉଁ ମଣିଷ ଅସୀମ ମୁକ୍ତିର ପଛରେ ଧାବମାନ, ସେ ପୁଣି ପରିବେଶ ପାଇଲେ ଅସୀମ ଦାସତ୍ୱ ଆବୋରି ନେବାରେ ସର୍ବପ୍ରଥମ । ତେଣୁ ଅମ୍ଳାନକୁ ମୁଁ ଯେତେ ଆଶା ଓ ବିଶ୍ୱାସ ଦେଲେ ମଧ୍ୟ ସେ ଆଉ ମୋର ବା ଆମର ନିୟନ୍ତ୍ରଣରେ ନାହିଁ ।

ଜୀବନର ଉତ୍‌ଥାନପତନକୁ ସେ ମୋ ଭଳି ରୁଗ୍‌ଣ ଦୃଷ୍ଟିକୋଣରୁ ଦେଖୁ ନାହିଁ । ସେ ନଗ୍ନବାସ୍ତବତା ସହ ଗୋଟାଏ କିମ୍ଭୁତକିମାକାର ଯୌକ୍ତିକତାକୁ ଫେଣ୍ଟି ଆଜି ନିଜର ଶିରସ୍ତ୍ରାଣ ଭାବେ ବ୍ୟବହାର କରୁଛି । ନିଜକୁ ଖୋଜିବାରେ ସେ ଏବେ ବ୍ୟଗ୍ର ନୁହେଁ । ନିଜର ସତ୍ତା ଅନୁଭବ କରିପାରିବାରେ ସେ ଏତେଟା ଭୟ ବିଜଡ଼ିତ ନୁହେଁ । ସେ ଆଜି ସଂସାରର ସବୁ ମଣିଷ ଭଳି ସହଜ ଓ ଆବେଗବିହୀନ ପ୍ରାଣଟିଏ ।

ଆଉ ଆମେ ସବୁ କେହି କାହାର ନିୟନ୍ତ୍ରଣରେ ରହିବା ନାହିଁ କି ଆଉ ପୁନର୍ବାର ଗୋଟାଏ ସାର୍ବଜନୀନ ଆଦର୍ଶବାଦ ପଛରେ ଗୋଡ଼ାଇବା ନାହିଁ, ଏକଥା ଭାବି ଦେଖିଲେ ମୁଁ ବେଶ୍ ଖୁସି ହେଉଛି । ଗୋଟାଏ ନିର୍ଦ୍ଦିଷ୍ଟ ପରିସର ଭିତରେ ଆମେ ପରସ୍ପରଠାରୁ ଦୂରକୁ ହଟି ଯାଉଥିବା ତିନୋଟି ଜ୍ୟାମିତିକ ବିନ୍ଦୁ । ଆମମାନଙ୍କ ଭିତରେ ସମ୍ବନ୍ଧ କେଉଁଭଳି ରହିବ କେହି କହିପାରିବେ ନାହିଁ । ଆମକୁ ଏକାଠି କେଉଁ ସଂଯୋଜକର ମାଧ୍ୟମରେ ଜାଣିହେବ, ତାହା ମଧ୍ୟ ଆମର ଜ୍ଞାତସାରର ବାହାରେ । କେବଳ ଆମେ ଆମ ପାଇଁ ବସ୍ତୁବାଚକ ଭାବେ ବଞ୍ଚିରହିଯିବୁ, ଏହାଛଡ଼ା ସମ୍ପର୍କ ଆମ ଭିତରେ ନାହିଁ । ଆମେ ପରସ୍ପର ପାଇଁ ହଜିଯିବୁ, ଏକଥା ଅପରିହାର୍ଯ୍ୟ ବୋଲି ଆଜି ଆଉ କେହିଜଣେ ଯୁକ୍ତି କଲେ ଆମେ ତା'ରି ବିରୋଧ କରୁନାହୁଁ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ କାହାକୁ 'fall' କୁହ ? ଗଛ ଉପୁଡ଼ି ପଡ଼ିଲେ ବା ନୈତିକ ଅଧୋଗତି ଘଟିଲେ ଏହାକୁ ସଂଯୋଗ କରାଯାଏ ? ବାଇବେଲ୍‌ର ଆରମ୍ଭକୁ ଛାଡ଼ି ଅନ୍ୟତ୍ର ଏହି କଥା ହିଁ ମୁଖ୍ୟତଃ ବର୍ଣ୍ଣନା କରାଯାଇଥିବା କଥା ତମେ ତ ଜାଣିଛ । ଅନ୍ଧକବି ମିଲ୍‌ଟନ୍ କୁଆଡ଼େ ଏହି କଥା Paradise Lostରେ ଚମତ୍କାର ଲେଖିଛନ୍ତି । କିଛି ନ ପଢ଼ି, କିଛି ନ ଜାଣି ମଧ୍ୟ ଏହି ଅଧୋପତନକୁ ଅନୁଭବ କରିହୁଏ । ଆପଣାର ନିଜସ୍ୱ ମାପକାଠିରେ ସବୁକଥା ମାପି ପାରୁଥିଲେ ଆପଣାର ଗୋଡ଼ ଖସିଯିବାଜନିତ ଯନ୍ତ୍ରଣା ବେଶ୍ ଭୋଗ କରିବାକୁ ହୁଏ ।

ମୁଁ ଆଜି 'The Power and The Glory' ଏବଂ 'The Fall' ପଢ଼ିସାରିବାପରେ ଏହି ଯନ୍ତ୍ରଣା ଅନୁଭବ କରୁଛି । Padre' Jose ଖ୍ରୀଷ୍ଟଧର୍ମର ନାଆଁରେ ଆପଣାର ସନ୍ତ୍ରସ୍ତ ପ୍ରାଣକୁ ବଞ୍ଚାଇ ପାରୁଥିଲା । ମେକ୍ସିକୋରେ ଯେତେବେଳେ communist takeover ହେଲା ସମ୍ଭବତଃ ସେ ଜାଣିଥିଲା ଯେ ସେ ବିପଦରେ ପଡ଼ିବ । ତା'କୁ ବଣଜଙ୍ଗଲରେ

ତନ୍ନ ତନ୍ନ କରି ଖୋଜାଯିବ । ପ୍ରତି ଗାଁରୁ hostages ନିଆଯିବ । ଧରାପଡ଼ିଲେ firing squad ଆଗରେ ଛିଡ଼ା ହେବାକୁ ପଡ଼ିବ । ଲୋକମାନଙ୍କର ଧର୍ମଭୟ ତା'କୁ ବଞ୍ଚାଇ ରଖିଥିଲା । ଏ ଗାଆଁରୁ ସେ ଗାଆଁକୁ ଗଲାବେଳେ confessions ଶୁଣିଶୁଣି ସେ ନୟାନ୍ତ ହୋଇପଡୁଥିଲା । ସେ ମଦ୍ୟପ, ସେ ଗୋଟାଏ ବିଧର୍ମୀ ବୋଲି ନିଜକୁ ଗ୍ରହଣ କରୁଥିଲା । ଏଇଥିପାଇଁ ସେ ଯନ୍ତଣା ଭୋଗୁଥିଲା । ସେ ଯାହା ନୁହେଁ, ଅବସ୍ଥାଚକ୍ରରେ ପଡ଼ି ତାହା ହୋଇଯାଇଥିବାରୁ ଏହାକୁ ସେ ଗୋଟାଏ 'Fall' ବୋଲି କହୁଥିଲା । ଆପଣାକୁ ଭଣ୍ଡ ବୋଲି କହିବାକୁ ସେ ପଛାଉ ନ ଥିଲା । ସିଏ ଶେଷରେ ଧରାପଡ଼ିଲା ଏବଂ ମରିବା ପୂର୍ବରୁ ସେ ଡରିଯାଇ ନ ଥିଲା । ଏସବୁ ପରେ ମଧ୍ୟ ସେ ଆପଣାକୁ, ଆପଣାର ନିଜତ୍ୱଟିକୁ ବଞ୍ଚାଇ ପାରିଥିଲା । (Graham Greene ଏ ବହି ଲେଖି ଯଥେଷ୍ଟ ସମାଲୋଚନାର ଶରବ୍ୟ ହୋଇଥିଲେ ।)

Camusଙ୍କର 'The Fall' ସମ୍ପର୍କରେ Sartre ତାଙ୍କର Situation ବହିରେ ମନ୍ତବ୍ୟ ଦେଇ କହିଛନ୍ତି ଯେ ଏହା 'Singular adventure of our culture.' । ଏ ବହି ଯେତିକି ସୁନ୍ଦର, ସେତିକି ଦୁର୍ବୋଧ । ଏଥିରେ Jean-Baptist Clemence ନିଜର ଅଧୋପତନକୁ ଚମତ୍କାର ବ୍ୟାଖ୍ୟା କରିଛି । ସେ ଜଣେ judge-penitent । ଯାହାପାଇଁ ସେ plead କରିଛି, ତାହର ଦୁର୍ବଳତାକୁ ଲୁଣ୍ଠନ କରିଛି । ବଞ୍ଚିବାର ବାହାନାରେ ସେ ଅନେକ ଅଯୌକ୍ତିକ ଏବଂ ଅନୈତିକ କାମ କରିବାକୁ ବାଧ ହୋଇଛି । ସିଏ ଆତ୍ମହତ୍ୟା ଘୃଣ୍ୟ ବୋଲି ଭାବିଛି । ନିଜର ଛୋଟ ସଂକୀର୍ଣ୍ଣ ପରିଧି ଭିତରେ ସେ ଆପଣାକୁ superman ବୋଲି ଗ୍ରହଣ କରିଛି । ବଞ୍ଚିବାକୁ ସେ ଭଲ ପାଇଛି । (କମ୍ୟୁଙ୍କର neo-existentialismରେ ଜୀବନକୁ ଭଲ ପାଇବାକୁ ପ୍ରାଧାନ୍ୟ ଦିଆଯାଇଛି ।) ସେ ଯାହାହେଲେ ମଧ୍ୟ ବଞ୍ଚିବାକୁ ଚାହେଁ । ଦୁନିଆ ଆଖିରେ ତାହା fall ହେଉ ବା hell ହେଉ; ସେ (Jean Baptist Clemence) କହେ ଯେ, *"I have found a height to which I am only end to climb and from which I can judge everybody. At long intervals, on a really beautiful night I occasionally hear a distant laugh and again I doubt. But quickly I crush everything, people and things, under the weight of my own infirmity and at once I perk up."*

କିନ୍ତୁ ଏ Padre' Jose ବା Jean-Baptistଙ୍କ ସହ ମୋର ନିଜର 'fall'ର କିଛିହେଲେ ସମ୍ବନ୍ଧ ନାହିଁ । କିଛି ହେଲେ ସାମଞ୍ଜସ୍ୟ ନାହିଁ । କେତେ ଦିନ ହେବ ମୁଁ ସୂର୍ଯ୍ୟୋଦୟ ଦେଖି ନାହିଁ । କେତେ ଦିନ ହେବ ମୁଁ ମୋର ଚିରାଚରିତ ପନ୍ଥା ଅବଲମ୍ବନ କରିପାରିବି । ଏଇଠି ପୃଥିବୀ ଯେଉଁ କେତୋଟି ମୁହୂର୍ତ୍ତ ପାଇଁ ସୁନ୍ଦର ଓ ଅନବଦ୍ୟ

ହୋଇପଡୁଛି, ସେତିକିବେଳେ ମୁଁ ଅନୁଭବ କରୁଛି ମୋର ହାତଗୋଡ଼ ଯେମିତି କେହିଜଣେ ବାନ୍ଧି ଦେଇଛି । ଏଇଠି ସବୁ ଅଛି, ଅଥଚ ଶୂନ୍ୟତାରେ ମୋର ଅନ୍ତରାତ୍ମା ଆର୍ତ୍ତନାଦ କରୁଛି । ସମ୍ପର୍କର ସବୁ ଦୁର୍ବୋଧ୍ୟତା, ସବୁ ମାୟା ସତ୍ତ୍ୱେ ମୁଁ ଏହାକୁ ଯେମିତି ସନ୍ଦେହ କରୁଛି । ବଡ଼ ଅଥୟ ଲାଗୁଛି । ଏ ପୃଥିବୀରେ ମୁଁ ଆଉ କାହାକୁ ଭଲ ପାଇପାରୁନି, କାହାର କଥା ଶୁଣିବାକୁ ମୁଁ ଯେମିତି ପ୍ରସ୍ତୁତ ନୁହେଁ । ଏ ଅସହାୟତା ଓ ନିଷ୍କ୍ରିୟତାକୁ ମୁଁ ମୋର ଅଧୋଗତି ବୋଲି କହିବି । ଏହି ପ୍ରକାର ଅଟକି ଯିବାଟାକୁ ମୁଁ ମୋର fall of providence ବୋଲି କହିବି ।

ତମର ଚିଠି ପାଇଛି । ଅମ୍ଳାନ ପାଖକୁ ତମେ ମୋ ବିଷୟରେ କ'ଣ ଲେଖିଥିଲ କେଜାଣି, ସେ ମୋର ଅନାଗତ ଭବିଷ୍ୟତ ସମ୍ପର୍କରେ ବ୍ୟସ୍ତ ହୋଇ ଲେଖିଛି । ମୁଁ ଯେମିତି ଭଲରେ ରହେ, ଏସମ୍ପର୍କରେ ଅନେକ କଥା suggest କରିଛି । ତମେ ଭୁବନେଶ୍ୱରରୁ ଲେଖିବା ପରେ ମୁଁ ଫୋନ୍‌ରେ କଥାବାର୍ତ୍ତା କରିବାକୁ ଚାହିଁଥିଲି । ମାତ୍ର ଲାଇନ୍ ଖରାପ ଥିଲା । ତମେ କେଉଁଠି ରହିବ, ଏକଥା ଜଣାଇବାକୁ ଲେଖିଥିଲ । ତମେ competitive Exam. ପାଇଁ ଅନିଶ୍ଚିତତା ଦେଇ ଗତି କରିବା ଠିକ୍ ହେବନି । ସମୟ ଯେତିକି ଅଛି ସଦ୍‌ବ୍ୟବହାର କରିବା ତମର ଏକାନ୍ତ କର୍ତ୍ତବ୍ୟ । ବାପା, ମାଆ, ନାନୀ, ବାବି ଆଦିଙ୍କୁ ମୋ କଥା କହିଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଚିଠିକୁ ଅପେକ୍ଷା କରି ନିରାଶ ହୋଇ ପଡୁଥିବ । ମୁଁ ସେଇଥିପାଇଁ ଦୁଃଖପ୍ରକାଶ କରୁଛି । ଏଇଠି ସାତ ଦିନ ହେବ ନ ଥିଲି । ମୋର ବଡ଼ ଭଉଣୀ ଘରକୁ ଯାଇ ଫେରିବା ପରେ ତମର ଦି'ଟି ଚିଠି, ଅମ୍ଳାନ, ପ୍ରଫୁଲ୍ଲ, ନିରୋଦ ଆଦିଙ୍କଠାରୁ ଗୋଟିଏ ଲେଖାଏଁ ଚିଠି ପହଞ୍ଚିଥିବାର ଦେଖି ଆଶ୍ଚର୍ଯ୍ୟ ହେଉଛି । ସମସ୍ତଙ୍କୁ ଲେଖିବାକୁ ଅଣ୍ଟା ଭିଡ଼ିଛି ।

୧୬ ମାଇଲ୍ ଦୂରରେ ଥିବା 'ବଲାଙ୍ଗିର' ଗାଁରେ ମୋର ଭଉଣୀର ଘର ଓ ସଂସାର । ପିଲାଦିନର ସ୍ମୃତି ମୋର ମନରୁ ଏବେ ମଧ୍ୟ ଲିଭିନାହିଁ । ପ୍ରତିବର୍ଷ ଖରାଦିନଟି ଏଇଠି ମୁଁ କାଟୁଥିଲି । ଆମ୍ବତୋଟାରେ ଦି'ପ୍ରହର ଖରାରେ ଆମ୍ବ ଗୋଟାଇବାର ଅନୁଭୂତି ଯିଏ ହାସଲ କରିଛି, ସିଏ ହିଁ ଏହାର କଥା ଜାଣିଛି । ଏ ଗାଁରେ ସଭ୍ୟତା ଏପର୍ଯ୍ୟନ୍ତ ପ୍ରବେଶ କରି ନାହିଁ । ଗାଁର ଚାଳକୁ ଚାଳ ଲାଗି ବାଉଁଶର ଜଙ୍ଗଲ । ତା'ର ପଛକୁ ଶାଳ, ମହୁଲର ଘଞ୍ଚ ଅରଣ୍ୟ । ପଶ୍ଚିମ ପଟେ ଖରସ୍ରୋତା ନଦୀଟିଏ । ବର୍ଷର ଆଠମାସ କିନ୍ତୁ

ଶୁଖିଲା ରହେ । ଏଇଠି ସୂର୍ଯ୍ୟୋଦୟ ମୁଁ ଦେଖି ନାହିଁ । ସୂର୍ଯ୍ୟାସ୍ତ କିନ୍ତୁ ସେତେ ଆକର୍ଷଣୀୟ ମନେହେଲା ନାହିଁ । ଉତ୍ତପ୍ତ ଅପରାହ୍ଣରେ ଆକାଶ ଯେତେବେଳେ ରୂପେଲି ହୋଇପଡ଼େ, ସୂର୍ଯ୍ୟଟା କାହିଁକି ମୋତେ ଭୀଷଣ prosaic ଲାଗେ, ସେମିତି ସବୁ ରଙ୍ଗ ଧୋଇ ହୋଇଯାଇଛି ବୋଲି ଧାରଣା ଜନ୍ମେ ।

ଏ ଚୈତ୍ରମାସର ଜଙ୍ଗଲରେ ମହକ ଥାଏ । ମହୁଲ ଫୁଲର ବାସ୍ନା ମନପ୍ରାଣ ଉତଲା କରିଦିଏ । କେନ୍ଦୁଗଛରେ ଫଳ ମଧ ପାଟିକୁ ମଧୁର କରିଦିଏ । ମହୁଲଗଛ ତଳେ ଝରି ପଡୁଥିବା ଫୁଲରୁ ଯେ ମଦ ତିଆରି ହୁଏ ଏକଥା ତମେ ଜାଣିଥିବ । ସେହି ଫୁଲକୁ ସଂଗ୍ରହ କରିବା ପାଇଁ ଗାଁର ସାନ ପୁଅଝିଅଙ୍କଠାରୁ ବୁଢ଼ା ପର୍ଯ୍ୟନ୍ତ ଅନେକ ଏ ଗଛତଳେ ଦିନଟି କାଟନ୍ତି । ଏଇଠି ଚୈତ୍ର ମାସର ଖରା ସେମାନଙ୍କୁ ବାଧୁଥିବ କି ନାହିଁ ସେମାନେ ଜାଣୁଥିବେ ।

ଗାଁରେ ଲୋକମାନଙ୍କୁ ଲକ୍ଷ୍ୟ କରୁଥିଲି । ଚାଷ କରିବା ଏମାନଙ୍କର ବେଉସା । ଏମାନେ ବଞ୍ଚିବାର କଥା ମୁଁ ଗଭୀରଭାବେ ଅନୁଧ୍ୟାନ କରୁଥିଲି । ଆଶା ଏଇଠିକାର ଜୀବନଯାତ୍ରାର ମୁଖ୍ୟ ପାଥେୟ । ଏ ଚୈତ୍ର ମାସରେ ଚଷାଭାଇ ମୁଗଫସଲ କରିଛି । ଧୂସର ପଡ଼ିଆ ଭିତରେ ଏହାର ଜୀବନ୍ତ ସବୁଜିମା ଯେକୌଣସି ମଣିଷର ଆଖିକୁ ଟାଣିନେଉଛି । ଆଖୁ ଗଛ ଲଗାଯାଇଛି । ଖଳାରେ ଗହମ ଓ ବୁଟ ଅମଳ ହେଉଛି । ସକାଳୁ ଖେତରେ ପାଣିଦେବାକୁ ହେବ । ଦ୍ୱିପ୍ରହରରେ ମୁଗ ଫସଲ ଜଗିବାକୁ ହେବ । ଅପରାହ୍ଣରେ ଖଳାରେ ଗହମ ବାଡ଼େଇବାକୁ ପଡ଼ିବ । ସନ୍ଧ୍ୟାରେ ଗୋରୁପଲଙ୍କ କଥା ବୁଝିବା ଏକ ଦୈନିକ କାର୍ଯ୍ୟକ୍ରମ । ସନ୍ଧ୍ୟା ସାତଟାବେଳକୁ ଗାଁଟି ଶୋଇ ପଡ଼ିଥିବ । ଘରର ଘରଣୀ ମଧ ସେହିଭଳି ଦିନସାରା କାର୍ଯ୍ୟବ୍ୟସ୍ତ । ସମୟ ପାଉନି ଆପଣାର କଥା ବୁଝିବାକୁ । ଗାଁପିଲାଏ ଦିନସାରା ଜଙ୍ଗଲ ଭିତରେ ବୁଲୁଥିବେ, ଗାଈ ଚରାଉଥିବେ । ସନ୍ଧ୍ୟାବେଳକୁ ଶୋଇ ପଡ଼ିବେ ।

ତମେ ଆଶ୍ଚର୍ଯ୍ୟ ହେଉଥିବ, ମୁଁ ସାତଦିନ ଏପରି ନିପଟ ମଫସଲରେ କିପରି କାଟିପାରିଲି ! 'War and Peace' ନେଇଯାଇଥିଲି । ସାତଦିନ ଭିତରେ ଅର୍ଦ୍ଧାଧିକ ପଢ଼ିସାରିଛି । ରାତିରେ ଲଣ୍ଠନ ଆଲୁଅରେ ପଢ଼ିହୁଏ ନାହିଁ । ବାହାରର ସଂସାର ସହ ଆଦୌ ସମ୍ପର୍କ ନାହିଁ । Two-band radioଟି ସହ ରାତି ଏଗାରଟା ପର୍ଯ୍ୟନ୍ତ କାଟିଥାଏ । ସମସ୍ତେ ଶୋଇ ପଡ଼ିବା ପରେ ମଧ ଆଖିକୁ ନିଦ ନ ଆସିଲେ ମୁଁ ସୁବିସ୍ତୃତ ଆକାଶକୁ ଚାହିଁଥାଏ । ଏଇଠି ଜୀବନ କେତେ ସରଳ । ଲୋକଙ୍କର strife କେତେ pure ! ଲୋକଙ୍କର କ୍ଷୁଧା ଅଛି, ମାତ୍ର ଯନ୍ତ୍ରଣା ନାହିଁ । ଲୋକଙ୍କର ଭୟ ଅଛି (ଭୟ କହିଲେ ନଈବଢ଼ିର ଭୟ, ମରୁଡ଼ିର ଭୟ) ଅଥଚ ମୃତ୍ୟୁ ପ୍ରତି ଏମାନଙ୍କର ଶଙ୍କା ନାହିଁ । ଚଇତ ମାସର ଖରା ଏମାନଙ୍କୁ ଅବଶ କରିଦେଉନି । ଖରାଦିନ ପାଇଁ ମଧ ଏମାନଙ୍କର କାର୍ଯ୍ୟକ୍ରମ ଅଛି । ବଡ଼ ଶାନ୍ତ ଜୀବନ ଏମାନଙ୍କର । ମୋ ଜୀବନରେ ସଚେତନ ପ୍ରାଣରେ ଏ ସାତଦିନ

ମୁଁ ଆପଣାର ଯନ୍ତ୍ରଣାଦଗ୍ଧ ପ୍ରାଣକୁ ଏମାନଙ୍କର ମଧୁର ଜୀବନଯାତ୍ରା ସହ ତୁଳନା କରୁଥିଲି । ତମଭଳି ମୋର ଗାଁକୁ ଏବଂ ଏହାର ଜୀବନକୁ ଆପଣାର କରିବାର ଦକ୍ଷତା ଥିଲେ ଏ ଚିଠି ମୁଁ ତମକୁ କବିତାରେ ଲେଖିଥାଆନ୍ତି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ବନ୍ଧୁତା ଓ ଚୁକ୍ତି ସମ୍ପର୍କରେ ତମର ମତାମତ ମୋ ମନରେ ଘୋର ଆଲୋଡ଼ନ ସୃଷ୍ଟି କରିଛି । ଏବେ ମୁଁ ଆଉଥରେ ତମ ବିଷୟରେ ଚିନ୍ତା କରୁଛି । ଏତେ ପଢ଼ିବା, ଜାଣିବା ଓ ଅନୁଭବ କରିବା ପରେ ମଧ ବନ୍ଧୁତାକୁ ସରଳ, କମନୀୟ ବା ଅନବଦ୍ୟ ବୋଲି ତମେ ଭାବୁନାହଁ । ସମୟ, ସ୍ଥାନ ଏବଂ ବ୍ୟକ୍ତିକୁ ବାରମ୍ବାର ଜୟ କରୁଥିବା ମଣିଷର ଏହି ସ୍ୱତନ୍ତ୍ର ଗୁଣଟିକୁ ତମେ ସନ୍ଦେହ କରୁଛ । ସମ୍ପର୍କ କ'ଣ ସତରେ ବ୍ୟବସାୟ ? ତମେ ଜାଣୁଥିବ ଏହାର ସତ୍ୟାସତ୍ୟ । ମୁଁ ଭଲ ପାଇବାର menifestation ଦେଖିଥାଏ ବନ୍ଧୁତାରେ । ମୁଁ ବନ୍ଧୁତାକୁ ପୋଷିବା ସହ ତୁଳନା କରେନାହିଁ, ଯଦିଓ ମୋତେ 'ରାଜକୁମାର' ବହି ଭଲ ଲାଗିଛି । ପୋଷିବାର ଅନ୍ୟନାମ slavery । ବନ୍ଧୁତାରେ ସେହିଭଳି କ୍ରୀତଦାସତ୍ୱର ସ୍ଥାନ ନାହିଁ । ମଣିଷ ସହ ମଣିଷର ସମ୍ପର୍କ ସୁଦୃଢ଼ ହେଲେ phenomena ଆପେଆପେ ମଣିଷ ସହ ଲିପ୍ତ ହେଇଯାଏ । ମୁଁ ବନ୍ଧୁତା ଭିତରେ passion ଦେଖେ । ଏହି ଭଲ ପାଇବାର ନିଶା ଏକ ଶାଶ୍ୱତ ଉତ୍ସ ବୋଲି ଗ୍ରହଣ କରିନେଇଛି । ମୁଁ କିଭଳି ପରୀକ୍ଷା (experiment) କରୁଛି ତମେ ଜାଣିଥିବ । ତମ ଚିଠିରୁ ମୁଁ ସମ୍ଭବତଃ ଭିନ୍ନ ଧରଣର ଆଘାତ ପାଇଛି ।

ବନ୍ଧୁ ! ତମେ କେମିତି ସେଇଠି ସମୟ କାଟୁଛ ? କେତେବେଳେ ଟିକିଏ ସୁଯୋଗ ମିଳିଲେ ମୁଁ ସେ place ପାଖ ବେଞ୍ଚ ପାଖକୁ ଯାଉଛି । ତମମାନଙ୍କୁ ମୁଁ ମନେପକାଉଛି । ସ୍ୱପ୍ନ ଭଳି ତମେସବୁ ଆସି ମୋ ପାଖରେ ଛିଡ଼ା ହୁଅ । ଝାପ୍‌ସା ଦେଖାଯାଉଥିବା ପୃଥିବୀ, କାମନାସିକ୍ତ ଜହ୍ନ ବା ସ୍ୱଚ୍ଛ ନଦୀଜଳରେ ତା'ର ପ୍ରତିଫଳନ ସେତେବେଳେ କିଛି ହେଲେ ଭାବାନ୍ତର ସୃଷ୍ଟି କରିପାରେନି । ତମେମାନେ ପୁଣି ମିଠା ସ୍ୱପ୍ନ ଭଳି ହଜିଯାଅ ଓ ଗୋଟାଏ ଭାରି ମନେନେଲେ ମୁଁ ଫେରିଆସିବାକୁ ବାଧ ହୁଏ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ତିନୋଟି ଚିଠି କ୍ରମାନ୍ୱୟରେ ପାଇଛି । ତମେ ତ ମୋର ମନର କଥାକୁ ମୋଠାରୁ ଯଥେଷ୍ଟ ଭଲ ଭାବରେ ବ୍ୟକ୍ତ କରିପାରୁଛ । ଆଜିକାଲି କେଜାଣି କାହିଁକି ଅନେକ କଥା ମୁଁ ଲେଖିପାରୁନି । ତମପାଖକୁ କେଜାଣି କେତେ ଚିଠି ଅଧା ଲେଖି ଶେଷ କରି ପାରିନି । ତମେ ତ ଜାଣି କେତେବେଳେ କେମିତି ଲେଖିବାକୁ ଇଚ୍ଛା ହେଲେ ତମ ପାଖକୁ ହିଁ ଲେଖିବସେ । କିନ୍ତୁ ପରେ ଯଥେଷ୍ଟ ଭାବାନ୍ତର ହେଉଥିବାରୁ ସେସବୁର ଅର୍ଥ ରହେନାହିଁ । ଠିକ୍ ତମ ଭଳି ନିର୍ଜନତାର ଯନ୍ତ୍ରଣା ମୋତେ ଅଥୟ କରିଦିଏ । ଏଇଠି ଜୀବନଟା ଗୋଟାଏ ବହୁ ଆଲୋଚିତ ତର୍କ ଭଳି ମନେହୁଏ ।

ଏଠାରେ ବାଲେଶ୍ୱର ଭଳି ଦ୍ୱି'ପ୍ରହରରେ ଝନ୍‌ଜା ମନପ୍ରାଣ ସବୁକୁ ଜାଳି ଦେଉଛି । କେତେ ଶୀଘ୍ର ଶୀତ ସରିଗଲା ! ଆଉ ବା ବୈଶାଖୀ କେତେ ଦିନ ? ବସନ୍ତ ଏଇଠିକି ସତରେ ଆସିଛି କି ନାହିଁ ଜାଣିହୁଏନି । ଆମ୍ବଗଛରେ ବଉଳ ଧରିଥିବା କଥା ଦେଖୁଦେଖୁ ଆମ୍ବକଷିକୁ ଆବିଷ୍କାର କରୁଛି । ଇଚ୍ଛା ଥିଲା, ଏଇଠି ଯେଉଁମାନେ ମୋତେ ଗ୍ରହଣ କରନ୍ତି ସେମାନଙ୍କୁ ଅନୁଭବ କରେଇ ଥାଆନ୍ତି ଏହି ଆମ୍ବବଉଳର ସବୁ ବାସ୍ନା, ସବୁ ରଙ୍ଗ ବିଷୟରେ । (ସେମାନେ ସବୁ ନଗ୍ନସିନେମା କଥା କୁହନ୍ତି) ଏଇଠି ଶାଗୁଆନ୍ ଗଛରେ ଫୁଲ ଧରିଛି । ବଡ଼ ବଡ଼ ଗୋଲାକାର ପତ୍ରସବୁ ଚମତ୍କାର ଦେଖାଯାଉଛି । ଏହିଭଳି ଝରାପତ୍ରର ମର୍ମର ଶୁଣୁଶୁଣୁ ନୂଆ କଳିକାର ଚିନ୍ତା ମନ ଭିତରକୁ ଆପେ ଆସୁଛନ୍ତି । ଏଇଠି କୃଷ୍ଣଚୂଡ଼ାର ରଙ୍ଗ ସ୍ୱପ୍ନ । (ଯାହା ମୋତେ ଏ ପୃଥିବୀରେ ବଞ୍ଚିବାର ପ୍ରେରଣା ବାରମ୍ବାର ଦେଇଆସିଛି) ଏଇଠି ମଳୟ ବହୁଛି କି ନାହିଁ ତାହା ଜାଣିହେଉନି । ରାତିରେ ଶୀତ ପଡୁଛି । ଯେଉଁ ପାହାଡ଼ ମୋତେ ବାରମ୍ବାର ହାତଠାରି ଡାକିଛି, ସେଇଠି ନିଆଁ ଲାଗିଛି । ଯେଉଁଠି ସବୁଜ ଉପତ୍ୟକାକୁ ମୁଁ ଦେଖୁଥିଲି, ଲାଲ୍ ପ୍ରଜାପତିଟିଏ ସେଇଠି ଉଡ଼ି ବୁଲୁଛି । ଗୋଟାଏ 'distant hum' ମୋର ଅଣନିଃଶ୍ୱାସୀ ଜୀବନରେ ଟିକିଏ ହେଲେ ବି ନୂଆ ଆସ୍ୱାଦ ଆଣିଦେଉଛି । ମୁଁ କାହା ସହ କାହାର ସମ୍ପର୍କ ଯୋଡ଼ିପାରୁନି । ଗୋଟାଏ ଶାଶ୍ୱତ ଏବଂ ଚିର ନୂତନ ପୃଥିବୀ ସହ ମୁଁ ଡୋରି ବାନ୍ଧୁଛି । ଗୋଟାଏ ସ୍ତରରୁ ଆଉ ଗୋଟାଏ ମହାନ ସ୍ତରକୁ ସହଜରେ ଯାଇ ନହେଲେ ମଧ୍ୟ ମୁଁ କ୍ଷଣିକ ପାଇଁ ଭାବାବେଗରେ ବିହ୍ୱଳ ହୋଇପଡୁଛି । ଏଇଠି ସବୁ ଦୁଶ୍ଚିନ୍ତା, ସବୁ ଜଘନ୍ୟ involvement ଭିତରେ ମୁଁ ଯେ ସମ୍ପୂର୍ଣ୍ଣ ଜଡ଼ ହୋଇଯାଇ ନାହିଁ ଏକଥା ମୁଁ ଅନୁଭବ କରିପାରୁଛି । ସମ୍ଭବତଃ ବସନ୍ତ ଆସିଛି, ନହେଲେ ମୁଁ ପାଷାଣ ବା ଅଥର୍ବ କେଉଁ ଦିନଠାରୁ ହୋଇସାରନ୍ତିଣି ।

ଭଞ୍ଜ ମୋ ପାଖକୁ ଲେଖିନାହିଁ । ସମ୍ଭବତଃ ଅଭିମାନରେ । ମୋ ସହ ଚୁକ୍ତି କରିଥିଲା ଯେ ଏଥର ଆମେ ପରସ୍ପରକୁ ଯେପରି ଯଥେଷ୍ଟ ଲେଖୁ । ତମ ଚିଠିରୁ ମୁଁ ଭାବୁଛି ଆମର ନିର୍ଜନତାକୁ ଭୟ ସମ୍ପର୍କରେ ଭଞ୍ଜ ସତ କଥା ଲେଖିଛି । ନିଜ ଅନୁଭୂତିରୁ ସେ ଏହି

ସିଦ୍ଧାନ୍ତରେ ପହଞ୍ଚିପାରିଛି । କିନ୍ତୁ ବିବାହ କଥା ମୋତେ ଆଦୌ ଆଶ୍ଚର୍ଯ୍ୟ କରିବ ନାହିଁ । ତା' girl friend ମୁଲୀ କଥାକୁ ବି ଏହିଭଳି sure tone ରେ ସେ କହିଛି । ଏହାପୂର୍ବରୁ କହୁଥିଲା ଯେ ସେ ଗୋଟାଏ Bengali bride ଠିକ୍ କରିଛି । କାନ୍‌ପୁରରେ ତା'ର ଅତିପ୍ରିୟ ଲଛମୀ କେରଳରୁ ଆସିଥିଲା । ଭଞ୍ଜର ରୋମାନ୍‌ସ ତା'ର ଆପଣାର ନିଜସ୍ୱ । ମୁଁ ତାକୁ Steppen Wolf ର ନାୟକ Harry Haller ସହ ବାରମ୍ବାର ତୁଳନା କରୁଛି । ଆଜିକାଲି ଭଞ୍ଜ ଯଦି ଏସବୁ ବିଷୟରେ କିଛି genuine କହୁଥାଏ, ମୁଁ ଜାଣିନାହିଁ ।

ଏଇଠି ତମକଥା ମୋର ବାରମ୍ବାର ମନେପଡୁଛି । ତମ ସହ ଅନେକ ଦିନୁ ଦେଖା ହୋଇନି । ତମ ସହ ଏକାନ୍ତରେ କିଛି କଥା ହୋଇପାରିନି । ଆମ ମନରେ ସଦ୍ୟ ସ୍ୱପ୍ନସବୁ କହିପାରିନେ । ତଥାପି ଆମେ ଯେ ପରସ୍ପରକୁ ନିଜ ଅଜାଣତରେ ଅନୁଭବ କରିପାରୁଛେ, ଏକଥାଠାରୁ ଏ ପୃଥିବୀରେ ଆଉ କ'ଣ ଆବଶ୍ୟକ ଅଛି ! ଏବେ ତ ଆମ ବନ୍ଧୁତାରେ passion ଅଛି । ଏ passion ପୁଣି sublimate କରିଯିବ; ଆମର ସ୍ୱପ୍ନ, ଆମ ଭଲ ପାଇବା ସାର୍ଥକ ଲଭିବ ।

ତମେ ୭ ତାରିଖରେ କଟକ ଆସୁଛ ବୋଲି ଲେଖିଛ । କେଉଁଠି ରହିବ ଲେଖିବ । ଚେଷ୍ଟା କରୁଛି ତମକୁ ଦେଖା କରିବାକୁ ମୋ ପାଇଁ ଲାଇବ୍ରେରୀରୁ 'Dynamics of a Particle'- Loney, 'Statics'- Ramsay or Loney available ହେଲେ ନେଇ ଆସିବ ।

ବାବାଙ୍କ ଦେହ ଭଲ ହୋଇଗଲାଣି । ରାଉରକେଲା ନିଆଯିବ କି ନାହିଁ କିଛି ସ୍ଥିର ହୋଇନି । ପ୍ରଫୁଲ୍ଲ ଏବେ ତା'ର ସ୍ତ୍ରୀ ପାଖକୁ ଯାଇଛି । ଅନ୍ୟ ସବୁ ଭଲ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଭଲ ପାଇବା କଥା କେତେ ସହଜରେ ବୁଝିହୁଏ । ସମୟ ଓ ସୁଯୋଗ ମିଳିଲେ ମଧ୍ୟ ଅନୁଭବ କରିହୁଏ । ଭଲ ପାଇ ବସିଲେ ମଣିଷ ଅତିମାନବ ହୋଇଯାଏ । 'ସବୁ'କୁ ଆପଣାର କରିବସିଲେ 'ସବୁ'କୁ ମଧ୍ୟ ଭୁଲିହୁଏ । (To love is to forget.........) ସଂସାରରେ ଭଲ ନପାଇ ପାରିଲେ ସବୁ ନର୍କ ହୋଇପଡ଼େ ।

ଅନ୍ୟପକ୍ଷରେ ବଞ୍ଚିବାର କଥା ଦୁର୍ବୋଧ ହେଲେ ମଧ୍ୟ ମଣିଷ ବୁଝିବାର ଛଳନା କରିଥାଏ । ଯିଏ ଚିନ୍ତାଶୀଳ ବୋଲି ଦାବୀ କରେ, ସେ ହୁଏତ ଭାବିଥାଏ ଯେ ମୁଁ ବଞ୍ଚିବାର ସବୁ intricaciesକୁ ବୁଝିସାରିଛି । ବୌଦ୍ଧିକ ଦୃଷ୍ଟିକୋଣରୁ ବିଚାର କରିବାକୁ ଯାଇ ବଞ୍ଚିବାଟା ଗୋଟେ କଳା କିନା ସହଜରେ ସ୍ଥିର କରିହୁଏନି । ତଥାପି ମୁଁ, ତମେ ଓ

ଆମେ ସମସ୍ତେ ବଞ୍ଚିବାକୁ ଚାହୁଁ, ଯେମିତି ଆମେ ଟିକିଏ ଭଲ ପାଇବାକୁ ଜୀବନର ସବୁ essence ବୋଲି ଭାବୁ ।

କେତେ ଦିନ ଧରି ମୁଁ ଏଇ ବଞ୍ଚିବା ଓ ଭଲ ପାଇବା ଭିତରେ ଗୋଟେ synthesis ଆଣୁଥିଲି । ସତରେ କ'ଣ ଭଲ ପାଇବା ଓ ବଞ୍ଚିବା ଏକାକଥା ?(!) ଯଦି ଏକାକଥା, ତେବେ ମୁଁ କାହିଁକି ସମସ୍ତଙ୍କୁ ଭଲ ପାଇପାରୁନି ? ଭଲ ପାଇବା ଭିତରେ କାହିଁକି ଯେ ମାପଚୁପ୍, ତାରତମ୍ୟ ଏବଂ କମ୍‌ବେଶୀର ପ୍ରଶ୍ନ ଉଠୁଛି ? ଯିଏ ବା ଲାଲ୍ ଟହଟହ ସୂର୍ଯ୍ୟକୁ ଭଲ ପାଇପାରୁଛି, ସିଏ କାହିଁକି ରକ୍ତର ସମ୍ପର୍କୀୟମାନଙ୍କୁ ଭଲ ପାଇ ପାରୁନି ? ଯିଏ ପୃଥିବୀକୁ ଭଲ ପାଇପାରୁଛି, ସିଏ କାହିଁକି 'Outsider' ହୋଇପଡୁଛି ! (ତମେ ତ ଭାବୁଥିବ ମୋର ଏଇଠି ଲେଖିବାର ଉଦ୍ଦେଶ୍ୟ) ଯେଉଁ ମଣିଷ ଆପଣାର ମନଟିକୁ ଭଲପାଇ ବସୁଛି, ସିଏ ଆଉ କା'ର କଥା ମନ ଭିତରକୁ ଆଣୁନାହିଁ । ଯିଏ କୌଣସି ସ୍ଥାନ, କାଳ୍, ପାତ୍ରକୁ ଭଲ ପାଉଛି, ସେ ଏକାବେଳେକେ ଆତ୍ମକେନ୍ଦ୍ରିକ ହୋଇପଡୁଛି । ଭଲ ପାଇବାକୁ ମୁଖ୍ୟ ବୋଲି ଭାବୁଥିବା ମଣିଷ ଶହୀଦ୍ ହେବାକୁ ବେଶୀ ପସନ୍ଦ କରୁଛି । (ଏହାକୁ ନେଇ ଆମର hero worship ଯଥେଷ୍ଟ ଅଛି) ଅନ୍ୟପକ୍ଷରେ ପୁଣି ବଞ୍ଚିବାକୁ ସର୍ବସ୍ୱ ବୋଲି ଭାବି ମଣିଷ । ସ୍ୱାର୍ଥପର ହୋଇପଡୁଛି ।

ମୋ ମନରେ କୌଣସି ନିର୍ଦ୍ଦିଷ୍ଟ ସମାଧାନ ଏପର୍ଯ୍ୟନ୍ତ ସ୍ଥାନ ପାଇନାହିଁ । ଏହା ଏକ ଅନନ୍ତ ରହସ୍ୟ (ଅନ୍ତତଃ ମୋ ପାଇଁ); ବାରମ୍ବାର ଏସବୁର ବୋଝ ମୋତେ କ୍ଳାନ୍ତ କରିଦେଉଛି । କେଜାଣି କାହିଁକି ମନେହେଉଛି ଯେ ଭଲ ପାଇବା ଓ ବଞ୍ଚିବା ଏକାକଥା ନୁହେଁ । ବରଂ ଓଲଟା କଥା । To exist is not to love. (ଅବଶ୍ୟ ମୋର ଭଲ ପାଇବା ସମ୍ପର୍କରେ concept ସମ୍ପୂର୍ଣ୍ଣ ଭିନ୍ନ) ଦେଖ,ଯିଏ ଅତି ସହଜ ଭାବେ ସବୁକୁ ଭଲ ପାଇପାରୁଛି, ତେମେ ଆଉ ତା'ର ବଞ୍ଚିବାର ଆବଶ୍ୟକତା କ'ଣ ଅଛି ? ଆମେ ସମସ୍ତେ ବୋଧେ ବଞ୍ଚିଛେ କେବଳ ଏ ପୃଥିବୀକୁ ଭଲ ପାଇବାକୁ । ଆମର annihilationର ସମୟ ଆସିନାହିଁ । ଆମର ପୃଥିବୀରେ ସାଲିସ୍‌ର ପ୍ରଶ୍ନ ନାହିଁ । ଯେମିତି ଭଣ୍ଡାମୀର ସ୍ଥାନ ନାହିଁ ।

କାଲି ସଂଧ୍ୟାରେ palace ପାଖ ସିମେଣ୍ଟ ବେଞ୍ଚରେ ଆମେ ସବୁ ନୀରବରେ ବସିଥିଲୁ । (କିଛି କ୍ଷଣପୂର୍ବରୁ ପ୍ରଫୁଲ୍ଲକୁ ଗାଳି ଦେଇଥିଲି ତା'ର evasive talking ପାଇଁ) ଏଇଠି ସମୟକୁ ଏଇମିତି ନୀରବରେ କାଟିଦେବାକୁ ଭଲଲାଗେ । Jean Valjeanଙ୍କ ଭଳି ଆତ୍ମଗୋପନ କରିବାକୁ ଏ ମଣିଷ ବାଧ୍ୟ ହୁଏ । ଗତବର୍ଷ Karamazov ପଢ଼ିଲାପରେ Ivanକୁ ନେଇ ମୁଁ ବାରମ୍ବାର ଭାରାକ୍ରାନ୍ତ ହୋଇ ପଡୁଥିଲି । ସେତେବେଳେ ବିପ୍ଲବ ଓ ଦ୍ୱନ୍ଦ୍ୱ ଆମ୍ ଭିତରେ ସନ୍ଧି କରିଥିଲେ । ଏ ବର୍ଷର ପ୍ରଥମ ଭାଗରେ Les Miserables ପଢ଼ିଲା ପରେ ମୋର ସ୍ଥିତି ସଚେତନତା ବେଶ୍ ବଢ଼ିଯାଇଛି ବୋଲି ମନେହେଉଛି ।

Les Miserablesର ନାୟକ Jean Valjean ଏଇଭଳି ନୀରବ ବସି ବସି crescent moon କୁ ଲକ୍ଷ୍ୟ କରି ନିଜ ସମ୍ପର୍କରେ ଅନେକ ପ୍ରଶ୍ନ ନିଜକୁ ପଚାରୁଥିଲା । ଶୁଣୁଥିଲା 'voice of conscience'କୁ । ଭୁଲିଯାଉଥିଲା ଯେ ସେ ex-galley slave ଏବଂ ex-convict । ଏ ପୃଥିବୀ ଭିତରେ ଆପଣାର ମଣିଷମାନଙ୍କୁ ଖୋଜୁଥିଲା । ସମ୍ପର୍କସ୍ଥାପନ କଲାବେଳେ ସେ ବାରମ୍ବାର ସଙ୍କୁଚିତ ହୋଇଯାଏ । ନିଜର ଇତିହାସ (କଳଙ୍କିତ ନିଶ୍ଚୟ ? ?) ସମ୍ପର୍କରେ ସଚେତନ ହୋଇପଡ଼େ । ତମର 'ପିଲିସଜ' ନାଟକଟି ମନେଥିବ । ଏଇ ବହିର ପ୍ରଥମ ଭାଗରେ Bishop's candlestick Jean Valjean ଙ୍କର ଜୀବନକୁ ବଦଳେଇ ଦେଉଛି । ତା'ର ପରବର୍ତ୍ତୀ ବର୍ଣ୍ଣନା ସବୁ Christ ଙ୍କ ଜୀବନକାହାଣୀ ଭଳି । ସବୁସ୍ଥାନରେ good ଏବଂ evilର ସଂଗ୍ରାମ । ସାମାଜିକ ସ୍ଥିତି ସମ୍ପର୍କରେ Victor Hugo ଏତେ ସକ୍ରିୟ ଯେ Jean Valjean ଅନେକ ଯନ୍ତ୍ରଣା ଭୋଗିଛି । ଶେଷରେ ମରିଛି । କିନ୍ତୁ ଜୀବନକାଳ ମଧ୍ୟରେ ଅନେକ ବାର ସେ ନିଜର କର୍ତ୍ତବ୍ୟ କ'ଣ ବୁଝିପାରିଛି । ସେ ଭଲ ପାଇବସିଛି ଏ ପୃଥିବୀକୁ । ସମସ୍ତଙ୍କୁ ସେ ବାତ୍ସଲ୍ୟର ସ୍ନେହ ଦେଇଛି । କିନ୍ତୁ social evil ଏବଂ social laws ତାକୁ ଶେଷ ପର୍ଯ୍ୟନ୍ତ କ୍ଷମା ଦେଇନି ।

ଦେଖାହେଲେ ମୁଁ ଏତେ ବଡ଼ ବହିର କଥା କହିବି । ଏବେ 'Vanity Fair' ପଢୁଛି ।

ତମେ ଚିଠି ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ ମୋ ଉପରେ ବ୍ୟସ୍ତ ହୋଇ ପଡୁଛ, ମୋତେ ଅବିଶ୍ୱାସ କରୁଛ । ଏହିଭଳି ଦୁର୍ଭାଗ୍ୟଜନକ ସମୟରେ ସବୁଜିନିଷ ତ ଓଲଟିଯାଉଛି, ସବୁ ଅବିଶ୍ୱାସୀ ହୋଇପଡୁଛି । ଜୀବନର ସବୁ ଗ୍ରନ୍ଥି ଛିଡ଼ିଯାଉଛି, ସଂସାରର ସବୁ ସମ୍ପର୍କ କେତେ ବିଷାକ୍ତ ଜଣାପଡୁଛି । ସତରେ ମୋତେ କ'ଣ ବାଧ ହୋଇ ସାଲିସ୍‌ପନ୍ଥା ଆଚରଣ କରିବାକୁ ପଡ଼ିବ ! ଆଜି ମୁଁ ଠିକ୍ ଅନୁଭବ କରିପାରୁଛି ଲଳିତ କଥା । ମୋ ପାଇ ଯେମିତି ଆଜି ସବୁ କିଛିର ରୂପାନ୍ତର ହୋଇଛି, ଲଳିତ ପାଇଁ ସେହିଭଳି ନିଶ୍ଚୟ ହୋଇଥିବ । ଅନେକ ଥର ମୁଁ କହିଥିବି ଯେ ମୁଁ ମହାମାନବ ନୁହେଁ ବା ହେବାକୁ ଚାହେଁ ନାହିଁ । ଏ ସଂସାରରେ ମୋର କିଛି ଲୋଡ଼ାନାହିଁ, କେବେଳ ଟିକିଏ ଭଲ ପାଇବା ଛଡ଼ା ଆଉ କିଛି ମୁଁ ଚାହୁଁନାହିଁ । ଏହି ଭଲ ପାଇବାକୁ ମୋ ଜୀବନର foothold କହିବି, ମୋର ସ୍ୱପ୍ନ ବୋଲି କହିବି । କେତେ difficult propositionକୁ ମୁଁ experiment କରୁଛି ! ଲଳିତ ସମ୍ଭବତଃ ହରିଗଲା, ତ୍ରାହି

ପାଇଗଲା, ମୁକ୍ତ ହୋଇଗଲା । ମୁଁ ରହିଗଲି । ତମେ ଓ ଅମ୍ଳାନ ରହିଗଲ କେବଳ ଯନ୍ତ୍ରଣାରେ ଜଳିବା ପାଇଁ । ହୁଏତ ମୁଁ ବା ତମେ କେହି ହେଲେ ପରାଜୟ ସ୍ୱୀକାର କରୁନାହାନ୍ତି ଆଉ କିଛି ବାଟ ନିଜକୁ ଆଗେଇ ନେଇଯିବା ପାଇଁ ମନ୍ତ୍ରଣା କରୁଛନ୍ତି, ଏକାଠି ଜୀବନଯୁଦ୍ଧ କରିବାକୁ ଅଣ୍ଟା ଭିଡୁଛନ୍ତି କ'ଣ ବା ଲାଭ ହେବ, ଯଦି ଆମେ ଚିରାଚରିତ ପନ୍ଥାରେ ଆଉ କିଛି ବାଟ ଅଗ୍ରସର ହେଉ । ଆଉ କିଛି ମସ୍ତିଷ୍କକୁ ଭାରାକ୍ରାନ୍ତ କରୁ! ଆମ ଜୀବନରେ ଗୋଟିଏ ବୋଲି ସ୍ୱପ୍ନ । ଅଥଚ ସେଥିରେ ପୁଣି ଦ୍ୱନ୍ଦ ଓ ପରାଜୟ । ଆମ ପ୍ରାଣରେ ଗୋଟିଏ ମାତ୍ର ହୃଦୟ ଅଥଚ ସେଥିରେ ଅନେକ କ୍ଷତ ।

ତମେ ଅନେକ ସମୟରେ ଜୀବନରେ ଯୁଦ୍ଧ କରିବା କଥା କହିଥାଅ, ମୋତେ ବୁଝେଇବାକୁ ଚେଷ୍ଟା କର । ସମ୍ଭବତଃ ତମେ ମୋ ଅପେକ୍ଷା ଜୀବନକୁ ବାସ୍ତବ ଦୃଷ୍ଟିକୋଣରୁ ଅଧିକ ମାତ୍ରାରେ ବିଚାର କର । ମୁଁ ଅବଶ ହୋଇପଡୁଥିବା ବେଳେ, ପଙ୍ଗୁ ହୋଇଯାଉଥିବା ବେଳେ ତମେ ଆଗେଇ ଯିବାର ମୂଳମନ୍ତ୍ର ଦେଖାଇଦିଅ । କିନ୍ତୁ ତମେ ମଧ୍ୟ ଭାରି ଦୁର୍ବଳ ଜଣାପଡ଼ । ଆପଣାର ଅଜାଣତରେ ମୋ ଭଳି ଠିକ୍ ପଙ୍ଗୁ ହୋଇଯାଇ ସ୍ଥାଣୁ ପାଲଟିଯାଅ । ମୁଁ ଯେତେବେଳେ 'world of terror' କଥା କହେ, ତମେ ସେତିକିବେଳେ ବଞ୍ଚିବାର ମୂଲ୍ୟବୋଧ କଥା ଚିନ୍ତା କର । ତଥାପି ବେଳେବେଳେ ମୋର ସେହି ପ୍ରିୟ 'world of terror'ର ତମେ ଶିକାର ହୋଇଯାଅ । ମୁଁ ବଞ୍ଚିବା ଓ ଭଲ ପାଇବାକୁ ଏକ ନିର୍ଦ୍ଦିଷ୍ଟ ସମୀକରଣ ରୂପେ ଉପସ୍ଥାପିତ କଲାବେଳେ,ତମେ ନାପସନ୍ଦ କର । କିନ୍ତୁ ତମେ ଏହି ଭଲ ପାଇବା ଓ ବଞ୍ଚିବାର ସମ୍ପର୍କରେ ଆଦୌ ସ୍ଥିରନିଶ୍ଚିତ ହୋଇପାରନା ।

ତଥାପି ଆମେ ଆଗେଇବାକୁ ଚାହିଁଛେ । ଅସ୍ଥିରତାର ସମୁଦ୍ରରେ ଆମେ ଥଳକୂଳ ପାଉନାହେଁ । ତଥାପି ଆମେ destination କଥା ଭୁଲିଯାଇନେ । ଆପଣାର ନିଜସ୍ୱ ଚିନ୍ତା, ନିଜସ୍ୱ ପରିଧି ଆମକୁ ଦୋହଲାଇ ଦେବନାହିଁ । ସବୁ ଝଡ଼ଝଞ୍ଜାକୁ ଅତିକ୍ରମ କରିବାକୁ ଗଲେ ଏହାଛଡ଼ା ଅନ୍ୟକିଛି ରାସ୍ତା ନାହିଁ, ଅନ୍ୟ କିଛି ପାଥେୟ ମଧ୍ୟ ନାହିଁ । ମୋର ନିଃସଙ୍ଗ ଜୀବନରେ ତମେ ସବୁକିଛି, ମୋର ହାରଜିତ୍‌ର ତମେ ଏକାନ୍ତ ଦ୍ରଷ୍ଟା । ଯେତେବେଳେ ମୁଁ ଯେତିକି ଯେତିକି ଅସହାୟ ଅନୁଭବ କରିବି, ତମେ ମୋର ସେତିକି ସେତିକି ନିକଟରେ ଜଣାପଡ଼ିବ । ଯେତେବେଳେ ମୁଁ ବିଲୀନ ହୋଇଯିବି, ସେତିକିବେଳେ ତମ ଭାଷାରେ ସେହି 'ଏକାତ୍ମ' ହୋଇଯିବ କଥା ଅନୁଭବ କରିବି ।

ଅଚ୍ୟୁତ

*ବି.ଦ୍ର. :* କିଛି ଦିନ ତଳେ ମୁଁ Philosophy of Historyରୁ ଉଦ୍ଧାର କରି Tolstoy ଲେଖିଥିବା ଉକ୍ତି 'Chance is Created by position, and genius only take advantage of it'କୁ ବ୍ୟାଖ୍ୟା କରି ଲେଖିଥିବା ଚିଠିଟିଏ ଶେଷ କରିପାରିନି । ଆସନ୍ତାଥର ଏହାକୁ ହିଁ ପଠାଇବି ।

□ □ □

ପ୍ରିୟ ବନ୍ଧୁ,

ଏଇ ବୟସରେ ପହଞ୍ଚିଯାଇ Ulysess ବା Hemingwayଙ୍କ 'Oldman' ହେବାକୁ ସ୍ୱପ୍ନ ଦେଖିବା କେତେବଡ଼ ଯନ୍ତ୍ରଣା ତମେ ତ ବେଶ୍ ଅନୁଭବ କରିପାରୁଥିବ । କୋଡ଼ିଏ ବର୍ଷ ତଳର ଆମର ସୁବର୍ଣ୍ଣ ଅତୀତ । ଆମର ଏ ପୃଥିବୀ ସମ୍ପର୍କରେ ସମ୍ପୂର୍ଣ୍ଣ ଉଦାସୀନତାକୁ କେବଳ ମନେପକାଇ କିଛିଟା ଆତ୍ମସନ୍ତୋଷ ଲାଭ କରାଯାଇପାରେ । ନହେଲେ ଆମର ବାପାମାଆଙ୍କ ବୟସକୁ ହଠାତ୍ ଅତିକ୍ରମ କରିଯିବା ଦରକାର ହୁଏ । ସେତେବେଳେ ହିଁ ଜୀବନଯାତ୍ରା କେତେ ନିରୁଦ୍‌ବେଗ, କେତେ ସହଜ, କେତେ ଅପରିହାର୍ଯ୍ୟ ହୋଇପଡ଼େ ।

ହଁ, ମୁଁ ମୋର ଅପଦାର୍ଥ ହୋଇ ପଡ଼ିବାକୁ ଆଉ ସହିପାରୁନାହିଁ । ଜୀବନର ବୋଝ ଅନ୍ୟମାନଙ୍କ ଉପରେ ଲଦିଦେଇ ମୁଁ ନିଜକୁ ପ୍ରତିମୁହୂର୍ତ୍ତରେ ଦୋଷୀ ସାବ୍ୟସ୍ତ କରୁଛି । ବାରମ୍ବାର ହୃଦୟ ଭିତରେ ଆନ୍ଦୋଳିତ ହୋଇପଡୁଛି । ଏହି ବୟସରେ ମଣିଷ ମୁହଁ ଖୋଲି ଯେତିକି କହିବାର ସ୍ୱାଧୀନତା ହାସଲ କରିଥାଏ, ମୋର ତ ସେହି ବ୍ୟକ୍ତିଗତ ସାର୍ବଭୌମତା ଥିବା ଭଳି ମନେ ହେଉନାହିଁ । କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ଜୀବନଦର୍ଶନକୁ ମୁଁ ଆପଣାର କରିପାରିଛି, ଏ ବିଶ୍ୱାସ ମଧ୍ୟ ମୋର ନାହିଁ । ଭଲ ମଣିଷ ହେବାର ରାସ୍ତାକୁ ମୁଁ ଯେମିତି ବାଟହୁଡ଼ି କ୍ରମଶଃ ଅବାଟରେ ହିଁ ଚାଲିବାକୁ ଆରମ୍ଭ କରିଛି ।

ମୋର ଯନ୍ତ୍ରଣାକୁ ବୁଝୁଥିବା ମଣିଷମାନେ ମୋ ପାଇଁ ସ୍ୱର୍ଗଦୂତ । ମୋ ପାଇଁ ଏ ପୃଥିବୀରେ ସବୁଠାରୁ ଉତ୍ତମ ପୁରୁଷ । ମୁଁ ଜାଣେ ତମମାନଙ୍କ ଉପରେ ମୁଁ ମୋର ଯନ୍ତ୍ରଣା, ଆବେଗ, ପ୍ରବୃତ୍ତି ଓ ଖିଆଲ୍‌କୁ ଅତି ନିଷ୍ଠୁର ଭାବେ ଲଦି ଦେଇଛି । ନିଜେ ବଞ୍ଚିବାକୁ ଯାଇ, ନିଜେ ନିରାପଦ ରହି ତମମାନଙ୍କୁ ମୁଁ ଲୁଣ୍ଠନ କରିଛି । ତମମାନଙ୍କୁ ମୁଁ କିଛି ହେଲେ ଦେଇନାହିଁ, ତମମାନଙ୍କୁ ମୁଁ ଭଲ ପାଇ ପାରିନାହିଁ । ଏଇଠି ବାପାମାଆଙ୍କ ଠାରୁ ଆରମ୍ଭ କରି ସବୁ ବନ୍ଧୁବାନ୍ଧବମାନଙ୍କ ବେକରେ ହିଁ ଗଳଗ୍ରହ ହୋଇଯାଇଛି । ଗୋଟାଏ deceptive metaphysical quest କୁ ମୁଁ ମୁଖ୍ୟ ଅସ୍ତ୍ର ରୂପେ ବ୍ୟବହାର କରି ତମମାନଙ୍କର ଅନାବିଳ ସ୍ନେହକୁ ଅତି ସହଜଭାବେ ହାସଲ କରିପାରିଛି । ଏହାକୁ ମୁଁ ମୋର ପତନ ବୋଲି ଏବେ ଅନୁଭବ କରିପାରୁଛି ।

ଦୌଡ଼ରେ ଜିତିଥିବା ଗୋପବନ୍ଧୁ ମୋ ପାଇଁ ଯେତିକି ଭଲ ମଣିଷ, ହାରିଥିବା ଅମ୍ଳାନ ମଧ୍ୟ ସେତିକି ଭଲ ମଣିଷ । ମୋ ଆଗରେ ଭଞ୍ଜ ଯେତିକି ମହାନ୍ ପୁରୁଷ, ଅତିମାତ୍ରାରେ indifferent ଜଣାପଡୁଥିବା ଆଶୁତୋଷ ମୋ ପାଇଁ ମଧ୍ୟ ସେତିକି ମହାନ୍ ପୁରୁଷ । ଏମାନଙ୍କୁ ଛାଡ଼ିଦେଲେ ସମ୍ଭବତଃ ଅନେକ ମଣିଷ ମୋର ଅତି ପରିଚିତ । ତଥାପି ସେମାନଙ୍କୁ ମୁଁ ଭଲପାଏ । ସେମାନଙ୍କର ବଞ୍ଚିବାର ନିଷ୍ଠାପରତା ମୋତେ ଅବାକ୍ କରିଦିଏ । ଏଇଠି ମୁଁ କେତେ ଲୋକଙ୍କୁ ଦୂରରୁ ଦେଖୁଛି । ସେମାନଙ୍କର ବେସୁରା ଜୀବନ ଭିତରେ

ମୁଁ ଅପୂର୍ବ ଛନ୍ଦ ଖୋଜିପାରିଛି । କୌଣସି ମଣିଷ ବଞ୍ଚିରହି ଭୁଲ କରିନାହିଁ । କୌଣସି ମଣିଷ ମୋ ଭଳି ଅପଦାର୍ଥ ହୋଇଯାଇନାହିଁ । କିଛି ଦିନ ତଳେ ମୋର ବାହାଦର ବୋଲି ଜଣେ ବିହାରୀ ମଜ୍‌ଦୁର୍ ସଙ୍ଗେ ପରିଚିତ ହୋଇଥିଲା । ସିଏ ଅତି କରୁଣଭାବେ ଯୁବାବୟସରେ ବୁଢ଼ା ହୋଇଯାଇଛି; ତଥାପି ସିଏ କାହାକୁ ଭଲ ପାଏ (ଆଦିବାସୀ ଝିଅଟିଏ), ତା'ର ବିରହରେ କାନ୍ଦିପକାଏ । ଏଥିରେ ତ ମୋ ଭଳି ଭଣ୍ଡାମୀ ବା ଆତ୍ମପ୍ରବଞ୍ଚନା ନାହିଁ । ଏଇ ତ ମୋ ପାଇଁ ଅମୃତର ସନ୍ତାନ ।

ଦେଖ, କେତେ ଶୀଘ୍ର ମୁଁ ବଦଳିଯାଉଛି । କେତେ ସହଜ ଭାବେ ମୁଁ ଭିନ୍ନ ମଣିଷ ହୋଇଯାଉଛି । ଆମର ଆଗେଇଯିବାର ମୂଳମନ୍ତ୍ର କିଭଳି ଜାଣିଶୁଣି ମୁଁ ଭୁଲିଯାଉଛି । (ଏଇଠି ଅଟକିଯିବାକୁ ଗୋଟାଏ ଅକାଳମୃତ୍ୟୁ ବୋଲି ଭାବିପାର) କାଲି ରାତି ଅଳ୍ପ ଅଳ୍ପ ବର୍ଷା ହେଉଥିଲା । ତମପାଖକୁ ମୁଁ ଚେଷ୍ଟା କରି କିଛି ଲେଖୁଥିଲି । ଆଦୌ ସମ୍ଭବ ହେଲା ନାହିଁ । ଆବେଗ ତ ଅନେକ ଦିନରୁ ବିଲୁପ୍ତ ହୋଇଗଲାଣି । ବଡ଼ ଦୁଃସମୟରେ ମଣିଷ ପହଞ୍ଚିଯାଇଛି । ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା, ଦୂରରୁ ସୁନ୍ଦର ଦେଖାଯାଉଥିବା ଏ ପାହାଡ଼, ଏଇ ଉପତ୍ୟକାକୁ ଆବିଷ୍କାର କରିବା, ଉଭୟ ଆଲୁଅ ଓ ଅନ୍ଧକାରକୁ ଭଲ ପାଇବା ଏବଂ ଗୋଟାଏ ସ୍ତରକୁ ଅତିକ୍ରମ କରି ଅନ୍ୟ ଏକ ସଚେତ ସ୍ତରକୁ ହିଁ ଯିବା । ଆଜି କେତେ କଥା ନିଜ ଶକ୍ତିର ବାହାରେ ଘଟିଯାଉଛି । ନା ଏଇଠି ମୋ ପାଇଁ ବଞ୍ଚିବାର କୌଣସି ସୁଆଦ ଅଛି ନା ଯଥାର୍ଥତା ରହିଛି ।

ଯଦି ଏଇ ମୁହୂର୍ତ୍ତରେ ମୁଁ whitman ଙ୍କ ଭଳି କହିପାରୁଥାଆନ୍ତି 'I am sufficient as I am !', ଯଦି ଅତି ସହଜତମ ଉପାୟରେ ମୁଁ ମୋ ଚାରିପାଖର ଅଲଂଘ୍ୟ ପାଚେରୀକୁ ଅତିକ୍ରମ କରିପାରୁଥାଆନ୍ତି, ତେବେ ତମମାନଙ୍କୁ ମୁଁ ଆହୁରି ଅନୁଭବ କରି ପାରୁଥାଆନ୍ତି, ଆହୁରି ଭଲ ପାଇପାରନ୍ତି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ ଲେଖୁନାହଁ ।

ଅନେକ ଦିନର ନୀରବତା ପରେ ଅମ୍ଳାନ ସଂକ୍ଷିପ୍ତ ଚିଠିଟିଏ ଲେଖିଛି । ତମକୁ ମଧ୍ୟ ସେ Bombay IITରେ fellowship ପାଇଥିବା କଥା ଲେଖିଥିବ । ଅମ୍ଳାନ ଏବେ କ'ଣ ଭାବୁଥିବ ? ଜୀବନରେ ସେ ଗୋଟାଏ scholar ହେବାକୁ କେବେହେଲେ ଚାହିଁ ନଥିଲା । ତା'ର ଯାହା ଲୋଡ଼ା ଥିଲା,ତମେ ତ ଖୁବ୍ ଭଲ ଭାବେ ଜାଣିଛ । ଏସବୁ ଅଦୃଷ୍ଟ ହାତର କଥା । କିଏ କ'ଣ ଚାହେଁ ଆଉ ବାସ୍ତବରେ ପାଏ କ'ଣ !

ଆଜି ଏଇଠି ଆକାଶ ସମ୍ପୂର୍ଣ୍ଣ ନିର୍ମେଘ ରହିଛି । ଜହ୍ନ ମଧ୍ୟ ତୋଫା ଦେଖାଯାଉଛି । ଶ୍ରାବଣ ମାସରେ ଏଭଳି ଘଟିବାର କଥା ନୁହେଁ । ତଥାପି ପ୍ରକୃତିର ବୈଚିତ୍ର୍ୟ ଆମକୁ ଗ୍ରହଣ କରିବାକୁ ପଡ଼ିବ । ନଦୀରେ ଅଳ୍ପ ବଢ଼ି ହୋଇଛି । ସେଇଠି କିଛି ସମୟ ବସିଥିଲି । ଘରେ ଏ ସମୟରେ ସବୁ ଇଚ୍ଛାକୁ ଦମନ କରି ପଢ଼ିବାକୁ ଆଗ୍ରହ ନାହିଁ । ଏଭଳି ବାଧ୍ୟବାଧକତାରେ ମୁଁ କେବେ ବହି ଭିତରେ ମନୋନିବେଶ କରିନାହିଁ । ବଡ଼ ଅଡୁଆ ଲାଗୁଛି । କିଛି ଲେଖିବାକୁ ଚାହିଁଲେ ମଧ୍ୟ ଅଗ୍ରଗତି ଯଥେଷ୍ଟ ସୀମିତ ହୋଇପଡୁଛି । ଦୁଇଟି ଚିଠି ତମକୁ ଲେଖିଥିଲେ ମଧ୍ୟ ପ୍ରକୃତ ଭାବନାର ରହିଯାଇଥିବା ଲକ୍ଷ୍ୟ କରି ତମକୁ ପଠାଇ ପାରିନାହିଁ ।

ଘରର ଅବସ୍ଥା ମଧ୍ୟ ଭଲ ନାହିଁ । ବାବା କେତେ ଥର କହିଲେଣି exchangeରେ ନାଁ ଲେଖାଇବାକୁ । ବୋଧେ ସେଇଆ ମୋତେ କରିବାକୁ ହେବ । ଯେକୌଣସି ଗୋଟାଏ ଚାକିରୀ ପାଇଲେ ସେମାନଙ୍କର ବୋଝ ଲାଘବ ହୋଇଯିବ । କେତେ ଭଲ ମଣିଷ ସେମାନେ । ବୁଢ଼ା ହୋଇଯିବାର ଆନନ୍ଦ (ଦୁଃଖ) ସେମାନଙ୍କୁ ବଞ୍ଚାଇ ରଖିଛି । କେତେ ନିରୁଦ୍‌ବେଗ ସେମାନେ ! କେତେ ସହଜରେ ନୂଆ ହୋଇ ଜନ୍ମ ନେଉଥିବା ଶିଶୁଟି ପାଇଁ ସେମାନେ ସବୁ ରାସ୍ତା ମୁକ୍ତ କରିଦେଉଛନ୍ତି ! ମୋର ସବୁବେଳେ ଇଚ୍ଛା ହେଉଛି ଆମରି 'ବାପାମାଆ' ମାନଙ୍କୁ ପଚାରିବା ପାଇଁ ଯେ କେଉଁ ଶକ୍ତି ସେମାନଙ୍କୁ ଏତେ ଦିନଧରି ବଞ୍ଚାଇ ରଖିଛି । (ସମ୍ଭବତଃ ମୋର ଶସ୍ତା ବୌଦ୍ଧିକ ଆଗ୍ରହର ଏହା ପରିଣତି) ତଥାପି କ'ଣ ତମର ଇଚ୍ଛା ହୁଏନି ବାପାଙ୍କ ପାଖରୁ ଅନେକ କିଛି ଶୁଣିବା ପାଇଁ ? ମାଆ ପାଖରେ ଅଳି କରିବା ପାଇଁ ? ଆମେ ସବୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ଜଟିଳ ହୋଇପଡୁଛେ । ଆମର ତଥାକଥିତ ନୈତିକ ପତନ ଆମକୁ ଭୀରୁ କରିଦେଉଛି ।

ଅନେକ ଦୁର୍ଭାଗ୍ୟଜନକ ପରିସ୍ଥିତି ସତ୍ତ୍ୱେ ଏହି ପର୍ଯ୍ୟାୟଟି ମୋ ପାଇଁ ଜୀବନର ଏକ ଅଭିନବ ଯୁଦ୍ଧକ୍ଷେତ୍ର । ଗୋଟାଏ ପକ୍ଷରେ 'world of terror' ଅନ୍ୟ ପକ୍ଷରେ ମୋର 'deep sense of involvement' ମୋତେ ଏ ଜୀବନର ସବୁସ୍ତରର ଅନୁଭୂତି ଦେଇପାରିଛି ।

ଚିଠି ଲେଖିବ ।

ଅଚ୍ୟୁତ

*ବି.ଦ୍ର. :* 'Existence' ଓ 'love'କୁ ଯୋଡ଼ି ତମକୁ ମୋର 1st axiom ଲେଖିଥିଲି । 'involvement' ଓ 'freedoms' ଏକତ୍ର କରି 2nd axiom ପଠାଉଛି । ଏହା ହେଲା "To exist is to involve and our involvement are our freedoms." ତମେ ତମର ମତାମତ ଲେଖିବ, ଅବଶ୍ୟ ଅବସର ମିଳିଲେ । ମୁଁ ଆସନ୍ତା ଚିଠିରେ ଏକଥାକୁ ପ୍ରତିପାଦିତ କରିବି ।

▯ ▯ ▯

ପ୍ରିୟ ବନ୍ଧୁ,

କାଲି (ଶୁକ୍ରବାର) ଏଠି ଏକ ଚମତ୍କାର ସକାଳ ହୋଇଥିଲା । ଖରାର ପ୍ରକୋପ ଯଥେଷ୍ଟ କମିଯାଇଥିଲା । ଶରତ ସକାଳର ସମସ୍ତ ଉନ୍ମାଦନା ମୋ ମନରେ ସୃଷ୍ଟି ହୋଇଥିଲା । କିନ୍ତୁ ଅଫିସ୍‌କୁ ତ ଯିବାକୁ ହେବ । ସ୍ୱାଧୀନତାଟା କେତେ ସହଜ ଭାବେ ମରିଯାଇଛି, ମୁଁ ଅନୁଭବ କରିଥିଲି । ହୁଏତ କିଛିଟା ମୁଁ nostalogic ହୋଇପଡ଼ିଥାଆନ୍ତି । ନିଜ ସହ ଏକାନ୍ତରେ ବସି କିଛି କଥାବାର୍ତ୍ତା କରିଥାଆନ୍ତି । କିନ୍ତୁ introspection ଏବଂ କିଛି contemplation ମଧ୍ୟ । ଏଇ ଦିନରୁ କିଏ ଚାହେଁ ତା' ଜୀବନଟା ଶୁଷ୍କ, prosaic ହୋଇଯାଉ ବୋଲି ! କିଏ ମଧ୍ୟ ଚାହେଁ ତା'ର sense of freedom ଗତାନୁଗତିକତା ଭିତରେ ହଜିଯାଉ ? ଦିନଟା ଅତି ସହଜ ଭାବେ, ଅତି ନିଷ୍ଠୁର ଭାବେ ଅତିବାହିତ ହୋଇଗଲା । ସନ୍ଧ୍ୟାରେ ଏକ ଜ୍ୟୋତ୍ସ୍ନାବିଧୌତ ଆକାଶ ଭିତରେ ମୁଁ ମଧ୍ୟ ହଜିଯିବାକୁ ଚାହିଁଥିଲି । କିନ୍ତୁ କାଲି ପ୍ରକାଶ ପାଇଥିବା IPS Allied result ଉପରେ ଯେଉଁ ଆଲୋଚନା, ପର୍ଯ୍ୟାଲୋଚନା ଚାଲିଥିଲା, ମୁଁ ନିଜକୁ ଅନୁଭବ କରିପାରିବାର ସୁଯୋଗ ପାଇନଥିଲି । ଏଠି ମଧ୍ୟ ରାତିଗୁଡ଼ା ଅସାଧାରଣ ଭାବେ କାବ୍ୟିକ ହୋଇପଡୁଛନ୍ତି । ଛାତ ଉପରେ ଶୋଇ ରହି ମୁଁ ଦେଖୁଛି ଅସ୍ତଗାମୀ ଚନ୍ଦ୍ରକୁ । ସବୁଆଡ଼େ ଭୀଷଣ ନିର୍ଜନତା; ଶାନ୍ତ । କିନ୍ତୁ ମୁଁ ମୋର ଜୀବନଦର୍ଶନ ଖୋଜୁଛି । ଦେଖୁଛି, ଆସ୍ତେ ଆସ୍ତେ ଜହ୍ନ ଉପରୁ ଭସାବାଦଲ ଚାଲିଯାଉଛି ଏବଂ ଆକାଶ ପୁଣି ଆଲୋକିତ ହୋଇପଡୁଛି । ମୋତେ ଧୈର୍ଯ୍ୟର ସହ ଅପେକ୍ଷା କରିବାକୁ ହେବ । କେଜାଣି କାହିଁକି କିଛି ଦିନ ହେଲା ପୁଣି ମୁଁ ମଣିଷର invincibility, infallibility ଉପରେ ଭୀଷଣ ବିଶ୍ୱାସ କରିବସିଛି । ମୋତେ କିଛି କରିବାକୁ ହେବ, ଏକଥା ଯେମିତି କିଏ ମୋତେ ବାରମ୍ବାର ଚେତେଇ ଦଉଛି । ସବୁ ଦ୍ୱନ୍ଦ୍ୱ, ସବୁ ଆତ୍ମପ୍ରତାରଣା ଓ ସବୁ ନୈରାଶ୍ୟ ସତ୍ତ୍ୱେ ଯେମିତି ମୁଁ ଜୀବନର ମୂଲ୍ୟବୋଧ ସମ୍ବନ୍ଧରେ କିଛି ray of hope ଆବିଷ୍କାର କରୁଛି । ହଁ, ମଣିଷକୁ ଆରମ୍ଭ ହୋଇଥିବା ମହାନ୍‌ଯାତ୍ରା (Great march)ରେ ଭାଗ ନେବାକୁ ହେବ । ଏ ସଂସାରର ପଥରେ ମଣିଷ ଯେଉଁ କଳ୍କୀ ଅବତାରର କଥା ଚିନ୍ତା କରିଛି ସେ ଅନ୍ୟଥା କେବେହେଲେ ହେବନାହିଁ । ମଣିଷ ପାଇଁ ଯେଉଁ set of values ଉଦ୍ଦିଷ୍ଟ ତା'କୁ ବଞ୍ଚେଇବାକୁ ହେବ । କାଲି ଦିନ ଏକ ଅସାଧାରଣ ଥିଲା । ଗରମ ପରେ ଟିକିଏ ଉତ୍ତାପ କମିଗଲେ ମଣିଷ ଭାବେ ସ୍ୱର୍ଗ ମିଳିଯାଇଛି । ଅନେକ ଦିନର ପୁଞ୍ଜିଭୂତ ଯନ୍ତ୍ରଣା ପରେ ଟିକିଏ ଆନନ୍ଦ ମିଳିଯିବା ଠିକ୍ ସେହିଭଳି ।

ଭଞ୍ଜ ପୁଣି ଆସିଛି । କହୁଛି ମୋ'ଠି ସେ ନୂଆ inspiration ଆବିଷ୍କାର କରୁଛି । ମୋ ଦ୍ୱାରା ସେ ପୁଣି rejuveneted ହୋଇଯାଉଛି । ପୁଣି ସେ ପାଠରେ ମନୋନିବେଶ କରିପାରୁଛି ବୋଲି ସ୍ୱୀକାର କରିଛି । ଭଞ୍ଜ ଗୋଟେ ଦୃଷ୍ଟିରୁ ଅମ୍ଳାନ ଅପେକ୍ଷା ଆମର

ବେଶୀ ନିଜର । କାରଣ system ଭିତରକୁ ବିନା ପ୍ରତିବାଦରେ ପଶିଯିବାକୁ ସେ cowardice ବୋଲି କହେ । ମଣିଷର ଶକ୍ତି ଉପରେ ତା'ର ଯଥେଷ୍ଟ ଆଶା ଓ ବିଶ୍ୱାସ ଯେ ସେ କିଛି କରିପାରିବା ଜୀବନରେ କୌଣସି ଗୋଟେ equation ହୋଇପାରେ । ଏକଥା ସମ୍ବନ୍ଧରେ ତା'ର ଆତ୍ମବୋଧ ଆସିଯାଇଛି । Alembert Lagrangeଙ୍କୁ କହୁଥିଲେ 'Push on and faith will follow you' ଯେତେବେଳେ Lagrange ୧୦ ବର୍ଷ କାଳ ନୈରାଶ୍ୟ ଯୋଗୁଁ ଗଣିତ ଛାଡ଼ି ଦେଇଥିଲେ । ଭଞ୍ଜ ତା' ପୃଥିବୀ ଚାରିପାଖେ (ତମ ଭଳି) ପାଚେରୀ ଗଢ଼ିବାକୁ ଚାହେଁ ନାହିଁ । କିନ୍ତୁ ଭଞ୍ଜକୁ ସଂଗ୍ରାମ କରିବାକୁ ହେବ । ଜୀବନର ଶେଷ ରକ୍ତବିନ୍ଦୁକୁ କୌଣସି ଏକ passion (ଗଣିତ ପାଇଁ ହୋଇପାରେ) ପାଇଁ ଢାଳିବାକୁ ହେବ । ମୋ ଭଳି ଫମ୍ପା ଆବାଜ୍ ଦେବା ମଧ ତା' ମନରେ ନାହିଁ ।

ସତରେ ତମର ସେହି ପୂର୍ବ ଚିଠି ମୋତେ ଖୁବ୍ ଭଲ ଲାଗିଥିଲା ଅନେକ ସମୟରେ ମୋର ମନକୁ ସ୍ୱତଃ ଆସି ଯାଇଥାଏ ଯେ ତମେ ଚିଠି ଲେଖିଲାବେଳେ shrink କରିଯାଉଛ । ନିଜକୁ ଲୁଚାଇ ରଖୁଛ । ତମ ମନ ଭିତରେ ଯେ ସଂସାରର ଚିରାଚରିତ ଜୀବନ ପ୍ରତି ଘୃଣା ଆସିଯାଇଛି । ତମେ ପ୍ରକାଶ କରନାହିଁ, ଖୁବ୍ matter-of-fact ହୋଇପଡ଼ । ଏ ଚିଠି (ଯେଉଁଠି ଦୌଡ଼, ଧାଡ଼ି କଥା ଲେଖିଛ) ତମକୁ ମୋ ପାଖକୁ ଆହୁରି ନିଜର କରିଦେବ । ମୋ ପାଖରେ ତମେ ଅଦ୍ୱିତୀୟ ହୋଇପଡ଼ିବ । ଜୀବନରେ ତମର କିଛି ଅଭାବ ହୋଇନି କହିଲେ ଚଳେ । ପାରିବାରିକ ସମ୍ପର୍କ ତମପାଇଁ ମଧୁମୟ । କିନ୍ତୁ ତା'ସତ୍ତ୍ୱେ ତମେ 'outsider' ହୋଇ ପଡ଼ିବାକୁ ମୁଁ କହିବି ଏ ଆମର common philosophyର ଅନ୍ୟ ରୂପ । ତମେ ଗତ ଚିଠିରେ ବୁଲ୍‌ବୁଲ୍ ସିଂହ କବିତା ଭଲ ଅନୁବାଦ କରିଛ ।

ମୁଁ କିଛି କିଛି ପାଠ ପଢୁଛି । ଗପବହି ପଢ଼ିବାକୁ ସମୟ ମିଳୁନାହିଁ । ରବିବାରଗୁଡ଼ା ଅକାରଣରେ କଟିଯାଉଛି । ଘରୁ ବାରମ୍ବାର ମୋତେ degrade କରି ଚିଠି ଆସିବା ପରେ ଆଉ ସେମାନଙ୍କ ପାଖକୁ ଲେଖୁନି । ପ୍ରଫୁଲ୍ଲ ପୂର୍ବଭଳି ମୋତେ ବ୍ୟସ୍ତ କରି ପକାଉଛି । ମୁଁ ମଧ ତା'କୁ ଆଉ ଏଇ କିଛି ଦିନ ଚିଠି ନ ଲେଖିବାକୁ ମନସ୍ଥ କରିଛି ।

ମୁଁ ଭଲ ଅଛି । ତମେ ସବୁ ବାପାମାଆଙ୍କ ସାଙ୍ଗେ ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ସାମାନ୍ୟ miscalculation ଯୋଗୁଁ ତମ ସଙ୍ଗେ ଦେଖା ହୋଇପାରିଲାନି । ଶୁକ୍ରବାର ରାତିରେ ଫେରି ତମେ ଆସିଛ ବୋଲି ଆଶୁତୋଷ ଦେବତାଠୁ ଶୁଣିଲି । ସକାଳୁ

ଫୋନ୍ କଲାପରେ ତମେ ଚାଲିଯାଇଛ ଶୁଣି ନିରାଶ ହେଲି । ମୋତେ ତମେ ଏଇଠି ଯଥେଷ୍ଟ miss କରିଥିବ ନିଶ୍ଚୟ ।

ଘରୁ ଫେରି ତମ ଚିଠି ପାଇଲି । ଆଗରୁ ଆଶଙ୍କା କରୁଥିଲି, ତମ ମନର ଅବସ୍ଥା ଠିକ୍ ରହୁନଥିବ ବୋଲି । ସେଥିପାଇଁ ମୋ ଚିଠିର ଉତ୍ତର ଦେବାରେ ତମେ ବିଳମ୍ବ କରୁଥିଲ । ମୁଁ ମଧ୍ୟ ଲେଖିବାକୁ ଚାହୁଁଥିଲି । କିନ୍ତୁ ପ୍ରଥମେ ତମ ଚିଠିକୁ ଅପେକ୍ଷା କରୁଥିଲି । ତମେ ପୁଣି ନିଜକୁ ତଳକୁ ଠେଲି ଦେଉଛ ଭାଗ୍ୟ ଉପରେ ନିଜକୁ ଛାଡ଼ିଦେଉଛ । ନିଜ ଉପରୁ ଆସ୍ଥା ହରାଇବସୁଛ । ଉଦାସୀନ ହୋଇ ପଡୁଛ । କ'ଣ ଏଥିରେ ଭାବିବାର ଅଛି । ଏଭଳି ପରାଜୟ ତ ଆମ ପାଇଁ କିଛି ନୂଆ ନୁହେଁ । ଯେତେବେଳେ ଆମେ ନିଜକୁ assert କରିବାକୁ ଚାହିଁଛୁ, ଠିକ୍ ସେତିକି ବେଳେ ଆମ ସହ fortune hide-n-seek ଖେଳିଛି । ଆମେ ଅନ୍ୟ ଆଗରେ ହତାଦର ହୋଇଛୁ । କିନ୍ତୁ ଆମେ ମୁଣ୍ଡ ନୋଇଁ ଦେଇନୁ । ଯଦିବା ଆମର କିଛି ନିଜତ୍ୱ ଥାଏ, ତା'କୁ ହରାଇ ଦେଇନୁ । ଆମେ ବଦଳି ଯାଇନୁ । ଆମେ ଜୟ ପରାଜୟର ଦାର୍ଶନିକ ଉତ୍ପ୍ରେରଣା ଭଲଭାବେ ବୁଝିଛୁ । ସବୁ ଭିତରୁ human failings ଏବଂ human invincibility କଥା ବୁଝିଛୁ, ଅନୁଭବ କରିଛୁ । ଆମେ ନିଜକୁ ଭଲଭାବେ ବୁଝିପାରିଛୁ । ତେଣୁ ଅନ୍ୟ କିଏ ଆମକୁ ତାଚ୍ଛଲ୍ୟ କରି କହିଲେ ଆମେ ବରଂ ହସି ହସି ସବୁକଥା ସହିଯାଇଛୁ । ଆମେ ଅସମ୍ଭବ ଭାବେ ସ୍ୱପ୍ନବାଦୀ । ସ୍ୱପ୍ନକୁ ନେଇ ବଞ୍ଚିରହିବାକୁ ହେଲେ ସେହିଭଳି ଏକ ସ୍ୱପ୍ନର ପୃଥିବୀ ଆବଶ୍ୟକ । ତମେ ପ୍ରଶ୍ନ କରିପାର, କେତେ ଦିନ ଏ ସ୍ୱପ୍ନ ଦେଖା ଯାଇପାରେ ? ମୁଁ କହିପାରେ ସବୁଦିନ ପାଇଁ । ଏ ପୃଥିବୀରେ ଆମେ ଏତେ ଅସମ୍ଭବ ଭାବେ 'outsider' ଯେ ସ୍ୱପ୍ନ ବିନା କ୍ଷଣିକ ମାତ୍ର ସମୟ ଆମ ପାଇଁ ଦୁର୍ବହ । ତମ କଥା ମୁଁ ଅନେକ ସମୟରେ ଭାବେ । ଅମ୍ଳାନ କଥା, ଭଞ୍ଜ କଥା, ପ୍ରଫୁଲ୍ଲ କଥା । ଅନ୍ୟମାନଙ୍କ କଥା କ୍ରମେ ଅତୀତର ସ୍ମୃତି ହୋଇପଡ଼େ । ସେସବୁ ପୁଣି ଆସ୍ତେ ଆସ୍ତେ ପୋଛି ହୋଇଯାଏ । ଆମେ ସମସ୍ତେ କିଛି ନା କିଛି 'desire' ଦ୍ୱାରା haunted, obsessed । ପରିସ୍ଥିତି ସହ ସାଲିସ୍ ନ କରି ପାରିବାର ଯନ୍ତ୍ରଣାରେ ଆମେ ସମସ୍ତ ମୃତପ୍ରାୟ । କିନ୍ତୁ ସବୁଭିତରୁ ଭଞ୍ଜ ଭଳି ଆମକୁ ଆମର 'own special way'ରେ ଆଲୋକ ଖୋଜିବାକୁ ପଡ଼ିବ । ନିଜକୁ ହଜାଇ ଦେବାକୁ ପଡ଼ିବ । ତେବେ ତ ଆମର ସ୍ୱପ୍ନବାଦୀ ହେବାର ଯୋଗ୍ୟତା ଆସିଯିବ । ଆମ ମନରେ ମଧ୍ୟ ଦ୍ୱନ୍ଦ ରହିବ ନାହିଁ । କୌଣସି ପ୍ରକାର ବାଧାବିଘ୍ନ ଆମକୁ ଡରାଇବ ନାହିଁ, ପରାଜୟ ଆମକୁ ତା' ପାଦତଳେ ଚାପିଦେବ ନାହିଁ । ତେଣୁ ତମର ଯଦି କିଛି ମାତ୍ର ମାନସିକ ଦୁରାବସ୍ଥା ଆସିଥାଏ, ତେବେ ମୁଁ କହିବି ଏସବୁ ସକାଳର କୁହୁଡ଼ି ଭଳି ।

ସେଦିନ ପାହାନ୍ତାରୁ ଉଠିପଡ଼ି ଦେଖିଲା ବେଳକୁ କୁହୁଡ଼ି ଘୋଟିଯାଇଛି । ଆଉ ଶୋଇ ହେଲାନି । ଅମ୍ଳାନ ଶୋଇ ଯାଇ ସ୍ୱପ୍ନ ଦେଖୁଛି । ମୁଁ ଏଇ କୁହୁଡ଼ି ଭିତରେ ହଜିଯିବାକୁ

ଚାହିଁଲି । ଏ କୁହୁଡ଼ି ସହିତ ଯେମିତି ଅନେକ ଜୀବନର, ଅନେକ ଯୁଗର ସମ୍ପର୍କ । କେହି କେହି କହନ୍ତି ଜୀବନର ରହସ୍ୟ ଠିକ୍ 'morning mist' ଭଳି । ସତକଥା । ପୁଣି କେହି କେହି ଅନୁଭବ କରନ୍ତି ପହଁରିବା ସହ ଜୀବନର ଆନୁଷଙ୍ଗିକ ସମ୍ପର୍କ ଅଛି । ତା' ତ ସତକଥା । କିନ୍ତୁ କୁହୁଡି ପହଁରିବାର ଉତ୍ତାପ ଠିକ୍ ସ୍ୱପ୍ନ ରାଜ୍ୟରେ ବିଚରଣ କରିବାର ଆନନ୍ଦ ଭଳି । ବ୍ୟକ୍ତିବିଶେଷରେ କିଏ କେଉଁଭଳି ଉତ୍ତାପ ପାଇଥାଏ ତା'କୁ ହିଁ ଜଣା । କେବଳ ସତର୍କ ମଣିଷ ଅନ୍ୟମଣିଷଟିକୁ କହିଦିଏ ଯେ ସେ କୁହୁଡ଼ି ପହଁରୁଛି ବୋଲି । ମୁଁ କିଛି ସମୟ ବୁଲିବୁଲି କୁହୁଡ଼ିସିକ୍ତ ପୃଥିବୀରେ ସବୁକଥା ଅନୁଭବ କରୁଥିଲି । ତମ ପାଖକୁ ଲେଖିବାକୁ ଚାହିଁଥିଲି । ଅମ୍ଳାନକୁ କହୁଥିଲି । ସେ କିନ୍ତୁ ହସରେ ଉଡ଼ାଇଦେଲା । ହୋଇପାରେ, ଯେଉଁ ମଣିଷର ଜୀବନରେ କିଛି ନିର୍ଦ୍ଦିଷ୍ଟ ବାସ୍ତବ ଚିନ୍ତାଧାରା ନାହିଁ, ସେ କ୍ଷଣିକ ଉତ୍ତେଜନା ଓ ଭାବାବେଗରେ ଏହିଭଳି କୁହୁଡ଼ି ଭିତରେ ହଜିଯିବାକୁ ଚାହେଁ । କୁହୁଡ଼ି ଭିତରୁ ଉତ୍ତାପ ଖୋଜେ । ଲୋକେ କହିବେ ଲୋକଟା frustrated ହୋଇଗଲା । କୁହନ୍ତୁ, ଦୁଃଖ କାହିଁକି ?

ତମେ ପୁଣି ଯୁଦ୍ଧ ପାଇଁ ସଜ ହୁଅ । ଗତ ପରୀକ୍ଷାର ବିଫଳତା ଭିତରୁ ନିଜର ଦୁର୍ବଳତାକୁ ବୁଝ । ଆମେ ସମସ୍ତେ ଯେ ଅପେକ୍ଷା କରିଛୁ ତମେ ଜିତିବା ପାଇଁ । ତମେ ଆମକୁ ନିରାଶ କରନି । ନିଜକୁ ଧ୍ୱଂସ କରିଦିଅନି । ପୂର୍ବ ପରିକଳ୍ପିତ ଯୋଜନା ଅନୁସାରେ ତମର ସମସ୍ତ energyକୁ ଏଥରର competitive ପରୀକ୍ଷାରେ ନିୟୋଜିତ କରିବା କଥା । ତେଣୁ ତମର ସଚେତନତା ଏକାନ୍ତ କାମ୍ୟ । ଏ ପୃଥିବୀରେ ତମେ ସ୍ୱପ୍ନ ଦେଖୁଛ ଏକଥା ତମ ବ୍ୟତୀତ କେହି ବୁଝିବେ ନାହିଁ । ତମରି ପାଇଁ ଜୀବନଟାର ଅର୍ଥ କେତେ ସ୍ୱତନ୍ତ୍ର, ସେକଥା କେହି ଶୁଣିବେ ନାହିଁ । ସମସ୍ତେ ଖୋଜିବେ 'success' in absolute term । ସବୁ ଭଲ ପାଇବା, ସ୍ନେହ, ଶ୍ରଦ୍ଧା ଏବଂ ଭକ୍ତି କେବଳ ଏହି success ଉପରେ ପର୍ଯ୍ୟବେଶିତ । ତମେ ଜୀବନ ସହ ବାଜି ଲଗାଇଦିଅ । ତମେ ପୁଣି ସବୁ ସ୍ପନ୍ଦନ ନେଇ ଜାଗ୍ରତ ହୁଅ ।

ଅମ୍ଳାନକୁ ମୁଁ ବାଧ୍ୟ କରିଛି ଏଇଠୁ ଚାଲିଯିବା ପାଇଁ । ଅମ୍ଳାନ ଶେଷ ବେଳକୁ ମୋ ଉପରେ ଆସ୍ଥା ରଖୁନଥିଲା । ମୋତେ ମଧ୍ୟ ଭୀଷଣ guilty ଲାଗୁଥିଲା । ମୁଁ ଚାହୁଁଥିଲି କ'ଣ, ହୋଇଯାଉଛି କ'ଣ? ଅମ୍ଳାନ ଏହା ପରେପରେ ମୋ ସହ ନିଶ୍ଚୟ ଦୂରତ୍ୱ ରଖିବ । ସେ ଜାଣେ (ବୋଧେ ଅନୁଭବ କରୁଥିବ) ଯେ ଆମେ ତା'ସହ lukeworm friendship ରଖିଛୁ । କିନ୍ତୁ ଆମେ ତା'କୁ ଭିତରେ କେତେ ଭଲ ପାଉ, କିଭଳି ଶୁଭେଚ୍ଛା କାମନା କରୁ ସେ ଦିନକ ପାଇଁ ଜାଣିପାରିବ ନାହିଁ ।

ଭଞ୍ଜ ଚିଠି ଲେଖିଛି । ସଂକ୍ଷିପ୍ତ ଚିଠିଟିଏ । କେଉଁ course ନେଇଛି । ତା' ବିଷୟରେ ସାମାନ୍ୟ ପରିଚୟ । Dr Aswini Kumarଙ୍କର lectures ବିଷୟରେ ଲେଖିଛି:

"In his class everybody is spell-bound and you came out of the class having a feeling that for a shortwhile you had been on a visit to a remote land." "Mathematical assertions are absilute certainties and absolute certainty lies in the human intellect."

ବେଳେବେଳେ ମନେହୁଏ, ଭଞ୍ଜ ଜୀବନର କିଛି positive definition ଜାଣିଯାଇଛି । ଆମକୁ ନିଜର ଲୋକ ହିସାବରେ ମନେକରି ସେ କହେ ଯେ ଗଣିତ ବ୍ୟତୀତ ଅନ୍ୟ କିଛି ତାକୁ ଏ ଜୀବନରେ ବଞ୍ଚିବାର ଆଶା ଓ ପ୍ରେରଣା ଦେବନାହିଁ । ନିରାଟ ସତକଥା ତା'ପାଇଁ!

ଘରକୁ ଯାଇଥିଲି । ଯାହା ହେଲା, ଯାହା ଦେଖିଲି, ତମର ଏଭଳି ମାନସିକ ଅବସ୍ଥାରେ ଲେଖିବା ଠିକ୍ ହେବନି । ଏହା ମଧ୍ୟ ଅନ୍ୟ ଏକ ପୃଥିବୀର କଥା । ତମେ ମୁଁ ଯିବା କଥା ନାନୀ କହୁଥିଲା । ଆମର forms ଏ ଭିତରେ fill-up ହୋଇଯିବ । ଗୁଡ଼ାଏ ଟଙ୍କା ପଡୁଛି । ବହୁତ କଷ୍ଟରେ ଟଙ୍କା ଯୋଗାଡ଼ ହୋଇଛି । ତେଣୁ forms fill-up ହୋଇସାରିବା ପରେ ମୁଁ ସୁବିଧା ଦେଖି ଯିବି । ଯିବା ଆଗରୁ ଲେଖିବି ।

ତମେ ଶୀଘ୍ର ଉତ୍ତର ଦେବ ଏ ଚିଠିର । ଶୁଣୁଛି ତମର adhoc Balasore Collegeରେ ହୋଇଛି । ପରେ ଲେଖିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଲି । ଅମ୍ଳାନ ଓ ପ୍ରଦୀପ ମଧ୍ୟ ଲେଖିଛନ୍ତି । ମୋର War and Peace ସରିଯାଇଛି । ଏହି ସପ୍ତାହରେ ସବୁ ଚିଠି ତା'ରି ଉପରେ ଲେଖିବାର ଯୋଜନା ମୁଁ କରିଥିଲି । କିନ୍ତୁ ଲେଖିବାକୁ ଆଦୌ ଇଚ୍ଛା ହେଉନାହିଁ । ଚେଷ୍ଟା କରୁଛି ତମ ପାଖକୁ କିଛିହେଲେ ଲେଖିବାକୁ ।

ଏବେ ହଠାତ୍ Erich Fromm ଙ୍କ 'The Art of Loving' ପାଇଥିବାରୁ ତା'କୁ ପଢୁଛି । ଆଉ ଅଳ୍ପ କିଛି ବାକି ଅଛି । ଏଇମିତି କିଛି ନୂଆ ବହି ପାଇଗଲେ ଲୋଭ ସମ୍ବରଣ କରିପାରୁନି । ଭାଗ୍ୟର ବିଡ଼ମ୍ବନା ଘଟିଲେ War and Peace ସାଙ୍ଗରେ Khanna G.K. ବହି ପଢ଼ିବାକୁ ପଡ଼େ । ଗୋଟାଏ ପାଖରେ ମୋର ନିଜସ୍ୱ ଚିନ୍ତା ଏବଂ ଅନ୍ୟପକ୍ଷରେ ମୋର କର୍ତ୍ତବ୍ୟବୋଧ ମୋତେ ଭିଡ଼ାଓଟରା କରୁଛନ୍ତି । ଏହାକୁ ବଳି ଯନ୍ତ୍ରଣାମୟ କଥା କ'ଣ ଅଛି!

ପ୍ରଦୀପ ଆପଣାର ମାନସିକ ଅସ୍ଥିରତାକୁ ପର୍ଯ୍ୟବେଶିତ କରି ଚିଠି ଲେଖିଛି । ସେ ମଧ ଯଥେଷ୍ଟ ସ୍ୱପ୍ନବାଦୀ, ଏକଥା ତମେ ଆଗରୁ ଜାଣିଛ । ତା'ର ଚିଠି ମଧ ଏ ପ୍ରାଣକୁ ଚହଲାଇ ଦେଉଛି । ତା' ପାଖକୁ ଲେଖୁଛି ।

କିଧୁ, ଅରୁଣ ବାବୁ, ଫନି ବାବୁ କେମତି ଅଛନ୍ତି ? ରାଜେଶ ପରୀକ୍ଷାରେ କ'ଣ କରିଛି ?

ଚିଠି ଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମ ଚିଠିରୁ ତମେ ଆସ୍ତେ ଆସ୍ତେ କେମିତି ନିଜ ଉପରୁ ଆସ୍ଥା ହରାଇ ବସୁଛ ଲକ୍ଷ୍ୟ କରୁଥିଲି । ନାନୀଠାରୁ ଶୁଣିଲି ଯେ ବାପାଙ୍କ ସଙ୍ଗେ କଳି ଲଗାଉଥିଲ ସାମାନ୍ୟ କଥାକୁ ନେଇ । ପୁଣି ଫୋନ୍‌ରେ କହୁଥିଲ ଯେ Syndicate Bank ପାଇଁ ତମର କିପରି ଆଗ୍ରହ ଅଛି । ବୁଝିହୁଏନି ତମର ଏପ୍ରକାର attitudeକୁ । ସହଜ ମଣିଷଟିଏ ହେବା କଥା ତମେ ଲେଖିଛ । କିନ୍ତୁ କେଉଁଠି ? ଆମେ ସବୁ ଯେଉଁଭଳି ଭାବେ 'outsider' (ତମେ ଅନେକଥର ଏହି ଶବ୍ଦଟି ବ୍ୟବହାର କରିଥାଅ), ସେଥିରେ ପୃଥିବୀ ସହ ତାଳ ଦେଇ ନପାରିବାଟା ଏକାବେଳକେ ନିଶ୍ଚିତ । ଏହା ଜାଣିସୁଦ୍ଧା ତମେ (ମୁଁ ବି) ଅବସ୍ଥା ସହ ସନ୍ଧି ନ କରିପାରିବାଟା ଦୁର୍ବଳତା ଛଡ଼ା ଆଉ କ'ଣ ବା ହୋଇପାରେ । ଏହି ଦୁର୍ବଳତା କଥା ଏ ପୃଥିବୀରେ ନୂଆ ନୁହେଁ । ହେରୋଡଟସ୍ ତ କହନ୍ତି, "We are as free as we think, but powerless" ହୋଇପାରେ ଆମର freedom ଅଛି; quest ମଧ । କିନ୍ତୁ ଏହାର ଶେଷ ପରିଣତି ଯେ frustration ଏକଥା ଅନେକବାର ପରୀକ୍ଷା କରାଯାଇଛି । ସବୁବେଳେ ହାରିଯିବାକୁ ବାଧ ହୋଇଛେ ଆମେ । ଆମପାଇଁ ଯେଉଁ ideal conditionsର ଆବଶ୍ୟକତା ରହିଛି, ଆମେ ତାହା କେବେହେଲେ ପାଇପାରିନାହେଁ । ସେଇଥିପାଇଁ ତ ଏତେ ଯନ୍ତ୍ରଣା, ଏତେ nightmare ଏ ସୃଷ୍ଟି; ଏ ଯୁଗ ଆମ ପାଇଁ କିମ୍ଭୂତକିମାକାର, full of absurdity । ଆମରି କଥା Karl Jaspers ଠିକ୍ ଭାବେ ଲେଖିପାରିଛନ୍ତି,

*"What is new about this age.......... is that man becomes conscious of being as a whole, of himself had his limitations. He experiences the terror of the world, and his own powerlessness. He asks radical question. Face to face with the void, he strives*

*for liberation and redemption. By consciously recognizing his limits, he sets himself the highest goals. he experiences absoluteness in the depth of selfhood and in the lucidity of transcendence."*

ମୁଁ ତମକୁ ଠିକ୍‌ଭାବେ ବୁଝିବାକୁ ଚେଷ୍ଟା କରୁଛି । ମୋର ଅନୁଭୂତିକୁ ପାଥେୟ କରି ତମର ମତିଗତିକୁ ଲକ୍ଷ୍ୟ କରୁଛି । ଦେଖୁଛି କେଉଁଠି ତମେ ନିଜକୁ ଚିହ୍ନିପାରୁନାହଁ, ନିଜର will powerକୁ । ଆମ ପାଇଁ ସଂସାର କୁହେଳିକାମୟ । ସମ୍ପୂର୍ଣ୍ଣଭାବେ ଅନ୍ଧକାରଛନ୍ନ । କେତେବାର ଆମେ ଆଲୋକ ଚାହିଁଛେ । ଆମେ ପାଇଛେ କ'ଣ ? ସବୁ ଯେମିତି ପ୍ରହସନ ଭଳି ମନେହୁଏ । ସବୁ ନାଟକର ଅଭିନୟ ଭଳି ମନେହୁଏ । ମଣିଷର ଅସହାୟତା କଥା ଅନୁଭବ କରିପାରିଲେ ବଞ୍ଚିବାକୁ ସ୍ପୃହା ଆସେନି । "with full stream ahead" କଥା ମନ ଭିତରେ କିଛିହେଲେ ପ୍ରଭାବ ପକାଏ ନାହିଁ । ଜଣାପଡ଼େ ସତରେ 'man is made for defeat' । ଅମ୍ଳାନର କଥା ଅନୁସାରେ "chances slip through your finger" । ସେଇ ସମୟରେ 'the power, the wonder and the peril of irrationality' ସକ୍ରିୟ ହୋଇଉଠେ । (ଅମ୍ଳାନ କ'ଣ ଏହାର ଉଦାହରଣ ?) ଆମେ ପଶୁ ହୋଇପଡୁ । ତେଣୁ ନିଜ ଭିତରର beingକୁ ଯେକୌଣସି ଉପାୟରେ ଚିହ୍ନିପାରିବାଟା ହିଁ ଆମ ପାଇଁ 'the highest goal' । ଏହାଛଡ଼ା ବୋଧହୁଏ ଆମ ଦେଇ କିଛି ହେବନାହିଁ । ଆମେ କେବଳ ଦେଖୁଥିବା space and timeରେ ଆମର existenceକୁ । ପ୍ରତି ମୁହୂର୍ତ୍ତରେ କିନ୍ତୁ powerlessness, importence, lack of involvement, disinterested curiosity ସବୁ ଆମକୁ ଗ୍ରାସ କରିବ । ଆମେ ସେତେବେଳେ ଭାବିବା ଯେ ଆମକୁ ଭଲ ପାଇବାର ପରିସର ସଂକୀର୍ଣ୍ଣ ଓ ଆମର ନିଜ ଉପରୁ ବିଶ୍ୱାସ ତୁଟିଯିବ ।

ବନ୍ଧୁ ! ଆଜି କାହିଁକି ଖୁବ୍ ଅସହାୟ ମନେହେଉଛି । ବାହାରେ ବର୍ଷା । ପଢ଼ିବାକୁ ଆଦୌ ଇଚ୍ଛା ନାହିଁ । କିଛିହେଲେ କରିବାକୁ ଆଗ୍ରହ ନାହିଁ । ଭିତରର ସମସ୍ତ ଶକ୍ତି ଯେମିତି ଅନ୍ତର୍ହିତ ହୋଇଯାଇଛି । ତମେମାନେ ଏଇଠି ଥିଲେ obsession ରହନ୍ତା ନାହିଁ । ଅନେକ ଯନ୍ତ୍ରଣା କମିଯାଆନ୍ତା । ଆଜି ଦିନସାରା ଶୋଇ ଶୋଇ ବିଭତ୍ସ ସ୍ୱପ୍ନସବୁ ଦେଖୁଥିଲି । ପ୍ରତି ମୁହୂର୍ତ୍ତରେ ମୋର ମନେହେଉଥିଲା ଯେ ମୁଁ ଅନ୍ଧକାରର ଗହ୍ୱର ଭିତରକୁ ଠେଲି ହୋଇଯାଉଛି । ତମେମାନେ ସବୁ ଯେମିତି ମୋଠାରୁ ଦୂରକୁ ଚାଲିଯାଉଛ । ଆଉ ମୁଁ ଅତି କରୁଣ ଭାବେ ପଡ଼ିରହିଛି । ଏଇମିତି ବେଳେବେଳେ (ନା ଅନେକ ସମୟରେ) ମୋତେ ଭୟ ଲାଗିଥାଏ । ସତରେ କ'ଣ ମୁଁ ଭଲ ମଣିଷଟିଏ ହେବାର ଆଶା ହରାଇବସିବି । କିଏ ଜାଣେ ଏକଥା ?

ଭଞ୍ଜ ପାଖରୁ ଚିଠିନାହିଁ । ଅମ୍ଳାନ ମଧ୍ୟ ଲେଖିନାହିଁ । ପ୍ରଫୁଲ୍ଲ ଆଉ ମୋ ପାଖକୁ ଚିଠି ଲେଖୁନି । ମୁଁ ମଧ୍ୟ ତା'ପାଖକୁ ଚିଠି ଲେଖିବାର ଆଗ୍ରହ ହରାଇବସିଛି । ବାବାଙ୍କ ଠାରୁ ବହୁତ ଦିନ ପରେ ଚିଠି ପାଇଛି । ଲେଖିଛନ୍ତି ଯେ ତାଙ୍କର ଶେଷ କାଳ ଚାଲିଆସିଲାଣି । କିନ୍ତୁ ସେ କ'ଣ ଦେଖିବେ ନାହିଁ ଯେ ମୁଁ ମୋ ଗୋଡ଼ରେ ଛିଡ଼ା ହୋଇପାରିଛି ବୋଲି ? । ସେଇଥିପାଇଁ ତ ଏ ବୁଢ଼ାବୟସରେ ଏତେ ଦୁଃଖ ସତ୍ତ୍ୱେ ବଞ୍ଚିରହିଛନ୍ତି । ମୋତେ ସେଇଥିପାଇଁ ଦୁଃଖ ଲାଗୁଛି । ମୁଁ ଅନେକ ସମୟରେ ମୋତେ ପଚାରୁଛି ଯେ ମୁଁ ନିଜକୁ ମାରିଦେଉନି ତ ! ମୋ ବାପା ଦସ୍ତୋଭସ୍କି, କାମ୍ୟୁ ପଢ଼ିନାହାନ୍ତି । Alienation, nausea, helplessness କଥା ଜାଣିନଥିଲେ ମଧ୍ୟ ଅନୁଭବ କରିଛନ୍ତି ନିଶ୍ଚୟ । ଜୀବନର ଅନେକ ମୁହୂର୍ତ୍ତରେ ହାରିଯାଉଥିଲେ ମଧ୍ୟ ବଞ୍ଚିବାର ପ୍ରେରଣା ଅନେକଙ୍କୁ ଦେଇଛନ୍ତି । (ଅନ୍ତତଃ ମୋତେଦେଇଛନ୍ତି) ସେ ଲେଖିଛନ୍ତି ଯେ ମୁଁ distance maintain କରୁଛି, aloof ରହୁଛି । ମୋର guilty conscience ଯେ ଏଥିପାଇଁ ଏକାନ୍ତଭାବେ ଦାୟୀ, ସେ ଜାଣିନାହାନ୍ତି । କାରଣ ମୁଁ ଜଣାଇନାହିଁ । ଏ ଏକ ଦ୍ୱନ୍ଦ । ଅନେକ ସମୟରେ ଇଚ୍ଛା ହୁଏ ନିଜ ସହ ଯୁଦ୍ଧଘୋଷଣା କରିବାକୁ । ବର୍ତ୍ତମାନ ମୋର ନିଜ ଉପରେ ସନ୍ଦେହ ଆସୁଛି । (ହୋଇପାରେ, ତମ ଭଳି ନୁହଁ) ମୁଁ ଅସହାୟ ଭାବେ ସ୍ୱପ୍ନରେ ଦେଖିଥିବା ଅନ୍ଧକାର ଆଡ଼କୁ ସତରେ ଠେଲି ହୋଇଯାଉଛି ।

ସିନେମା କଥା ଲେଖିବା ପାଇଁ କହିଛ । Wazda ଙ୍କ 'Ashes and Diamonds' ଭିତରେ ଦେଖାଯାଇଛି ଯେ ପାଉଁଶ ଗଦାରେ diamondsର ସ୍ଥାନ ନାହିଁ । 'Can Cinder contains diamonds?' ଜୀବନ ଏକାନ୍ତ ଭାବେ ନିର୍ମମ, ନିଷ୍ଠୁର । ସବୁବେଳେ dreams, fragrant memories, love and friendship ମଣିଷକୁ ବଞ୍ଚିବାର ପ୍ରେରଣା ଦିଅନ୍ତି, ଉତ୍ପ୍ରେରକ ହିସାବରେ କମା କରନ୍ତି । କିନ୍ତୁ ସମସ୍ତେ ପରିସ୍ଥିତିର ଦାସ । ଦେଖାହେଲେ ପୁଣି ମୁଁ ତମକୁ ସବୁକଥା କହିବି । 'Battleship Potemkin' silent movies ମାନଙ୍କ ଭିତରେ ସର୍ବଶ୍ରେଷ୍ଠ । Russian revolution ର horror ଏବଂ victory of the proletariat revolution କଥା ଚମତ୍କାର ଭାବେ ରୂପାୟିତ ହୋଇଛି । ୧୯୨୫ ମସିହାରେ ନିର୍ମିତ ଏ ଛବି ଦେଖି ମୋର ମନେହେଲା ଆମ ଦେଶର ଛବି ସେ ସମୟ ପର୍ଯ୍ୟନ୍ତ ଆସିନାହିଁ । 'Unchair Andaly' Salvador Dali ଙ୍କ surrealism ଏକ ନମୁନା । ଏଇଠି ମଣିଷ realityର ଖୋଳ ଭିତରୁ ଖସିଯାଏ । ସାମାନ୍ୟ romance, ସାମାନ୍ୟ excitement, କିଛି nostalgia ଖୋଜେ । କିନ୍ତୁ reality ମାନେ ହିଁ ମଣିଷ ଭିତର evil, ମଣିଷ ଭିତରେ masochism ଏବଂ sadism । ସମ୍ଭବତଃ ମଣିଷ ଏସବୁକୁ ସହିପାରେନି । ତେଣୁ ଅବେଚତନ ମନରେ

(ସଚେତନତା ସହ !) sneak କରି ଖସିଯାଏ । ଏହା ମଧ୍ୟ silent movie । ସହଜରେ ବୁଝି ହେଲାନି । ବହୁତ abruptly ଶେଷ ହୋଇଗଲା ।

କେବେ ଆସୁଛ ? ଚିଠି ଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇ ଲେଖୁଛି ।

ଏ ଶୁଷ୍କ ବାତାବରଣ ଭିତରୁ କିଛି ଲେଖିବା ଯେତିକି କଷ୍ଟକର, ସେତିକି ସମୟସାପେକ୍ଷ ମଧ୍ୟ । ଏତେ ଦିନ ପରେ ତମ ପାଖରୁ ଗତ ଅନୁଭୂତିର reality ଓ sensation ସମ୍ପର୍କରେ ପ୍ରଶ୍ନ ଓ ସନ୍ଦେହ ଜାଣିବା ମୋତେ କିଛି ଆଶ୍ଚର୍ଯ୍ୟ ଲାଗୁନି । ମୁଁ ତ ଅନେକ ବାର କହିଛି ଯେ ଆମେ ତଥାପି ଅପରିପକ୍ୱ ଚିନ୍ତାଧାରାକୁ ନେଇ ବଞ୍ଚିଛେ । ଏଣୁ ଗତ କଥାସବୁ ନିରର୍ଥକ ନିଶ୍ଚୟ ଜଣାପଡ଼ିବ, ତାହା ମଧ୍ୟ ଏକାବେଳକେ ସତ୍ୟ । କିଏ ଛାତିରେ ହାତ ଦେଇ କହିପାରିବ ଯେ ମୁଁ ସବୁବେଳେ perfect? (!)

ଲଳିତ କଥା ଜାଣି ମୋତେ ଦୁଃଖ ଲାଗୁଛି । ଏ ସପ୍ତାହ ଭିତରେ ତିନିଟା ସିରିୟସ୍ ବହି ଆରମ୍ଭ କରିଛି । 'ଚିତ୍ରଲେଖା' (ଇଂରାଜୀ), 'ଦେବଦାସ' (ଓଡ଼ିଆ) ଓ 'Lust for Life' ପ୍ରତିଟି ପୃଷ୍ଠା ପଢ଼ିଲା ପରେ ମୁଁ ଅସମ୍ଭବ ଭାବେ ଅଥୟ ଓ କ୍ଳାନ୍ତ ହୋଇପଡୁଛି । ତମେ ପଢ଼ିଥିବ ସବୁ । ଲଳିତର ବର୍ତ୍ତମାନ ଅବସ୍ଥା ଯେପରି ସେହିସବୁ ବହିର ନାୟକ ଭଳି ମନେହେଉଛି । 2nd yearର ଆରମ୍ଭରେ ଲଳିତ ଏହିଭଳି ଅଥୟ ହୋଇପଡ଼ିଥିଲା । ମୁଁ ବହୁବାର ଜାଣିବାର ପ୍ରୟାସୀ ହୋଇଥିବାରୁ ସେ ତାହାର ଆତ୍ମଲିପି ପଢ଼ିବାକୁ ମୋତେ ଦେଇଥିଲା । ସେତେବେଳେ ମୁଁ ଜୀବନରେ ପ୍ରଥମଥର ପାଇଁ ଲଳିତର ଭିତର ରୂପକୁ ଜାଣିବାକୁ ସୁଯୋଗ ପାଇଥିଲି । ତମକୁ କହିଥିବି ବୋଧେ ଯେ ସେ ନିବେଦିତା ନାମରେ କେହି ଏକ ଝିଅକୁ passionately ଭଲ ପାଏ ବୋଲି । ବୋଧେହୁଏ ସେଇଥିପାଇଁ ସେ ସିଗାରେଟ୍‌ପିଆ ଆରମ୍ଭ କରିଥିଲା । ଏବେ ଆଉ ପାଦେ ଆଗେଇ ଯାଇ ଯେ ସେ drink କରୁଛି, ଏଥିରେ ମୁଁ ଆଶ୍ଚର୍ଯ୍ୟ ହେଉନି । ଜୀବନରେ ଯଦି ସେ କିଛି ସତ୍ୟ କିଛି ଅନୁଭବ ନଖୋଜୁଥାଏ, ତେବେ ଏହା ଏକ passing phase । ଯଦି ତାକୁ ନୈରାଶ୍ୟ ବିହ୍ୱଳିତ କରିଥାଏ, ତେବେ ସେ ଗୋଟାଏ weakling coward । ମୁଁ ଅନେକ ସମୟରେ କିଛି କିଛି ନୈତିକ ପ୍ରଭାବ ( ? ?) ପକାଇବାକୁ ଚେଷ୍ଟା କରିଥାଏ । ସେ ହୁଏତ କିଛି କିଛି ମଧ୍ୟ ପ୍ରଭାବିତ ହୋଇଥାଏ । କିନ୍ତୁ ସେ କିଛି ନୁହେଁ । ମୋର ସମସ୍ତ hypocrisy,

splitpersonality ସତ୍ତ୍ୱେ ଏ ଚିଠି ସହ ତା'ପାଖକୁ କିଛି ଲେଖିବି । ସାମାଜିକ ମୂଲ୍ୟବୋଧ ନେଇ ଯଦି ମୁଁ ତା'କୁ ଏଥିରେ ନିବୃତ୍ତ କରାଇପାରେ, ତେବେ ମୁଁ ବରଂ ନିଜକୁ ନେଇ ଗର୍ବ କରିବି । ତା' ଭଳି genius ନଷ୍ଟ ହେବା ଏକ ଦୁର୍ଭାଗ୍ୟ ।

ଗୋପବନ୍ଧୁ ସହ ସମ୍ପର୍କ ନାହିଁ । ସେ ଚିଠି ଦେଇନି । ପ୍ରତ୍ୟେକଙ୍କର ବ୍ୟକ୍ତିତ୍ୱକୁ ସମ୍ମାନ କରିବାର କଥା । ପ୍ରତ୍ୟେକଙ୍କର ଜୀବନଦର୍ଶନକୁ ମଧ୍ୟ ଗ୍ରହଣ କରିବା ଉଚିତ । ମୁଁ ଦୁଃଖ କରୁନି । Result ବାହାରିବା ପରେ ମୋର ଉତ୍‌କଣ୍ଠାର ସମାପ୍ତି ହେବ; ଏକଥା ବୋଧେ ହୁଏ ଠିକ୍ । ମୁଁ ସତରେ କ'ଣ ଏ ପରୀକ୍ଷାରୁ ଖସିଯିବି ? ଛାଡ଼ ତମେ ଆଉ ଅଧିକ କ'ଣ କହିବ ଯେତେବେଳେ God Almighty ନିଜେ ମୋର ଶତ୍ରୁ । ମୋର ନିଜର ସ୍ଥିତି ସମ୍ପର୍କରେ ମୁଁ ସଚେତନ ନୁହେଁ । Vincent Van Gogh ଭଳି ମୁଁ ଯେମିତି ପ୍ରତି ମୁହୂର୍ତ୍ତରେ ଏ ସମାଜଠୁ ଦୂରକୁ ଠେଲି ହୋଇଯାଇଛି । ଯେମିତି ଏ ଯନ୍ତ୍ରଣାମୟ ଜୀବନ ଭିତରୁ ମୁଁ କିଛି ହେଲେ ପାଇପାରୁନାହିଁ । ତେଣୁ success ଏବଂ failure ଏହାର ଅର୍ଥ ମୋ ପାଖରେ କିଛି ନାହିଁ । 'ଦେବଦାସ' ଭଳି ଅଜଣା ହୋଇ ମରିଯିବାରେ ବରଂ ଆନନ୍ଦ ଅଛି । Van Gogh ଭଳି ସମାଜ ଆଖିରେ ପାଗଳ, ଉନ୍ମାଦଗ୍ରସ୍ତ ହୋଇ ଯିବାରେ ଗର୍ବ କରିବାର ଯଥେଷ୍ଟ ସାମଗ୍ରୀ ଅଛି । 'ମୁଁ' ଯେତେବେଳେ tragically 'ମୁଁ ନିଜେ', ଏଥିରେ ଆଉ କ'ଣ ଅଧିକ କହିବାର ଅଛି । ଅନୁଭବ କରିପାରିଲେ ସବୁ ସତ୍ୟ ଏତେ କରୁଣ ଭାବରେ ସତ୍ୟ ଯେ ଆଖିକୁ ଲୁହ ଆସିଯାଏ । ମୁଁ ହୁଏତ ରାତିର ନିସ୍ତବ୍ଧ ପ୍ରହରରେ ଏକ ଭୀରୁ କାପୁରୁଷ ଭଳି କାନ୍ଦି ନିଜକୁ ଶାନ୍ତ କରିଦେଉଛି ।

ତମେ International Trade Paper ନେଇ ଭୁଲ୍ କରିନ ବୋଧେ । ମୋର ଯେତେବେଳେ ଏ ବିଷୟରେ କିଛି ଧାରଣା ନାହିଁ ମୋର ମତାମତର କିଛି ମୂଲ୍ୟ ବୋଧହୁଏ ନାହିଁ । ଦେଖ, competitive ପାଇଁ satisfactory labour ନକଲେ ଦେବା ଏକ ପ୍ରହସନ ବୋଲି ମନେକରିବ । ତମେ ବର୍ତ୍ତମାନ ସେ ବିଷୟରେ ସଚେତନ ହେବାଟା ଏକାନ୍ତ କାମ୍ୟ । ମୋର ଆଶଙ୍କା ହେଉଛି ତମେ ଅତିମାତ୍ରାରେ ଅତିଷ୍ଠ ହୋଇପଡ଼ିଛ ବୋଧହୁଏ । ତମେ ନିଜର ସୂକ୍ଷ୍ମ ଚିନ୍ତାଧାରାକୁ ପାଥେୟ କରି ଆଗେଇଚାଲ । ଜୀବନରେ ମାତ୍ର ଏକୋଇଶ ବର୍ଷର ପଥ ଅତିକ୍ରମ ପରେ ଯିଏ କ୍ଳାନ୍ତ ହୋଇପଡ଼େ, ନିରାଶ ହୋଇପଡ଼େ, ସେ ନିଃସନ୍ଦେହରେ coward । Van Gogh ଭଳି ଆଗକୁ ଆଗେଇବାକୁ ପଡ଼ିବ ଏବଂ ଦୁନିଆ ଦିନେ ଆମର ଅସାଧାରଣତ୍ୱକୁ ସ୍ୱୀକାର କରିବ ।

ମୁଁ ଭଲ ଅଛି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଜି ରାତିରେ ମୁଁ ସ୍ୱପ୍ନବିହ୍ୱଳ ହୋଇଯାଇଛି । ନା, ସ୍ୱପ୍ନବିହ୍ୱଳ ହୋଇଯାଇଥିବା କଥା ଠିକ୍ ନୁହେଁ; ମୁଁ ଯଥେଷ୍ଟ ସଚେତନ ଅଛି । ଏଇ ମୁହୂର୍ତ୍ତରେ ଏକ ଅଜଣା ସ୍ୱର ମୋର କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଛି । କିଏ ବୋଧେ କାନ୍ଦୁଛି, କିଏ ବୋଧେ ହସୁଛି । କେଉଁଠି ଘଟୁଛି ଏକଥା ? ସମ୍ଭବତଃ ଅନେକ ଦୂରରେ, ପୁଣି ଅନେକ ପାଖରେ । ଏ ସ୍ୱର ମୋତେ ହାତଠାରି ଡାକୁଛି, ମୋତେ ହଜିଯିବାକୁ ଆମନ୍ତ୍ରଣ କରୁଛି ।

ଏଇଠି ସ୍ତରୀଭୂତ ଅନ୍ଧକାର, ମହାନ୍ ଆଲୋକ, ସବୁ ଅଛି; ମୁଁ ନାହିଁ । ମୁଁ ଅଛି, ସମସ୍ତେ ନାହାନ୍ତି । ମୁଁ ବିଲୀନ ହୋଇଯାଉଛି, ପୁଣି ଜନ୍ମ ନେଉଛି । ଏଇଠି ଜହ୍ନ ହସୁଛି, ଥଟ୍ଟା କରୁଛି, କାନ୍ଦୁଛି, ଲୁଚିଯାଉଛି । ମୁଁ ଏ ମୁହୂର୍ତ୍ତରେ ଆଲୋକାଭିମୁଖୀ ନା ଅନ୍ଧକାରାଚ୍ଛନ୍ନ ଜାଣିପାରୁନାହିଁ । କେବଳ ପ୍ରତିଫଳନ ଅଛି, ପ୍ରବୃତ୍ତି ଅଛି ।

ସେ କଡ଼େ ସବୁ ଧୂସର, ଭୀଷଣ ଯନ୍ତ୍ରଣାମୟ । ଏ କଡ଼େ ସବୁଜିମାର ଅରଣ୍ୟ, ଆଶାର ଫସଲ । ମୁଁ ଉଠୁଛି, ଉଠିପାରୁନାହିଁ । କିଛି ବାଟ ଆଗେଇଯାଉଛି; ପୁଣି ଥକି ଯାଉଛି । ଏହା ଯାତ୍ରାର ଆରମ୍ଭ, ଆଉ ଏକ ଯାତ୍ରାର ଶେଷ । ମୁଁ ଯେମିତି ଆପଣାର ଚାରିପାଖେ ଚକାଭଉଁରୀ ଖେଳୁଛି ।

ମୋର ବ୍ୟାପ୍ତି ଅଛି, ସଂକୋଚନ ମଧ୍ୟ । ସମୟ ମୋତେ ଝାବୁଡ଼ି ଧରୁଛି । ମୁଁ ମଧ୍ୟ ତା'କୁ ଗୋଡ଼ତଳେ ଚାପି ରଖିଛି । ମୁଁ ତୈଳାକ୍ତ ଖୁଣ୍ଟରେ ମାଙ୍କଡ଼ ପାଲଟି ଯାଇଛି; ନଚେତ କଇଁଛ ଓ ଘୋଡ଼ାର paradoxical race ର ମୁଁ ଶିକାର ହୋଇଯାଇଛି । ମୁଁ କାହାକୁ ଛୁଇଁ ପାରୁନି; ତଥାପି ସ୍ପର୍ଶକାତର ହୋଇଯାଇଛି ।

କେତେ ଶୀଘ୍ର କ'ଣ ସବୁ ଘଟିଯାଉଛି । ଇଞ୍ଚଇଞ୍ଚ କରି ମେଘନାଦ ପାଚେରୀରେ ମୁଁ ଚଢୁଛି ଉଠୁଛି କେବଳ । କିଏ ମୋତେ ବାଧ୍ୟ କରୁଛି । ଗୋଟାଏ remote controlରୁ କିଏ ମୋତେ ଆଦେଶ ଦେଉଛି । ଡ୍ରୟାର୍ ଭିତରକୁ ଅବିକଳ ପ୍ରତିଛବିଟିଏ (photograph ହୋଇପାରେ ।) ବାହାର କରି ଦଳିଦେଉଛି, ଟିକିଟିକି କରି ଚିରି ଦେଉଛି । ଦର୍ପଣରେ ନିଜକୁ ଦେଖୁଛି । ଆଖି ଖାଲି ଜଳୁଛି, ମୁହଁ ବିକୃତ ହୋଇଯାଉଛି । ମୁଁ ଖୋଜୁନାହିଁ ଆପଣାକୁ । ଦର୍ପଣ ଭିତରେ ପଶୁଟିଏ ଆହ୍ୱାନ ଜଣାଇବସିଛି । ମୁଁ ତା'କୁ ପୋଷିବାକୁ ଚାହିଁଛି; କିନ୍ତୁ ସେ ମୋତେ ତା'ର ନଖଦନ୍ତ ଦେଖାଉଛି; ମୁଁ ସଂବିତ୍ ହରାଉଛି । (ତମେମାନେ ପାଖରେ ଥାଆନ୍ତ କି ? ମୋର ଭଲ ପାଇବାକୁ ଆହୁରି ସାର୍ଥକ କରାନ୍ତ ।)

କିନ୍ତୁ ସୋନ୍ୟାକୁ ମୁଁ ଦେଖୁଛି ଖାଲି । 'Crime and Punishment'ର ସୋନ୍ୟା । ସମ୍ଭବତଃ ସେ କାନ୍ଦୁଛି, ସମ୍ଭବତଃ ସେ ଉନ୍ମାଦ ହୋଇଯାଇଛି । ତା'କୁ ଦେଖିଲେ ମୁଁ

ନିଜକୁ ଦୋଷୀ ମଣୁଛି । କହିଦେବାକୁ ଇଚ୍ଛା ହେଉଛି ଯେ ତା'ଠି ମୁଁ ଆଶ୍ରା ଲୋଡୁଛି । ତା'ର ସ୍ନେହଟିକକ ପାଇଲେ ମୁଁ ଯେମିତି ଉଦ୍ଧାର ପାଇଯାଉଛି ।

ସେ ଆସୁଛି । ସେହିଠାକୁ ଯେଉଁଠି ଧୂସର ଓ ସବୁଜ ଏକାକାର ହୋଇଯାଇଛନ୍ତି । ସିଏ କାନ୍ଦୁଛି । ମୁଁ ବି କାନ୍ଦୁଛି । ସିଏ ମୋ ପାଇଁ ଭଲମଣିଷ ହୋଇଯାଉଛି; ମୁଁ ତା'ପାଇଁ ହତଭାଗ୍ୟ ପାଲଟିଯାଉଛି । ସିଏ ମୋତେ କୋଳାଗ୍ରତ କରୁଛି; ମୁଁ ମୋ ଜୀବନର ପ୍ରଥମ ଚୁମ୍ବନ ଦେଉଛି । ସିଏ ମୋତେ ଭରସା ଦେଉଛି, ଠିକ୍ ତମମାନଙ୍କ ଭଳି । ମୁଁ ତା'ରି ଛାତିରେ ମୁଣ୍ଡ ଗୁଞ୍ଜୁଛି ।

ହଁ, ଏହା ସ୍ୱପ୍ନର କଥା । ସ୍ୱପ୍ନାବିଷ୍ଟ ହେଲେ ସଚେତନତା ନଥାଏ । ମୁଁ ବୋଧେ ସ୍ୱପ୍ନଚାରଣ (sleep-walking) କରୁଛି ।

ଅଚ୍ୟୁତ

***ବି.ଦ୍ର. :*** ଚିଠି ପାଇଛି । ପୁଣି ଲେଖିବି ।

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ଆଉ ମୋର ଆବେଗ ଓ ଭାବପ୍ରବଣତାପୂର୍ଣ୍ଣ ଚିଠି ଲେଖିବାର ସାହସ ରହୁନାହିଁ । ତମେ ଠିକ୍ ମୋ ଭଳି ଅଭିଶପ୍ତ । ତେଣୁ ମୋର ଯାହାକିଛି ନୈରାଶ୍ୟ ଓ ଯନ୍ତ୍ରଣା ଏବେ ମଧ୍ୟ ରହିଛି । ତାହା ତମ ପାଖରେ ବହୁଦିନରୁ ପୁରୁଣା । ତମକୁ ଅନୁଭବ କରିବାକୁ ଯାଇ ଏଇ ସିଦ୍ଧାନ୍ତରେ ଉପନୀତ ହେଲି ଯେ ତମେ ମୋର ଅତି ନିକଟରେ ଥାଇ ମଧ୍ୟ ଦୂରରେ ଓ vice versa । କାଲି ଯେ ଆମେ ହଜି ଯାଇ ନଥିବା ଏକଥା ଏବେ ମୁଁ ଆଉ confidence ସହ କହିପାରିବି ନାହିଁ । ମୁଁ ମୋର ଦୁନିଆରେ ସିଦ୍ଧାର୍ଥ ଭଳି ଏକାକୀ ଓ ତମେ ତମ ରାଜ୍ୟରେ ମଧ୍ୟ ସେଇଆ । ଆମେ ଏତେ କରୁଣ ଭାବରେ ଠକି ଯାଇଛେ ଯେ ବୋଧହୁଏ ଅଭିଶାପ ଭୋଗ ନକଲା ପର୍ଯ୍ୟନ୍ତ ମୁକ୍ତି ନାହିଁ । ତମକୁ ମୁଁ ମୋର Theory of Isolation impose କରୁନି । ତମେ ଯାହା କରିବ, ତାହା ମୋ ପାଖରେ ସତ୍ୟ ବୋଲି ନିଶ୍ଚୟ ମନେହେବ । ଏହା ହୋଇପାରେ ତମର ନିଜସ୍ୱ ଯନ୍ତ୍ରଣା ଓ ପରିବେଶ ସହ ଏକ ସାଲିସ୍ ।

ଅଧିକ ଲେଖୁନି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ ଏ ଭିତରେ ମୋ ଚିଠି ପାଇସାରିଥିବ । ଗତ ଚିଠିଟି ତମର ମନ ଭିତରର କଥା କେତେକାଂଶରେ ପ୍ରକାଶ କରିପାରିଛି । ତମ ଭିତରର ଦ୍ୱନ୍ଦ୍ୱ ଏବଂ ଗଢ଼ା ହେଉଥିବା ପାଚେରୀକୁ ମୁଁ କମ୍‌ବେଶୀ ଜାଣେ । 'The Outsider' by Colin Wilson ପଢ଼ିବା ପରେ ଏ ସଂସାରର ନିତିଦିନିଆ ଏବଂ ପାରମ୍ପରିକ ଜୀବନ ଭିତରୁ ଆମେ କେମିତି ଛିଟିକି ପଡ଼ିଛେ, ସେକଥା ମଧ ଆମକୁ ବେଶ୍ ଜଣା । Flesh and Spirit ଭିତରେ ଥିବା ଚିରନ୍ତନ ସଂଗ୍ରାମ ଆମକୁ affect କରିଛି । ଏ ଭିତରେ ତଥାପି ଆମେ ଭଲ ମଣିଷ ହେବାକୁ ଅବିରତ ଚେଷ୍ଟା କରିବା ଏକ ଅସାଧାରଣ ପ୍ରତିଜ୍ଞା କହିଲେ ଯଥେଷ୍ଟ ହେବନାହିଁ । ଆମକୁ ଆବିଳତା ଯେ ସମ୍ପୂର୍ଣ୍ଣ ଭାବେ ଗ୍ରାସ କରିଛି, ଏକଥା ମଧ ସମର୍ଥନ କରିହେବନି । କୌଣସି ଏକ ଅପରିହାର୍ଯ୍ୟ କାରଣ ଏବଂ ଅଦ୍ୱିତୀୟ ପରିସ୍ଥିତି ଭିତରେ ପଡ଼ି ତମେ ପାଚେରୀ ଗଢୁଛ ଏବଂ ମୁଁ ସିମେଣ୍ଟ ବେଞ୍ଚରେ ଅତୀତ ଖୋଜୁଛି । ଅନେକ ବହିରେ ଏବଂ କତିପୟ ଲୋକଙ୍କର ଭିତରୁ ଆମେ acceptance କଥା ଅନୁଭବ କରିଛେ । ଏହାର ପ୍ରଭାବ ମଧ ଆମ ଉପରେ କେତେକାଂଶରେ ପଡ଼ିଛି । ତଥାପି ତମେ କି ମୁଁ ଗତାନୁଗତିକ 'ଧାଡ଼ି', 'ଦୌଡ଼' ବିପକ୍ଷରେ ଯୁଦ୍ଧ ଡାକରା ଦେବା ଆମ ଭିତର ମନର କେତେକ ପରିପ୍ରକାଶ । ମୁଁ ତ ଅନେକବାର କହିଛି ଯେ ପିମ୍ପୁଡ଼ିଗଦା ଭିତରେ ଅନେକଙ୍କ ମଧରେ ଗୋଟିଏ ପିମ୍ପୁଡ଼ି ହୋଇଯିବା ପାଇଁ ଆମେ ଜନ୍ମ ନେଇନେ । ଆମେ ସବୁ ଲୋକଙ୍କ ଭଳି ଛାଞ୍ଚରେ ପଡ଼ିଯିବା ବ୍ୟକ୍ତି ନୁହଁନ୍ତି । ଆମ ପାଇଁ ଯେଉଁ କେତୋଟି human values, social norms, freedom ଏବଂ entity ଭଳି ବସ୍ତୁ ମହାର୍ଘ ତାକୁ ଯେକୌଣସି ଅବସ୍ଥାରେ ହଜାଇବା ନାହିଁ । ଆମେ ଟଙ୍କା ବା ପ୍ରତିଷ୍ଠା ପଛରେ ଗୋଡ଼ାଇବା ନାହିଁ । ଆମେ ସହଜ ମଣିଷଟିଏ ହୋଇଯିବା । ଆମେ ମଣିଷକୁ ଭଲ ପାଇବା ।

ଆମକୁ କ'ଣ ଆଉ କରିବାକୁ ହେବ, ଭଞ୍ଜ ସେ ବିଷୟରେ କିଛି ଧାରଣା ଦେଇଛି । ଯଦିଓ ସେ କହିଥିଲା ଜୁନ୍ ୧ ତାରିଖରେ ଦେଖାକରିବ ବୋଲି, ଏ ଭିତରେ ଦି'ଥର ଆସିସାରିଲାଣି । ମୋ ପାଇଁ ସେଦିନ ସନ୍ଧ୍ୟା ଏକ ମହନୀୟ ସନ୍ଧ୍ୟା ଥିଲା, ଯେତେବେଳେ ସେ Kierkegaard ଏବଂ Wittgenstein କଥା ଦ୍ୱିତୀୟ ଥର ପାଇଁ କହୁଥିଲା ଏବଂ ମୁଁ Dostoevsky କଥା କହୁଥିଲି । ସବୁଠି ଜୀବନଯନ୍ତ୍ରଣା ଅଛି । ସବୁଠି agony and ecstasy ଅଛି । କିନ୍ତୁ ସବୁଠୁ ମହାନ୍ କଥା ସେମାନଙ୍କର involvement, ସେମାନଙ୍କର passion । Kierkegaard ସବୁ ଛାଡ଼ିଦେଉଥିଲେ । କହୁଥିଲେ 'Let the die be cast, and I will cross the Rubicon' ଉଇଟ୍‌ଜେନ୍‌ଷ୍ଟେଇନ୍ ଲକ୍ଷପତିର ପୁଅ । ହଠାତ୍ aeronautical engineering ଭିତରୁ symbolic logic କଥା ସେ

investigate କରିବାକୁ ଚାହିଁଲେ । କିନ୍ତୁ ଏଇ investigation ପାଇଁ ସେ ପୁଣି Cambridge professorship ଛାଡ଼ିଦେଇ ସମୁଦ୍ର କୂଳରେ କେଉଁ ଏକ ଛୋଟ କୁଡ଼ିଆ ଭିତରେ ନିଜକୁ ଲୁଚାଇ ରଖିଥିଲେ । ଭଞ୍ଜ ସମ୍ଭବତଃ Fermi ବା ଏମାନଙ୍କଠୁ ନିଜର ସମସ୍ତ enthusiasm ପାଉଛି । ଯଦିଓ ତା'ର ସମସ୍ତ ପ୍ରବୃତ୍ତିର ମୃତ୍ୟୁ ଘଟିନାହିଁ, ତଥାପି ସେ ଆଗେଇ ଚାଲିବାର ମୂଳମନ୍ତ୍ର ଭୁଲିନାହିଁ । ସେ ତମକୁ ଚିଠି ଲେଖିବା କଥା ।

ମୋ କଥା କିଛି ଲେଖିବାର ନାହିଁ । ବାରମ୍ୱାର ମୁଁ ସତର୍କ ମଣିଷଟିଏ ହେବାକୁ । ଚେଷ୍ଟା କରୁଛି । ଆମମାନଙ୍କର ଯେଉଁ ସ୍ୱପ୍ନ ରହିଛି, ତା'ର ସାର୍ଥକତା ପାଇଁ ଆବଶ୍ୟକୀୟ ଉଦ୍ୟମ ମୋ'ଠି ଯଥେଷ୍ଟ ଅଭାବ ରହିଛି । ମୁଁ ଦିନେ ଯେ ମୋ ଭିତରର ବିପ୍ଳବ, ଭିତରର ସମସ୍ତ ଯନ୍ତ୍ରଣାକୁ ପ୍ରକାଶ କରିବି ସେତିକି ଆଶାକୁ ନେଇ ମୁଁ ବଞ୍ଚିରହିଛି । ତମେ ପଢ଼ାପଢ଼ି କରୁଥିବ । ଅମ୍ଳାନ ଏଠିକି ସତର ତାରିଖରେ ଆସୁଥିବା କଥା ଚିଠିରେ ଲେଖିଛି । ମୁଁ ତାକୁ ଅପେକ୍ଷା କରିଛି । ଭଲରେ ଥିବ । ବାପା, ମାଆ, ବାବି ଆଦିଙ୍କୁ ମୋର ସମସ୍ତ ସମ୍ମାନ ଓ ଶ୍ରଦ୍ଧା ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ସେଦିନର ଘଟଣା କେଜାଣି କାହିଁକି ମୋତେ ଭାରି ଭଲ ଲାଗି ନଥିଲା । ସବୁହୋଇ ମଧ୍ୟ କିଛି ହୋଇନାହିଁ ବୋଲି ମନେହେଲା । କିନ୍ତୁ କାଲି ଡଃ ପଟ୍ଟନାୟକ ଆମକୁ ବିବାହର recent development କଥା କହୁଥିଲେ । ସେମାନେ ତାଙ୍କର କଥା ଫେରାଇ ନେଇଥିବା କଥା ଶୁଣି ଆମେ ଖୁସି ହେଲୁ । ଏବେ ଆଉ ବିଶେଷ କିଛି ପ୍ରତିବନ୍ଧକ ଥିବା କଥା ବୋଧହୁଏ ମିଛ । ତମେମାନେ ମଧ୍ୟ କନ୍ୟା ତରଫରୁ କିଛିଟା linient ହେବା କଥା । ଏଇ opportunityକୁ ଛାଡ଼ିବା କଥା ନୁହେଁ । ତମେ ତ ସବୁକଥା ବୁଝୁଥିବ । ଡଃ ପଟ୍ଟନାୟକ ଏବଂ ନାନୀ ଆଜି ତମକୁ ଲେଖିଥିବେ । ଏବେ smooth sailing ପାଇଁ ଆମେ ଆଶା କରିବା କଥା । Marriage are made in heaven.

ଅମ୍ଳାନ ତା' ମାମୁଁଙ୍କ କାର୍‌ରେ ପଅର ଦିନ ଆସି ପୁଣି ଆଜି ଚାଲିଯାଉଛି । ଏ ଚିଠି ଏ.ଜି.ରୁ ଲେଖିଥିବାରୁ ସେ ଯାଉଛି କି ନାହିଁ ସଠିକ୍ କହିହେଉନି । ତା'ର ଆଶା ଥିଲା, ତମ ସଙ୍ଗେ ଦେଖା ହେବ ବୋଲି । କିନ୍ତୁ ତମର ଏବଂ ତା'ର ଏଠିକି ଆସିବା ଏକାବେଳକେ ହୋଇପାରୁନାହିଁ । ତମ ପାଖକୁ ଯିବା ସମ୍ଭବ ହୋଇପାରୁନି । ତମେ ମଧ୍ୟ ରାଉରକେଲା ଯିବା ଅସମ୍ଭବ । ସେ ଯାହାହେଉ, କାଲି କଟକ ଯାଇଥିଲୁ । ମୁଁ, ଆଶୁତୋଷ,

ପ୍ରଦୀପ, ଗୋକୁଳ ଆଦି ସିମେଣ୍ଟ ବେଞ୍ଚରେ କିଛି ସମୟ କାଟି ଅତୀତର ସ୍ମୃତିକୁ ଖୋଜୁଥିଲୁ । ସବୁ ଯେମିତି ଅଲିଭା ହୋଇ ରହିଯାଇଛି । ପ୍ରଦୀପ ବ୍ୟତୀତ ଅନ୍ୟମାନେ କିଭଳି calculated ଏକଥା ସ୍ପଷ୍ଟଭାବେ ଜଣାପଡୁଥିଲା । ପ୍ରଦୀପ ଏ ବିଷୟରେ ବୋଧେ ସଚେତନ ନୁହେଁ । ଅମ୍ଳାନ ସ୍ମିତା ସଙ୍ଗେ କିଛି ସମୟ କଟେଇଥିଲା । ରୁମ୍‌କୁ ଫେରି ତା'ର ଗୋଟେ ଚିଠି ପଢ଼ାଉଥିଲା । ସେମାନଙ୍କ ସମ୍ପର୍କ ଗୋଟାଏ extremityରେ ଯେ ପହଞ୍ଚିଛି, ତାହା ସ୍ୱୀକାର କରିବାକୁ ହେବ । ଅମ୍ଳାନ ଯେକୌଣସି eventualityକୁ ଗ୍ରହଣ କରିନେବା ଠିକ୍ ହୁଅନ୍ତା । ଆମେ ତା'ର ନିବିଡ଼ ବନ୍ଧୁ ହିସାବରେ ତା' ସମ୍ପର୍କ ମଧୁମୟ ହେଉ ବୋଲି କାମନା କରିବା ହିଁ କଥା । ଆମେ ଏକାଠି ହେଲେ ଘର ନେବା କଥା ଭାବିବା । ମୁଁ ଏବେ ସାମାନ୍ୟ ମାନସିକ ଦୁଶ୍ଚିନ୍ତା ଦେଇ ଗତିକରୁଛି । ଘରୁ ଘନଘନ ଚିଠି ଆସିବା ବନ୍ଦ ହୋଇଯାଇଛି । ମୁଁ ମୋର ସ୍ଥିତି ଏଠି ଖୋଜୁଛି । ମୋର ମୁକ୍ତି ମଧ୍ୟ । ଯେତେଦିନ ମଣିଷଣ ସ୍ୱର ଉତ୍ତୋଳନ କରିବାର ଶକ୍ତିକୁ ଚପେଇ ଦିଆଯାଇଛି, ସେପର୍ଯ୍ୟନ୍ତ ମଣିଷ ଓ ପଶୁ ଭିତରେ କ'ଣ ବା ପାର୍ଥକ୍ୟ ! ମୁଁ Grand Inquisition ରୁ quote କରୁଛି: "Make us slave, but first feed us" । ଆମେ ଏଇ ପେଟଚିନ୍ତା ଓ ଆତ୍ମଚିନ୍ତା ଭିତରେ କିଛି କିଛି different sphereରେ କ'ଣ ହଜିଯାଉନେ ?

ତମେ ଏଇ ବିବାହ ସମ୍ପର୍କରେ ପୁଣି ଭୁବନେଶ୍ୱର ଆସୁଛ ବୋଧେ । କିନ୍ତୁ ସବୁସତ୍ତ୍ୱେ ତମେ କିଛି କିଛି ପଢୁଥିବ, କିଛି କିଛି ନିଜ କଥା ମଧ୍ୟ ଭାବୁଥିବ ବୋଲି ଆଶା । ବାପାମାଆ, ବାବି ଆଦିଙ୍କୁ ମୋର ଶ୍ରଦ୍ଧା ଓ ସ୍ନେହ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି ।

ମୁଁ ତ କେତେବାର ତମମାନଙ୍କ ପାଖରେ success ବିଷୟରେ ଯୁକ୍ତି କରିଥିବି । ଏ ପୃଥିବୀରେ ନିଜର ଆସ୍ଥାନ ଦୃଢ଼ କରିବାକୁ ହେଲେ, ନିଜର ସ୍ଥିତି ଜାହିର କରିବାକୁ ହେଲେ ଆମକୁ କିଛି ଚମକପ୍ରଦ ଜିନିଷ ଦେଖାଇବାକୁ ପଡ଼ିବ । ଜୀବନଦର୍ଶନକୁ ପାଥେୟ କରି ମଣିଷ ବଞ୍ଚିପାରେ; କିନ୍ତୁ ଅଦ୍ୱିତୀୟ ଅସାଧାରଣ ହୋଇ ପାରିବନି, ଯଦି ତା' ପାଇଁ success remote ହୋଇପଡ଼େ ।

ଏହି ବିଷୟରେ ଆମ ପାଇଁ ଭଞ୍ଜ ଓ ଅମ୍ଳାନ ଉଭୟେ ସମାନ, ଯଦିଓ ସେମାନଙ୍କର ଧାରଣା ସମ୍ପୂର୍ଣ୍ଣ ଭିନ୍ନ । ମୁଁ ଜାଣେ ଭଞ୍ଜ ଓ ଅମ୍ଳାନ ଉଭୟଙ୍କ ଭିତରେ ପରସ୍ପର ପ୍ରତି ଶ୍ରଦ୍ଧା ଓ

ସ୍ନେହ ନାହିଁ ବରଂ ଈର୍ଷାପରାୟଣତା ଅଛି । ନିଜକୁ ଗୋଟିଏ ସାଧାରଣ ଏବଂ ସଂକୀର୍ଣ୍ଣ plane ଭିତରେ ରଖି ନିଜକୁ ଠିକ୍ ବୋଲି ବୋଧହୁଏ ସେମାନେ ଭାବୁଛନ୍ତି । ସେ ଯାହା ହେଉ, ଗତଥର ଭଳି ସେମାନଙ୍କର ଏଥର କିଛି ଅପ୍ରିୟ କଥାବାର୍ତ୍ତା ହୋଇନାହିଁ । ସେମାନଙ୍କ ଭିତରେ ଭଲ ବୁଝାମଣା ରହୁ ବୋଲି ମୁଁ ଯଥେଷ୍ଟ ଚେଷ୍ଟା କରିଛି । କାରଣ ୩୧ ତାରିଖ (ଯେଉଁଦିନ ମୁଁ ଦରମା ପାଇଲି) ରାଜମହଲରେ ଖାଇଲାବେଳେ ଅମ୍ଳାନ ଯଥେଷ୍ଟ depressed ଜଣା ପଡୁଥିଲା । ଭଞ୍ଜ କିନ୍ତୁ Kierkegaard କଥା କହିବାକୁ ଭୁଲୁ ନଥିଲା ।

ଏଠି ମୌସୁମୀର ପ୍ରଥମ ତୋଫା କାଲି ଅପରାହ୍ନକୁ ଚମତ୍କାର କରିଦେଇଥିଲା । ଏସବୁ ଦିନମାନଙ୍କ ଭିତରେ ମୁଁ ଜୀବନକୁ ଖୋଜେ, ପ୍ରଶ୍ନ ପଚାରେ, ନିଜକୁ ଜଡ଼ିତ କରେ । ଜୀବନ ତ କେତେବେଳେ ଅର୍ଥହୀନ, ପୁଣି କେତେବେଳେ ଅର୍ଥପୂର୍ଣ୍ଣ ହୋଇଯାଏ । ବିଶୃଙ୍ଖଳିତ ଜୀବନ ଭିତରୁ କିଛି ପ୍ରଶାନ୍ତି ମିଳିଥାଏ । ଆଜି ଆଦୌ ଗରମ ନାହିଁ । ସବୁ ଅନନ୍ତ, ଅସୀମତା ଭିତରେ ମୋତେ ହୀନମନ୍ୟତା ଆକ୍ରାନ୍ତ କରିଛି । ଜୀବନକୁ ନୂଆରୂପରେ ଭଲ ପାଇବାକୁ ମୁଁ ଅବିରତ ଚେଷ୍ଟା କରୁଛି । ଏହାକୁ Lust for life କହିହେବ; କହିହେବନି ମଧ୍ୟ । କାରଣ ଏ ଜୀବନ ମଧ୍ୟରେ ଯଥେଷ୍ଟ ପ୍ରବଞ୍ଚନା ଅଛି । କାଲି ମୌସୁମୀର ଉପହାର ହୁଏତ ଯଥେଷ୍ଟ ଅର୍ଥପୂର୍ଣ୍ଣ; ପୁଣି purest hypocrisy ।

ଅମ୍ଳାନ ପଢ଼ାପଢ଼ି କରୁଛି । ଭଞ୍ଜ ସାଙ୍ଗେ ଦେଖା ହୋଇନାହିଁ । ଘରକଥା ବୁଝୁଛି । କିନ୍ତୁ ବାରମ୍ବାର ବିଫଳ ହୋଇପଡୁଛି । ଘରକଥା କିଛି ବ୍ୟବସ୍ଥା ନକଲେ ମୋତେ ହିଁ ଅସୁବିଧାରେ ପଡ଼ିବାକୁ ହେବ; କାରଣ ଅମ୍ଳାନ ମୋ ରୁମ୍‌ରେ ଆପାତତଃ କିଛି ଦିନ ପାଇଁ ପଢୁଛି । ଏହି ପରିପ୍ରେକ୍ଷୀରେ ଅମ୍ଳାନ ବିଷୟରେ କିଛି କହିବା ଠିକ୍ ହେବ । ସେ ଏଥର ସଫଳତା ପାଇବା ପାଇଁ ବଦ୍ଧପରିକର । ପରିଶ୍ରମ କରିଛି ମଧ୍ୟ । ସବୁ ପଛରେ ତା'ର ଲୋଭ ଅଛି । ମୋହମାୟାରେ ଭରି ରହିଥିବା ସେ ଗୋଟିଏ ଦୁର୍ବଳମଣିଷ । ଜୀବନରେ ତାକୁ କ'ଣ ମିଳିବ ସେ ଜାଣେ ନାହିଁ । କିନ୍ତୁ ଯାହା ମିଳିବ, ତା'ଭିତରେ ସେ ଖୁସି ହୋଇ ରହିପାରିଲେ ଭଲ । ମୁଁ ତା'କୁ କହୁଥିଲି ବୟସ ତା'କୁ ବଦଳେଇ ଦେଉନାହିଁ; ଆମ ସହ ତା'ର ବନ୍ଧୁତା, ତା'ର instinct କିଛି ଭିନ୍ନ କରି ଦେଇନାହିଁ । ଜୀବନରେ materialismର ସେ ଏକ ଭୀଷଣ ନଗ୍ନ ପ୍ରମାଣ । କିନ୍ତୁ ତା'ର ସାମୟିକ eruption, nostaligia ଏବଂ self-abondon ଖୁବ୍ ଭଲ ଲାଗେ (ଯଦିଓ ତା'ର purity ଉପରେ ପ୍ରଶ୍ନ ପ୍ରଚାରିପାର) ଏବଂ ଆଉ ଭଲ ଲାଗେ ତା'ର confessions ସବୁ । ମୁଁ ମୋର ସବୁ principle ବୋଧେ ତା'ଠି ପ୍ରୟୋଗ କରିଛି । ମୁଁ ଚାହୁଁଛି, ସେ ଜିତୁ, in absolute sense । ସେ ଗୌରବାନ୍ୱିତ ହେଉ, in purest form । ତା'ର ପରାଜୟ ମୋର ପରାଜୟ । The defeat of great cause.

ତମେ ଆସିବାକୁ ଲେଖିଛ । ବହି କିଛି ନେଇ ଆସି ଘରପାଇବା ପର୍ଯ୍ୟନ୍ତ ନାନୀ ଘରେ ରହିବ । ପଢ଼ିବା ପାଇଁ ଏଠି ରୁମ୍ ଅଛି । ଲାଇବ୍ରେରୀ ମଧ୍ୟ ଏବେ ଯଥେଷ୍ଟଭାବେ ବନ୍ଦକିଯାଇଛି । ବାପାଙ୍କୁ ପଚାରୁଥିଲି ତମେ ପଢୁଛ କି ନାହିଁ ବୋଲି । ଅନ୍ୟ ଖବର ସବୁ ଭଲ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମର ବର୍ତ୍ତମାନର ମାନସିକ ଅବସ୍ଥା ଯେପରି, ଯେକୌଣସି ପ୍ରକାର ପରିସ୍ଥିତିକୁ 'ମୁକ୍ତି' ଆଖ୍ୟାଦେଇ ପଳାୟନ କରିଯିବାକୁ ତମେ ଚାହୁଁଛ । କେବଳ ଦୁଃଖ ହୁଏ ରବି ସେନାପତି, ଚାନ୍ଦ, ଅଶୋକ ସାହୁ stand କଲେ । ଏହା ପ୍ରମାଣିତ କରିଦେଲା ଯେ ଅନେକ ପରୀକ୍ଷା ଭଳି What you need is perspiration । ଏହି system ଭିତରେ ତମକୁ ଏ ପରାଜୟ( ? ) ନିଶ୍ଚୟ ସତର୍କ କରିଦେଉଥିବ । ମୁଁ ଭାବୁଛି, ଯେଉଁ ମଣିଷ ବିଜୟର glory ଅନୁଭବ କରିଛି, ସେ ପରାଜୟର ଗ୍ଲାନିକୁ ମଧ୍ୟ ଅନୁଭବ କରିବା ଉଚିତ । କାରଣ ସବୁବେଳେ ଜିତିବାର ନିଶା ମଣିଷକୁ ଅନ୍ଧ କରିଦିଏ । ଇତିହାସ ବହିର ସବୁ ଅଧ୍ୟାୟରେ ଏକଥାକୁ ସୁନ୍ଦର ଭାବେ ଲେଖାଯାଇଛି । ତମେ ବ୍ୟସ୍ତ ହୋଇନ ବୋଲି ମୋର ଦୃଢ଼ବିଶ୍ୱାସ ।

ଏ ସନ୍ଧ୍ୟାରେ ଆଜି ଜହ୍ନ ସ୍ମିତ ହସଟିଏ ହସି ମେଘ ସହ hide-an-seek ଖେଳୁଛି । ସେମିନାର୍ ଚାବି ନଥିବା ହେତୁ ପଢ଼ିବାକୁ ଯାଇନି । ଅମ୍ଳାନ କଟକ ଯାଇଛି । ଭଞ୍ଜ ସାଙ୍ଗେ ସନ୍ଧ୍ୟାରେ ଦି'ମିନିଟ୍ ପାଇଁ ଦେଖା ହୋଇଥିଲା । କୌଣସି କାମରେ ସେ ବ୍ୟସ୍ତ ଥିଲା ବୋଧେ । ଫାଇଲ୍ ଭିତରୁ କିଛି ସମୟ ମୁକ୍ତି ମିଳିଯାଏ ସନ୍ଧ୍ୟାରେ । ଇଚ୍ଛା ହୁଏ କିଛି ଲେଖିବାକୁ । ମନଖୋଲେ କଥାବାର୍ତ୍ତା କରିବାକୁ । ସବୁ ଉଦ୍‌ଗତ ଭାବାବେଗକୁ ପ୍ରକାଶ କରିଦେବା ପାଇଁ ମନ ଛଟପଟ ହୁଏ । ଅମ୍ଳାନ କିନ୍ତୁ ବହୁତ serious ଜଣାପଡ଼େ । ମୋର ସବୁ ଇଚ୍ଛାର ମୃତ୍ୟୁ ଘଟେ । ମୁଁ କେଉଁ ଜାଗାକୁ ଡାକିଲେ ସମୟ ନଷ୍ଟ ହୋଇଯିବ ବୋଲି ମନା କରିଦିଏ । ଅଥଚ ସେ ମାମୁଁଙ୍କ ଘରକୁ ଯାଇ କଳହ କରେ । Mood ଖରାପ କରି ଫେରିଲେ ମୁଁ ତା'କଥା କୁଆଡ଼େ ବୁଝେ ବୋଲି ସବୁ ମୋ ସହ share କରେ । ଅମ୍ଳାନ ଠିକ୍ ବଳିଦତ୍ତ ('ଦାନାପାଣି'ର) ଭଳି ଦିନେ ଆବିଷ୍କାର କରିବ ଯେ ସେ ଯେଉଁ ଦିଗକୁ ଚାଲିଛି ସେ'ଠି ଖାଲି illusions ଅଛି, ଖାଲି ନଗ୍ନ ଭଣ୍ଡାମୀ ଅଛି । (ଅବଶ୍ୟ ମୁଁ ତମକୁ ଅନେକ ଥର କହିଥିବି ଯେ ତା'ର ବିଜୟ ମୋର ବ୍ୟକ୍ତିଗତ ବିଜୟ) ତମେ ମୋ ପାଖକୁ ଲେଖିଥିବା ଚିଠି ପାଇବା ପରଠାରୁ ମୁଁ ଦେଖୁଛି, ସେ ଯେମିତି ଭଲ ମନରେ ନାହିଁ । ତମକୁ

ଲେଖିଛି ବୋଧେ ଯେ ସେ ନୀଳଗିରି ଯାଉନି ବୋଲି । ମୋତେ ଯାହା କାରଣ ଦେଖାଇଲା, ତମକୁ ଲେଖିଥିବ ନିଶ୍ଚୟ । ତମ ସହ ସେ ବୋଧେ ସହଜ ହୋଇପାରୁନି । ମୁଁ ମଧ୍ୟ ତାକୁ ଏ ସମୟରେ ସାହାଯ୍ୟ କରିବା ଅବସ୍ଥାରେ ନାହିଁ । ସେ ଏ ପୃଥିବୀରେ ମୁଣ୍ଡଟେକି ଚାଲୁ ଏକଥା ତ ଆମେ କାମନା କରିବା କଥା । ଆମ ସହ (ମୋ ସହ) ତା'ର ବନ୍ଧୁତା ସେହିଭଳି ନିର୍ଦ୍ଦିଷ୍ଟ କୌଣସି idea ଉପରେ ରହିଛି କି ନାହିଁ ସମୟ ଜଣେଇଦେବ ।

ପ୍ରଫୁଲ୍ଲ ଗତକାଲି ଏଠିକି ଆସିଥିଲା । ସନ୍ଧ୍ୟାରେ ସେ ଚାଲିଯାଇଛି । ଚିତ୍ତରଂଜନ ଦାସଙ୍କୁ ଦେଖା କରିଥିବ ବୋଧେ । ତାକୁ ମୁଁ ଶେଷ ମୁହୂର୍ତ୍ତରେ ବିଦାୟ ଦେଇପାରିଲିନି । ଆସିଥିଲା ମୋ ସଙ୍ଗେ ମନଖୋଲି ଦି'ପଦ କଥାବାର୍ତ୍ତା କରିବ ବୋଲି । ସେ କହେ ଯେ ଏ ପୃଥିବୀରେ ମୁଁ ତା'ର ସବୁଠାରୁ ଆପଣାର । ମୋତେ ପାଖରେ ଦେଖିଲେ କୁଆଡ଼େ ତା' ମନର ଅନେକ ଦ୍ୱନ୍ଦ୍ୱ ଦୂର ହୋଇଯାଏ । କିନ୍ତୁ ସେ କିଛି କହିଲାନି । ମୋର ମଧ୍ୟ ସେମିତି କିଛି ବିଶେଷ କଥା କହିବାର ନଥିଲା । ଭଞ୍ଜ, ସୂର୍ଯ୍ୟ, ଓ ମୁଁ କିଛି ସମୟ ଏକାଠି କାଟିଥିଲୁ । ଘରେ ମୋ ଉପରେ କେମିତି ସମସ୍ତେ ରାଗିଛନ୍ତି, କେମିତି ମୋତେ ଭୁଲ୍ ବୁଝୁଛନ୍ତି, ପ୍ରଫୁଲ୍ଲ କହୁଥିଲା । ଆଃ, ଠିକ୍ ଏହିଭଳି 'Metarmorphosis' ଗପରେ ସେହି ଅଦ୍ଭୁତ insectଟିର ମୂଲ୍ୟ ହୋଇଥିଲା । ସମୟକୁ ଯେ ମାପି ଚାଲିପାରେନି,ଯେ ସତର୍କ ହୋଇପାରେନି, ଯେ ଭଲ ମଣିଷଟିଏ ହେବାକୁ ଚାହେଁ,ଏଇମିତି ଏକୁଟିଆ ହୋଇପଡ଼େ, ଛିଟିକିପଡ଼େ ।

ଭଞ୍ଜ ୨୩ ତାରିଖରେ ଏଇଠାରୁ କାନ୍‌ପୁର ଯିବ । ସତରେ ଭଞ୍ଜର spirit ଅଦମନୀୟ । ମୋ ଭିତରେ ସେ fire ସୃଷ୍ଟି କରେ । ମୋତେ ବଞ୍ଚିବାର ସମସ୍ତ ପ୍ରେରଣା ଦିଏ । ଅଦ୍ଭୁତ ଭାବେ ସେ କହିଚାଲିଥାଏ । ମନରେ ଆବିଳତା ବା ସଚେତନତା ନଥାଏ । ନିଜେ ଖୁବ୍ original ହେବାକୁ ଚେଷ୍ଟା କରେ । ମୋ କଥାକୁ ପ୍ରାୟ ସେ intellectually ଓ critically appreciate କରିଥାଏ ।

ବାରମ୍ବାର ଭାବପ୍ରବଣତାର ପୃଥିବୀ ଗଢ଼ିବାର କ'ଣ ବା ମୂଲ୍ୟ ଅଛି ? ନିଜେ କେତେବାର ମୁଁ ମୁକ୍ତି ଚାହିଁଛି, ଏପରିକି ପ୍ରାଣର ବିନିମୟରେ । କିନ୍ତୁ ସବୁବେଳେ ପରିସ୍ଥିତି ସହ ମୁଁ ମୁକାବିଲା କରିପାରିନି । ଅତି ଦୟନୀୟ ଅବସ୍ଥାରେ ମୁଣ୍ଡପାତି ସହିଯାଇଛି । ଆଜିର ଜହ୍ନ ମୋତେ କିଛି ନୂଆ ଚିନ୍ତା, କିଛି ନୂଆ ପ୍ରେରଣା ଦେଉନି । ମୋ ଚାରିପାଖର environment ସହ ଯେମିତି ମୋର କିଛି communication ନାହିଁ । ଏ ପୃଥିବୀ ସହ ଯେମିତି ମୋର ପରିଚୟ ହୋଇନି । ଅଥଚ ରାତି କେତେ ସୁନ୍ଦର ହେବ । ସବୁ ନିର୍ଜନତାର କୋଳରେ ହଜିଯିବ । ଗୋଟାଏ ଅଦ୍ୱିତୀୟ ରାତିକୁ ମୁକ୍ତିର ଅଭାବରୁ ବିଦାୟ ଦେବାକୁ ହେବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଏଇ କେତେଦିନ ଧରି ମୁଁ ଯେଉଁ ଜାଗାରେ ସାରାଦିନ କାଟୁଛି ବା କାଟିବି, ସେଇଠି ପୃଥିବୀ ଏକାବେଳକେ ବିବର୍ଣ୍ଣ । ଆକାଶରେ ସବୁବେଳେ ଧୂଆଁ ଓ ତା'ସହିତ ପୁଣି ପାଉଁଶ । ମନେହୁଏ ଯେମିତି ଏଇକ୍ଷଣି ଅନ୍ଧାର ଘୋଟିଆସିବ ବା ବର୍ଷା ହେବ । ପାଖରେ Thermal plant । ତା'ର ଶବ୍ଦ ଏଇଠି ଯେମିତି ସବୁ ନୀରବତାକୁ ଭାଙ୍ଗି ଦେଉଛି । କିଛିଦିନ ତଳେ ଏଇଠି ସୁନାଫସଲର ଢେଉ ହୁଏତ ମୋ ଭଳି କେଉଁ ସୃଷ୍ଟିଛଡ଼ା ମଣିଷକୁ ଓଟାରି ରଖିଥିବ । କିନ୍ତୁ ଯେମିତି ସବୁ ଏବେ ମୃତ; ଭୀଷଣ ଭାବେ ଅତୀତ । ପାଖରେ ଯଦି ସୋରିଷ ଚାଷ ହୋଇଥାଆନ୍ତା, ହଳଦିଆ ଫୁଲସବୁ ଏ ମାଘମାସର ଦିନଗୁଡ଼ିକୁ ମଧୁମୟ କରିଦିଅନ୍ତେ । ଯଦି ଏଇଠି ଆଖୁଚାଷ ହୋଇଥାଆନ୍ତା, କୋବି ଲଗାଯାଇଥାଆନ୍ତା, ସବୁଜ ଅରଣ୍ୟର ଅଭାବ ରହି ନଥାନ୍ତା । ତଥାପି ବି ମୁଁ ରଙ୍ଗ ଖୋଜୁ ଖୋଜୁ ଧାନମୂଳରୁ ସଦ୍ୟ ବାହାରିଥିବା ଗଜା ପାଇଛି, ଯାହା ଉପରେ ପାଦ ଥୋଇଲେ କେମିତି ଗୋଟାଏ ନୂଆ ଶିହରଣ ଦେହରେ ଖେଳିଯାଏ ।

ଏସବୁ ମୁଁ ଯାହା ଲେଖୁଛି ବା ଲେଖିବାକୁ ଚାହୁଁଛି, ଆମର ଚାଷ ଗାଁ କଥା ଲେଖୁଛି । ସେଇଠି ମୋର ମେକାନିକ୍ ଭାଇ ଘର ତୋଳୁଛି । (ଅଦ୍ଭୁତ ମଣିଷ ସିଏ । ବାହା ହେବାକୁ ସମ୍ପୂର୍ଣ୍ଣ ନାରାଜ । ବୟସ ତିରିଶ ଡେଇଁଗଲାଣି । ଅଥଚ ଏକାଏକା ଘର ତିଆରି କରିବାକୁ ଅଣ୍ଟା ଭିଡ଼ିଛି ।) ତା' ପାଖରେ ଛିଡ଼ା ହେବା ମୋର ନୈତିକ କର୍ତ୍ତବ୍ୟ ବୋଲି ମୁଁ ମୋର ସବୁ କାମକୁ ପଛକୁ ପକାଇଦେଇଛି । ସେଇଠି ଯେତେପ୍ରକାର ଶାରୀରିକ ପରିଶ୍ରମର ଆବଶ୍ୟକତା ରହିଛି, ସବୁକୁ କରିବାକୁ ପଡୁଛି । ଇଟା ବୋହିଲେ ହାତର ଚମଡ଼ା ଫାଟିଯାଉଛି । ସିମେଣ୍ଟର ସଂସ୍ପର୍ଶରେ ଆସିଲେ ଦେହ react କରୁଛି । ଏସବୁ ମୋ ପାଇଁ ନୂଆ ଅନୁଭୂତି । ଏଇଠି ଯେଉଁମାନେ ଆସି କାମ କରୁଛନ୍ତି, ସେମାନଙ୍କୁ ଅନେକ କଥା ପଚାରୁଛି । ପାଖରେ ଚା'ଦୋକାନଟିଏ ଅଛି । (ମୁଁ Knulp ଭଳି ଚାହେଁନି ଯେ ମୋର ହାତ ପାପୁଲି ବେଶୀ rough ହୋଇଗଲେ କିଏ ମୋତେ ଅଧିକ ଭଲପାଇବ ଏବଂ ମୁଁ ପାଠପଢ଼ା ଛାଡ଼ିଦେଇ ଜୋତା ସିଲେଇ କରିବି !)

Dostoevsky ନିରାଟ ସତ କଥା ଲେଖିଛନ୍ତି ମଣିଷର କ୍ଷୁଧା ସମ୍ପର୍କରେ । (Oh God ! Make us thy slave, but feed us.) ତମେ ଭୁଲି ନଥିବ ଏକଥା । ଏଇ ଘରତୋଳାରେ ଯେଉଁମାନେ କୁଲି, ସେମାନଙ୍କୁ ମୁଁ ଅନୁଭବ କରିବାକୁ ଚେଷ୍ଟା କରୁଛି । ତାଙ୍କ ଠାରୁ କେଉଁ ଗୁଣରେ ବଡ଼ ଯେ ମୁଁ 'ବାବୁ' ହୋଇଯାଉଛି ? ମୋତେ କାମ କରିବା ଦେଖିଲେ ସେମାନେ ସହିପାରୁନାହାନ୍ତି । ମୁଁ ତାଙ୍କୁ କ'ଣ ଖାଇଛ ବୋଲି ପଚାରିଲେ 'ପେଜ ପିଇଛୁ' ବୋଲି ହସି ହସି କହନ୍ତି । ପଇସା ନେଇ ଫେରିଲେ ଚାଉଳ କିଣାଯିବ ଏବଂ 'ପେଟ' ପୁରିବ । (ବନ୍ଧୁ, ଏଇଠି ମୁଁ ଏମାନଙ୍କ ଠାରୁ ଭିନ୍ନ । ପେଟର କ୍ଷୁଧା ମୁଁ

କ'ଣ ଜାଣିନି । ତୋରାଣି ପିଇ ଜୀବନଟାକୁ ବଞ୍ଚେଇବାର ଅଭିଳାଷ ବୋଧହୁଏ ମୁଁ ରଖିନି । ମୁଁ ବୋଧେ ଘୋଷାଡ଼ି ଘୋଷାଡ଼ି ଜୀବନଟାକୁ ଆଉ କିଛି ବାଟ ଆଗେଇ ନେବି, ଏକଥା ମୁଁ ତାଙ୍କ ଭଳି ମନକୁ ନେଇନାହିଁ । ମୋର ତ କ୍ଷୁଧା ମଧ ଅଛି । ହେଲେ ଏମାନଙ୍କର କ୍ଷୁଧା ଭଳି ଏତେଟା ଭୟାନକ ନୁହେଁ ନିଶ୍ଚୟ ।) ପୂର୍ବ କର୍ମଫଳରେ ବିଶ୍ୱାସ କରୁଥିବା ମଣିଷ ମୁଁ ନୁହେଁ । ମୋ ପାଇଁ ଏସବୁ ତମରି ଭାଷାରେ 'ଅପହଞ୍ଚ' । ମଣିଷ ଏତେ ଯାତନା, ଯନ୍ତ୍ରଣା, କ୍ଷୁଧା ସତ୍ତ୍ୱେ ବଞ୍ଚେ କାହିଁକି ? ଏଇଆ କ'ଣ 'trial and judgement of sea' । ଏଇଆ କ'ଣ 'fare forward' ।

ଆଉ କେଇ ମୁହୂର୍ତ୍ତ ପରେ ନୂଆବର୍ଷ ହେବ । ଏଇଠି ଏଇସବୁ ପ୍ରଶ୍ନର ରହସ୍ୟ ମୋ ପାଇଁ ନୂଆବର୍ଷର ଉପହାର ବୋଧେ (ସମୟର ଉପହାର ବୋଧହୁଏ ।)

ତମ ଚିଠି ପାଇଛି । ନବବର୍ଷର ଶୁଭେଚ୍ଛା ତ ନିଶ୍ଚୟ ଗ୍ରହଣ କରିବ । 'A writer's Notebook ସରିଗଲାଣି । Superb କହିଲେ ଠିକ୍ ହେବ । ଆସନ୍ତା ଚିଠିରେ ଲେଖିବି ସେ ବିଷୟରେ । ପୁଣି ତମ ପାଖକୁ ଲେଖିବି । ଏଇଠି ମନକୁ ଯାହା ଆସୁଛି, ତାହା ଲେଖୁଛି । ତମର power of judgement ବେଶୀ ହୋଇଥିବାରୁ ମୋ ଚିଠିରୁ ମୋର ମାନସିକ ଅବସ୍ଥା କଥା ଲକ୍ଷ୍ୟ କରୁଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ମୁଁ ନିଜକୁ ଦୋଷ ଦେଉଛି । ନଯାଇ ପାରିବା ହେତୁ ମୁଁ ଅନୁତାପ କରୁଛି । ଥରେ ମୁଁ ଜାଣିଥିଲି, ତମ ସହ ନିର୍ଜନରେ (!) କିଛି ସମୟ କଟାଇଥିଲେ ଆପଣା ଆପଣାର ଭିତରର ମଣିଷଟିକୁ ଆହୁରି ପାଖରୁ ଦେଖିଥାଆନ୍ତେ । ଆପଣାକୁ ଆହୁରି ଭଲ ଭାବେ ବୁଝିଥାଆନ୍ତେ । ମୁଁ ଏକ ଅପୂର୍ବ ସୁଯୋଗ ହରାଇଲି । କେମିତି ଗୋଟେ ଅବସ୍ଥାଚକ୍ରରେ ପଡ଼ି ମୁଁ ଯେମିତି ଡରିଯାଉଛି ସବୁକଥାକୁ । ଘରୁ credibility ହରାଇବସୁଛି । ବାପାମାଆ ଭାଇଭଉଣୀଙ୍କ ପାଖରୁ ମୁଁ ସ୍ନେହ ପାଇପାରୁନି ବରଂ ଘୃଣ୍ୟ ହୋଇପଡୁଛି । ପ୍ରଫୁଲ୍ଲ, ଅମ୍ଳାନ ଉଭୟେ ମଧ ମୋତେ ଆଉ ଠିକ୍ ଭାବେ ଦେଖୁନାହାନ୍ତି । ମୁଁ କୁଆଡ଼େ ବଦଳିଯାଉଛି ! ତେଣୁ ତମପାଖକୁ ନଯାଇ ପାରିବାଟା ସେହିଭଳି ଏକ ଭୟଜନିତ କାରଣ । ରାଜେଶ ଏଇଠି ପହଞ୍ଚିଥିଲା । ସେ ମଧ ବାଧ କରୁଥିଲା । ତମ ପାଖକୁ ଯିବାକୁ । କିନ୍ତୁ ଯାଇ ହେଲା ନାହିଁ । ତମ ପାଖକୁ earliest opportunityରେ ଯିବି । surprise ଦେବି ତମକୁ ।

ତମେ 'ନିର୍ଜନତା' କଥା ଲେଖି ମୋତେ ପୁରୀ କଥା ମନେ ପକାଇ ଦେଲ । ସେଇଠି ଯେଉଁ ନିର୍ଜନତାକୁ ମୁଁ ମୁକାବିଲା କରିଛି ତମେ ପାରି ନଥାନ୍ତ । ସେଇଠି ପ୍ରତି

ମୁହୂର୍ତ୍ତରେ ନିଜକୁ ଧ୍ୱଂସ କରିଦେବାକୁ ଇଚ୍ଛା ହୁଏ । ସେ'ଠି ମୁଁ ସମୁଦ୍ର ବେଳାଭୂମିରେ, ଝାଉଁବଣରେ କେତେଥର ନିଜକୁ ନହଜାଇ ଦେଇଛି ସତେ ! ସେ'ଠି ଆବିଷ୍କାର କରିଛି କେମିତି ସମୁଦ୍ର ଓ ଆକାଶ ଏକାକାର ହୋଇଯାଆନ୍ତି । ସକାଳୁ, ସୂର୍ଯ୍ୟୋଦୟ ପୂର୍ବରୁ ମୁଁ ଦେଖିଛି ଆଲୋକ ଅନ୍ଧକାରର ଏକ ଅଭିନବ ମିଳନକୁ । ସେଠାରେ କବିତା ଲେଖିବାକୁ ଇଚ୍ଛାହୁଏ । ସେଠି, ସେଇ ନିର୍ଜନତାରେ ଭାବିହୁଏ ଜୀବନର ଅତି ନିଜସ୍ୱ being କଥା, ଅତି ଆପଣାର ମନକଥା; ସ୍ୱପ୍ନ ଦେଖିହୁଏ । ଚିତ୍ତରଂଜନ ଦାସଙ୍କ ଭାଷାରେ "ଏ ଜୀବନର ପଥ ବଡ଼ ଏକାନ୍ତ, ବଡ଼ ନିର୍ଦ୍ଦିଷ୍ଟ, ବଡ଼ ନିଜସ୍ୱ । ଏ ରାସ୍ତାରେ ପ୍ରତ୍ୟେକଙ୍କୁ ଏକୁଟିଆ ଚାଲିବାକୁ ହେବ ।" ହଁ, ଠିକ୍ ସେଇଭଳି ମୁଁ ମଧ୍ୟ ସେଠାରେ ଅତି ଆପଣାର ରାସ୍ତାରେ ଯିବାକୁ ଜାଣିଥିଲି । ମୋର ଭାବପ୍ରବଣତା ବୋଧେ ସେଇଠାରୁ ଏକ ନୂତନ ରୂପ ନେଇଥିଲା । ମୁଁ ଜୀବନରେ ହାରିଯାଇ ଥାଇପାରେ । କିନ୍ତୁ ନିର୍ଜନତା ମୋତେ ନିଜକୁ ଆପଣାର ମନ ସହ ପରିଚିତ କରାଇ ଦେଇଛି । ତମେ ନିର୍ଜନତାକୁ ଅଙ୍ଗେ ନ ଲିଭାଇଲେ ସୃଷ୍ଟି କରିବା (creativity) କ୍ଷମତାକୁ ହରାଇବସିବ । ନିଜକୁ ଅସହାୟ ମନେକରିବ, ଯଦି ତମେ ନିର୍ଜନତା ସହ ଅନ୍ୟର ସାହାଯ୍ୟ ନେଇ ଯୁଦ୍ଧ କର । ଏକାନ୍ତରେ କେବଳ ତମେ ସମ୍ଭବ ହେବ ନିଜ ଚାରିପାଖେ ସ୍ୱପ୍ନର ପୃଥିବୀ ଗଢ଼ିବାକୁ । କାରଣ reality ତମକୁ ସବୁବେଳେ ସଙ୍କୁଚିତ କରିବ । ହୋଇପାରେ ସେଠାରେ ରୁମୀ ଅଛି, ଅରୁଣ ଅଛନ୍ତି, ତମକୁ ନିର୍ଜନତା ସହ ସଂଗ୍ରାମ କରିବାକୁ ପଡ଼ିବ ନାହିଁ । କିନ୍ତୁ ତମେ ଏକ vicious circle ଭିତରକୁ ପଶିଯିବ । ଅର୍ଦ୍ଧାଧିକ freedom ତମଠୁ ସେମାନେ ଛଡ଼ାଇନେବେ । ତମର ସେଇ ଆପଣାର ମନଟିର slow death ହେବ । ତମେ ଯୁକ୍ତି ବାଢ଼ିପାର ଯେ ସମୟ ଅତିକ୍ରାନ୍ତ ହୋଇ ପଡୁଛି ବୋଲି । ତମେ କହିପାର, ତମେ ଅତିଷ୍ଠ ହୋଇପଡୁଛ ବୋଲି । କିନ୍ତୁ ତମକୁ ଯେ ଅନେକ ବାଟ ଯିବାକୁ ହେବ, ଏକଥା କ'ଣ ତମେ ଭୁଲିଗଲଣି !( ?) ତମକୁ କେତେବାର ଆଉ କହିବି ଯେ ଆମର ଯନ୍ତ୍ରଣା, ଆମର ଅର୍ଦ୍ଧପାଗଳ ମନ, ଆମର ସ୍ୱପ୍ନ ଆମର ଅତି ପ୍ରିୟ assets ବୋଲି । ବଞ୍ଚିବାର driving force ଏମାନେ । ସେଥିପାଇଁ ମୁଁ ତମକୁ ଅସହାୟ ହୋଇଯିବାର ଦେଖିଲେ ଭାଙ୍ଗିପଡ଼ିବି । ମୋର ସବୁ experiment ମଧ୍ୟ ବ୍ୟର୍ଥ ହୋଇଯିବ । ହୋଇପାରେ ତମେ ନିର୍ଜନତା ଦ୍ୱାରା ଭାଙ୍ଗିପଡୁଛ । କିନ୍ତୁ ମୋର ବିଶ୍ୱାସ, ଆମେ ଏହାଦ୍ୱାରା ଆହୁରି ମଧ୍ୟ ଅନୁଭୂତିର ଅଧିକାରୀ ହୋଇପାରୁଛୁ ।

ଭଞ୍ଜ ପାଖକୁ ତମକଥା ଲେଖିଛି । ତମେ ଯେଉଁଦିନ ଏଠିକି ଆସିଥିଲ, ପ୍ରଦୀପ ମଧ୍ୟ ଆସିଥିଲା । ସେ ଦୁଃଖ କରୁଥିଲା ଦେଖା ନହୋଇ ପାରିବା ଯୋଗୁଁ । ଚିଠି ଲେଖିବ ବୋଧେ । ଅମ୍ଳାନଠାରୁ ଚିଠି ନାହିଁ । ସେ ଚିଠି ଲେଖିବାର ଆବଶ୍ୟକତା ଅନୁଭବ କରୁନି ବୋଲି ମୋର ମନେହୁଏ । ଭବତୋଷ ଖୁବ୍ gay-go ଜଣାପଡୁଛି । ନିଜ ଚାରିପାଖେ ସେ ସବୁକୁ ଉପଲବ୍ଧି କରିପାରିଛି । ତା'ର ଯେ ସ୍ୱପ୍ନ ଅଛି, ଏକଥା ମୋତେ ଯଥେଷ୍ଟ

ଆନନ୍ଦ ଦେଇଛି । ଆମେ ଚାହୁଁ ସବୁ ଲୋକ ସ୍ୱପ୍ନବାଦୀ ହୁଅନ୍ତୁ ବୋଲି । ଅରୁଣ ଓ ଗୋପବନ୍ଧୁ ଉଭୟେ ଏକାଭଳି । ମୋର ସେମାନଙ୍କ ପ୍ରତି ସେମିତି କିଛି ଅଭିଯୋଗ ନାହିଁ । ତମେ ଯଦି ପାରୁଛ adjust କର । ଅରୁଣ ସମ୍ପର୍କରେ ତମେ ମୋ ଠାରୁ ଯଥେଷ୍ଟ କିଛି ଜାଣିଛ । ସେ ତମକୁ bore କରୁଛି ବୋଲି କାଲି ରାଜେଶ କହୁଥିଲା । କିନ୍ତୁ ଅରୁଣ ଯଥେଷ୍ଟ ଭାବେ worldly, down-to-earth. ପରେ ମୁଁ ତମକୁ 'The Plague' କଥା ଲେଖିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଜି କାହିଁକି ତମମାନଙ୍କ କଥା ଖୁବ୍ ମନେପଡୁଛି । ଦ୍ୱିପ୍ରହର ସାରା ଅସହ୍ୟ ଗରମ ପରେ ଏଇଠି ଏକ ଚମତ୍କାର ସନ୍ଧ୍ୟା ନଇଁ ଆସୁଛି । ଏହି ଦିନଗୁଡ଼ିକରେ ଆମେ ଏହି ସମୟରେ RRL ଆଡ଼କୁ ଯାଉଥିଲେ । ବର୍ଣ୍ଣବୈଭବର ଏକ ଅଦ୍ୱିତୀୟ ଭଣ୍ଡାର ଆବିଷ୍କାର କରୁଥିଲେ । ଆମର ସବୁ metaphysicsକୁ ନେଇ ଯୁକ୍ତିର ଚେସ୍ ଖେଳୁଥିଲେ । ଆପଣା ଆପଣାର ଅନୁଭୂତି ଭିତରୁ ଏକ ସାର୍ବଜନୀନ ସମାଧାନ ବାହାର କରୁଥିଲେ । ସେତେବେଳେ ଜୀବନର ଝଡ଼କୁ ଯେତେ ସହଜରେ ବୁଝି ହେଉଥିଲା, ସହଜ ଜୀବନ ମଧ୍ୟ ସେତିକି ଜଟିଳ ନଥିଲା । ଆମ ସ୍ୱପ୍ନ ଓ ବାସ୍ତବ ଚିନ୍ତାଧାରା ଏକତ୍ରିତ ହୋଇ ପଡୁଥିବା କଥା ଆମକୁ ହାଲୁକା କରିଦେଉଥିଲା ।

ମାତ୍ର ଏବେ ମୁଁ ଜାଣିପାରୁନାହିଁ ମୋର ସ୍ଥିତିକୁ । ସବୁ ଯେମିତି ଆହୁରି ଦୁର୍ବୋଧ, ଆହୁରି ରହସ୍ୟମୟ ହୋଇଯାଉଛି । ଯେଉଁ ମଣିଷ ଆଲୁଅକୁ ଭଲ ପାଏ, ଅନ୍ଧାରକୁ ଭଲ ପାଏ, ଆଉ ପୁଣି କ'ଣ ଅବୁଝା ରହିଗଲା ଯେ ସେ ଏହିଭଳି ଦୁଃଖାତୁର ହୋଇପଡ଼େ । ତମେ ଏବେ କ'ଣ କରୁଥିବ,? କେତେ history, economics ପଢ଼ିବ ? (ମୁଁ ଯେମିତି ଦୌଡ଼ରେ ସାମିଲ୍ ହୋଇଯାଇ ଏଇଠି Thomson ପଢୁଛି) ଏ ସନ୍ଧ୍ୟାରେ ତମେ ସବୁ ମୁଖା, ସବୁ ପ୍ରତାରଣାକୁ ଦୂରକୁ ଠେଲି ଦେଇ ସେଇ ଦୂର ଦିଗ୍‌ବଳୟ ଆଡ଼କୁ ଯିବାକୁ କ'ଣ ଚାହୁଁନ ? ଏହା ବିନା ଯେମିତି ଆଉ କୌଣସି ଗତିମୁକ୍ତି ନାହିଁ, ଆଉ ଯେମିତି ଅନ୍ୟ ରାସ୍ତା ନାହିଁ । ଏହି ମୁହୂର୍ତ୍ତଗୁଡ଼ିକରେ ଆପଣାଙ୍କୁ ହଜାଇ ଦେବାକୁ ହିଁ ମୁଁ ଜୀବନ ବୋଲି ଭାବେ । (ତମେ ମଧ୍ୟ ଅବଚେତନ ମନରେ ମଧ୍ୟ ଏକଥା ଭାବୁଥିବ) ଏଇଠି ଆଉ କୌଣସି ଦ୍ୱନ୍ଦ୍ୱ ନାହିଁ, କୌଣସି ଦ୍ୱିତୀୟ ଚିନ୍ତା ନାହିଁ ।

ତମକୁ ତ ଲେଖିଥିଲି ଯେ ଗତ ଜନ୍ମଦିନରେ ମୁଁ ପ୍ରାୟ ପାଷାଣ ପାଲିଟି ଯାଇଥିଲି । ସବୁ pulsationର ନିର୍ମମ ହତ୍ୟାଜନିତ ଯନ୍ତ୍ରଣାରେ ମୁଁ ଯେମିତି ଗୋଟାଏ ବିକଳାଙ୍ଗ

ମଣିଷ ହୋଇଯାଇଥିଲି । ସେଦିନ ସମ୍ଭବତଃ ଏହିଭଳି ସନ୍ଧ୍ୟାଟିଏ ଯଦି ମୋତେ କ୍ଷଣିକ ପାଇଁ ଆକୃଷ୍ଟ କରିଥାଆନ୍ତା, ମୁଁ ନିଜ ବିଷୟରେ କିଛି ଭାବି ପାରିଥାଆନ୍ତି, ତମକୁ ମଧ୍ୟ କିଛି ଲେଖିପାରିଥାଆନ୍ତି । ଅଜାଣତରେ ସବୁ passionର ଅପମୃତ୍ୟୁ ଘଟିଛି । ଏହି passion ମୋତେ ଯୁକ୍ତି ବାଢ଼ିବାରେ ସାହାଯ୍ୟ କରୁଥିଲା, ସବୁକିଛି କରିବାକୁ impulse ଯୋଗାଉଥିଲା । ଏହାକୁ ନେଇ ମୁଁ ବଞ୍ଚିଥିଲି, ସୃଷ୍ଟିଛଡ଼ା ମଣିଷ ଭାବେ ଗଣା ହେଉଥିଲେ ମଧ୍ୟ ଏ ସୃଷ୍ଟିକୁ ବେଶ୍ ବୁଝି ପାରୁଥିଲି । ତମମାନଙ୍କୁ ଏହି passion ଯୋଗୁଁ ମୁଁ ଭଲ ପାଇପାରୁଥିଲି, ଆହୁରି ଆପଣାର ହେବାକୁ ଅବିରତ ଚେଷ୍ଟା ଚଳାଉଥିଲି ।

ମୋର ନୈଷ୍ଠିକତାର କ୍ରମ ବିପର୍ଯ୍ୟୟକୁ ମୁଁ ସହିପାରୁନାହିଁ । କ'ଣ ହେବ ଏ ପ୍ରତିଷ୍ଠା, ଏ ଅମାନବିକତାର ସଫଳତା ? କ'ଣ ହେବ ଯଦି ମୁଁ ଗୋଟାଏ robot ହୋଇଯାଏ ? ଗୋଟାଏ ଜ୍ଞାନରାକ୍ଷସ ପାଲଟିଯାଏ ? ସବୁ ମୋର ଆତ୍ମପ୍ରତାରଣାର ଏକ ନଗ୍ନ ପରିପ୍ରକାଶ ଛଡ଼ା ଏସବୁ କିଛି ନୁହେଁ, ଗୋଟାଏ ସଂକୀର୍ଣ୍ଣ ଜୀବନର ନାଟକ ଛଡ଼ା ଆଉ କିଛି ନୁହେଁ । ବନ୍ଧୁ ! ସତରେ ମଣିଷ ବାନ୍ଧି ହୋଇଯାଉଛି, ଜଡ଼ ପାଲିଟିଯାଉଛି । ଅତୀତ ଭୟାନକ ଭାବେ ସତ୍ୟ ଥିଲା ଆମ ପାଇଁ, ଅତୀତର ସ୍ୱପ୍ନହିଁ ଆମ ପାଇଁ ବାସ୍ତବତା ଥିଲା । ବିଗତ ଦିନଗୁଡ଼ିକର ଆମର ସରଳ (ତମେ ବୌଦ୍ଧିକ କହିପାର) ଜୀବନଯାତ୍ରା ଆମକୁ ଭଲ ମଣିଷ କରିଥିଲା । ସବୁ ଅଭିମାନ, ବନ୍ଧୁତ୍ୱ, ଭଲ ପାଇବା ଏବଂ ପ୍ରତ୍ୟେକ ପର୍ଯ୍ୟାୟରେ ଆମର ଆଗେଇ ଚାଲିବା ଆମ ସମଗ୍ର ପ୍ରାଣକେନ୍ଦ୍ରକୁ ବାରମ୍ବାର ଧୋଇଦେଉଥିଲା ।

ଆସନ୍ତାକାଲି ପାଇଁ ଆମେ ମିଥ୍ୟା ହୋଇଯାଉଛେ, ଆମେ ଅତି କରୁଣଭାବେ ଏକୁଟିଆ ହୋଇପଡୁଛେ । ତମକୁ ମାନସିଂ ବଜାର ଠିକଣାରେ ଚିଠି ଲେଖିଥିଲି । ଏହା କଲେଜ ଠିକଣାରେ ଦେଉଛି । ଆଶାକରେ ତମେ ପାଇବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ସାମାଜିକ ସ୍ଥିତି ଓ ସୌନ୍ଦର୍ଯ୍ୟ ପାଇଁ ସତରେ କ'ଣ ଗୋଟଏ dwarf ଏକାନ୍ତ ଆବଶ୍ୟକ; ଏଇଠି ଭଗବାନଙ୍କୁ ବିଶ୍ୱାସ କରୁଥିବା ମଣିଷ ତାଙ୍କୁ ପଚାରିପାରେ । ସବୁ ଜୀବନ ଭଳି dwarf (ଏଇ dwarf ପାଇଁ ମୁଁ କିଛି ହେଲେ ଓଡ଼ିଆ ପ୍ରତିଶବ୍ଦ ପାଇପାରିନାହିଁ) ମଧ୍ୟ ତା' ଜୀବନକୁ ମଧୁମୟ କରିବାକୁ ଚାହେଁ, ସୁନ୍ଦର, ସ୍ୱପ୍ନିଳ ଓ ସାର୍ଥକ ମଧ୍ୟ । କିନ୍ତୁ ସେ ଯେ ଏକାବେଳକେ dwarf । ତା'ର ସ୍ଥାନ ladderର ତଳଭାଗରେ । ଉପରକୁ ସେ ଚାହିଁ ପାରେନି । ସବୁଠାରେ ସେ ଆପେ ଆପେ ସଙ୍କୁଚିତ

ହୋଇଯାଏ । ତେଣୁ ତମେ କୁହତ, ତା'ର କ'ଣ ଭଲ ମଣିଷକୁ ଘୃଣା କରିବା ଉଚିତ ହୋଇନି ! ହଁ, ସେ ଘୃଣା କରେ ସୁସ୍ଥ ଓ ସୁନ୍ଦର ମଣିଷକୁ । ସେ ଭଲ ପାଇପାରେନି ବୋଲି ଅନ୍ୟକାହାର ଭଲ ପାଇବାକୁ ସହିପାରେନି । ସେ ପୃଥିବୀ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ତେଣୁ କେହି ବିଦ୍ୱାନ ବ୍ୟକ୍ତିର ଛାତିରେ ଛୁରୀ ବସାଇ ଦେବାକୁ ଚାହେଁ । ସେ କୌଣସି ନାରୀକୁ ଉପଭୋଗ କରିପାରେନି, ସୃଷ୍ଟି କରିପାରେନି । ତେଣୁ ସେ ଏସବୁ (sex, marriage ଏବଂ family) କୁ ଘୃଣାଚକ୍ଷୁରେ ଦେଖିଥାଏ । ରାସ୍ତାରେ ଗଲାବେଳେ କେଉଁ ସତ୍‌ସାହସରେ ସେ ମୁଣ୍ଡଟେକି ଚାଲିବ ? ପରିହାସର ପାତ୍ର ସେ ତ ସବୁବେଳେ ହୋଇଥାଏ । ତା'ର ଭଗବାନ ପୁଣି କିଏ ? ତେଣୁ ଯେଉଁ ଦୁର୍ବଳ ମଣିଷ ଭଗବାନଙ୍କର ଦ୍ୱାରସ୍ଥ ହୋଇଥାଏ, ତା'ଉପରେ ସେ ନିଜର ଅଦ୍ଭୁତ ଦର୍ଶନ ଲଦିଦିଏ । ବାଧ୍ୟ କରେ confess କରିବାକୁ ଏବଂ ଏଥିରେ ସେ ଖୁସି ହୁଏ । କାରଣ କେଉଁ ମଣିଷର ପାପ କଥା ଜାଣି ପାରିଲେ ତା'କୁ ଆହୁରି ଘୃଣା କରିହେବ । 'Dwarf' ଟି ଜନ୍ମ ହୋଇଛି ଅନ୍ୟ କାହାର ଦୟା ଉପରେ ବଞ୍ଚିବାକୁ; କ୍ରୀତଦାସ ହୋଇଯିବାକୁ । ତେଣୁ ତା'ର ସ୍ଥିତି ତା'ର ମାଲିକଙ୍କୁ ନେଇ । ସେ ମଧ୍ୟ ଚାହେଁ 'one and only and' ହେବାକୁ । ଏ ପୃଥିବୀରେ 'dwarf king' ହେବାକୁ । ଏଣୁ ସେ ଅନ୍ୟ dwarf ଦେଖିଲେ ହତ୍ୟା କରିବାକୁ ଆଗଭର ହୁଏ । ସବୁ ସତ୍ତ୍ୱେ, ସବୁ ଦୁର୍ଭାଗ୍ୟ ପରେ ବି ଯଦି ସେ ଧ୍ୱଂସ ମୁଖକୁ ଠେଲି ହୋଇଯାଏ, ତେବେ ସେ ସ୍ୱପ୍ନ ଦେଖୁଥାଏ ତା'ର ସ୍ଥିତି କିପରି ଏ ସୃଷ୍ଟିରେ ଅପରିହାର୍ଯ୍ୟ, କିପରି ସ୍ୱୟଂପ୍ରତିଷ୍ଠିତ ।

ହଁ, ଆମେ ସବୁ ଭିନ୍ନ ଭିନ୍ନ ସ୍ତରରେ ଜଣେ ଜଣେ 'dwarf' । (ଏକଥା ତମେ ମଧ୍ୟ କେବେନା କେବେ ହୃଦୟଙ୍ଗମ କରିଥିବ) ଆମେ ଜାଣୁ ଯେ ଆମେ କେଉଁଠି । କିନ୍ତୁ ଏ ସୃଷ୍ଟିର spiral ରେ ଆମେ କେଉଁଠି ଅଛୁ ଆମେ ଜାଣିନୁ । ତଥାପି ବିଶ୍ୱାସ ହୁଏନି ଯେ ଆମେ spiral ର top କୁ ଯାଇପାରିଛୁ ବୋଲି । (କେବେହେଲେ ମଧ୍ୟ ଏହା ସମ୍ଭବ ହେବନାହିଁ) ତଥାପି ଆମର ସ୍ଥିତି, ଆମର entity ଏ ପୃଥିବୀ ପାଇଁ ଏକାନ୍ତ ଲୋଡ଼ା । ଆମେ dwarf ଭଳି ସଢୁଥାଇପାରୁ । ଅସମ୍ଭବ ଯନ୍ତ୍ରଣା ପାଇଥାଇପାରୁ । ହେଲେ ଆମବିନା ସୃଷ୍ଟି ଅସମ୍ପୂର୍ଣ୍ଣ । Par Lagerkvist ଙ୍କ 'The Dwarf' ବହି ସରିଗଲା ପରେ ଏକଥା କାହିଁକି ମୋର ହୃଦ୍‌ବୋଧ ହୋଇଛି ।

ତମ ଚିଠି ପାଇଛି । ମୁଁ ଯାଇ ପାରିନି ଅବସ୍ଥାରେ ପଡ଼ି । ଏଇଠି ମଧ୍ୟ 'Ashes and Diamonds' ଛବି ଦେଖିସାରିଛି । ଆସନ୍ତା ଚିଠିରେ ଲେଖିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ମଦନଠାରୁ ସବୁ ଶୁଣିଥିବ । ଅବଶ୍ୟ ଆହୁରି ଅନେକ କଥା ତଥାପି ତମର ଜାଣିବାର କଥା, ମୋର ଜଣାଇବାର କଥା । ଅରୁଣା ତମ ପାଇଁ ଓ ଭାଉଜ ପାଇଁ କିଛି ଉପହାର ପଠାଇଛି । ତାହା ଭୁଲ୍‌କ୍ରମେ ମୁଁ ତମ ପାଖକୁ ପଠାଇ ପାରିଲିନାହିଁ । ତମେ ଖୁବ୍ ଶୀଘ୍ର ତାହା ପାଇଯିବ ।

କିଛି ଦିନ ଧରି ମୁଁ ଖୁବ୍ ଅନ୍ୟମନସ୍କ ରହୁଥିବା କଥା ତମକୁ ଲେଖି ବିଚଳିତ ବା ବିଭ୍ରାନ୍ତ କରୁନାହିଁ । ତଥାପି ଭାରି କଷ୍ଟରେ ଦିନଗୁଡ଼ିକ ଏଠାରେ କଟୁଛି- ମନେହେଉଛି ମୁଁ ହଠାତ୍ ଯେମିତି ଭାଙ୍ଗି ପଡ଼ିବି, ମନେହେଉଛି ସବୁ ସ୍ପନ୍ଦନ ଓ ଗତିଶୀଳତା ଶିଥିଳ ହୋଇଯିବ । ଯେତେବେଳେ ହୃଦୟ ବୋଲି ଚିଜଟି ଦାରିଦ୍ର୍ୟ ଦ୍ୱାରା ଜରାଜୀର୍ଣ୍ଣ ହୋଇଯାଇଥାଏ, ସେତେବେଳେ କେଉଁ ଯନ୍ତ୍ରଣା ଆକ୍ରାନ୍ତ କରୁଥାଏ, ତମେ ବୌଦ୍ଧିକ ସ୍ତରରେ ତାହା ମାପି ପାରିବ ନାହିଁ । କିନ୍ତୁ ତମେ ମୋର ବ୍ୟଥାତୁର ପ୍ରାଣଟିକୁ ଭୁଲିବ ନାହିଁ । ତମେ ବୋଧେ ଜାଣିଥିବ ଯେ ତିଲୋନିଆର ମୂଲ୍ୟାଙ୍କନ ପାଇଁ ମୁଁ ଅରୁଣାଠାରୁ ନିମନ୍ତ୍ରଣ ପାଇଥିଲି । ବିକାଶ ପଦ୍ଧତି ଓ ସାଙ୍ଗଠନିକ ପଦ୍ଧତିର ବିରୋଧାଭାସ ଉପରେ ଅତି ଉଚ୍ଚସ୍ତରରେ ଏକ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । ଅମିତ୍ ଭାଦୁଡ଼ି, ଜର୍ଜ ଭର୍ଗିସ୍, ତୁନୁ ରାୟ ଆଦିଙ୍କର ତର୍କରେ ମୁଁ ନିଜକୁ ସାମିଲ୍ କରି ମୋର ଭ୍ରମାତ୍ମକ ଓ ଅସ୍ପଷ୍ଟ ବୌଦ୍ଧିକତାକୁ ଜାହିର୍ କରିବାକୁ ଚେଷ୍ଟା କରିଥିଲି । ତର୍କ ପାଇଁ ତର୍କ କରିବା କ ବିଳାସ ନୁହେଁ ତ ଆଉ କ'ଣ ? ସମାଜ ପରିବର୍ତ୍ତନ ପାଇଁ ଦ୍ୱନ୍ଦ୍ୱ ଓ ସାଲିସ୍ ଉଭୟର ଆବଶ୍ୟକତା ରହିଛି ବୋଲି ତମେ ଜାଣିପାରିଥିବ ।

ଏଥର କେତେଗୁଡ଼ିଏ ଉପାଦେୟ ବହି ମୁଁ ଆଣିପାରିଛି । A.G. Ayerଙ୍କ Language, Logic & Truth, The Central of Philosophy, Raymond Williamଙ୍କ 'Keywords' ମୋର ତର୍କ ଓ ବିଶ୍ଳେଷଣରେ ସ୍ପଷ୍ଟତା ପାଇଁ ଆଣିଛି । Third World ଉପରେ ଲେଖାଯାଇଥିବା 'Inside Third World Today', 'How the Other Half Dies' ଏବଂ 'Third World Tomorrow' ମଧ୍ୟ ଆଣିଛି । ଏହାଛଡ଼ା Descartes ଙ୍କ Philosophical Writing ଏବଂ Dostoevsky ଙ୍କ Notes from Underground ମୋର ଲାଇବ୍ରେରୀ ପାଇଁ କିଣିଛି । ଏତେ ସବୁ ବହି ପଢ଼ିବାକୁ ସମୟ ହେବ କି ନାହିଁ ମୁଁ ଜାଣିନାହିଁ । କିନ୍ତୁ ବହି କିଣିବାରେ ମୋର ଚରମ ଆଗ୍ରହ କଥା ଜାଣିଥିବ । ଯଦି କେତେବେଳେ ମୁଁ କିଛି ଆବଶ୍ୟକୀୟ ବିଶ୍ଳେଷଣ ଦେଖେ ତମକୁ ନିଶ୍ଚିତ ଲେଖିବି । ତମେ ମୋର ଅନ୍ୟ ବହିଗୁଡ଼ିକୁ ରଖିଥିବ । 'The Dancing Wu Li Masters' କେମିତି ଲାଗିଲା ?

ତମ କଥା ଆଜିକାଲି ଜାଣିବା ପାଇଁ ଆଗ୍ରହ ନାହିଁ । ସେଇଥିପାଇଁ ତମେ ଲେଖି ନଥିଲେ ମୁଁ ବିଶେଷ ଅଭାବ ଅନୁଭବ କରୁନାହିଁ । ଜୀବନଯୁଦ୍ଧ ଲଢ଼ିବା ପାଇଁ ଆମେ ନିଜନିଜର କ୍ଷେତ୍ର ବାଛି ନେଇଛେ, ନିଜର ଭଲ ପାଇବାର ସବୁ ଛନ୍ଦ ପ୍ରାଣାତ୍ମକ କରିପାରୁଛେ; ଏଇଥିପାଇଁ ତ ଆମେ ଆଶା ହରାଉନାହେଁ, ଏଇଥିପାଇଁ ବୁଝୁଛେ । ତମେ ଭଲ ଥିବ ନିଶ୍ଚିତ ଏକ ଚିରାଚରିତ ପୃଥିବୀରେ; ଏକ ସ୍ୱୟଂକ୍ରିୟ ପ୍ରକ୍ରିୟାରେ । ତମେ ନିଜର ସଚେତନତାକୁ ଆହୁରି ଜୀବନ୍ତ କରିପାରୁଥିବ । ଭାଉଜ କେମିତି ଅଛନ୍ତି ? ପଢ଼ାପଢ଼ି କରୁଥିବେ ନିଶ୍ଚିତ । ଏଥର ଅମ୍ଳାନ ମଧ୍ୟ ଟେପ୍‌ଟିଏ ପଠାଇବାକୁ ଚେଷ୍ଟା କରୁଥିଲା । ମୁଁ ବାର୍ତ୍ତାବାହକ ହେବାକୁ ଚାହେଁ ନାହିଁ ବୋଲି କହିଥିଲି । ଅନେକ ଶୁଭେଚ୍ଛା ସହ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତାଳଚେରକୁ ଏହା ଶେଷ ଚିଠି ହେବ ବୋଧେ । ତମର ଚିଠି ମୁଁ ପାଇଛି । ଏଭିତରେ ତମକୁ ମଧ୍ୟ ଲେଖିଛି । ବେଳେବେଳେ ଅନେକକଥା ଲେଖିବାର ଆଗ୍ରହକୁ ମୁଁ ଜବରଦସ୍ତି ଚାପିଦେଉଛି । ସବୁ 'ରୁଗ୍‌ଣ ଭାବପ୍ରବଣତା' ବୋଲି ମୁଁ ନିଜକୁ ଠିକ୍ ରୂପେ ବର୍ଣ୍ଣନା କରିବାରେ ଅସମର୍ଥ ହେଉଛି ।

ସବୁକଥାକୁ ପଛରେ ପକାଇଦେଇ ଆଗକୁ ଚାଲିବାକୁ ତମେ ଆମମାନଙ୍କର ଏକ ସଂଘର୍ଷମୟ ଭାବପ୍ରବଣତା ବୋଲି କହିପାର । ତେଣୁ ସାଧାରଣ ମଣିଷସ୍ତରର ଜଡ଼ତାର ଆସ୍ତରଣ ତଳେ ଆମେ ଯେମିତି ଏକ ଲୁକ୍‌କାୟିତ ସ୍ରୋତ । ଜୀବନକୁ ଅତି ସ୍ୱଷ୍ଟ ଭାବେ ବୁଝିପାରିବା, ଅନୁଭବ କରିବା ଓ ଅର୍ଥପୂର୍ଣ୍ଣ ଭାବେ ବଞ୍ଚିରହିବାରେ ଆମେ କେତେ ମାତ୍ରାରେ ସଫଳ ହୋଇଛୁ ତାହା ହୁଏତ ଆମେ ଜାଣୁନାହୁଁ; ତଥାପି ଆମେ ବଞ୍ଚିରହୁ, ସ୍ୱପ୍ନ ଗଢୁ ଓ ଭାଙ୍ଗୁ ।

× × × ×

ତାଳଚେରରେ ତମର ଗତ କେତେଦିନ ଯେମିତି କଟିଗଲା, ସେସବୁ ତମ ପାଇଁ ଅର୍ଥପୂର୍ଣ୍ଣ ହେବ କି ନାହିଁ ମୁଁ ଜାଣିନାହିଁ । କିନ୍ତୁ ଛୋଟ ପରିସର ଭିତରେ ତମ ପଦବୀର ଗୁରୁତ୍ୱ ଅନେକ ଉପଲବ୍‌ଧି କରିଥିବେ ଏବଂ ତମକୁ ସେକଥା ମଧ୍ୟ ମନେ ପକାଇଦେଇଥିବେ । ତମ ଚାକିରୀ ଜୀବନର ଏହା ଅନ୍ୟ ଏକ ଅନୁଭୂତି । ମୋତେ ଭଲ ଲାଗୁଥିବା ମୂଲ୍ୟବୋଧକୁ ତମକୁ ଭଲ ଲାଗିଲା କି ନାହିଁ ଜାଣି ହେଲା ନାହିଁ । ମୋତେ ସୁନ୍ଦର ମନେହେଉଥିବା ଅବସ୍ଥିତି ତୁମକୁ ଆକର୍ଷଣ କରିପାରିଲା କି ନାହିଁ ତାହା ମଧ୍ୟ

ଲେଖିନାହିଁ । ମୋର ଅନୁପସ୍ଥିତିରେ ତମେ କେଉଁଭଳି କ୍ରିୟା ପ୍ରତିକ୍ରିୟା ସହ ସଂଯୋଗ ସ୍ଥାପନ କରିପାରିଛ, ତାହା କିନ୍ତୁ ମୁଁ ଜାଣିପାରିଛି ।

ଏଠାରେ Land Allottees Programme ପାଇଁ ବହୁତ ଅର୍ଥ ଆସିଛି । ତେଣୁ ବଙ୍କର୍ ଅନେକକିଛି ଯେ କରିପାରିବ ମୋର ବିଶ୍ୱାସ ହେଉଛି । କିନ୍ତୁ ମୁଁ ଜାଣିନାହିଁ ଯେ ଏମାନେ କିଛି ନିର୍ଦ୍ଦିଷ୍ଟ ଭାବେ ଯୋଜନା କରିବେ କି ନାହିଁ । ମୁଁ ଯଦି କିଛି ମତାମତ ଦେବି, ତାହା ସେମାନେ ଗ୍ରହଣ କରିବେ କି ନାହିଁ ମୁଁ ଜାଣିନାହିଁ । ଏଠାରେ ବର୍ତ୍ତମାନ ୩୦୦ ଟଙ୍କା ଦରମାରେ ମୁଁ probationer ହିସାବରେ ରହିଛି । ଏହିଭଳି ମୂଲ୍ୟାଙ୍କନରେ ମୁଁ ଭାରି ବିଦ୍ରୋହୀ ହୋଇଉଠେ । ଏଠାରେ ଯିଏ କିଛି କରୁନାହିଁ ସେ ସବୁ ସୁବିଧା ପାଉଛି । ଯିଏ ସବୁକିଛି କରୁଛି ସେ ଭୀଷଣ ଅବହେଳିତ । କିନ୍ତୁ ଏସବୁ ବିରୁଦ୍ଧରେ ସଂଘର୍ଷ କରିବାକୁ ମୋର ସମୟ ନାହିଁ । ଯେଉଁମାନେ ଏଠାରେ ମୋର ଅନ୍ତରଙ୍ଗ ହୋଇପାରିଛନ୍ତି, ସେମାନେ ବେଳେବେଳେ ମନେ ପକାଇଦିଅନ୍ତି ଯେ ଏଠାରେ କିପରି ମୋର ବ୍ୟକ୍ତିତ୍ୱ ଏବଂ ଓଜନର କିପରି ଏଠାରେ ଖିଲାପ୍ କରାଯାଉଛି । ସାରାଦେଶରେ ମିଥ୍ୟା ସମାଜସେବୀଙ୍କର ଅଭାବ ନାହିଁ । ସମସ୍ତଙ୍କର ବିପକ୍ଷରେ ସଂଗ୍ରାମ କରିବା ଏବେ ସମ୍ଭବ ନୁହେଁ । ତମେ ହୁଏତ ଜାଣିନାହଁ ଯେ ଏମାନଙ୍କର ମଧ୍ୟ ଗୋଟାଏ strong union ଅଛି । ଏମାନେ ମଧ୍ୟ ଚାହାନ୍ତି ନାହିଁ ଯେ କେହି ତଥାକଥିତ ସମାଜ ସେବା ଭିନ୍ନ କିଛି ଚେଷ୍ଟାକରୁ ।

ଏସବୁ ସତ୍ତ୍ୱେ ମୁଁ ନିଜକୁ ବିକ୍ରୟ କରିନାହିଁ । ଅକ୍ସଫାମ୍‌ରେ ଥିବାବେଳେ ମୁଁ ପ୍ରତ୍ୟକ୍ଷଭାବେ ବିପ୍ଳବ କରିଥିଲି । ଏଠାରେ ମୁଁ ଚୁପ୍‌ଚାପ୍ ସହିନେବି ଓ ସୁଯୋଗ ଦେଖି ମୁଁ ପୁଣି ମୋ ବାଟ ବାଛିନେବି ।

ମୋର ହାଇଦ୍ରାବାଦ ଟ୍ରେନିଂ ବାତିଲ୍ ହୋଇଯାଇଛି । ତେଣୁ ମୁଁ ଓଡ଼ିଶା ସେପ୍ଟେମ୍ବର ମାସ ଶେଷ ସପ୍ତାହରେ ଯିବି । ତମେ କେବେ ଦିଲ୍ଲୀ ଆସୁଛ ନିର୍ଦ୍ଦିଷ୍ଟ ଭାବେ ଜଣାଇଲେ ଆମେ ସାଙ୍ଗ ହୋଇ ଓଡ଼ିଶା ଫେରନ୍ତେ । ଏ ମର୍ମରେ ମୁଁ ଅମ୍ଳାନକୁ ଲେଖୁଛି । ଆମ ତିନିଜଣଙ୍କର ଏକାଠି କିଛି ସମୟ କାଟିବା ସମ୍ଭବପର ହେବ କି ନାହିଁ ଏବେ କହି ହେଉନାହିଁ ।

ଏଠାରେ ବର୍ଷା ନାହିଁ । ଓଡ଼ିଶାରେ ମରୁଡ଼ି ପଡ଼ିଛି ବୋଲି ମୁଁ ଖବର ପାଇଛି । ତମେ ଭଲ ଥିବ । ତମର ନୂଆ ଠିକଣା ପଠାଇବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଅମ୍ଳାନ ପାଖରୁ ଏ ଚିଠି ଲେଖୁଛି ତମ ଲେଖିଥିବା ଚିଠି ପାଇଛି ।

ଓଡ଼ିଶା ପ୍ରୋଜେକ୍‌ଟ ଯେଉଁଭଳି ରୂପରେଖ ନେବାକୁ ଯାଉଛି, ସେଥିରେ ବଙ୍କର ସହ ମୁଁ ସମ୍ପୂର୍ଣ୍ଣ ଏକମତ ନୁହେଁ । ତିଲୋନିଆ ଢାଞ୍ଚାରେ ଏକ ପ୍ରଦର୍ଶନମୂଳକ କାର୍ଯ୍ୟକ୍ରମ ସପକ୍ଷରେ ମୁଁ ଆଦୌ ନୁହେଁ । ଯେଉଁ ପରିମାଣରେ ମୁଁ ବିନିଯୋଗ କରିବା କଥା ଭାବୁଛି, ବଙ୍କର ତାହା ବୁଝିବା ସମ୍ଭବ ହେଉନାହିଁ । ଏଥିପାଇଁ ସେ ତା'ର ଦୃଷ୍ଟିକୋଣକୁ ଜାହିର୍ କରୁଛି । ଆଦିବାସୀମାନଙ୍କ ସହ କାର୍ଯ୍ୟ କରିବାବେଳେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ଦିଗକୁ ବିଚାର ନେବାକୁ ହୁଏ । ପିଇବା ପାଣି ଅପେକ୍ଷା ସାହୁକାରର ଶୋଷଣ ମୋ ମତରେ ପ୍ରଥମେ ହାତକୁ ନେବାର କଥା । ଏପରି ଏକ strategy ଚିନ୍ତା କରିବାର କଥା, ଯେଉଁଥିରେ ଗଠନମୂଳକ ଭାବରେ ଆଦିବାସୀମାନଙ୍କର କିଛି ବିକାଶ ହୋଇପାରିବ । SWRC ର ବର୍ତ୍ତମାନ method ଏଥିପାଇଁ ପ୍ରଯୁଜ୍ୟ ନୁହେଁ । ସେଥିପାଇଁ ଏଥରର ସର୍ଭେ ବେଳେ ମୁଁ problem identification ଏବଂ potential participants ଉପରେ ଜୋର୍‌ଦେବି ।

ମୋ ସହ କାମ କରିବାକୁ ଯାଉଥିବା ବ୍ୟକ୍ତିମାନଙ୍କୁ ତିଲୋନିଆ exposure ଦେବା କେତେଦୂର ଯୁକ୍ତିସଂଗତ, ମୁଁ ବିଚାର କରିଦେଖୁଛି । କିନ୍ତୁ ଏହା ଯେ ଫଳପ୍ରଦ ହେବ, ମୁଁ ଭାବୁନାହିଁ । ଜଣେ ଦୁଇଜଣଙ୍କୁ ସାଥୀରେ ନେଇଯିବାଟା ବିଶେଷ ବଡ଼ କଥା ନୁହେଁ । Joe ମୋତେ ଲେଖିଛି ତା' ସଂସ୍ଥା ପାଇଁ ଯୁବକ ଖୋଜିବାକୁ ।

ତମ ସହ ନିର୍ଦ୍ଦିଷ୍ଟ ଭାବରେ ମୁଁ କେତେଗୁଡ଼ିଏ କଥା ଆଲୋଚନା କରିବା ପାଇଁ ଭାବୁଥିଲି । ଫେରନ୍ତା ରାସ୍ତାରେ ତମ ପାଖକୁ ଦିନେ ପାଇଁ ଯିବାକୁ ମୁଁ ଅମ୍ଳାନକୁ ପ୍ରସ୍ତାବ ଦେଉଛି । ଦେଖୁଛି ତାହା ସମ୍ଭବ ହେବକି ନାହିଁ । ତିଲୋନିଆରେ ଅନେକ କାମ ମୁଁ ଛାଡ଼ିଆସିଛି । ମୋର ଅନୁପସ୍ଥିତିରେ ତାହା କେତେଦୂର ଅଗ୍ରଗତି କରିବ ମୋର ସନ୍ଦେହ ରହିଛି । ତେବେ ଜୁଲାଇ ମାସରେ ମୁଁ ପ୍ରାୟ free ହୋଇଯିବି । କେତେଗୁଡ଼ିଏ ଭଲ project ବୁଲି ଦେଖିବ ପାଇଁ ଅରୁଣା ଓ ମୁଁ ଯୋଜନା କରିଛୁ ।

ଘରୁ ଚିଠି ଆସିଛି ଯେ ବାବା ବେମାର ଅଛନ୍ତି । ଏ ସ୍ଥିତିରେ ସାମାନ୍ୟ ଉଦ୍‌ବିଗ୍ନ ହୋଇଛି । ରବି ଏଠାକୁ ଆସିବ ବୋଲି ଅମ୍ଳାନକୁ ଲେଖିଛି । ସେ କାଲି ପହଞ୍ଚିବ ।

ତମେ ତାଳଚେର ଠିକଣାରେ ଲେଖିବ ।

ଅଚ୍ୟୁତ

▯ ▯ ▯





ପ୍ରିୟ ବନ୍ଧୁ,

ତମକୁ ଏକ ଭାବପ୍ରବଣତାର ଚିଠି ଲେଖିବାକୁ ମୁଁ ସୁଯୋଗ ଓ ସମୟ ପାଇନାହିଁ । ଏଠାରେ ମୋର ଅନୁପସ୍ଥିତିରେ ମୁଁ ସମ୍ଭାଳୁଥିବା PAD(I) programme ଟି ସମ୍ପୂର୍ଣ୍ଣ ଭାବେ ଅଚଳ ଅବସ୍ଥାକୁ ଆସିଯାଇଥିଲା । ଏଥିରେ ପ୍ରାଣ ସଞ୍ଚାର କରିବାରେ ମୁଁ ଆପ୍ରାଣ ଚେଷ୍ଟା କରୁଛି । ଅନ୍ତତଃ ମୁଁ ତିଲୋନିଆ ଛାଡ଼ିବା ପୂର୍ବରୁ ଏ କାର୍ଯ୍ୟକ୍ରମର ଏକ ବଳିଷ୍ଠ ମୂଳଦୁଆ ପଡ଼ିଯିବ ବୋଲି ମୁଁ ଆଶା ରଖିଛି । ଏଇଠି ମଣିଷମାନେ ଜଡ଼ିତ ହେବାର ବାହାନା କରନ୍ତି ବୋଲି ତମେ ଜାଣିଥିବ । କ୍ରମାଗତ ଭାବେ ଏମାନେ ଭୁଲ୍ କରି ଆସୁଛନ୍ତି । କିନ୍ତୁ ସଚେତନତାର କୌଣସି ଆଭାସ ଏଠାରେ ମିଳୁନାହିଁ । ବେଳେବେଳେ ବିଦ୍ରୋହର ସମସ୍ତ ଉତ୍ତେଜନାକୁ ମୁଁ ଦାବି ଦେଉଛି । ତିଲୋନିଆର କାର୍ଯ୍ୟପଦ୍ଧତିରେ ସଂଶୋଧନ ଆଣିବାରେ ମୁଁ ବ୍ୟର୍ଥ ହୋଇଯାଇଛି ।

× × × ×

ଗତକାଲି ଜହ୍ନରାତି କଥା ମୋର ଅନେକ ଦିନ ପର୍ଯ୍ୟନ୍ତ ମନେରହିବ । ରାମପୁରୀ ଗାଁରେ ମୁଁ ଗ୍ରାମସଭା ଡାକିଥିଲି । ତିଲୋନିଆ ମାପଦଣ୍ଡରେ ଏ ପ୍ରକାରର ସଭା ଆହ୍ୱାନ କରିବା ଏକ ଅଭିନବ ପରୀକ୍ଷା ବୋଲି କହିବି । ସମ୍ପୂର୍ଣ୍ଣ ଗ୍ରାମ୍ୟସ୍ଥିତି ସହ ଆପଣାକୁ ଜଡ଼ିତ କରିବାର ଅଭୀପ୍ସା ନେଇ ମୁଁ ସେଠାକୁଯାଇଥିଲି । ଗ୍ରାମ ସଭା ହେଲା ନାହିଁ । ମୁଁ ଚାହୁଁଥିବା ମୁତାବକ ଘଟିଲା ନାହିଁ । କିନ୍ତୁ ଅନ୍ୟକିଛି ମୋର ଅନୁଭୂତିକୁ ବଳିଷ୍ଠ କରିଛି ।

ତମର ଯଦି ମନେଥିବ, ଗୋପବନ୍ଧୁ ରାମପୁରା ଗାଁର ତିନୋଟି ସ୍କୁଲ୍‌ଛାତ୍ରଙ୍କ ସହ ଆବେଗମୟ ସ୍ତରରେ ସଂଶ୍ଳିଷ୍ଟ ହୋଇଥିଲା । ସେମାନଙ୍କ ପାଇଁ ଉପହାର ମଧ୍ୟ ପଠାଇଥିଲା । ଅଚାନକ ସେମାନେ ମୋତେ ଭେଟିଥିଲେ ଓ ଗୋପବନ୍ଧୁର ବନ୍ଧୁ ହିସାବରେ ମୋତେ ଅନେକ କଥା ପଚାରିଥିଲେ । ମୋତେ ଗାଁର ଗଳିକନ୍ଦି ଦେଖାଇଥିଲେ । ଜହ୍ନ ଆଲୁଅ ତଳେ ଗୀତନାଚ ହେଲା । କବାଡ଼ି ଖେଳ ହେଲା, ଗପକାହାଣୀ କୁହାଗଲା । ସେମାନେ ସବୁ ମୋର ଆଖି ଆଗରେ ଧୂଳଧୁସରିତ ହୋଇଗଲେ । ମୋର ସ୍ଥିତି ସଚେତନତାକୁ ସେମାନେ ଉଦ୍‌ଜୀବିତ କରିଥିଲେ ।

ସଂସାରର ମାୟାବନ୍ଧନ କଥା ମୁଁ ବୋଧେ ବୁଝେ ନାହିଁ । ତମେ ଡୋରି ବାନ୍ଧିବା କଥା କହିଲେ ମୁଁ ସାଧାରଣ ଭାବେ ଡରିଯାଇଥାଏ । ଅନାହୂତ ଭାବେ ଏ ପ୍ରକାରର ବନ୍ଧନ ମୋତେ ସାହସ ଦେଇଥାଏ ।

× × × ×

ଏଠାରେ ଜହ୍ନରାତିମାନଙ୍କରେଏକାନ୍ତ ମୁହୂର୍ତ୍ତମାନଙ୍କୁ ଆପଣାର କରିହୁଏ । ଇଚ୍ଛାହୁଏ ଏକ ଅସରନ୍ତି ଭାବନାର ଖିଅକୁ ଧରି ଆଗକୁ ଆଗକୁ ଚାଲିବାକୁ । ଇଚ୍ଛାହୁଏ ଆପଣାର ଅବସ୍ଥିତିକୁ ଆହୁରି ସଙ୍କୁଚିତ କରିଦେବାକୁ । ଆହୁରି ଇଚ୍ଛାହୁଏ ଏ ମଣିଷର ଅଙ୍ଗପ୍ରତ୍ୟଙ୍ଗ ନଥାନ୍ତା, ମସ୍ତିଷ୍କ ନଥାନ୍ତା; କେବଳ ହୃଦୟ ଥାଆନ୍ତା, ଯାହା ଭିତରେ ବନ୍ଧୁତା ଓ ଭଲ ପାଇବାର ଭଲିକିଭଲି ଫୁଲ ଫୁଟୁଥାନ୍ତା! ତୋଫା ଜହ୍ନରାତି ଯେତିକି ଯେତିକି ଗଭୀର ହୁଏ ମନପ୍ରାଣ ଯନ୍ତ୍ରଣାରେ ଭରିଯାଏ । ଆଖିର ନିଦ କେଉଁଠି ଲୁଚିଯାଏ । କର୍ମକ୍ଳାନ୍ତ ଜୀବନର ଗୋଟାଏ ଅଧ୍ୟାୟ ସରିଯିବାକୁ ବସେ । ତମେମାନେ ଭାରି ମନେପଡ଼ । ତମେମାନେ ସବୁ ସ୍ମୃତିର ଖୋଳପା ତଳୁ ଭାରି ସତେଜ ଜଣାପଡ଼ ।

ଆଉ କେତେ ଦିନ ଏ ଅସହଜ ଜୀବନ ସହ ସଂଘର୍ଷ କରିବାକୁ ହେବ କିଏ ଜାଣେ! ଜହ୍ନରାତି ଶେଷରେ ଚନ୍ଦ୍ର ମଳିନ ହୋଇଯାଇଥାଏ । ଏ ଜୀବନର ଶେଷାଂଶରେ ଚରମ ନିର୍ଲିପ୍ତତା ରାଜତ୍ୱ କରେ ।

ଅଚ୍ୟୁତ

▯ ▯ ▯

*"Life is very long*
*Between the desire*
*And the spasm*
*Between the potency*
*And the existence*
*Between the essence*
*And the descent*
*Falls the shadow*
*For thine is the kingdom."*
*(T.S.Eliot - The Hollow Man)*

ପ୍ରିୟ ବନ୍ଧୁ,

ଜୀବନକୁ ମୁଁ ଯୁକ୍ତି ମାଧ୍ୟମରେ ଉପଭୋଗ କରିବି ବୋଧେ । ଏଇଠି ଗତ କେତେବର୍ଷର ଦ୍ୱନ୍ଦ୍ୱ ଆପଣାର ଭୂମିକା ଶେଷ କରି ନିଜକୁ ସ୍ୱେଚ୍ଛାରେ ଅପସାରିତ କରିନେଇଛି । ଏବେ ମୁଁ ନିଜକୁ ହତଭାଗ୍ୟ ବୋଲି ମନେ କରୁନାହିଁ । ଆଜିକାଲି ମୁଁ କେବେହେଲେ ଅସ୍ଥିରମନା ହେଉନାହିଁ । ପର୍ଦ୍ଦା ଉହାଡ଼ରେ ଲୁଚିଥିବା ଖିଆଲ୍‌ମାନେ ଥକିଯାଇଛନ୍ତି । ଶିହରଣ ସୃଷ୍ଟି କରୁଥିବା ପ୍ରବୃତ୍ତିମାନେ ବରଫାବୃତ୍ତ ପାହାଡ଼ଗୁମ୍ଫାରେ ଲୁଚିଯାଇଛନ୍ତି ।

ମୁଁ ଆଜି ଭଲ ପାଇପାରୁଛି ! ଅଭିନବ ମୁହୂର୍ତ୍ତମାନଙ୍କରେ ମୁଁ ମୁକ୍ତ ମଣିଷ । ସଚେତନତାର ସୀମାରେଖା ବାହାରେ ମୁଁ ମୋର ସ୍ଥିତିକୁ ନିୟନ୍ତ୍ରଣ କରୁଛି । ସଚେତନତାର ପରିଧି ଭିତରେ ମୁଁ ବି ଗତିହୀନ (ଅଥବା ଗତିଶୀଳ); ମୁଁ ନିଜକୁ ଜିତି ପାରୁଛି ।

× × × ×

ଏଠାକୁ ଫେରି ଆସିବା ପୂର୍ବରୁ ଅମ୍ଳାନ ପାଖରେ ମୁଁ ଦି'ଦିନ କାଟିଲି । ବିଶ୍ୱ ପୁସ୍ତକମେଳାରେ କିଛି ଉଲ୍ଲେଖନୀୟ ବହି ମିଳିଲା ନାହିଁ । ଅମ୍ଳାନର ଲାଇବ୍ରେରୀ ପାଇଁ କେତୋଟି ଶିଶୁବହି କିଣିଲି । ସେ ନିଜେ ଆଗରୁ T.E.Lawrence ଙ୍କ Seven Pillars of Wisdom କିଣିଥିଲା । ମୁଁ ସାମାନ୍ୟ ନିରାଶ ହେଲି ।

ଅମ୍ଳାନ ସହ insensitive ହୋଇଯିବା ସମ୍ପର୍କରେ ଯୁକ୍ତି କରିବାର ତୀବ୍ର ଇଚ୍ଛା ମୁଁ ଦମନ କରିଥିଲି । ତାହାକୁ ଚିଠି ଲେଖିବା କଥା ମୁଁ ଭାବୁଛି । ବଙ୍କର୍ ମୋର ଓଡ଼ିଶା ଯୋଜନା ଉପରେ ଗୁରୁତ୍ୱ ଦେଉଛି । ଗତ ଥର ବିଶେଷ କିଛି ସୂଚନା ମୁଁ ସଂଗ୍ରହ କରି ନପାରିବାରେ ସେ ସାମାନ୍ୟ ବ୍ୟସ୍ତ ହେଉଥିଲା । ତଥାପି ମୋ ପାଇଁ ବଡ଼ ଓଡ଼ିଶା ମାନଚିତ୍ର ଦିଲ୍ଲୀରୁ ଆଣିଦେଇଛି । ମେ' ମାସର ଶେଷ ଆଡ଼କୁ ମୁଁ ପୁଣି ଓଡ଼ିଶା ଯିବି କିଛି ଦିନ ପାଇଁ । ବର୍ଷା ପୂର୍ବରୁ project proposal ଲେଖାଯିବ ବୋଧେ । ବର୍ଷା ଦିନମାନଙ୍କରେ କୋରାପୁଟ୍‌ର ଗଭୀର ଜଙ୍ଗଲରେ ମୁଁ ମୋର ମୂଳଦୁଆ ପକାଉଥିବି ।

ତମେ କେବେ ଦିଲ୍ଲୀ ଆସୁଛ, ନିର୍ଦ୍ଦିଷ୍ଟ ଭାବେ ଲେଖିଲେ ମୁଁ ଦିନେ ଦି'ଦିନ ପାଇଁ ଯିବାକୁ ଚେଷ୍ଟା କରନ୍ତି । ଅମ୍ଳାନର ଇଚ୍ଛା ଯେ ଆମେ କିଛି ଦିନ ଏକାଠି ରହନ୍ତେ । ମୁଁ କିନ୍ତୁ ତିଲୋନିଆରେ ତମମାନଙ୍କୁ ଦେଖିଲେ ବିଶେଷ ଖୁସି ହୁଅନ୍ତି ।

ଭଞ୍ଜ ପାଖକୁ ଲେଖିବାକୁ ନିଷ୍ପତ୍ତି ନେଇ ଚିଠିଟିଏ ଟାଇପ୍ କରୁଥିଲି ଓ ତାହା ଅଧାରେ ପଡ଼ିରହିଛି । ଗୋପବନ୍ଧୁ ପାଖକୁ ଏ ଭିତ୍‌ରେ ମୁଁ ଲେଖୁଛି ।

ତମ ଉପରେ ମୋର ମତାମତ କିଛି ଦିନ ପାଇଁ ମୁଁ ଦେବା ଉଚିତ ବୋଲି ମନେକରୁନାହିଁ । ତମେ ସଂସାର ପାତିବା କଥାରେ ଯେମିତି ସାମାନ୍ୟ ବ୍ୟସ୍ତ ମନେହେଉଛ । ଅବଶ୍ୟ ମୁଁ ଏହାକୁ ସ୍ୱାଭାବିକ କହିବି । ତମେ ମୁଁ ଦେଇଥିବା ବହି ପଢ଼ିଲେ ମତାମତ ଲେଖିବ । ଏଠାରେ ଅନୁରିତାଠାରୁ Zen and Art of Motorcycle Maintenance ଆଣିଛି । ପଢ଼ିବାକୁ ଯଥେଷ୍ଟ ସମୟ ମିଳୁନାହିଁ । ମୁଁ ଭାବୁଛି Brothers Karmazov ଆଉଥରେ ପଢ଼ିଲେ ଭଲ ହୁଅନ୍ତା । ତମେ ଭଲ ଥିବ । ନାନୀ ଓ ତା' ପରିବାରର ସମସ୍ତଙ୍କୁ ମୋର ଶୁଭେଚ୍ଛା ଓ ସମ୍ମାନ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଚିଠି ପାଇଲି ।

ଆଜିକାଲି ମୁଁ ଭୀଷଣ ସଙ୍କୁଚିତ ହୋଇପଡୁଛି । ସଂସାରର ବୋଝ ମୁଁ ବୋହିପାରୁନି । ସମ୍ବନ୍ଧଟା ଏକାବେଳକେ ଦେବାନେବା ଉପରେ ପର୍ଯ୍ୟବଶିତ ହୋଇଥିବା କଥା ମୁଁ ଅନୁଭବ କରିପାରୁଛି । ଗୋଟାଏ ପୃଥିବୀରେ ତମମାନଙ୍କ ସହ ମୋର କେତେ ପରିଚୟ ଅଛି, କେତେ ନିବିଡ଼ତା ଭରିରହିଛି ସମ୍ପର୍କରେ । ମାତ୍ର ଅନ୍ୟ ଏକ ପୃଥିବୀରେ ଯେମିତି ମୁଁ ଏକାବେଳକେ ଅଜଣା । ଏଇ ହେଉଛି ମୋର ଭାଙ୍ଗିପଡୁଥିବା ମନର ମଣିଷ । ଦେଖ, ମୁଁ ମହାମାନବ ହେବା କଥା କେବେହେଲେ ଭାବି ନାହିଁ । ମୋ ପାଇଁ ପାପ କ'ଣ ମଧ୍ୟ ମୁଁ ଜାଣିନାହିଁ । ସଂସାରରେ ମୁଁ ମୋର କଥା ଓ ଭାବଧାରାକୁ ଖୋଜେ, ମୋର ଆପଣାର ବାଟରେ ଗଲାବେଳେ ମୁଁ ଡରିଯାଏନି । ମୋର ହଜିଯିବାଟାକୁ ମୁଁ ଗୋଟାଏ virtue ବୋଲି ଭାବେ । ତମମାନଙ୍କର ତଥାକଥିତ ସଫଳତାକୁ ମୁଁ ପଦାଘାତ କରେ । ଆଜି ସୁଦ୍ଧା ମୁଁ ଆପଣାର ମୁକ୍ତିର ପଥ ଖୋଜୁଛି, ଯେଉଁଠି ତମମାନଙ୍କର ଏ ସଂସାର ମୋତେ ଆଉ ପୁନଶ୍ଚ ପଛକୁ ଟାଣି ଆଣିବ ନାହିଁ ।

ଚିତ୍ତରଂଜନ ଦାସଙ୍କ କଥା ଅନେକ ଦିନରୁ ମୁଁ ଭୁଲିଯାଇଛି । ଏ ଲୋକଟି ମୋ ଭଳି ମଣିଷର କଥା କେବେହେଲେ ଚିନ୍ତା କରିନାହିଁ । ଧର୍ମଭୟ ଉପରେ ନିର୍ଭର କରି ସେ ଲେଖିଥିବା ସବୁ sermons ଗୋଟାଏ ପ୍ରକାର morbid sensitivity । ସଂସାରର ସବୁ ରାସ୍ତା ଜାଣି ନଥିବା ଲୋକ ବୋଧେ ଆପଣାର ବାଟକୁ ଏକମାତ୍ର ଗତିପଥ ବୋଲି ଧରିନେଇଥାଏ । ସେଇ ଅନୁସାରେ ଚିତ୍ତରଂଜନ ଦାସ ମୋ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । 'ଜାତିରେ ମୁଁ ଯବନ'ର କେତେ ଅଧ୍ୟାୟ ପଢ଼ିଥିଲେ ମଧ୍ୟ ସେତେ ଗୁରୁତ୍ୱ ଦେଇ ନାହିଁ ।

ଚୈତ୍ରର ଏ ଶେଷ କେତେ ଦିନ ଏଇଠି ଜମୁଥିଲା । ଏ ସହରର ଲୋକେ ଉଜାଗର ରହି ପାଲା କି ଦଣ୍ଡନାଚ ଉପଭୋଗ କରୁଥିଲେ । ଉତ୍ତାପ ତ କ୍ରମଶଃ ବଢୁଛି ଏଇଠି । ଜହ୍ନରାତିରେ ତେଣୁ ଏହା ବେଶ୍ ଭଲ engagement ଥିଲା । ମୁଁ ତ ରାତିରେ ଘରୁ ବାହାରିପାରେନି । ଛାତ ଉପରେ ଶୋଇ ରହି ସବୁ ବିକ୍ଷିପ୍ତ ଭାବନାକୁ ଏକାଠି କରେ । ବାଣୀବିହାର କଥା ମନେପଡ଼େ । (ଏହି ଛାତ ଉପରେ ଶୋଇ ରହି କିଛି ଅନୁଭବ କରିଥିବା କଥା ମୁଁ ଅନେକ ଥର ତମକୁ ଲେଖିଥିବି ।)

ତମେ ଓ ଅନ୍ୟମାନେ ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଏଥର ନବବର୍ଷରେ ଶୁଭେଚ୍ଛାର ନିଦର୍ଶନସ୍ୱରୂପ ତମଠାରୁ ଚିଠି ଏବଂ ଗୋପବନ୍ଧୁ ଓ ଅମ୍ଳାନଠାରୁ କାର୍ଡ଼ ପାଇଛି । କାହାକୁ କେଉଁଭଳି ଉତ୍ତର ଲେଖିବି, ମୁଁ ଜାଣିପାରୁନାହିଁ । ଗୋପବନ୍ଧୁର ଏବେକାର ଠିକଣା ମଧ ମୁଁ ଜାଣିନାହିଁ । ଅମ୍ଳାନ ତିସ୍ ହଜାରୀ ରେରହୁଛି କି ନାହିଁ ଏସମ୍ପର୍କରେ ଜଣାଇନାହିଁ ।

ତମେ ହୁଏତ ବିଗତ ଦଶନ୍ଧିର ଇତିହାସକୁ ଆପେକ୍ଷିକ ସତ୍ୟର ଏକ ଚରମ ଆବିଷ୍କାର ବୋଲି କହି ମୋର ସ୍ୱପ୍ନ ଭାଙ୍ଗିଦେଇଛ । ଗତ ଦଶବର୍ଷ ଧରି ଆମ ଉପରେ କେତେ କ'ଣ ଅତ୍ୟାଚାର କରିଯାଇଛନ୍ତି । ଆମେ ସବୁ ନିଃସହାୟ ଅବସ୍ଥାରେ କେବଳ ଅନାଗତ ଭବିଷ୍ୟତକୁ ଆଶାୟୀ ଦୃଷ୍ଟିରେ ଅପେକ୍ଷା କରିଛେ । ସମୟ ଚକ୍ରବାତ ଭଳି ଆମ ଉପରଦେଇ ପ୍ରବାହିତ ହେଲାବେଳେ ଆମକୁ ଧ୍ୱସ୍ତବିଧ୍ୱସ୍ତ କରିଦେବାରେ ଦ୍ୱିଧା ପ୍ରକାଶ କରିନାହିଁ । ବନ୍ଧୁତାର ଭିନ୍ନଦିଗ ଆବିଷ୍କାର କଲାବେଳେ ଆମ ପାଇଁ ମିଳିଛି କେବଳ କାନ୍ଥ । ଭଲ ପାଇବାକୁ ଅନୁଭବ କଲାବେଳେ ଆମପାଇଁ ଫୁଲ ମିଳିନାହିଁ, କେବଳ ମିଳିଛି କଣ୍ଟା । ଗୋଟାଏ ମୂଲ୍ୟବୋଧର ସିଡ଼ିଦେଇ ଉପରକୁ ଉଠିବାକୁ ଆମର ପ୍ରଚେଷ୍ଟା ସବୁବେଳେ ବ୍ୟର୍ଥ ହୋଇଯାଇଛି । ସନ୍ଧାନ ଆମର ଜାରି ରହିଛି ଏକ ଅପହଞ୍ଚ ଇଲାକାରେ; ସଚେତନତା ଆମର ତରଙ୍ଗାୟିତ ଗତିରେ ନିମ୍ନମୁଖୀ ହୋଇଯାଇଛି । ଜୀବନବାଦରୁ ମାନବବାଦକୁ ରାସ୍ତା କେବଳ ଦୁର୍ଗମ ମନେହୋଇଛି । ସତ୍ୟର ଉପରେ ପରସ୍ତ ପରସ୍ତ କୁହେଳିକା ଛାଇ ଯାଇଛି । ଆଲୋକର ସର୍ବୁ ବିସ୍ମୃତି ଭିତରେ କେଉଁଠୁ କେଜାଣି ଅମାଅନ୍ଧକାରର ଦୁର୍ଗ ଆପେ ଗଢ଼ିଉଠିଛି, ଯେଉଁଠି ବନ୍ଦୀଶାଳାରେ ଆମେ ବନ୍ଦୀ ହୋଇଯାଇଛେ ।

ମୋର ଗତ ଦଶବର୍ଷର ଜୀବନକୁ ମୁଁ ଏକ ଅପରାଧୀର ଜୀବନ କହିବି ଏବଂ ଅପରାଧୀ ପାଇଁ ସତ୍ୟ ସମ୍ପର୍କରେ ସନ୍ଧାନ ଓ ସଚେତନତା ସବୁବେଳେ ଆପେକ୍ଷିକ । ଏଇଥିପାଇଁ ଆଜି ଯେତେବେଳେ ମୁଁ ଆପଣାର ସ୍ଥିତି ଭିତରକୁ ଜୀବନର ଉଦ୍ଦୀପନା ସଂଚାର କରିବାକୁ ଚାହିଁଛି, ମୁଁ ନିଜକୁ ପଙ୍ଗୁ ଅଥର୍ବ ଅନୁଭବ କରିଛି । ଗତ ଦଶବର୍ଷ ଧରି ମୁଁ ନିଜକୁ ପତନାଭିମୁଖୀ ହେବା ଆବିଷ୍କାର କରିଛି । ଯୌନକ୍ଷୁଧା ଓ ବୌଦ୍ଧିକ ଅଭିଯାନର କ୍ରୀଡ଼ାପୁତ୍ତଳିକା ରୂପେ ମୁଁ କେବଳ ନିଜକୁ ନାଚିବା ଦେଖିଛି । ଗୋଟାଏ ସାଧାରଣ ମଣିଷର ମାନବିକତା ଓ ଉର୍ଦ୍ଧ୍ୱମୁଖୀ ଚେତନାଠାରୁ ମୁଁ ବହୁଦୂରରେ । ଗୋଟାଏ ସାଧାରଣ ମଣିଷର ହୃଦୟ ଆଜି ମୋ ପାଖରେ ଅର୍ଥହୀନ ।

ତଥାପି ମୁଁ ମୁକ୍ତିର ସ୍ୱପ୍ନ ଦେଖୁଛି । ମୁଁ ପଛକୁ ଅନାଇନାହିଁ । ଆଜି ଆପଣାର ନିର୍ବାସନ, ସ୍ଥିତପ୍ରଜ୍ଞତା, ପ୍ରତ୍ୟୟ ସବୁକୁ ଏକାକାର କରି ମୁଁ ଆପଣାର existential situation କୁ ଖୋଜୁଛି । ପ୍ରଚଳିତ ପୃଥିବୀରେ ମୁଁ ଯେମିତି ମୋ ନିଜର ଶବବାହକ ।

ସେଇଥିପାଇଁ existential situation କୁ ମୁଁ ଗୋଟାଏ ବିପରୀତଧର୍ମୀ ପୃଥିବୀ ସହ ସାମିଲ୍ କରୁଛି । ଏଇଥିପାଇଁ ମୁଁ ଜୀବନର ଏଇ ଶେଷ କେତେଦିନ ସଂଘର୍ଷରତ । ଏ ସ୍ଥିତିର ପୃଥିବୀରେ ଯେଉଁମାନେ ଲିପ୍ତ ସେଇମାନେ ମୋର ସାଥୀ; ସେଇମାନେ ମୋର ସବୁକିଛି । ସାଧାରଣ ମଣିଷଟିଏ କାହିଁକି ଯେ ଏତେ ନୀରବ ରହୁଛି, ମୋର ତାହା ଜ୍ଞାନସୀମାର ବାହାରେ । ଅପରାଧୀଟିଏ କାହିଁକି ଯେ ଆପଣାର ମୁହଁ ଉପରେ ମୁଖାଟିଏ ପିନ୍ଧି ରାଜରାସ୍ତାରେ ଦର୍ପର ସହ ଚାଲିପାରୁଛି ମୁଁ ବୁଝିପାରୁନାହିଁ । ଏଇଠି ମୁକ୍ତି ସହ ବନ୍ଧୁତା ଓ ଭଲ ପାଇବାକୁ ସଂଶ୍ଳିଷ୍ଟ କରି ନିଜକୁ ଅତିମାନବ କରିବାର ପ୍ରହସନ ତଥାପି ଆଶ୍ଚର୍ଯ୍ୟଭାବେ ସୃଷ୍ଟି କରିପାରୁଛି । ପ୍ରତିମୁହୂର୍ତ୍ତରେ ମୁଁ ଚାହୁଁଛି ଯେ କାଲି ତମେ ଯେଉଁମାନେ ମୋତେ ଆପଣାର କରୁଥିଲ ଓ ମୋର ଆପଣାର ମନେହେଉଥିଲ, ମୋତେ ଭୁଲିଯାଅ । ମୋର ପାପାସକ୍ତ ଜୀବନଠାରୁ ନିରାପଦ ଦୂରତା ରଖି ତମେମାନେ ନିଜକୁ ଭଲ ମଣିଷ ରୂପେ ଗଢ଼ିଯାଅ ।

ତମେ ତ ବଙ୍କର୍‌କୁ ଜାଣିଛ । SWRC ର ପଦ୍ଧତିକୁ ଜାଣିଛ । ଏଠାରେ ମୋର ଜୀବନ ସମ୍ପୂର୍ଣ୍ଣ ଅଯୌକ୍ତିକ, ମୋର ଅଭିବୃଦ୍ଧି ଗୁରୁତର ଭାବେ ବ୍ୟାହତ । ମୁଁ ଏଠାରୁ ସୁଯୋଗ ଖୋଜୁଛି ନିଜକୁ ଅପସାରଣ କରିନେବା ପାଇଁ । ସେଇଥିପାଇଁ ମୁଁ ନିଜକୁ ପ୍ରସ୍ତୁତ କରୁଛି । ବଙ୍କର୍ ତାହାର ସାମ୍ରାଜ୍ୟ ବିସ୍ତାର କରିବାର ଅଭିଳାଷରେ ସେ ମୋତେ ଓଡ଼ିଶା ଶାଖା ପାଇଁ ପ୍ରେରଣା ଦେଉଛି । ମୁଁ ଜାଣୁଛି ଏଥିରେ ମୋର କେତେ ଭୂମିକା ରହିବ । କିନ୍ତୁ ଯେପର୍ଯ୍ୟନ୍ତ ତମ ନିଜର ଓଡ଼ିଶା ଶାସନରେ ଏବେ ନିର୍ଦ୍ଦିଷ୍ଟ ସ୍ଥାନ ନିରୂପିତ ହୋଇନାହିଁ, ସେ ପର୍ଯ୍ୟନ୍ତ ମୁଁ ସାଲିସ୍ କରିବାକୁ ପ୍ରସ୍ତୁତ । ମୋର କାର୍ଯ୍ୟପଦ୍ଧତିରେ ଅର୍ଥର ଆବଶ୍ୟକତା ବିଶେଷ ନାହିଁ । ତଥାପି କିଛିମାତ୍ରାରେ inputs ଦେବାକୁ ପଡ଼ିବ । ଏଇ ଲକ୍ଷ୍ୟରେ ବାହାରୁ କିଛି ସାହାଯ୍ୟ ନେବାକୁ ପଡ଼ିବ । ଏଠାରେ ଆଉ ମନ ଲାଗୁନାହିଁ । ଏଠାରେ ମଣିଷମାନଙ୍କ ସହ ସମ୍ବନ୍ଧ ହ୍ରାସ ହେଉଛି । ମୁଁ ଓଡ଼ିଶା ଫେରିଯିବାକୁ ବ୍ୟାକୁଳ ହେଉଛି ।

× × × ×

ଆଜି ପର୍ଯ୍ୟନ୍ତ ଅମ୍ଳାନ ଲେଖିନାହିଁ । ସୁଧାକର ତିଲୋନିଆକୁ ଗୋଟିଏ ମାତ୍ର ଚିଠି ଲେଖିଛି । ଆମମାନଙ୍କ ବନ୍ଧୁମାନଙ୍କର ଜୀବନସ୍ରୋତ କେଉଁଭଳି ଚାଲିଛି, ଆଜି ଜାଣିବାକୁ ସୁଯୋଗ ଓ ସମୟ ନାହିଁ । ପ୍ରଭାତ କାହିଁକି ଅସ୍ଥିରତା ଭିତରକୁ ଗୋଡ଼ ବଢ଼ାଉଛି, ମୁଁ ବୁଝିପାରୁନାହିଁ । ବେଳେବେଳେ ଏଇମିତି ପାରିପାର୍ଶ୍ୱିକ ଚାପ ଆସିବ ଓ ପୃଥିବୀ ଭିତରର ମଣିଷ ସାଲିସ୍ କରିବାକୁ ବାଧ ହେବ । ପ୍ରଦୀପ ଆଜିକାଲି କ'ଣ ଭାବୁଛି ? ସମସ୍ତଙ୍କୁ ନବବର୍ଷର ଶୁଭେଚ୍ଛା ଜଣାଇବାକୁ ହେବ ଅଥଚ ମୁଁ କାହାକୁ ଲେଖିପାରୁନାହିଁ ।

× × × ×

ଅନେକ ଦିନ ପରେ ମୁଁ 'ଗୋଗଲ୍'ଙ୍କ କାହାଣୀ ପଢୁଛି । କିଛି ଦିନ ଧରି "Taras Bulba" ପଢୁଥିଲି । ଆଜିକାଲି ମାନସିକ ଅସ୍ଥିରତା ହେତୁ କିଛି ଭାବି ହେଉନାହିଁ କି କିଛି ପଢ଼ି ହେଉନାହିଁ ।

ତମେ ଭଲ ଥିବ । ସବୁ କଥା ଲେଖିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ଏ ଭିତରେ ମୁଁ ଦୁଇଟି ଚିଠି ଲେଖିସାରିଛି । ଏଠାରେ ଯେଉଁ ଗତିରେ ଘଟଣାମାନ ଘଟୁଛି, ତାହା ସହ ସଂଶ୍ଳିଷ୍ଟ ହୋଇଯାଇ ମୁଁ ଦେଖୁଛି ମୋ ଦ୍ୱାରା ଆଉ ଅଧିକ ଦିନ ରହିହେବ ନାହିଁ । ଏ ସଂସ୍ଥାରେ ଅନେକ ମତବାଦ-ବ୍ୟକ୍ତିଗତ ସ୍ତରରେ ଖୁବ୍ ପାର୍ଥକ୍ୟ । ସବୁଠି କ୍ଷମତା ହାସଲ କରିବା ପାଇଁ ଲାଳସା । ଯେଉଁ ଆଦର୍ଶବାଦର ବଥକୁ ଆଶ୍ରା କରି ଆମେ ସବୁ ସଂଘର୍ଷରତ, ତାହା ମୁଖ୍ୟତଃ ଗୌଣ । ବୃଥା ଅହମିକା ଏବଂ ଛଳନା ସହ ଏଠାକାର ପରିବେଶ ଖୁବ୍ ବିଷମୟ ।

ଅତି ସ୍ୱଷ୍ଟଭାବେ ମୁଁ ଘୋଷଣା କରିଛି ଯେ ମୋତେ ଜୁଲାଇ ଏକ ତାରିଖ ସୁଦ୍ଧା ଓଡ଼ିଶା ଫେରିଯିବାକୁ ହେବ । ଅବଶ୍ୟ କାର୍ଯ୍ୟକ୍ଷେତ୍ରରେ ମୋର ଉପସ୍ଥିତି ଉପଲବ୍ଧି ହୋଇଛି କି ନା ମୁଁ ଜାଣିନାହିଁ । କିନ୍ତୁ ଜଡ଼ିତ ହୋଇଯିବାକୁ ଚେଷ୍ଟା କରି ମୁଁ ସାଧମତେ ଏଠାରେ କାର୍ଯ୍ୟ କରୁଛି ଓ ଶେଷପର୍ଯ୍ୟନ୍ତ କରିବି । ବଙ୍କର ଏ ଭିତରେ ଖୁବ୍ ଆଗ୍ରହ ଦେଖାଇଛି । ମୋତେ ପ୍ରତିଶ୍ରୁତି ଦେଇଛି ଯେ ଯେତେ ଶୀଘ୍ର primary survey ହୋଇଯିବ, ସେତେଶୀଘ୍ର ସେ project proposal ଲେଖିବ । କାମ ଆରମ୍ଭରେ ବିଳମ୍ବ ହେବନାହିଁ ବୋଲି ତା'ର ବିଶ୍ୱାସ । ଏ ଭିତରେ ମୋତେ ଥରେ ଦୁଇଥର ଓଡ଼ିଶା ଯିବାକୁ ହେବ ବୋଲି ତାହାର ମତ । 'Bread For the World' ନାମକ ସଂସ୍ଥାରୁ କିଛି action-oriented programme ପାଇଁ ସାହାଯ୍ୟ ମିଳିଯିବ । ଏହାଛଡ଼ା Handpump ଲଗାଇବା ପାଇଁ UNICEF ଆଦି ସଂସ୍ଥାରୁ ସାହାଯ୍ୟ ଆଣିବାରେ ଅସୁବିଧା ହେବନାହିଁ । କେଉଁ କେଉଁ ଯୋଜନାମାନ ହାତକୁ ନେବି, ମୁଁ ଏବେ ସୁଦ୍ଧା ଭାବିନାହିଁ । କିନ୍ତୁ ମତ ମିଳୁଥିବା ଦୁଇତିନି ଜଣ ଲୋକଙ୍କୁ ନିଯୁକ୍ତି ଦେବାକୁ ହେବ । କେଉଁ କେଉଁ ବିଷୟରେ survey କରିବାକୁ ହେବ, ତମକୁ ଲେଖିଥିଲି । ତମେ ଓଡ଼ିଶାରେ କେଉଁ ବେଳକୁ (ଫେବୃୟାରୀ-ମାର୍ଚ୍ଚ) ଥିବ ଲେଖିଲେ ମୁଁ ମୋର କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରନ୍ତି । ଅତି ଅଳ୍ପ ଦିନ ମଧ୍ୟରେ ଗୋଟାଏ ବ୍ଲକ ଭିତରେ ବୁଲି ଦେଖିବାକୁ ବୋଧହୁଏ ମୋଟରସାଇକେଲ୍ ଦରକାର ହେବ । ଅମୁ ଯଦି ତାହାର ମୋଟର ସାଇକେଲ୍ କିଛି ଦିନ ପାଇଁ ଦିଅନ୍ତା ଭଲ ହୁଅନ୍ତା ।

ମୋ ମତରେ ଫୁଲବାଣୀ ଜିଲ୍ଲାରେ କାର୍ଯ୍ୟକ୍ଷେତ୍ର ବାଛିବା ଯଥାର୍ଥ ହେବ । ଏଠାରୁ କୋରାପୁଟ ବା ଢେଙ୍କାନାଳ ଜିଲ୍ଲାକୁ ଆପଣାର କାର୍ଯ୍ୟକ୍ଷେତ୍ର ବିସ୍ତାର କଲେ ହେବ । ଏ ଭିତରେ ତମେ ଆମର ପୁରାତନ ସାଙ୍ଗମାନଙ୍କର ଠିକଣା ରଖୁଥିବ । ବିଶେଷ କରି କୌଣସି ଡାକ୍ତରବନ୍ଧୁ ମିଳିଗଲେ ସବୁଠାରୁ ଭଲ ହେବ । ଗୋଟାଏ ବ୍ଲକରେ ସ୍ୱାସ୍ଥ୍ୟ ଭଳି vegeterian programme ସାଙ୍ଗକୁ କିଛିଟା ସଂଘର୍ଷ ରହୁଥିବା programme ରଖିଲେ ନିଜର ପ୍ରବେଶ ସହଜ ହେବ । ଆମର ଅନ୍ୟସାଙ୍ଗମାନଙ୍କର ମତାମତ ଦେବ । Tribal culture ଉପରେ study materials ମଧ୍ୟ ସଂଗ୍ରହ କରୁଥିବ । ଫୁଲବାଣୀରେ କନ୍ଧ, ଡମ୍ବ ଏବଂ ବଣ୍ଡାମାନଙ୍କ ଉପରେ ଅନେକ ଗବେଷଣା କରାଯାଇଛି । ଆମେ ଯେଉଁମାନେ ସାଂସ୍କୃତିକ ପରିବର୍ତ୍ତନରେ ବିଶ୍ୱାସ କରୁ, ସଂସ୍କୃତିକୁ ଅକ୍ଷତ ରଖି ଯେ ସାମାଜିକ ବିପ୍ଳବ କରିହେବ ତାହା ସ୍ୱାଭାବିକ ମନେହୁଏ ।

ଏଠାରେ ଥଣ୍ଡା ପ୍ରବଳରୁ ପ୍ରବଳତର ହେଉଛି । ଦିନର ଗତି କ୍ଷିପ୍ରତର ହେଉଛି ଓ ସନ୍ଧ୍ୟା ଶେଷରେ ମନେହେଉଛି ଯେମିତି ଅନେକ କାମ ବାକି ରହିଗଲା । ମୋର ସାମଗ୍ରିକ ସତ୍ତାକୁ ଅନୁଭବ କରିବାକୁ ଅନେକ ଅବସର ମିଳିଯାଉଛି । ଜୀବନର ସାମାନ୍ୟକଥନକୁ ମାଧ୍ୟମ କରି ଅନେକ କିଛି ପ୍ରମାଣଯୋଗ୍ୟ ବସ୍ତୁ ଚିନ୍ତା କରିହେଉଛି । ଅବଶ୍ୟ ବିଶେଷ କିଛି ପଢ଼ି ହେଉନାହିଁ । ଶୀତର ଅବଶିଷ୍ଟ ଆଉ କେତେଦିନ ଆମକୁ ଭାରି ଏକୁଟିଆ ରହିବାକୁ ହେବ । ଶୀତର ପ୍ରକୋପରେ ଯେତେବେଳେ ସବୁ ଲୋମକୂପରେ ଗୋଟାଏ ପ୍ରକାରର ଉତ୍ତେଜନା ଭରି ହୁଏ, ସେତେବେଳେ ଯନ୍ତ୍ରଣା ବହୁଦିଗପ୍ରସାରୀ ହୁଏ । ଏଇଥିପାଇଁ ପୁଣି ଆଉ କିଛି ଦିନ ଭୋଗିବାକୁ ହେବ । ତା'ପରେ ପୁଣି ଅନାଗତ ବସନ୍ତ ଓ ମଳୟର ସ୍ପର୍ଶ; ଅଦ୍ୱିତୀୟ ମାଦକତା ।

ଶୀତରେ ଆମ ସଭିଙ୍କ ଚେତନା ହେମାଳ ନହୋଇଯାଉ ବୋଲି ଆଶା କରୁଛି । ଜୀବନର ଉପବନରେ ସଦ୍ୟ ପ୍ରସ୍ଫୁଟିତ ହେଉଥିବା କଳିକାମାନେ ଝଡ଼ି ନଯାଆନ୍ତୁ ଏକଥା ବି ଆଶା କରୁଛି । ଶୀତ ଆସୁ, ଶୀତର ସମାପ୍ତି ଘଟୁ; କିନ୍ତୁ ସ୍ଥିତି ବଜାୟ ରହୁ, ବିଲୀନ ନହେଉ ।

ଅମ୍ଳାନ ମୋର ଚିଠିର ନିରୁତ୍ତର ରହିବାରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ । ମୁଁ ସବୁବେଳେ ତାହାର ଶୁଭକାମନା କରି ଆସିଛି । ବିଗତ ଦଶବର୍ଷର ବନ୍ଧୁତା ଏହା ପ୍ରମାଣ କରିଦେଉଛି । କାହାସହିତ ସମ୍ପର୍କ ରଖିବା ନରଖିବା ଗୋଟାଏ ପ୍ରକାରର ମୁକ୍ତିର କଥା । ଏଇଥିପାଇଁ ମଣିଷ ଗୋଟାଏ ଦିଗରେ ଯଦି ଅନ୍ୟସହ ଡୋରିକୁ ଛିନ୍ନ କରିପାରୁଛି, ମୁଁ କହିବି ଏହା ଗୋଟାଏ ଅଭିମାନବୀୟ ସଫଳତା । ସୁଧାକରକୁ ଅନେକ ଦିନ ହେବ ଲେଖିନାହିଁ । ଜ୍ୟୋତି ଲେଖିବାର ପ୍ରତିଶ୍ରୁତି ଦେଇ ମଧ୍ୟ ଲେଖିନାହିଁ । ଆଜିକାଲି ଘରକୁ ମୁଁ ଖୁବ୍‌ବେଶୀ ଲେଖୁନାହିଁ କିମ୍ବା ସେମାନେ ନୀରବ ରହିବା ଭଲ ବୋଲି ଭାବୁଛନ୍ତି ।

ଏହି ପରିପ୍ରେକ୍ଷୀରେ ମୁଁ ସମସ୍ତଙ୍କୁ ଖୁବ୍ ଅନୁଭବ କରିପାରୁଛି, ଯେଉଁ ଅନୁଭବନରେ ତୀବ୍ର ମାନବିକତା ରହିଆସିଛି ।

ତମେ ଆଜିକାଲି କ'ଣ ପଢୁଛ ? ଗତ ବର୍ଷର କ'ଣ ସବୁ ଭଲ ବହି ତମେ ପଢ଼ିପାରିଲ ଲେଖିନାହଁ । କିଛି ଦିନ ତଳେ "Van Gogh ର ଚିଠି" ନାମକ ବହିଟି ପଢ଼ିବାକୁ ଯାଇ ମଧ୍ୟ ସୁଯୋଗ ହରାଇବସିଲି । ଗତ କେତେବର୍ଷ ଧରି ଚହଳ ସୃଷ୍ଟି କରିଥିବା 'Zen and the Art of Motorcycle Maintenance' ବହିଟିକୁ ପଢ଼ିବା କଥା ମୁଁ ଯୋଜନା କରିଛି । ଏବେ ବୌଦ୍ଧିକ କସରତ୍ ହେବାର ସୁଯୋଗ ହିଁ ନାହିଁ ।

ତମଠାରୁ ଚିଠି ଆଶା କରୁଛି । ତମେ ଭଲ ଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କେତେ ଦିନ ପରେ ତମେ ଭାରି ଅର୍ଥପୂର୍ଣ୍ଣ ଚିଠିଟିଏ ଲେଖିଛ । ମୁଁ ଜାଣେ, ସମୟ ତମକୁ କେବେହେଲେ ରୋଗଗ୍ରସ୍ତ କରିଦେବନାହିଁ । ବିଶାଳ ପୃଥିବୀରେ ନିଜର ଆତ୍ମସତ୍ତା ଅନୁଭବ କରିପାରିବାରେ ତମେ କେବେହେଲେ ପଛରେ ପଡ଼ିଯିବ ନାହିଁ । ଭୌତିକ ପୃଥିବୀର ପରିସୀମା ସେପାଖରେ ଆତ୍ମପ୍ରତ୍ୟୟର ସ୍ୱର ଭାରି ସ୍ପଷ୍ଟ । ପୃଥିବୀ ଭିତରେ ଜୀବନର ସଂଜ୍ଞା ମଧ୍ୟ ଭାରି ସହଜ । ସବୁ ଶୁଣିପାରିବାର କଥା, ସବୁ ବୁଝିପାରିବାର କଥା ।

ବନ୍ଧୁତା ଓ ଭଲ ପାଇବା ଉପରେ ମାନବିକ ପରୀକ୍ଷା ହେଉଛି ଆମମାନଙ୍କର ସମ୍ପର୍କର ଏକମାତ୍ର ମୂଳଦୁଆ । ଏହା ଶୂନ୍ୟତା ନୁହେଁ । କେବେହେଲେ ଏହା ନାସ୍ତିସୂଚକ ନୁହେଁ । ଆମ ପାଇଁ ଏହା ମୁକ୍ତିର ଶୁଭ ସଙ୍କେତ, ସବୁବେଳେ । ବେଳେବେଳେ ମନେହୁଏ ଆମମାନଙ୍କର ସମ୍ପର୍କ ଯେମିତି ଭୀଷଣ fissiparous । ପ୍ରତିଟି କ୍ଷଣ ଓ ପ୍ରତ୍ୟେକ ପରିସରରେ ଆମର ଯୋଗାଯୋଗ ପରିବର୍ତ୍ତନଶୀଳ । ଅଥଚ ତାହାହିଁ ଆମ ପାଇଁ ଆଣିଦେବ ପୂର୍ଣ୍ଣତା ଓ ପରିପକ୍ୱତା ।

ଅମ୍ଳାନ, ପ୍ରଫୁଲ୍ଲ, ସୁଧାକର, ଭଞ୍ଜ, ଗୋପବନ୍ଧୁ, ସୁକାନ୍ତ ଓ ଦୁର୍ଗା ସମସ୍ତଙ୍କୁ ମୁଁ ଗଭୀର ଭାବେ ଅନୁଭବ କରିବାକୁ ଚେଷ୍ଟା କରିଛି । ମୋର ବ୍ୟକ୍ତିତ୍ୱକୁ ସେମାନଙ୍କ ପାଖରେ ସହଜ କରିଦେବାକୁ ଚାହିଁଛି । ସମସ୍ତଙ୍କୁ ଅଟକି ନଯିବା ପାଇଁ ମୁଁ ଆହ୍ୱାନ ଦେଇଛି । ମୁଁ ସମସ୍ତଙ୍କଠାରେ ଜୀବନବାଦର ଭିନ୍ନ ଭିନ୍ନ ପରିପ୍ରକାଶ ଆବିଷ୍କାର କରିଛି । ମୋର ସିଦ୍ଧାନ୍ତ ଏହା ଯେ ଜୀବନର ରାସ୍ତା ହୁଏତ ଭିନ୍ନ । ଅଥଚ ମୂଳଲକ୍ଷ୍ୟ ସର୍ବଦା ଏକ ଓ ଅଭିନ୍ନ । ମୁଁ ବନ୍ଧୁତା ଦ୍ୱାରା ହିଁ ଆଲୋକିତ ହୋଇଛି ।

× × × ×

ଆଜି ଦିନର ଘଟଣାଗୁଡ଼ିକ ସଫଳତାରେ ଭରପୁର । 'କଦମ୍ପୁର' ଗାଁରେ SWRC ଘର ଭଡ଼ା ନେଉଛି କିଛି କାର୍ଯ୍ୟକ୍ରମ ଆରମ୍ଭ ପାଇଁ । ସମ୍ଭବତଃ ମୁଁ ଏହାର ଦାୟିତ୍ୱରେ ରହିବି । ସେ ଗାଁର ମୁଖିଆମାନଙ୍କ ସହ କିଛି ସମୟ କାଟିଲି । ଅନେକ ମିଶାଣ ଫେଡ଼ାଣ ପରେ ସେମାନେ ନିଷ୍ପତ୍ତି କଲେ ଯେ ସେଣ୍ଟର୍ ସେମାନଙ୍କ ପାଇଁ କିଛି ସୁବିଧା ଆଣିଦେବ । ଚିକିତ୍ସାର ବ୍ୟବସ୍ଥା କରିବ ଅଥବା ଭାଙ୍ଗିଯାଇଥିବା ଛୋଟ ଜଳସେଚନ ଯୋଜନାଟିଏ ମରାମତି କରିଦେବ । ଏଠାକାର campus ଜୀବନ ପ୍ରତି ମୁଁ ଭାରି ବୀତସ୍ପୃହ । ଏଠାରେ ଚାଲିଥିବା ସଂକୀର୍ଣ୍ଣତାର ରାଜତ୍ୱ ପ୍ରତି ମୁଁ ଭୀଷଣ ନାରାଜ । ଏଠାରେ କେବଳ ସମୟକୁ ଶୋଇ ଶୋଇ କାଟିହୁଏ; କିନ୍ତୁ ସମ୍ପର୍କ ଗଢ଼ି ହୁଏ ନାହିଁ ବା କାହା ସହ ତର୍କ କରିହୁଏ ନାହିଁ । ଯେଉଁମାନେ କାର୍ଯ୍ୟନିର୍ବାହ ଦାୟିତ୍ୱରେ ଅଛନ୍ତି, ସେମାନଙ୍କର ମୁହଁରେ କେମିତି ଗୋଟାଏ ଅମଣିଷର ଗାମ୍ଭୀର୍ଯ୍ୟ । ଯେଉଁମାନେ ସିଡ଼ିର ସର୍ବଶେଷ ପାହାଚରେ ଅଛନ୍ତି ସେମାନଙ୍କ ମୁହଁରେ କାରୁଣ୍ୟ ଓ ପୀଡ଼ନର ଆଭାସ । ବେଳେବେଳେ ଏଠାରେ ଭାରି ବିଦ୍ରୋହୀ ହୋଇପଡୁଛି । ଏଠାରେ ଗଢ଼ାଯାଇଥିବା କାନ୍ଥକୁ ମୁଁ ଭାଙ୍ଗିଦେବା ପାଇଁ ଯେମିତି ଷଡ଼ଯନ୍ତ୍ର କରୁଛି । ବେଳେବେଳେ ମନେହେଉଛି ଏଠାକୁ ଛାଡ଼ି ଚାଲିଯିବା ପାଇଁ । ଅଯଥାରେ ନିଜର ମୂଲ୍ୟବାନ ସମୟ ନଷ୍ଟ କରିବାର ଅର୍ଥ କିଛିନାହିଁ ।

କିନ୍ତୁ ଏଠାରୁ ମୁଁ କେଉଁଠାକୁ ଯିବି ? କେଉଁଠାକୁ ଯାଇପାରିବି ? ଜୀବନର ସବୁକିଛି ହରାଇବସିବା ପରେ ମୁଁ ଯେମିତି ଭାରି ଏକାକୀ ହୋଇପଡୁଛି । ତମେମାନେ ସବୁ ଯେମିତି ମୋ ପାଇଁ ଝାପ୍‌ସା ହୋଇପଡୁଛ । ମୁଁ ମୋ ପାଇଁ ଯେମିତି ଭାରି ଅବୋଧ ହୋଇପଡୁଛି । ସେଇଥିପାଇଁ ଆଜି ମୁଁ ମୋର ସ୍ଥିତି ସଙ୍କୋଚନତାକୁ ପ୍ରତିବାଦ କରୁନାହିଁ । ଅନେକ କଥାକୁ ମୁଁ ଭୁଲିଯିବାକୁ ଚାହୁଁଛି । ଅନେକ କିଛି ମୁଁ ହଜାଇଦେବାକୁ ନିଷ୍ପତ୍ତି ନେଉଛି । ସେଇଥିପାଇଁ ଏଠାରେ ଯେତେ ଅମାନୁଷିକତା ଥାଉ ପଛକେ, ମୁଁ କିଛି ଦିନ ପାଇଁ ରହିଯିବି ।

ତମେ ତାଳଚେରରେ ମୋର ଅନୁପସ୍ଥିତି ଅନୁଭବ କରୁଥିବ । ମୁଁ ନାହିଁ ଅଥଚ ତାଳଚେରର କିଛି ପରିବର୍ତ୍ତନ ହୋଇଛି; ତମେ ହୁଏତ ଅନୁଭବ କରିପାରିବ ନାହିଁ । ସେଠାରେ ଲୁକ୍‌କାୟିତ ହୋଇଥିବା ସମସ୍ତ ଭାବପ୍ରବଣତାକୁ ତମେ ନିଜ ଚେଷ୍ଟାରେ ଆବିଷ୍କାର କରିବ । ମୋର ବ୍ୟକ୍ତିତ୍ୱ କିପରି ଗଢ଼ାଯାଇଛି, ତାହା ମଧ୍ୟ ତମେ ଜାଣିପାରିବ ।

ଆମ ପରିବାରରେ ତମକୁ କେମିତି ଗ୍ରହଣ କରାଯାଉଛି, ମୁଁ ଜାଣିନାହିଁ । କିନ୍ତୁ ଯଦି ଉଷ୍ମତା ମିଳିନାହିଁ, ତମେ ନିରାଶ ହେବନାହିଁ । ଯେତେବେଳେ ମୁଁ ବିଶ୍ୱାସ ହରାଇ ବସିଛି, ମୋର ବନ୍ଧୁତାର ପରିଚୟ ନାହିଁ । ସବୁକଥା ଜାଣି ମଧ୍ୟ ତମକୁ ଯଥାସାଧ୍ୟ ସାହାଯ୍ୟ କରିବାକୁ ମୁଁ କହିଆସିଥିଲି । ମୋର ଦୁଇଜଣ ଭାଇ ତମକୁ କୋଇଲା ଖଣି ଶ୍ରମିକମାନଙ୍କ

ସହ ପରିଚୟ କରାଇଦେବେ । ଗାଁରେ ରହିବା ବ୍ୟବସ୍ଥାରେ ମଧ୍ୟ ସେମାନେ ସାହାଯ୍ୟ କରିପାରନ୍ତି । ମୋର ଦୁଇ ଜଣ ସାଙ୍ଗ ସୁଧାଂଶୁ ଓ ପୂର୍ଣ୍ଣ ମଧ୍ୟ ତମର ଭଲମନ୍ଦ ବୁଝିବେ ବୋଲି ମୁଁ ଆଶା ରଖିଛି । ତାଳଚେରରେ ନିଃସଙ୍ଗ ଭାବରେ ତମର ସମୟ କଟିବ ନାହିଁ । ତମେ Industrial Beltର ଉଚ୍ଚକର୍ତ୍ତୃପକ୍ଷଙ୍କ ସହ ମଧ୍ୟ ସମ୍ବନ୍ଧ ରଖିପାର । ତାଳଚେରରେ ରାଜନୈତିକ ବାତାବରଣ ଆଦୌ ଭଲ ନୁହେଁ । ତମେ ଦୂରତା ରଖିବ । ମୁଁ ଆଶା କରୁଛି ସେଠାରେ ତମର କାର୍ଯ୍ୟକ୍ରମ ଫଳପ୍ରଦ ହେବ ।

× × × ×

ଏଠାରେ ସମସ୍ତ କାଟିବା ପାଇଁ ମୁଁ ବହି ଖୋଜୁଥିଲି । ଅରୁଣାର ଲାଇବ୍ରେରୀରେ ଅନେକ ଭଲ ବହି ଅଛି । ସେଥିରୁ ଅନେକ କିଛି ପଢ଼ାଯାଇଛି ଓ ଅନେକ ମଧ୍ୟ ପଢ଼ାହୋଇନାହିଁ । ମୁଁ literature ରେ ଆଗ୍ରହୀ ବୋଲି କେମିତି ସେମାନେ ଜାଣିଛନ୍ତି । ସେଇଥିପାଇଁ ବହିର ଅଭାବ ନାହିଁ । ଏଭିତରେ ଏଠାରେ ମୁଁ Khalil Gibranଙ୍କ 'The Prophet' ଏବଂ 'Secrets of Heart' ପଢ଼ିସାରିଛି । ଆହୁରି ମଧ୍ୟ ପଢ଼ିଛି Graham Greene ଙ୍କ 'The Commedians' ଓ 'The Human Factors' ଯାହାକି ତାଙ୍କର ଅନ୍ୟ କୃତୀ ତୁଳନାରେ ଉଲ୍ଲେଖନୀୟ ନୁହେଁ । ଅରୁଣାର ମତ ଅନୁସାରେ ମୁଁ Ivo Andric ଙ୍କ 'The Bridge on the River Drina' ପଢୁଛି ଓ J.P. Donleavy ଙ୍କ 'Meet My Maker The Mad Molecule'ର କେତେଗୁଡ଼ିଏ କାହାଣୀ ଏବେ ମଧ୍ୟ ଅସମାପ୍ତ ଅଛି ।

କିନ୍ତୁ ମୋର ଆଗ୍ରହରେ Turgenevଙ୍କ 'Fathers And Sons' ମୁଁ ପଢ଼ିସାରିଛି । ତମେ ହୁଏତ ଜାଣିଥିବ ଯେ Turgenev ଓ Dostoevsky ଙ୍କ ଭିତରେ ଗୋଟାଏ ପ୍ରକାରର ମିଠାକଡ଼ା ସମ୍ପର୍କ ଥିଲା । ଦସ୍ତୋଭସ୍କି ପ୍ରଥମେ ଟର୍ଜନିଭ୍‌ଙ୍କୁ ଅନୁସରଣ କରୁଥିଲେ । ପରେ ସେମାନଙ୍କ ଭିତରେ ପ୍ରଚଣ୍ଡ ମତାନୈକ୍ୟ ଦେଖାଦେଇଥଲା । ଏକ ଘଟଣାଚକ୍ରକୁ କେତୋଟି ରୁବଲ୍ ପାଇଁ ଦସ୍ତୋଭସ୍କିଙ୍କୁ ଭୀଷଣ ଗ୍ଲାନି ଅନୁଭବ କରିବାକୁ ପଡ଼ିଥିଲା ଯାହାକି ସେ ଟର୍ଜନିଭ୍‌ଙ୍କ ଠାରୁ ଧାର ଆଣିଥିଲେ ଏବଂ ଏହା ପ୍ରାୟ ପନ୍ଦରବର୍ଷ ପରେ ସେ ଫେରାଇଥିଲେ ।

Turgenev ଙ୍କ ଲେଖାଗୁଡ଼ିକରେ କାବ୍ୟିକ ଛଟା ଭରି ରହିଛି ବୋଲି ସମାଲୋଚକମାନେ ବାରମ୍ବାର କହିଆସିଛନ୍ତି । ଏହି ଶୈଳୀ ହିଁ ପ୍ରଥମେ ଋଷୀୟ ସାହିତ୍ୟର ପ୍ରସାର ଓ ଆଦରରେ ସାହାଯ୍ୟ କରିଥିଲା ୟୁରୋପରେ । ଖ୍ୟାତିସମ୍ପନ୍ନ Flaubert ଏବଂ Henery James ମଧ୍ୟ ତାଙ୍କୁ ସମ୍ମାନ ଦେଇଥିଲେ ଓ ପୃଥିବୀର ସାହିତ୍ୟ କ୍ଷେତ୍ରରେ ତାଙ୍କର ଦାନକୁ ଗ୍ରହଣ କରିଥିଲେ ।

'Fathers and Sons' ମୁଖ୍ୟତଃ Nihilism ଉପରେ ଆଧାରିତ ଉପନ୍ୟାସଟିଏ । ଯେତେବେଳେ Nihilism ରୁଷିଆର ବୌଦ୍ଧିକ ତଥା ରାଜନୈତିକ ପରିସରରେ ପ୍ରଭାବ ବିସ୍ତାର କରିଥିଲା । ସେତେବେଳର ଘଟଣା ଓ ତତ୍‌କାଳୀନ ପ୍ରତିକ୍ରିୟାକୁ ଏଥିରେ ଖୁବ୍ ଚମତ୍କାର ଶୈଳୀରେ ଲେଖାଯାଇଛି । 'Fathers and Sons'ର Bazarov କୁ ତମେ 'The Devils'ର Stavrogin ସହ ତୁଳନା କରିପାର । ଉଭୟଙ୍କୁ କେହି ଗ୍ରହଣ କରିନାହାନ୍ତି । ସାମାଜିକ ନିୟମକାନୁନ୍ ଦୃଷ୍ଟିରେ ସେମାନେ ପଛରେ ପଡ଼ିଯାଇଛନ୍ତି ଏବଂ ଅବଶେଷରେ ସେମାନେ ବିଲୁପ୍ତ ହୋଇଛନ୍ତି । Bazarov typhus ରୋଗରେ ସଢ଼ିସଢ଼ି ମରିଛି ଓ Stavrogin ଆତ୍ମହତ୍ୟା କରିଛି । ଉଭୟେ ଶେଷପର୍ଯ୍ୟନ୍ତ ସଚେତନ ଅଛନ୍ତି । Dostoevsky ଓ Turgenev ଉଭୟେ Nihilism ର ଏକ ସଚେତନ ସମାପ୍ତିରେ ବିଶ୍ୱାସ କରିଛନ୍ତି ।

Bazarov ଓ Arkady ଦୁଇବନ୍ଧୁ । ଉଭୟଙ୍କର ପରିବାର ଓ Madam Odintorov ଙ୍କୁ ନେଇ ଉପନ୍ୟାସ ଲେଖାଯାଇଛି । ସବୁ କ୍ଷେତ୍ରରେ Bazarov ସହ ଭିନ୍ନଭିନ୍ନ ସ୍ତର ଓ ବୌଦ୍ଧିକତା ସହ interact କରାଯାଇଛି । ସମସ୍ତେ Bazarov କୁ ସ୍ୱୀକାର କରିନାହାନ୍ତି । ସେ ଯେମିତି ଅକାଳବାର୍ଦ୍ଧକ୍ୟରେ ପଡ଼ିଯାଇଛି । ତାହାର ବୌଦ୍ଧିକ ଦୃଷ୍ଟିକୋଣ ଯେମିତି ହ୍ରାସ ହୋଇଛି । ଜଣେ ସଚେତନ ମଣିଷ ହିସାବରେ ସେ କାହାର ପ୍ରଭୁତ୍ୱ ମାନିନାହିଁ, କାହାକୁ ବିଶ୍ୱାସ କରିନାହିଁ । ସବୁଠି ତର୍କର ସାହାଯ୍ୟ ସେ ନେଇଛି ।

ଆଶା କରୁଛି ତମେ ନିଶ୍ଚୟ ଏହାକୁ ପଢ଼ିବ ।

ବଙ୍କର୍ ତମକଥା ପଚାରୁଥିଲା । ତମେ ତା'ପାଖକୁ ଦି'ଧାଡ଼ି ଲେଖିଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି । ପ୍ରଥମ ସାକ୍ଷାତରେ ତମେ ଆମ ଘରର ସମସ୍ୟାମାନଙ୍କ ସହ ଯେମିତି ସଂଶ୍ଳିଷ୍ଟ ହୋଇଯାଇଛ । ତାଳଚେରରେ ମୋର ବିକୃତ ବ୍ୟକ୍ତିତ୍ୱର ଏକ ସମ୍ୟକ୍ ରୂପରେଖ ତମେ ଯେ ପାଇପାରୁଛ, ତାହା ମୁଁ ଅନୁମାନ କରିପାରୁଛି ।

ଅନେକବାର ମୁଁ କହିଛି ଯେ ମୋର (ଆମର) ବାପାମାଆମାନଙ୍କ ଭଳି ମଣିଷମାନଙ୍କୁ ନେଇ ମୁଁ (ଆମପାଇଁ) ବଞ୍ଚିବାର ପ୍ରେରଣା ସଂଗ୍ରହ କରିଛି । ସେମାନଙ୍କର ସରଳତା ଓ ସହନଶୀଳତା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଛି । ସେମାନଙ୍କ ଛାଞ୍ଚରେ ଗଢ଼ିବାର

ପ୍ରଶ୍ନ ଉଠିଲେ ମୁଁ ପ୍ରତିବାଦ କରିନାହିଁ । ଏଣୁ ମୋର ବାପାମାଆଙ୍କର ଜୀବନ ଓ ସଂଘର୍ଷକୁ କେବଳ ବୌଦ୍ଧିକ ଯଥାର୍ଥତା ଦିଆଯାଇନପାରେ । ଏହା ପଛରେ ଅନ୍ତର୍ନିହିତ ମଣିଷପଣିଆକୁ ମଧ ସମ୍ମାନ କରାଯାଇପାରେ । ତମେ ଯେଉଁଭଳି ଭାବବିହ୍ୱଳ ହୋଇଯାଇଛ, ମୁଁ ତାହାଠାରୁ ଶତେଗୁଣ ହୋଇଯାଇଛି । ତମେ ଯେଉଁଭଳି ଗ୍ରହଣ କରୁଛ, ତାହାକୁ ମୁଁ ପ୍ରଶଂସା କରୁଛି ।

ତଥାପି କାହିଁକି ମୁଁ ଯେ ଉଦାସୀନ, ତମେ ଏହା ପ୍ରଶ୍ନ କଲେ ମୁଁ ଏହାର ସଠିକ୍ ଉତ୍ତର ଦେଇପାରିବି ନାହିଁ । ଏହା ଆଦର୍ଶଗତ ସମସ୍ୟା ନୁହେଁ, ନତୁବା ଏହା କୌଣସି ସାଧାରଣ ମାନବିକ ସ୍ୱାର୍ଥପରତା ନୁହେଁ । ବିଶ୍ୱାସ କର, ମୁଁ କ୍ରମେକ୍ରମେ ଯେମିତି ଏକ ଭୟାନକ ମଣିଷରେ ପରିଣତ ହୋଇଯାଉଛି । ଜୀବନଯୁଦ୍ଧରେ ହାରିଯାଇଥିବା ମଣିଷର ମୂଲ୍ୟବୋଧ ହୁଏତ କିଛିଟା ଓଲଟା । ଏହି ମୂଲ୍ୟବୋଧକୁ ତମେ ଆଦର୍ଶବାଦର ପ୍ରହସନ ବୋଲି କହିପାର । ଆଜି ଜୀବନସମସ୍ୟାର କୌଣସି ଏକ ସମାଧାନ ଦେଖିପାରୁନାହିଁ । ଭଲ ପାଇବା ଓ ବନ୍ଧୁତାର ଅପରିସୀମ ଶକ୍ତିରେ ଯେତେ ବିଶ୍ୱାସ କଲେ ମଧ ମୁଁ ଯେମିତି ନିଜକୁ କୌଣସି ସିଦ୍ଧାନ୍ତରେ ପହଞ୍ଚାଇ ପାରୁନାହିଁ । ନିର୍ଦ୍ଦିଷ୍ଟ ଭାବେ ମୁଁ କିଛି ଚିନ୍ତା କରିପାରୁନାହିଁ । ପ୍ରତ୍ୟେକ ମୁହୂର୍ତ୍ତରେ ମୋର ଦୋଷବିଜଡ଼ିତ ଆତ୍ମା କେଉଁ ଏକ ପ୍ରଚ୍ଛନ୍ନ ପାପ ପାଇଁ ଯେମିତି ରୋଦନ କରୁଛି । ପ୍ରତ୍ୟେକ ମୁହୂର୍ତ୍ତରେ ନିଜର ସାମଗ୍ରିକ ସତ୍ତା ଲୋପ କରିଦେବା ପାଇଁ ଯେମିତି କିଏ ପ୍ରୋତ୍ସାହିତ କରୁଛି । ମୁକ୍ତିକୁ ମୁଁ ବିଶ୍ୱାସ କରୁଛି ଅଥଚ ଏହା ମୋର ସାହସ ବଢ଼ାଇବାରେ ସାହାଯ୍ୟ କରୁନାହିଁ । ଆଦର୍ଶବାଦର ଦ୍ୱାହି ଦେଇ ଯେମିତି ମୁଁ ନିଛକ ବାସ୍ତବତା ମୁହଁରୁ ପଳାୟନ କରୁଛି ।

ଆଜି ମୁଁ ନିଜକୁ କେଉଁଠି ଲୁଚାଇ ଦେବାକୁ ଚାହୁଁଛି, ଅତୀତକୁ ମୁଁ ଭୁଲିଯିବାକୁ ଚାହୁଁଛି । କାହା ଉପରେ ବୋଝ ହେବା ମୋ ପାଇଁ ଲଜ୍ଜାଜନକ କଥା । କାହା ଉପରେ ନିଜର ଅସାଧାରଣ ସଚେତନତା ଲଦିଦେବା ଘୃଣାର କଥା । ସେଇଥିପାଇଁ ମୁଁ ସଙ୍କୁଚିତ ହୋଇପଡୁଛି । ସମସ୍ତଙ୍କଠାରୁ ଦୂରରେ ରଖିବା କର୍ତ୍ତବ୍ୟବୋଧ ବୋଲି ମନେକରୁଛି । ଏସବୁ କଥା ମୁଁ ମୋର ବାପାମାଆଙ୍କୁ କହିବାର ନୈତିକ ସାହସ ନାହିଁ । ସେମାନଙ୍କର ଆଶାର ସୀମା ଛୁଇଁବା ଯେତେବେଳେ ମୋ ପାଇଁ ଅସମ୍ଭବ, ସେତେବେଳେ ସେମାନଙ୍କର କୌଣସି କଥାକୁ ମୁଁ ଗୁରୁତ୍ୱ ଦେଉନାହିଁ । ସେମାନଙ୍କୁ ମୁଁ ବୁଝିପାରୁଛି, ସେମାନଙ୍କୁ ମୁଁ ବିନମ୍ର ସମ୍ମାନ କରୁଛି । ମୋର ଭଲ ପାଇବାର ମଣିଷମାନଙ୍କୁ ମୁଁ ଅନୁଭବ କରିପାରୁଛି ।

ତମେ ମୋତେ ବୁଝିବାକୁ ଚେଷ୍ଟା କରିବ କି ନାହିଁ ମୁଁ ଜାଣେ ନାହିଁ । ମୋ ପାଇଁ କରିବା ନକରିବା ଏକା କଥା । ମୋର ଯାହାକିଛି ମତ ବିନିମୟ କରିବାର କଥା, ତାହା ଗତ ଦଶବର୍ଷ ଧରି ମୁଁ କରିପାରିଛି । ତମେ ମୋତେ ଗ୍ରହଣ କରିଛ କି ନାହିଁ ତମ ହାତର କଥା । ତମର ତଥା ମୋର ମାନସିକ ଅଭିବୃଦ୍ଧିରେ ଆମେ ପରସ୍ପର ପ୍ରତି କେତେ କ'ଣ

କରିଛେ, ତାହା ମଧ୍ୟ ତମକୁ ଅଜଣା ନୁହେଁ । ଏସବୁ ଭୟାନକ ପରିସ୍ଥିତିରେ ଯେତେବେଳେ ମୁଁ ମୋ ପାଇଁ ଅବୋଧ ହୋଇଯାଉଛି । ଯେତେବେଳେ ମୁଁ ନିଜକୁ ନିରାପଦ ରଖିପାରୁନାହିଁ, ସେଇ ସମୟରେ ତମମାନଙ୍କ ଠାରୁ ମୁଁ କେବଳ ଆସ୍ଥା ଓ ବିଶ୍ୱାସ ଚାହୁଁଛି । ତମମାନଙ୍କଠାରୁ ନ ମିଳିଲେ ମୁଁ ଆଶ୍ଚର୍ଯ୍ୟ ହେବିନାହିଁ ।

× × × ×

ଏ ଚିଠି 'କଦମ୍‌ପୁରା' ଗାଁକୁ ଲେଖୁଛି । ଏଠାକୁ ପାଞ୍ଚଦିନ ହେବ ମୁଁ ଆସିଛି । SWRC ଏଠାରେ ପ୍ରଥମ ଥର ପାଇଁ ଗୁରୁତ୍ୱର ସହ କିଛି କାର୍ଯ୍ୟ କରିବାକୁ ଚାହୁଁଛି । ଏ sub-centreର ଦାୟିତ୍ୱରେ ମୁଁ ରହିବି ବୋଲି ବଙ୍କର୍ ମୋତେ ଯଥେଷ୍ଟ ସୂଚନା ଦେଇଛି । ଏହା ସିଲୋରା ବ୍ଲକ୍‌ର ଦକ୍ଷିଣ ଭାଗରେ । କିଶନ୍‌ଗଡ଼ ଏଠାରୁ ପ୍ରାୟ ଦଶମାଇଲ୍ । ପାଖ ପାଖ ଗାଁରେ ସେଣ୍ଟର୍ ପୌଢ଼ଶିକ୍ଷା କାର୍ଯ୍ୟକ୍ରମ ଚାଲିଛି । କିଛି ଅର୍ଥନୈତିକ କାର୍ଯ୍ୟକ୍ରମ ପାଇଁ ଯୋଜନା କରିବା ଏଠାରେ ଆମର ମୂଳଲକ୍ଷ୍ୟ ।

ମୋ ସାଙ୍ଗରେ ଖେମ୍‌ରାଜ୍ ଅଛି । ତିଲୋନିଆକୁ ଆସିବା ଦିନଠାରୁ ଖେମ୍‌ରାଜ୍ ମୋ ସାଥୀରେ ଅଛି । ମୁଁ ତାକୁ ଅନେକବାର ବୁଝିବାକୁ ଚେଷ୍ଟା କରିଛି । ଅସମ୍ଭବ ମଣିଷଟିଏ । ମୁଁ ଯେଉଁଦିନ ତିଲୋନିଆ ଆସିଲି, ସେଦିନ ସେ ଇସ୍ତଫା ଦେଇଥିଲା । ପୁଣି ବଙ୍କର୍ କଥାରେ ରହିଗଲା । ପୌଢ଼ଶିକ୍ଷାର ସ୍କୁଲମାନଙ୍କୁ ଦେଖିବା ତାହାର କାମ । କିନ୍ତୁ ଏକଥା ସ୍ୱୀକାର କରାଯାଇପାରେ ଯେ SWRC ରେ ସେ ସମସ୍ତଙ୍କ ଠାରୁ କର୍ମଠ ଓ ଦକ୍ଷ କର୍ମୀ । ତାହାର ମାଧ୍ୟମରେ ମୁଁ ଏ ଭିତରେ ପ୍ରାୟ କୋଡ଼ିଏଟି ଗାଁକୁ ଯାଇଛି ଓ ସେଣ୍ଟରର ସମସ୍ତ କାର୍ଯ୍ୟକ୍ରମକୁ ସ୍ପଷ୍ଟ ଭାବେ ବୁଝିପାରିଛି । ଖେମ୍‌ରାଜ୍ ଅତିମାତ୍ରାରେ ସଶସ୍ତ୍ର ବିପ୍ଳବରେ ବିଶ୍ୱାସ କରେ । ଏଥିପାଇଁ ଅନେକବାର ତା' ସଙ୍ଗରେ ମୋର ଯୁକ୍ତି ହୋଇଛି । କିନ୍ତୁ ସେ ଯେମିତି ଏଥିରେ ଅନ୍ଧବିଶ୍ୱାସୀ । ଏସବୁ ଦିନମାନଙ୍କରେ ସେ ନିଜକୁ ସେଇ ଶୁଭଦିନ ପାଇଁ ପ୍ରସ୍ତୁତ କରୁଛି ।

ମୋ ଭଳି ଜଣେ ପୁସ୍ତକକୀଟ ପାଇଁ ଖେମ୍‌ରାଜ୍ ଯେମିତି ସବୁକିଛି । ମୁଁ ତା'ଠାରୁ ରୋଷେଇ, ମାରୁୱାଡ଼ି ଭାଷା ଏବଂ ଏଠାକାର ସାମାଜିକ ନୀତିନିୟମ ସବୁ ଶିଖୁଛି; ଜୀବନରେ ଯେତେ ବୋଝ ନିଆଯାଇପାରେ, ଯେତେ କଷ୍ଟ ସହିବାକୁ ପଡ଼ିପାରେ, ସେସବୁ ମୁଁ ଖେମ୍‌ରାଜ୍ ଠାରୁ ହିଁ ଶିଖୁଛି । ଖେମ୍‌ରାଜ୍ ସହ ମୋର ବନ୍ଧୁତାର ଅନ୍ୟକେତେକ ଦିଗ ମୁଁ ପୁଣି ତମକୁ ଲେଖିଛି ।

'କଦମ୍‌ପୁରା' ଛୋଟ ଗାଁଟିଏ । ଏଠାରେ ୫୦/୬୦ ପରିବାର ରହନ୍ତି । ଜାଠ ପରିବାର ଧନୀ ଓ ପ୍ରଭାବଶାଳୀ । ତେଜାରାମ୍ ଜାଠଙ୍କର ଘରେ ଦୁଇଟି କୋଠରୀ ଆମେ ଭଡ଼ାରେ ନେଇଛୁ । ଘରର କାର୍ଯ୍ୟ ଏବେ ମଧ୍ୟ ଅସମାପ୍ତ । ଚଟାଣ ଏବେ ମଧ୍ୟ ହୋଇ

ନାହିଁ । ନିହାତି ଅସ୍ୱାସ୍ଥ୍ୟକର ପରିବେଶ । ପାଣି ଖୁବ୍ ଲୁଣିଆ । ମଶାମାଛିଙ୍କ ଦୌରାତ୍ମ୍ୟ ଅସହ୍ୟ । ଘର ଭିତରେ ଦଣ୍ଡେମାତ୍ର ରହିହୁଏ ନାହିଁ । କିନ୍ତୁ ଦୁଧ, ଦହି, ଘିଅ ଶସ୍ତା । ଏହାକୁ ଆଧାର କରି ଆମେ ଏଠାରେ ଚଳୁଛୁ । ଖାଇବା ପିଇବାର କୌଣସି ମାତ୍ର ବ୍ୟବସ୍ଥା ନାହିଁ ।

ତେଜାରାମ୍‌ଙ୍କ ପରିବାରରେ ବାପାମାଆଙ୍କ ବ୍ୟତୀତ ଛୋଟଭାଇ ଓ ଭଉଣୀ ଅଛନ୍ତି । ତାଙ୍କର ବୟସ ୨୫ ବର୍ଷ ଓ ସେ ବିବାହିତ । ତେଜାରାମ୍ ଭଦ୍ରଲୋକ ନିଶ୍ଚୟ । ବୁଢ଼ାବାପାଙ୍କର ଆପତ୍ତି ସତ୍ତ୍ୱେ ସେ ଆମକୁ ଏଠାରେ ସ୍ଥାନ ଦେଇଥିବାରୁ ଆମେ ତାଙ୍କ ନିକଟରେ ଋଣୀ । ରାତିରେ ଛାତ ଉପରେ ଆମେ ଏକାଠି ଶୋଇଲାବେଳେ ତେଜାରାମ୍ ତାଙ୍କ ସଂସାରର ସମସ୍ତ ଚିନ୍ତାଧାରା ଉନ୍ମୁକ୍ତ କରିଦିଅନ୍ତି; ମୁଁ ସବୁକିଛି ବୁଝି ପାରେ ନାହିଁ । ତଥାପି ମୂଳ ଭାବନା ଅନୁଭବ କରିପାରେ ।

ତମେ ହୁଏତ ଅଞ୍ଚଳର ପରିବେଶକୁ ଅନୁଭବ କରିପାରୁଥିବ । ଏହା ଅତିମାତ୍ରାରେ ସବୁଜ । ଖୋଲାପବନ, ସବୁଆଡ଼େ ଗୋଟାଏ ଅପୂର୍ବ ମହକ । ଏଠାରେ ଆତ୍ମଗୋପନ କରିବାର ଚମତ୍କାର ସୁଯୋଗ । ଯେଉଁଆଡ଼େ ଯାଅ ସମସ୍ତେ କାର୍ଯ୍ୟରତ । ଏବେ ବଛାବଛି କାମ ଚାଲିଛି । ବାଜରା ଓ ବାଦାମଗଛରେ ଫଳ ଧରିବାର ସଂକେତ । ମକା ଓ ଜୋଆର୍ ଗଛରେ ଏବର୍ଷର ପ୍ରଥମ ସବୁଜିମା । ଆମର ସମୟ ଠିକ୍ କଟୁଛି ବୋଲି ତମେ ଭାବିପାର ।

× × × ×

ତାଳଚେରରେ ବର୍ଷା ନାହିଁ ବୋଲି ବାବା ଲେଖିଥିଲେ । ତେବେ ଏବେ ମଧ୍ୟ ସେଠାରେ ଚମତ୍କାର ପରିବେଶ ଯେକୌଣସି ଭାବପ୍ରବଣତା ସୃଷ୍ଟି କରିପାରିବ । ତମେ 'ହାୱାମହଲ୍' ଆସୁଛ କି ନାହିଁ ମୁଁ ଜାଣି ନାହିଁ, ଯେଉଁଠି ମୋର ଆବେଗମୟ ଚେତନାର ସୃଷ୍ଟି ହୋଇଛି । ରାଜାଙ୍କ ପାଲେସ୍ ରାସ୍ତାରେ କିଛି ବାଟ ଗଲେ ଆମ ସ୍କୁଲ, ଯେଉଁଠି ମୁଁ ଅନେକ କିଛି ଆବିଷ୍କାର କରିଥିଲି । ସେଠାରୁ କିଛି ବାଟ ଗଲେ ଖଜୁରୀଗଛର ଅରଣ୍ୟ । ତା'ଭିତରେ ପଟ୍ଟାୟତଙ୍କର ଏକ ଭଗ୍ନ ପ୍ରାସାଦ । ମଣିଷ ଯଦି ଏକାକୀ କିଛି ମୁହୂର୍ତ୍ତ ଚାହେଁ, ତେବେ ସେ ସ୍ଥାନ ସବୁଠାରୁ ରୋମାଞ୍ଚକର । ତମେ ସୁଯୋଗ ପାଇଲେ ଯିବ ।

କଳମଛୁଇଁ ଗାଁ ମୁଁ ଦେଖିଛି । ବଡ଼ ଗାଁଟିଏ । ତେଣୁ social survey ପାଇଁ ତମକୁ କିଛିଟା କଷ୍ଟ ପଡ଼ିପାରେ । ଅବଶ୍ୟ ଏଇଭଳି ଗାଁରେ ସବୁ ଶ୍ରେଣୀର ଲୋକ ମିଳିବେ । ତମର ସମୟ କେମିତି କଟୁଛି ? କୋଇଲା ଖଣି ଶ୍ରମିକମାନଙ୍କ ଉପରେ ତମେ କିଛି ଅନୁସନ୍ଧାନ କରିବାକୁ ଚାହିଁଲେ ମୋର ଭାଇମାନଙ୍କର ସାହାଯ୍ୟ ତମେ ଦାବୀ କରିପାର । ସୁଯୋଗ ମିଳିଲେ ମୋର ବାବାମାଆଙ୍କୁ ଦେଖା କରୁଥିବ ଓ ସେମାନଙ୍କୁ ସେ ବିଷୟରେ ସାହସ ଦେଉଥିବ । ତମେ ଆମ ଘରର ସମସ୍ୟାରେ ଜଡ଼ିତ ନ ହେବା ହିଁ ଭଲ ହେବ ।

ମୁଁ ଜାଣେ, ମୋର ଅନୁପସ୍ଥିତିରେ ତମେ ସେଠାରେ କିଛି ଅଡୁଆ ଅନୁଭବ କରୁଥିବ। କିନ୍ତୁ ତମେ ଏଇଭଳି ଜୀବନ ପାଇଁ ଆଗରୁ ପ୍ରସ୍ତୁତ ହୋଇଥିବ। 'ସର୍କିଟ୍ ହାଉସ୍' ନିହାତି ନିକାଞ୍ଚନ ଜାଗାଟିଏ। ତମେ ସେଠାରେ କେଉଁଭଳି ସମୟ କାଟୁଛ ମୁଁ ଜାଣିପାରୁନି।

× × × ×

ବଙ୍କର୍‌କୁ ମୁଁ କହିଥିଲି, ହାଇଦ୍ରାବାଦରେ 'Weed & Rodent Management'ର କୋର୍ସକୁ ଯିବା ପାଇଁ। ସେ ଯଦି ମୋ ନାମ ପଠାଇଥାଏ, ତେବେ ସେପ୍ଟେମ୍ବର ଦଶ ତାରିଖରେ ମୁଁ ହାଇଦ୍ରାବାଦ ପହଞ୍ଚିବି। ୨୩ ତାରିଖରେ ଭୁବନେଶ୍ୱର ଫେରିବି ଓ ସିଧା ତାଳଚେର ଯିବି। ତିଲୋନିଆ ଆସିବାବେଳେ OXFAM WEST ORISSA PROGRAMMEରେ ଦିନେ ବା ଦୁଇଦିନ କାଟିବି। ତେଣୁ Sept last weekରେ ତମେ କେଉଁଠି ଥିବ ଶୀଘ୍ର ଲେଖିବ। ତମ ସହ ଦେଖା ହେବା ନିତାନ୍ତ ଜରୁରୀ ବୋଲି ମୁଁ ମନେକରୁଛି। ହାଇଦ୍ରାବାଦ୍ ନ ଗଲେ ୨୦ ତାରିଖ ଆଡ଼କୁ ତାଳଚେର ଯିବି। ଏ ଭିତରେ ବଙ୍କର୍ SWRCରେ ମୋତେ ନିଯୁକ୍ତି ଦେଇଛି। କେତେ ଦରମା ଦେବେ ନିର୍ଦ୍ଧାରିତ ହୋଇ ନାହିଁ। ମୁଁ ବିଶେଷ କିଛି ଆଶା କରୁ ନାହିଁ।

'Fathers and Sons' ପଢ଼ିସାରିବା ପରେ ମୁଁ ପୁଣି Turgenevଙ୍କ 'LIZA' ବୋଲି ଖୁବ୍ ସୁନ୍ଦର ଉପନ୍ୟାସଟି ପଢ଼ିଛି। ଏବେ୍ ଏଠାରେ ତାଙ୍କର 'SMOKE' ଉପନ୍ୟାସ ପଢୁଛି। ଏହା ୧୮୬୧ର Serf Emancipation ଓ ତତ୍କାଳୀନ ରାଜନୀତିକୁ ନେଇ ଲେଖାଯାଇଛି। Turgenevଙ୍କ କବିତାଧର୍ମୀ ଲେଖାକୁ ତମେ ପସନ୍ଦ କରିବ। ଏହାଛଡ଼ା Maoଙ୍କର ଜୀବନୀ ଓ 'Red Star Over China' ଏ ଦୁଇଟି ବହି ମୁଁ ସାଙ୍ଗରେ ଆଣିଛି।

ଗତ ୧୪ ତାରିଖରେ ମୋର ଜନ୍ମଦିନ ଥିଲା। ଏହା ପୂର୍ବରୁ ମୁଁ ଅମ୍ଳାନ ପାଖକୁ ଯିବାକୁ ଯୋଜନା କରିଥିଲି। କିନ୍ତୁ ସେ ଏବେ ତା'ର ମାମୁଙ୍କ ଚିକିତ୍ସା ନେଇ ବ୍ୟସ୍ତ ଥିବ ବୋଲି ମୁଁ ଗଲି ନାହିଁ। ସେ ଅନେକ ଦିନ ହେବ ଲେଖି ନାହିଁ। ମୁଁ କିନ୍ତୁ ତା' ପାଖକୁ ଏ ଭିତରେ ଏକାଧିକ ବାର ଲେଖିସାରିଛି।

ଓଡ଼ିଶାରେ କ'ଣ ହେଉଛି ନ ହେଉଛି ମୁଁ ଜାଣିପାରୁନାହିଁ। ତମେ ଏ ବିଷୟରେ କିଛି ଲେଖୁଥିବ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମକୁ ଅନେକ ଚିଠି ଲେଖିସାରିବା ପରେ ଆତ୍ମବୋଧ ଆସୁଛି ଯେ ଏହା ହୁଏତ ଅସମାପ୍ତ ଅଥବା ତମ ପାଇଁ ଅର୍ଥହୀନ । ଦୁଇଟି ସଚେତନ ମଣିଷ ଭିତରେ ସବୁପ୍ରକାରର ଯୋଗାଯୋଗ ସବୁବେଳେ ରହିବା ମଧ କଷ୍ଟକର । କିନ୍ତୁ ବୁଝାମଣା ତ ରହିଛି ଓ ସବୁଦିନେ ରହିବ । ଏଠିକାର ଜୀବନ ଖୁବ୍ ସଂକ୍ଷିପ୍ତ । ଗ୍ରାମ୍ୟ ଉନ୍ନୟନ ଯଦିଓ ମୋ ପାଇଁ ଜୀବନମରଣର ପ୍ରଶ୍ନ, ତଥାପି ମୁଁ ସମ୍ପୂର୍ଣ୍ଣ ଭାବେ ଯେ ଲିପ୍ତ ହୋଇପାରୁଛି, ଏହା ମୁଁ କହିପାରିବି ନାହିଁ । ଏଠାରେ ଥିବା ମଣିଷମାନଙ୍କର ତେଲଲୁଣ ସଂସାର କଥା ଶୁଣିବାକୁ ପଡ଼େ, କାହାର କୂଅରେ ବୋରିଙ୍ଗ୍ ହେବ, କାହା ଘରେ ଜ୍ୱର ଲାଗିଛି, କାହା ଖଳାରୁ ବାଦାମ ବସ୍ତା ଚୋରୀ ହୋଇଯାଇଛି ବା କିଏ କହୁଛି ମନ୍ଦିରରେ ପୂଜା କରିବା ଇତ୍ୟାଦି ଖୁବ୍ କିଛି ଏସବୁର ସାଧାରଣ ପ୍ରବାହ ଦେହଘଷା ହୋଇଗଲାଣି । ସେଣ୍ଟର୍‌ର ସବୁ ଗୁମର କଥା ଶୁଣି ଶୁଣି କାନ ବଧିର ହୋଇସାରିଛି । ଖେମ୍‌ରାଜ୍ ସହ ଯୁକ୍ତି କରିବା ମଧ ଆଜିକାଲି କଠିନ ବ୍ୟାପାର ହୋଇପଡୁଛି । ଦେହଜ ଯନ୍ତ୍ରଣା ଓ କ୍ଷୁଧାର କଥା ଆଲୋଚନା କରି ମଧ ସମୟର ଚକକୁ ପ୍ରଖର କରିହେଉ ନାହିଁ ।

ମୁଁ ଭାରି ଏକାକୀ ବା ମୋର ଶୂନ୍ୟତାର ଆତ୍ମଉବାଚ ତଥା ଅସଂଲଗ୍ନ ଶବ୍ଦାବଳୀ, ଏସବୁ ପରିପୂରକ ନୁହନ୍ତି କିମ୍ବା ସ୍ଥିତପ୍ରଜ୍ଞତାର ପରିମାପକ ନୁହନ୍ତି । ମୋର ଏକାକୀବୋଧ ସମ୍ପର୍କରେ ମୁଁ ଭାରି ଅନିଶ୍ଚିତ, ଯେପରି ମୋର କୋଳାହଳ ସମ୍ପର୍କରେ ମୁଁ ଭାରି ଅତିଷ୍ଠ । ଏଇଠି ଦିନ ପରେ ଦିନ ବିତି ଚାଲିଛି; କିନ୍ତୁ ଜୀବନ ସମ୍ପର୍କରେ କୌଣସି ନିଷ୍ପତ୍ତି ନେଇ ହେଉ ନାହିଁ । ଯାହାକିଛି ଅସ୍ପଷ୍ଟ ତାହା ସ୍ପଷ୍ଟ ହେଉନାହିଁ । ବରଂ ଅବିଶ୍ୱାସର ପ୍ରତ୍ୟୟ ବଢୁଛି, ଭଲ ପାଉଥିବା ମଣିଷମାନଙ୍କ ସହ ସମ୍ବନ୍ଧ ହ୍ରାସ ହେଉଛି । ମୋ ଜୀବନ ପାଇଁ ଦରଦ ବଢୁଛି, ମୋର ବଞ୍ଚିବାର ଅଯୌକ୍ତିକତାକୁ ସ୍ପଷ୍ଟ ଅନୁଭବ କରିହେଉଛି । ମୁଁ ଜାଣେ ନାହିଁ, ମୁଁ କିଏ ବା କାହିଁକି ଏଇଭଳି ଗୋଟାଏ ନକଲି ପରିଚୟକୁ ପାଥେୟ କରି ରଖିଛି । ମୁଁ ହଜିଯିବା କଥାରେ ଭାରି ସ୍ତମ୍ଭୀଭୂତ ହେଉଛି । ମୁଁ ଆପଣାକୁ ଆବିଷ୍କାର କରିବା କଥା କେବଳ ସ୍ୱପ୍ନ ଦେଖୁଛି ।

ଅମ୍ଳାନକୁ କହିଆସିଥିଲି ଯେ ତାହାକୁ କେତୋଟି ଓଡ଼ିଆ ପ୍ରବନ୍ଧ ପଠାଇବି । କିନ୍ତୁ ମୁଁ ଧାଡ଼ିଏ ସୁଦ୍ଧା ଲେଖି ନାହିଁ । କେଜାଣି କାହିଁକି ଅମ୍ଳାନ ପ୍ରତି ମୋର ଦାୟିତ୍ୱବୋଧ ଯେମିତି କ୍ରମଶଃ କମିଯାଉଛି । ଜୀବନରେ ସେ ତାହାର ହାନିଲାଭ ପାଇଁ ଦାୟୀ ରହୁ, ଏକଥା ହୁଏତ ମୁଁ ଆଶା କରୁଛି । ଗତ ମାସେ ଧରି ମୁଁ ତାହାକୁ ଲେଖିନାହିଁ । ମୁଁ କାହାକୁ ଆଜିକାଲି ଗୁରୁତ୍ୱ ଦେଉନାହିଁ ।

ସୁଧାକର ଚିଠି ଲେଖିଛି ଓ ଆମର ସୃଜନୀର ଉଦ୍ୟମ ବିଷୟରେ ପୁଣି ମନେ ପକାଇଦେଇଛି । ପ୍ରତିଶ୍ରୁତି ମୁଁ ଭୁଲି ନାହିଁ । କେବଳ ସଚେତନତାର ଅଭାବରେ ମୁଁ କିଛି ଲେଖିପାରୁ ନାହିଁ । ମୋର ଦରମା ଖୁବ୍ ଶୀଘ୍ର ବଢୁଛି । ଅରୁଣାକୁ ମୁଁ କହିଛି କିଛି ଲେଖା ଦେବାପାଇଁ । ସେ ମଧ ସମ୍ମତି ଦେଇଛି । ଆମର ପୂର୍ବନିର୍ଦ୍ଧାରିତ ଯୋଜନା ଅନୁଯାୟୀ ନବବର୍ଷରେ କିଛି ପ୍ରକାଶିତ ହେବ । ଏ ବିଷୟରେ ତମେ ସବିଶେଷ ଲେଖୁଥିବ ।

ଅରୁଣା ବଙ୍କର ଭଲ ଅଛନ୍ତି । ବଙ୍କର ତମ କଥା ପଚାରୁଥିଲା । ତମେ ତା'କୁ ଲେଖିଲେ ଭଲ ହୁଅନ୍ତା । ତା' ସହ ତମର ସମ୍ପର୍କ ଅବ୍ୟାହତ ରହିବା ମୁଁ ଉଚିତ ମନେକରୁଛି । ଏ ଭିତରେ ମୁଁ SWRCର କାର୍ଯ୍ୟପ୍ରଣାଳୀକୁ ବଦଳାଇବା ପାଇଁ ପ୍ରୟାସ କରୁଛି ଓ ଅନେକଙ୍କୁ ପ୍ରଭାବିତ କରୁଛି, ଯଦିଓ ଏହା ଗୋଟାଏ ପ୍ରକାରର ବୃଥା ଚେଷ୍ଟା । ଆରତୀ ସହ ମୋର ସମ୍ପର୍କ ପ୍ରଗାଢ଼ ହେଉଛି ବୋଲି ମୁଁ କହିବି ନାହିଁ । କିନ୍ତୁ ପରସ୍ପର ସହ ଭାବବିନିମୟ ପାଇଁ ଆମେ ଉତ୍କଣ୍ଠାର ସହ ଅପେକ୍ଷା କରୁଛୁ । ଏ ବିଷୟରେ ମୁଁ ପୁଣି ଲେଖିବି । ତମେ ଲେଖୁଥିବ । ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

କାକର ପଡୁଥିବା କଥା ମନେ ପକାଇଦେଲ ।

ବାଣୀବିହାରରେ ଥିଲାବେଳେ ଏ ଶିଶିରସ୍ଫଟିକ ଗୁଡ଼ିକରେ ଶିଶୁ ସୂର୍ଯ୍ୟର ପ୍ରତିଫଳନ ଦେଖିବାକୁ ମୁଁ ସକାଳୁ ଉଠିପଡୁଥିଲି । ପାଦଗୁଡ଼ିକ ହେମାଳସ୍ପର୍ଶରେ ଅଥୟ ହୋଇ ପଡୁଥିବା କଥା ଅନୁଭବ କରୁଥିଲି । ଏହି ସମୟରେ ହିଁ ବାଣୀବିହାର ପାଖ ଘାସପଡ଼ିଆଗୁଡ଼ିକରେ ଗାଈ ମଇଁଷିପଲ ତଥା ଗାଈଆଳମାନେ ଆସ୍ଥାନ ଜମାଉଥିଲେ । ତମେ, ମୁଁ ଓ ଅମ୍ଳାନ ଏହା ଲକ୍ଷ୍ୟ କରି ଭାବପ୍ରବଣ ହେଉଥିଲେ । (ଏକଥା ମୁଁ ଅନେକ ବାର ଲେଖିଛି)

ଆଜି ଏଇଠି ଅନୁଭୂତି ନାହିଁ । ଅଭିଳାଷ ମଧ ନାହିଁ । ସକାଳୁ ନିଦ ଭାଙ୍ଗିଥିଲେ ମଧ ଅନତିଦୂର ପଡ଼ିଆରେ ମୋର ପଦଚିହ୍ନ ଛାଡ଼ି ଆସିବାକୁ ଆଗ୍ରହ ନାହିଁ । କାକର ପଡ଼ିବା କଥା କେତେ ନିଶ୍ଚିତ, ମୋର ସ୍ଥାଣୁ ପାଲଟିଯିବା କେତେ ଅପ୍ରାକୃତିକ । ଦିନରେ ଗରମ ହେଉଥିଲେ ମଧ ପାହାନ୍ତା ପହର ବେଳକୁ ଶୀତ ପଡୁଛି । କେତେ ଶୀଘ୍ର ଶୀତ ଆସିଗଲା ।

କେତେ ଦିନ ଧରି ମୁଁ ଗୋଟେ କିଛି ନିଷ୍ପତ୍ତି ନେବି ନେବି ବୋଲି ଭାରି ଉଦାସ ହୋଇପଡୁଛି । ଦିନକୁ ଦିନ ତ ରହିବା ବଡ଼ ଜଟିଳ ହୋଇପଡୁଛି ଏଇଠି । ଘର ଛାଡ଼ିଦେଲେ ଆଉ କେଉଁଠି ଆଶ୍ରା ମିଳିବ ମୋତେ ? ଏଥିପାଇଁ ଅବଚେତନ ମନରେ ଡରିଯାଉଛି ।

ପାଖରେ ମଧ୍ୟ ପଢ଼ିବା ପାଇଁ କିଛି ବହି ନାହିଁ । ପ୍ରଫୁଲ୍ଲଟା ଥିଲେ ମନକଥା ବୁଝୁଥାଆନ୍ତା । କିଛି ଭଲ ଲାଗୁ ନାହିଁ ।

କିଛି ଦିନ ତଳେ 'Father Sergius' ବୋଲି ଟଲ୍‌ଷ୍ଟୟଙ୍କର ବଡ଼ ଗଳ୍ପଟିଏ ପଢୁଥିଲି । ସାଧକ କୁମାରଗିରିଙ୍କ (ଚିତ୍ରଲେଖା) ସହ Father Sergiusଙ୍କର ଅଳ୍ପମାତ୍ରାରେ ସମ୍ବନ୍ଧ ଅଛି । ଏ ଗଳ୍ପରେ ଲେଖକ ଗୋଟାଏ ରକ୍ତମାଂସର ମଣିଷ ଭିତରେ ବାରମ୍ବାର ଝଡ଼ ସୃଷ୍ଟି କରୁଥିବା ପ୍ରବୃତ୍ତିଗୁଡ଼ିକୁ ଚମତ୍କାର ବ୍ୟକ୍ତ କରିଛନ୍ତି । ଅନ୍ତରାତ୍ମାରେ ଯଦି ଦ୍ୱନ୍ଦ୍ୱ ତା'ର ପ୍ରଭାବ ବିସ୍ତାର କରେ, ହତଭାଗ୍ୟ ମଣିଷଟି ଶେଷରେ ହିଁ ଭଗବାନ୍‌ଙ୍କର ଆଶ୍ରା ଲୋଡ଼େ । ସେ ଆକୁଳରେ ପ୍ରାର୍ଥନା କରେ 'Oh God, have mercy upon me' ।

ଏଇ କଥା ମଧ୍ୟ ଆମେ ଅଜାଣତରେ କହିପକାଉ । ଭୁଲ୍ କରି ବସିଲେ ଉଦ୍ଧାର ପାଇବା ପାଇଁ ଆତୁର କ୍ରନ୍ଦନ କରୁ; ଯାହା ଭିତରେ ଆମେ ଯେ ନିରାଶ୍ରିତ, ଏହି କଥା ବାରମ୍ବାର ଦୋହରାଇଥାଉ । ('ମୃତ୍ୟୁଞ୍ଜୟସ୍ତୁତି'କୁ ମୁଁ ବୋଧେ ଉପହାସ କରୁଛି) ସ୍ତବ କଲେ ଯେ ଉଦ୍ଧାର ମିଳିଯାଏ ବା ଭଗବାନ୍‌ଙ୍କ ଦେଖା ମିଳେ, ଏହି କଥାରେ ମୁଁ ବିଶ୍ୱାସ କରେ ନାହିଁ । ମଣିଷ ମହାଜାଗତିକ ସ୍ରୋତରେ ନିଜକୁ ସାମିଲ୍ କରୁ ବା ନ କରୁ, ପ୍ରାର୍ଥନା କରୁ ବା ନ କରୁ, ଭୁଲ୍ ନିଶ୍ଚୟ କରିବ ଓ ଏଥିପାଇଁ ଭୋଗିବ ନିଶ୍ଚୟ । Father Sergius ଏହି କଥା ଅନୁଭବ କଲାପରେ ମହାତ୍ମା ପଦବୀରୁ ନିଜକୁ ହଟାଇ ଦେଇ ସେ ପୃଥିବୀର ସାଧାରଣ ମଣିଷସ୍ତରକୁ ଓହ୍ଲାଇ ଆସିଥିଲେ । ଆଧ୍ୟାତ୍ମିକତାର ଅସ୍ୱଚ୍ଛ ବାତାବରଣ ଭିତରେ ସେ ଯେମିତି ଅଣନିଃଶ୍ୱାସୀ ହୋଇ ପଡ଼ିଥିଲେ; ଯେମିତି ମଣିଷକୁ ଭଲ ପାଇ ପାରି ନ ଥିଲେ । ଏଥିପାଇଁ, ଆପଣାର ଦୈହିକ କାମନା ପାଇଁ, ସେ ସାଇବେରିଆର କେଉଁ ଏକ ନିର୍ଜନ ଇଲାକାରେ ଥିବା ଫାର୍ମରେ ଶେଷକାଳ କାଟିଥିଲେ ।

ମୋ କଥା କିନ୍ତୁ ଏକାବେଳକେ ସ୍ୱତନ୍ତ୍ର । ମୁଁ ଭୁଲ୍ ନ କରି କ୍ଷମାମାଗେ । ଭୁଲ୍ କରି ଘୋଡ଼ାଇ ଦିଏ, ଏଡ଼ାଇ ବସେ । କିନ୍ତୁ ଉଭୟ କ୍ଷେତ୍ରରେ ଭାରି ଅସହଜ ହୋଇଯାଏ; ଭାରି ଦୁଃଖ ପାଏ । ତମକୁ ତ ଏହିକଥା ମୁଁ କେତେବାର କହିଥିବି ।

ଫଣିବାବୁଙ୍କ କଥା ଗତ ଚିଠିରେ ମୁଁ ଲେଖିପାରି ନାହିଁ । ତାଙ୍କ ସହ ତମର ବାଲେଶ୍ୱରର ଜୀବନ ଘନିଷ୍ଠ ଭାବେ ସଂଶ୍ଳିଷ୍ଟ, ଏଥିରେ ସନ୍ଦେହ ନାହିଁ । ଏହିଭଳି ବିଦାୟ ମୁହୂର୍ତ୍ତଗୁଡ଼ିକରେ ଅନେକ କିଛି ହଜାଇ ଦେଉଥିଲା ଭଳି ମନେହୁଏ । ତମେ ଅନୁଭବ କରିଥିବ ନିଶ୍ଚୟ ।

ଏ ପର୍ଯ୍ୟନ୍ତ ପ୍ରବନ୍ଧ ବିଷୟରେ ମୁଁ କିଛି ଭାବି ନାହିଁ । ଭାବୁଛି, ଏଇଠି ଲୋକମାନଙ୍କର ମରୁଡ଼ି ବିରୁଦ୍ଧରେ ସଂଗ୍ରାମ ଉପରେ କିଛି reflections ଲେଖିବି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ମୋର ଚିଠି ପାଇଥିବ । ତମକୁ ଲେଖିବାର ଆଗ୍ରହ ମୋର କମିଯାଇନାହିଁ ଯଦିଓ ମୋ ଚିଠିରେ ଏକ ତାତ୍ତ୍ୱିକ ଉପଲବ୍ଧି ତମ ପାଇଁ କ୍ରମେ କ୍ରମେ ଅସମ୍ଭବ ହୋଇ ପଡୁଥିବ । ମୋର ବ୍ୟକ୍ତିଗତ ଜୀବନରେ ଯେଉଁ ଜଟିଳତା କ୍ରମଶଃ ପ୍ରସାରିତ ହେଉଛି, ତା'ରି ପ୍ରଭାବରେ ମୁଁ ମଧ୍ୟ ମୋ ପାଇଁ ଦୁର୍ବୋଧ । ତଥାପି ତମମାନଙ୍କ ସହ ବନ୍ଧୁତ୍ୱ ଜାରି ରଖିବାରେ ମୁଁ ବଦ୍ଧପରିକର । ଆମେ ପରସ୍ପରକୁ ଖୁସି ରଖିବା ପାଇଁ ଅଭିନୟ କରିବା ଅତି ଘୃଣାର କଥା । ବରଂ ଅମ୍ଳାନ ଆମ ଭିତରେ ଭାରି ପ୍ରାକୃତିକ ଭାବେ ତା' ଜୀବନର ସନ୍ଦିଗ୍ଧତାକୁ ଆବିଷ୍କାର କରିପାରିଛି । ତେଣୁ ମୋର କାର୍ଯ୍ୟକଳାପକୁ ସେ ସନ୍ଦେହ କରିବାରେ ଅଥବା ମୋ ପ୍ରତି ଅପ୍ରତିହତ ଆସ୍ଥା ଫେରାଇନେବାରେ ମୁଁ ଆଦୌ ବିସ୍ମିତ ହୋଇ ନାହିଁ । ଏବେକାର ପରିସ୍ଥିତି କୌଣସି ଏକ ବିଶ୍ୱାସ ରଖିପାରିବାର ସମସ୍ୟା ନୁହେଁ । ବରଂ ଅନ୍ୟପ୍ରତି ବୁଝାମଣାର ରାସ୍ତା ଖୋଲିବାର ସହାୟକ ।

ଆଜିର ସୂର୍ଯ୍ୟାସ୍ତ ବେଳାରେ ଧୋନ୍‌ପୁରିଆ ଗାଁରୁ ଫେରୁଥିଲୁ । ଶୁଖିଯାଇଥିବା କେନାଲ୍ ଉପରେ ପଥର ପୋଲ । ତାହାରି ଉପରେ ବସିପଡ଼ିଥିଲୁ ନିଜ ଅଜାଣତରେ । ପଛରେ ଅନେକ ରଙ୍ଗର କ୍ୟାନ୍‌ଭାସ୍ । କିନ୍ତୁ ସେସବୁକୁ ଅନୁଭବ କରିବାକୁ ଯେଉଁ ଭାବପ୍ରବଣତା ଲୋଡ଼ା, ତାହା ମୋ'ଠାରେ ସମ୍ପୂର୍ଣ୍ଣ ଅନୁପସ୍ଥିତ । ଖେମ୍‌ରାଜ୍ ଅଙ୍ଗୁଳି ନିର୍ଦ୍ଦେଶ କରି କହୁଥିଲା ଯେ ଏଇଭଳି ରଙ୍ଗବେରଙ୍ଗର ଆକାଶତଳେ ନୀଡ଼ହରା ପକ୍ଷୀଟିଏ ଉଡ଼ିବାର ଦୃଶ୍ୟ ତାକୁ ଭଲ ଲାଗେ । ଗୋଟାଏ ପଲକରେ ମୁଁ ହୁଏତ ଏ ଦୃଶ୍ୟକୁ ଦେଖିଲି, କିନ୍ତୁ ପରମୁହୂର୍ତ୍ତରେ ମ୍ଳାନ ଆଲୋକରେ ମୁଁ ଅନୁଭବ କରୁଥିଲି, ମୋର ଅନ୍ଧ ଅତୀତ ଆଜି ଯେମିତି ଅର୍ଥହୀନ । ବିଗତ ଦିନର ମୂଲ୍ୟବୋଧ ଆଜି ସମ୍ପୂର୍ଣ୍ଣଭାବେ ନିରର୍ଥକ । ମୋର କିଛି ଆଜି ମନେପଡୁ ନାହିଁ ।

× × × ×

ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ଯେ ସେଣ୍ଟର୍ ଏକ ଜଟିଳମୟ ପରିସ୍ଥିତି ଦେଇ ଗତିକରୁଛି । ଗତ ସାତବର୍ଷ ଧରି ଗଢ଼ାଯାଇଥିବା ସଙ୍ଗଠନ ଉପରେ ଅତି ଆକସ୍ମିକ ଭାବେ ଫାଟ ଦେଖାଦେଇଛି । ଅରୁଣା, ଆରତୀ ଓ ଅନ୍ୟ ଯେଉଁମାନଙ୍କ ଭିତରେ ଉତ୍ସର୍ଗ କରିବାର ତୀବ୍ର ଇଚ୍ଛା ରହିଆସିଛି, ସେମାନେ ସଂସ୍ଥା ଛାଡ଼ିଦେବା ଉପରେ । କାହିଁକି ଏଇଭଳି ଘଟୁଛି, ହୁଏତ ମୋଭଳି ସାଧାସିଧା ମଣିଷଟିଏ ବୁଝିପାରୁନାହିଁ । ମନେହେଉଛି ସମସ୍ତେ ଯେମିତି କେଉଁ ଏକ ଅସହାୟ ପରିସ୍ଥିତିରେ ପଡ଼ିଯାଇଛନ୍ତି । ମନେହେଉଛି ସମସ୍ତେ ଯେମିତି କେଉଁ ଏକ ଅସହାୟ ପରିସ୍ଥିତିରେ ପଡ଼ିଯାଇଛନ୍ତି । ମନେହେଉଛି ସମସ୍ତେ ଯେମିତି କେଉଁ ଏକ ବିଗତ ଘଟଣା ପ୍ରତି ଭାରି ସତର୍କ ହୋଇଛନ୍ତି । ଅରୁଣା ସହ

ମୋର ଦୀର୍ଘ ସମୟ ଧରି ଆଲୋଚନା ହୋଇଛି । ସେ କହେ ଯେ Rural development ତା' ଜୀବନର ଗୋଟାଏ existential solution । ବଙ୍କର କହୁଛି ଯେ ଏହା ଗୋଟାଏ mechanical change । ଆରତୀ ଭାବୁଛି ସମ୍ପୂର୍ଣ୍ଣ ଭାବେ ଜଡ଼ିତ ହୋଇଯିବା ପାଇଁ SWRC ସୁଯୋଗ ଦେଉ ନାହିଁ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ ମୋ ଚିଠି ପାଇଥିବ । ୨୭ ତାରିଖ ସକାଳେ ଏଠାରେ ପହଞ୍ଚିଲି । ଏବେ ଦୁଇ ଦିନ ଧରି ମୁଁ ବାହାରକୁ ବାହାରି ନାହିଁ । ଅମ୍ଳାନର ସାଙ୍ଗ ଧନଞ୍ଜୟ ମୋର ଅନେକ ଦିନର ପରିଚିତ । ସେ State Bank of Patialaରେ କାମ କରେ । ମୁଁ ଏବେ ତା' ପାଖରେ ହିଁ ରହୁଛି । ଆମେ ଦୁହେଁ ଦୁଇ ତାରିଖକୁ ବାଙ୍ଗାଲୋର୍ ଯାଉଛୁ । ମାଡ୍ରାସ୍‌ରେ Prof. Shesadriଙ୍କ Appropriate Technology ଉପରେ ଚାଲିଥିବା ଗବେଷଣାକୁ ମୁଁ ଦେଖିବି । ମହାବଳୀପୁରମ୍ ଯିବା ରାସ୍ତାରେ ଏହା ପଡ଼େ । ତାଙ୍କ ସହ ଗାଁଗହଳରେ ବୈଜ୍ଞାନିକ ପଦ୍ଧତିର ବିନିଯୋଗ ମୁଁ ଆଲୋଚନା କରିବି । ସବିଶେଷ ତମକୁ ଲେଖିବି ।

ବାଙ୍ଗାଲୋର୍‌ରୁ ତ୍ରିଭେନ୍ଦ୍ରମ୍ ରାସ୍ତାରେ ମୁଁ ଧର୍‌ୱାଡ୍ ଯିବାକୁ ଭାବୁଛି । ସେଠାରେ ମୋର ସାଙ୍ଗର ନିମନ୍ତ୍ରଣ ଅନେକ ଦିନରୁ ବାକି ରହିଛି । ଓଡ଼ିଶାକୁ ଯେମିତି ହେଲେ ଦଶହରା ବେଳକୁ ଫେରିଆସିବି । ଏବେ ରେଳରାସ୍ତାରେ ଓଡ଼ିଶା ସହ ଯୋଗାଯୋଗ ନାହିଁ । କେମିତି ଫେରିବି, ଏବେ ମୁଁ ସ୍ଥିର କରିନାହିଁ । ତମ ସହ ଦେଖାହେବାଟା ଖୁବ୍ ଜରୁରୀ । ଏହାଛଡ଼ା ମୁଁ ଦିନେ ଦୁଇଦିନ ପାଇଁ କାଶୀପୁର ଯିବାକୁ ଭାବୁଛି । Joe ସହ ମଧ୍ୟ Project ବିଷୟରେ ଆଲୋଚନା କରିବି । ମନେହେଉଛି ସମୟ ମିଳିବ ନାହିଁ । ଫେରନ୍ତା ରାସ୍ତାରେ ମୁଁ ବିଳାସପୁର ଯିବି ଓ ବସ୍ତରରେ କାମ କରୁଥିବା ଜଣେ ବ୍ୟକ୍ତି ସହ କଥାବାର୍ତ୍ତା କରିବି । ଅମ୍ଳାନ ମୋ ସହ ଆସିପାରିଲା ନାହିଁ ବୋଲି ଦୁଃଖ କରୁଥିଲା । ତେଣୁ ଆମେ ଦୁହେଁ ଚଣ୍ଡିଗଡ଼ ଓ ସିମ୍‌ଲା ଯିବାକୁ ଯୋଜନା କରିଛୁ । ଅମ୍ଳାନ ଦଶହରାରେ ଓଡ଼ିଶା ଆସୁନାହିଁ ।

ମୋର ଆର୍ଥିକ ପରିସ୍ଥିତି ଖୁବ୍ ଭଲ ନୁହେଁ । ବଙ୍କର୍ ଏବେ ମୋର ଦରମା ୬୦୦କୁ ରଖିଛି । ମୁଁ ଅଧିକ କେବେହେଲେ ମାଗି ନାହିଁ । ଯାତ୍ରା ଖର୍ଚ୍ଚ ପାଇଁ ମୁଁ ୧୫୦୦ ଟଙ୍କା ଆଣିଥିଲି । ତାହା ଯଥେଷ୍ଟ ହେବ କି ନାହିଁ ମୁଁ ଜାଣିନାହିଁ । ଦଶହରା ବେଳକୁ ବାବାମାଆଙ୍କ ପାଖକୁ ଟଙ୍କା ପଠାଇବାର କଥା । ତମେ ଦୁର୍ଗାକୁ ୩୦୦ ଟଙ୍କା ଦେଇଥିଲ କି ? ସୁବିଧା

ହେଲେ ତମେ ବାବାଙ୍କ ପାଖକୁ ୧୦୦ ଟଙ୍କା ପଠାଇଥିବ । ମୁଁ ଫେରିଲାବେଳେ ଆଉ କିଛି ସେମାନଙ୍କୁ ଦେଇଯିବି । ତମେ ବିଚାର କରିବ ।

ମାଡ୍ରାସ୍ ଆସିବାବେଳେ Jack Londonଙ୍କ ଗପଗୁଡ଼ିକ ପଢୁଥିଲି । ସବୁଥିରେ ମୃତ୍ୟୁ ସହ ମଣିଷର ସଂଘର୍ଷ ଓ ପ୍ରାକୃତିକ ଶକ୍ତିର ଅପ୍ରତିହତ ପ୍ରଭାବ ସ୍ପଷ୍ଟ ବର୍ଣ୍ଣନା କରାଯାଇଛି । ଖୁବ୍ ଉପଭୋଗ କରିଛି । ଗତକାଲି Scott Fitzeraldଙ୍କ 'The Great Gatsby' ପଢୁଥିଲି । ଖୁବ୍ ଭଲ ବହିଟିଏ । ତମେ ସୁବିଧା ଦେଖି ପଢ଼ିବ । 'Wanderings' ଆଉଥରେ ପଢୁଥିଲି । ବାଣୀବିହାର ଦିନଗୁଡ଼ିକରେ ତାହା ଯେମିତି ଭଲ ଲାଗୁଥିଲା, ଏବେ କାହିଁକି ତାହା ଆକୃଷ୍ଟ କରିପାରିଲା ନାହିଁ ।

ତମେ ଦଶହରା ଛୁଟିରେ କେଉଁଠି ଥିବ କହିହେଉ ନାହିଁ । ପ୍ରଥମେ ତମ ପାଖକୁ ଯିବି ବା ଘରୁ ତମ ପାଖକୁ ଆସିବି, ମୁଁ ନିଶ୍ଚିତ କରିନାହିଁ ।

ତମେ ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମକୁ ଲେଖିବାର ତୀବ୍ର ଇଚ୍ଛାକୁ ମୁଁ ଦମନ କରି ପାରୁନାହିଁ । ଗତ ଚିଠିରେ ଅତି ସଂକ୍ଷିପ୍ତ ଭାବେ ତମକୁ ଲେଖି ଏଠାରେ ମୋର ଉପସ୍ଥିତିକୁ ଜଣାଇଥିଲି । ଏଇଠି ଅନବରତ ବର୍ଷା ଲାଗି ରହିଛି । ଜୟପୁରର ଦୁର୍ଦ୍ଦଶା କଥା ଖବରକାଗଜରୁ ତମେ ପଢ଼ିଥିବ । ଏଇସବୁ ମୁହୂର୍ତ୍ତମାନଙ୍କରେ ମୁଁ ଖୁବ୍ ବିଚଳିତ ହୋଇପଡୁଛି ।

ତିଲୋନିଆକୁ ଏକ ଅନ୍ୟ ଭୂମିକାରେ ପର୍ଯ୍ୟବେକ୍ଷଣ କରିବା ଅନ୍ତତଃ ପକ୍ଷେ ଭଲ ଲାଗୁଛି । ଏଠାକାର ନିତିଦିନିଆ ଘଟଣାପ୍ରବାହ ସହ ଜଡ଼ିତ ହେବାର ଦୁର୍ଭାଗ୍ୟ ନାହିଁ । ଅନ୍ୟ ପକ୍ଷରେ ଅରୁଣା ଓ ବଙ୍କର ସହ ମୋ ମତ ବିନିମୟ ଅବ୍ୟାହତ ରହିଛି । କିଛି ଦିନ ତଳେ ଏଠାକାର field level workerମାନଙ୍କ ପାଇଁ ଉଦ୍ଦିଷ୍ଟ workshopରେ ସାଙ୍ଗଠନିକ ପରିଭାଷା ନେଇ ମୁଁ ତର୍କ କରିଥିଲି । ମଣିଷ କାହିଁକି କାର୍ଯ୍ୟରତ ହୋଇପାରେ ତାହା ମଧ୍ୟ ଆମେ ବିଶ୍ଳେଷଣ କରୁଥିଲୁ । ସ୍ୱାଭିମାନ ଓ ମୂଲ୍ୟବୋଧ ଉପରେ ମଧ୍ୟ ଗଭୀର ଚର୍ଚ୍ଚା ହୋଇଥିଲା । ତିଲୋନିଆରେ ଏବର୍ଷ ଆରମ୍ଭରୁ ହିଁ ପରିଭାଷା ଓ ସଂଜ୍ଞାକୁ ନେଇ ଗଢ଼ି ଉଠିଥିବା set of hypothesis ଉପରେ ଗଭୀର ଭାବେ ଅଧ୍ୟୟନ ଲାଗିରହିଛି । 'Tools of Analysis' କଥା ମଧ୍ୟ ଧ୍ୟାନକୁ ନିଆଯାଇଛି । ଗଣସଙ୍ଗଠନର ପ୍ରାରମ୍ଭରେ ଏଠାରେ ବୌଦ୍ଧିକ ପର୍ଯ୍ୟାଲୋଚନା ସମସ୍ତଙ୍କୁ ଆକ୍ରାନ୍ତ କରିଛି ।

ଏଠାରେ Annual Report ଲେଖିବା ପାଇଁ ମୁଁ ଅଟକି ରହିଛି । ମନ ଲାଗୁନାହିଁ । ଅରୁଣା ସହ ଦିନର ଅର୍ଦ୍ଧାଧିକ ସମୟ ତର୍କ ଓ ବୁଝାମଣାରେ କଟିଯାଉଛି । ଅରୁଣା 'Brothers Karamazov' ପଢୁଛି । Ivanର କଥା ଓ ଉକ୍ତିମାନଙ୍କ ସପକ୍ଷରେ ସେ ଯୁକ୍ତି କରୁଛି । Ivanର ସେହି ବିଖ୍ୟାତ ଧାଡ଼ିଟିକୁ ସେ ବାରମ୍ବାର ଉଲ୍ଲେଖ କରୁଛି – "ଯିଏ ମଣିଷକୁ ଭଲ ପାଏ, ସେ ସମାଜକୁ ଭଲ ପାଇପାରେ ନାହିଁ ଓ ଯିଏ ସମାଜକୁ ଗୁରୁତ୍ୱ ଦିଏ, ସେ ମଣିଷକୁ ଗୁରୁତ୍ୱ ଦିଏ ନାହିଁ ।" ଏଠାକାର self-evaluation ଉପରେ ଆମେ 'concept', 'practice', 'Strategy' ଓ 'Methodology' ଆଦି ଶବ୍ଦକୁ ବ୍ୟାଖ୍ୟା କରୁଛୁ । ଏପ୍ରକାର ସମୟସାପେକ୍ଷ ପଦ୍ଧତିକୁ ବଙ୍କର 'beating around the bush' ବୋଲି କହୁଛି ।

× × × ×

ଅରୁଣାର ଲାଇବ୍ରେରୀରେ ଏଥର କେତୋଟି ଭଲ ବହି ସ୍ଥାନ ପାଇଛି । ଏହାଛଡ଼ା ଏଠାରେ ସଦ୍ୟ ଗଢ଼ି ଉଠିଥିବା ଲାଇବ୍ରେରୀରେ British Council ପକ୍ଷରୁ କେତୋଟି ବହି ମୋର ଧ୍ୟାନ ଆକର୍ଷଣ କରିଛି । ଏବର୍ଷର ପଢ଼ିଥିବା ବହିମାନଙ୍କରେ Schumacherଙ୍କ 'A Guide for the Perplexed' ଅନ୍ୟତମ ଭଲ ବହି ରୂପେ ଗଣ୍ୟ ହେବେ । ଏକ ଦ୍ୱନ୍ଦ୍ୱବିହୀନ ବହି ହିସାବରେ ଏହାକୁ ମୁଁ ମନେକରୁଛି ଯେଉଁଠି ତଥାକଥିତ 'ବାଦ'ର ସ୍ଥାନ ନାହିଁ । ସୁମାକର୍ ମୁଖ୍ୟତଃ 'Four Levels of Being' ଓ 'Four Fields of Knowledge' ଉପରେ ଗୁରୁତ୍ୱ ଦେଉଛନ୍ତି । ବିବର୍ତ୍ତନବାଦ ଓ Transcendental philosophyର ଏକ ତୁଳନାତ୍ମକ ଚିତ୍ର ମଧ୍ୟ ଅଛି । ତାଙ୍କରି ଭାଷାରେ ଏଯୁଗର ସମସ୍ୟା ଅର୍ଥନୈତିକ ନୁହେଁ । ବରଂ ଏକ ନୈତିକ ପ୍ରଶ୍ନ । ଗୋଟାଏ ସ୍ତରରେ ସବୁ ପ୍ରଶ୍ନର ସନ୍ଦେହ ଓ ଜଟିଳତା ସ୍ପଷ୍ଟ । କିନ୍ତୁ ଅପର ସ୍ତରରେ ତାହା ଏକାକାର ଏବଂ ଅର୍ଥହୀନ ।

ଏହାଛଡ଼ା 'Marx of the Beginners' ବୋଲି କାର୍ଟୁନ୍ ବହିଟିଏ ପଢ଼ିଛି । 'The Box Man' ଅରୁଣା ଦେଇଛି । ଜାପାନ୍‌ର ଏହା ଅନ୍ୟତମ ଶ୍ରେଷ୍ଠ ଉପନ୍ୟାସ, ଯାହା ଦସ୍ତୋଭସ୍କିଙ୍କର 'Notes from Underground' ସହ ତୁଳନୀୟ । ମିସିମା (Yukio Mishima)ଙ୍କ Modern No plays ମଧ୍ୟ ଦେଖୁଥିଲି । ଅଦ୍ୱିତୀୟ ଜାପାନୀଢଙ୍ଗର ଏ ନାଟକଗୁଡ଼ିକ ଗଭୀର ରେଖାପାତ କରିଛି, ଯେଉଁଥିରେ ପ୍ରଥମେ ଚରିତ୍ରଟି ମଣିଷ ରୂପରେ ଆସେ ଓ ଦ୍ୱିତୀୟାର୍ଦ୍ଧରେ ତାହାର form ବଦଳିଯାଏ; ସମୟେ ସମୟେ ଅଶରୀରୀ ମଧ୍ୟ ପାଲଟିଯାଏ । ସଂଳାପ ଅସଂଲଗ୍ନ ଓ ବିକ୍ଷିପ୍ତ ।

'Keywords' ଊନବିଂଶ ଶତାବ୍ଦୀର ପ୍ରଚଳିତ ଶବ୍ଦମାନଙ୍କୁ ନେଇ ଲେଖାଯାଇଛି । ଏହି ଶବ୍ଦମାନେ ଗତ ଶହେବର୍ଷରେ ଭିନ୍ନ ଭିନ୍ନ ଅର୍ଥ ଧାରଣ କରିଥିବା କଥା ଜଣାପଡୁଛି । ଶବ୍ଦର ବ୍ୟବହାର (semantics) ଭାରି ଜଟିଳ । ଆମେ ସାଧାରଣ ପ୍ରୟୋଗ ବେଳେ

ଏହି ଦୃଷ୍ଟିକୋଣକୁ ବିଚାରକୁ ନେଇ ନ ଥାଉ । ତମ ସହ ଦେଖାହେଲେ ମୁଁ ଏକଥା ସବିଶେଷ କହିବି ।

× × × ×

ତିଲୋନିଆର ସୂର୍ଯ୍ୟାସ୍ତ ଚମତ୍କାର ବୋଲି ତମକୁ ଲେଖିଥିଲି କି ? ସୂର୍ଯ୍ୟାସ୍ତର ସେପାରିରେ ସେଇ ଚିହ୍ନାଚିହ୍ନା ମୁହଁମାନେ, ଯେଉଁମାନଙ୍କୁ ମୁଁ ଭଲ ପାଇଥିଲି, ଯେଉଁମାନଙ୍କଠାରୁ ମୁଁ ସର୍ତ୍ତହୀନ ସମର୍ପଣ ଆଶା କରିଥିଲି । କ୍ଷଣିକ ରଙ୍ଗର ଉଦ୍‌ଭାସ ପରେ ସବୁ ମଳିନ ପଡ଼ିଯାଇଛି । ସେମାନଙ୍କୁ ମୁଁ ଭୁଲିବାକୁ ଚେଷ୍ଟା କରୁଛି । ସେମାନଙ୍କର ଠିକଣା ଜାଣି ମଧ୍ୟ ଠାବ କରିବାର ପ୍ରୟାସ କରୁନାହିଁ । ଏଇ ସର୍ତ୍ତହୀନ ସମ୍ପର୍କକୁ ତମେ myth ବୋଲି କହିବ କି ? Illusion ବୋଲି କହିପାରିବ କି ? ମୁଁ ଦ୍ୱିମତ ହେଉନାହିଁ ।

ଏ ଭିତରେ ଅମ୍ଳାନ ଏଠାକୁ ଲେଖିଥିଲା । ତା' ସହ ଅଳ୍ପ ସମୟ ପାଇଁ ଦେଖାହେବ ନିଶ୍ଚୟ । ତମେ କେମିତି ଅଛ ? ଆଉ ନିବେଦିତା ଭାଉଜ ? ଭଲ ଥିବେ ନିଶ୍ଚିତ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଲି । ଏହାର କିଛି ସମୟ ପୂର୍ବରୁ ମୋର ମାନସିକ ଭାରସାମ୍ୟତା ନଥିଲା ଯେମିତି । ସକାଳୁ ଅନୁରିତା ସହ ଛୋଟାନାରେନା ମୋଟରସାଇକେଲ୍‌ରେ ଯାଇଥିଲି । ସେଇଠି କେତେକ ସାଧାରଣ ଅନୁଭୂତି ଉପରେ ତା' ସହ ତର୍କ ହେଲା ଓ କିଛି ବୁଝି ପାରୁ ନ ଥିବା ଏ ଝିଅଟି ସହ୍ ମୁଁ କୌଣସି ପ୍ରକାରେ ସନ୍ଧି କରିପାରିଲି ନାହିଁ । ଫେରନ୍ତା ରାସ୍ତାରେ ମୋଟର୍ ସାଇକେଲ୍ କ୍ଲଚ୍‌ତାରଟି ଛିଣ୍ଡିଗଲା । ଅଯଥାରେ ହଇରାଣ ହେବାକୁ ପଡ଼ିଲା ।

ତମ କଥା ପୁଣି ମନେପଡ଼ିଲା ଓ ମୁଁ ପୁଣି ଉଦ୍ଦୀପନା ଫେରିପାଇଲି । ଆମ ସମସ୍ତଙ୍କ ଜୀବନନାଟକର ଆଉ ଏକ ଅଙ୍କ କଥା ମୁଁ ଏକ ନାଟକ ସମାଲୋଚକର ଦୃଷ୍ଟିକୋଣରୁ ବିଚାର କରୁଥିଲି । ଆମ ସମସ୍ତଙ୍କ ଭିତରେ ପରିବର୍ତ୍ତନର ବହମାନ ସ୍ରୋତକୁ ତମେ ଯଦି ମାନବୀୟ ଅଭିବୃଦ୍ଧି କହୁଥାଅ, ମୋର ଯୁକ୍ତି କରିବାର କିଛି ନାହିଁ । ଅନୁଭୂତିର ଭିନ୍ନଭିନ୍ନ ପର୍ଯ୍ୟାୟ ଦେଇ ଯାଇପାରିବା ଚରମ ପରିପକ୍ୱତା । ଏଇଥିପାଇଁ ତମେ ଯଦି ସାଧାରଣ ଜୀବନର ବାସ୍ତବ ଅବାସ୍ତବ ଘଟଣା ସହ ଲିପ୍ତ ହୋଇଯାଉଥାଅ, ମୁଁ ସ୍ୱୀକାର କରିବି ଯେ ତମର ଚେତନଶୀଳତା ହ୍ରାସ ହୋଇନାହିଁ ।

× × × ×

ଏଇଠି ରାତି ତମାମ୍ ଥଣ୍ଡା ପବନ ବହୁଛି । ଖୁବ୍ ଭଲ ଲାଗୁଛି । ଦିନସାରା ଏଠାକାର ଉତ୍ତାପ ନିଜର ସାମଗ୍ରିକ ସତ୍ତା ଜାଳିଦେବାରେ ସକ୍ଷମ ହୋଇପାରୁଛି । ଏଇଠି ନିମ୍ବଗଛରେ ଫଳ ଧରିଲାଣି । ପବନର ସୁସୁ ଶବ୍ଦ ଏକ ତରଙ୍ଗାୟିତ ମୂର୍ଚ୍ଛନା ତୋଳୁଛି । ଠିକ୍ ପୁରୀ ସମୁଦ୍ରକୂଳରେ ଝାଉଁଅରଣ୍ୟ ଭିତରେ ଯେଉଁ ପରିବେଶ ଆକର୍ଷିତ କରେ, ସକାଳର ସଜୀବ ମୁହୂର୍ତ୍ତମାନଙ୍କରେ ତାହାର ପୁନରାବୃତ୍ତି ଏଠାରେ ଯେମିତି ହେଉଛି ।

ତମେ ତ ଜାଣ, ନିଜର ସ୍ଥିତିକୁ କେନ୍ଦ୍ର କରି ଖୋଳ ଭଳି ରହିଥିବା ମୋର ସଂକ୍ଷିପ୍ତ ପୃଥିବୀ ଭିତରେ ମୁଁ କେତେ ଏକାକୀ । ପରାଜୟର ଗ୍ଳାନି ସହ ତାଳ ମିଳାଇ ମୋ ଭିତରର ଅପହଞ୍ଚ ଦୁର୍ଗକୁ ଆକ୍ରମଣ କରୁଥିବା ଅନ୍ୟ ଶକ୍ତିମାନଙ୍କ ଭିତରେ ଅଛନ୍ତି ମୋର ସୃଷ୍ଟି କରିପାରିବାର ଅକ୍ଷମତା ଓ ଅପରାଧବୋଧ । ସେଇଥିପାଇଁ ଯେତେବେଳେ ମୁଁ ଜୀବନର ଦୁର୍ବିସହତାକୁ ସ୍ପଷ୍ଟ ଦେଖିପାରୁଛି, ମୁଁ ବୋଧେ ଅବଚେତନ ଅବସ୍ଥାରେ ଭାଙ୍ଗି ପଡୁଛି ।

× × × ×

ତିଲୋନିଆ କଥା ତମକୁ ନ ଲେଖିବା ଅନ୍ୟାୟ ହେବ ବୋଧେ । ମୋର ବ୍ୟକ୍ତିଗତ ଉଦ୍ୟମ ଫଳରେ ଏଠାକାର ସାଧାରଣ ଦର୍ଶନରେ ସାମାନ୍ୟ ପରିବର୍ତ୍ତନ ଆସିଛି ବୋଲି ସମସ୍ତେ କହୁଛନ୍ତି । ମୁଁ ସମ୍ଭାଳୁଥିବା PAD (I) କାର୍ଯ୍ୟକ୍ରମଟିରେ ଯଥେଷ୍ଟ ଗତିଶୀଳତା ଦେଖାଦେଇଛି । ଏହାର ପ୍ରଭାବ ଫଳରେ ଅନ୍ୟ କାର୍ଯ୍ୟପ୍ରଣାଳୀରେ ଅସାଧାରଣ ପରିବର୍ତ୍ତନ ଦେଖାଦେଇଛି । ବଙ୍କର୍‌କୁ ଏବେ ପଇସାର ଅଭାବ ନାହିଁ । ଅନ୍ତତଃ ଆଗାମୀ ଦଶ ବର୍ଷ ପାଇଁ ସେ ନିଜକୁ ନିଶ୍ଚିତ କରିପାରିଛି ।

ବେଳେବେଳେ ମୁଁ ଖୁବ୍ ଅତିଷ୍ଠ ହୋଇଯାଏ ଏସବୁ ବିଷୟମାନଙ୍କରେ । Silora Block ରେ ସରକାରୀ ଯୋଜନା ସହ ସମାନ୍ତରାଳ ଗତିରେ SWRCର ବିଭିନ୍ନ କାର୍ଯ୍ୟକ୍ରମ କେଉଁଭଳି ରୂପନେବ, ମୁଁ କଳ୍ପନା କରିପାରେ ନାହିଁ । ଆଗାମୀ ତିନିବର୍ଷ ଭିତରେ ଅତିକମ୍‌ରେ ଏ ସଂସ୍ଥା ୩୦୦୦ ପରିବାରଙ୍କୁ ଆର୍ଥିକ ଓ ବୌଦ୍ଧିକ ସମର୍ଥନ ଦେବ । ଏହାର ଅର୍ଥ ଏ ବ୍ଲକ୍‌ର ପ୍ରାୟ ଏକ ଦଶମାଂଶ ଲୋକ SWRC କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରିବେ । ଯଦି ସବୁ ପୂର୍ବନିର୍ଦ୍ଧାରିତ ଯୋଜନା ଅନୁସାରେ ସଫଳ ହୁଏ, SWRC ଏ ବ୍ଲକ୍‌ର ସବୁ ଗରିବ ଓ ଅନୁନ୍ନତ ଜାତିର ପରିବାରଙ୍କୁ ଭିନ୍ନ ଭିନ୍ନ ସହଯୋଗ ଦେବ ।

ମୁଁ ଅରୁଣା ସହ ଯୁକ୍ତି କରୁଥିଲି । ମୁଁ କହୁଥିଲି ଏତେ ମାତ୍ରାରେ ଆର୍ଥିକ ସାହାଯ୍ୟ ଓ କାର୍ଯ୍ୟକ୍ରମକୁ ସମ୍ଭାଳିବା ପାଇଁ ଏ ସଂସ୍ଥାରେ ସବୁଲୋକଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ । ଏବେ ଏଠାରେ ଏଠାକାର ପାଖଆଖ ଗାଁର ଯୁବକମାନଙ୍କୁ ସବୁକ୍ଷେତ୍ରରେ ନେତୃତ୍ୱ ନେବାକୁ କୁହାଯାଉଛି । ମୁଁ ଯିବା ପୂର୍ବରୁ ଗୋଟାଏ workshop ସମ୍ପର୍କରେ ଗଭୀର ଭାବେ ଚିନ୍ତା କରୁଛି । ଅରୁଣା ମୋତେ ସମର୍ଥନ କରିଛି ।

ଆଜିକାଲି ସହରାଞ୍ଚଳକୁ ଆସୁଥିବା ତଥାକଥିତ ଆଧୁନିକ ମଣିଷମାନେ ଏଠାରେ ଖୁବ୍ ପଛରେ ପଡ଼ିଯାଇଛନ୍ତି । ଆରତୀ ଓ ସୁସ୍ମିତା ଉଭୟେ କିଛିଦିନ ଧରି ଭାରତ ଦର୍ଶନ କରି ଫେରିଆସିଛନ୍ତି । କିନ୍ତୁ ଏଠାରେ ରହିବା ତାଙ୍କ ପକ୍ଷରେ ସହଜ ହେବନାହିଁ । ଆଗରୁ ସେମାନେ ନିଜକୁ all knowledgeable ବୋଲି ଭାବୁଥିଲେ । ଏବେ ସେମାନଙ୍କର ସଂକୀର୍ଣ୍ଣତା ପ୍ରକାଶ ପାଇଛି । ସେମାନେ ଏବେ ତିଲୋନିଆରୁ ନିଜକୁ ଅପସାରଣ କରିବା ସମ୍ପର୍କରେ ନିଷ୍ପତ୍ତି ନେଉଛନ୍ତି । ଅରୁଣା କହୁଥିଲା ଯେ ମୁଁ ଚାଲିଗଲାପରେ ଏଠାରେ କିଛି ମାତ୍ରାରେ ଶୂନ୍ୟତା ଦେଖାଦେବ । ମୁଁ ସହମତ ହୋଇନାହିଁ ।

× × × ×

ଆସନ୍ତା ୧୮ ତାରିଖ ଆଡ଼କୁ ମୁଁ ଓଡ଼ିଶା ଯିବି । ଏଥରର ସର୍ଭେ କାମରେ ସଫଳତା ଆଣିବାକୁ ହେବ । ରାୟଗଡ଼ାରେ ପହଞ୍ଚି ମୁଁ କାଶୀପୁର ଅଞ୍ଚଳ କିଛି ଦିନ ରହିବି । ପ୍ରସନ୍ନ ବାବୁ ସେଠାକୁ ବଦଳି ହେଲେ ନା ନାହିଁ ମୁଁ ଜାଣିପାରିଲି ନାହିଁ । ତମେ ତାଙ୍କୁ ମୋର କଥା ଲେଖୁଥିବ । ସୁଧାକରକୁ ମୁଁ ଲେଖିବି ମୋ ସହ କିଛି ସମୟ କାଟିବାକୁ । ମୋଟାମୋଟି Income generation ଉପରେ ଗୁରୁତ୍ୱ ଦେଇ ମୁଁ project proposal କଥା ଲେଖିବି । ତମେ ଯଦି ନିର୍ଦ୍ଦିଷ୍ଟ ଭାବେ କିଛି ଭାବୁଥାଅ ଲେଖିବ । ଜୁନ୍ ୭/୮ ବେଳକୁ ମୁଁ ତିଲୋନିଆ ଫେରିଆସିବି । ଅମ୍ଳାନକୁ ମୁଁ ଲେଖୁଛି ମସୌରୀ ଯିବାକୁ ଯୋଜନା କରିବା ପାଇଁ । ତମେ ଜୁନ୍‌ମାସରେ କେଉଁଠି ଥିବ ଲେଖିବ ।

ତମେ ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମକୁ କାଲି ଲେଖିଥିଲି । ଏବେ ମଧ ଲେଖିବାକୁ ଅତି ତୀବ୍ର ଅନୁଭବ କରୁଛି । ବହୁ ପ୍ରତୀକ୍ଷିତ ମୌସୁମୀ ପ୍ରବାହ ଆମ ଇଲାକାର ସୀମାରେଖା ସ୍ପର୍ଶ କରିଛି । କାଲି ରାତିଠାରୁ ବର୍ଷା ଓ କୋହଲା ପାଗ ଲାଗି ରହିଛି । ଆଲୋକର ଅଭାବ ମଧ ଲକ୍ଷ୍ୟ କରିହେଉ । କାଶୀପୁରକୁ ଲାଗିଥିବା ପାହାଡ଼ର ମଥାନ ଉପରେ କୁହୁଡ଼ିର ଏକ ଧବଳ ଆସ୍ତରଣ । ମନେହେଉଛି ଯେମିତି ଜୀବନର ସମସ୍ତ ପ୍ରଶ୍ନ, ସମୀକରଣ, ଉଦ୍‌ବେଳନ ସବୁ ବାଷ୍ପୀଭୂତ ହୋଇ ଯାଇ ଧୀରେଧୀରେ ଜମାଟ ବାନ୍ଧୁଛି । କ୍ରିୟାପ୍ରତିକ୍ରିୟାର ଜଟିଳ ରୂପରେଖ କଳିହେଉଛି ।

ମୁଁ ଜାଣେ ତମକୁ ଏଇଭଳି ତୀବ୍ରଭାବେ ଅନୁଭବ କରିପାରିବାର ଅଦ୍ଭୁତ ପ୍ରକ୍ରିୟାକୁ ମୁଁ ସଂରକ୍ଷିତ ରଖି ପାରିବି ନାହିଁ । ଠିକ୍ ତମ ଭଳି ମୁଁ ମଧ୍ୟ ଏକ ପଦ୍ଧତି ଓ ତହିଁରୁ ଉଦ୍ଭବ ଢାଞ୍ଚା (ଛାଞ୍ଚ ବି କହିପାର !)ର ଚୋରାବାଲି ଭିତରେ ହିଜିଯିବି; ହଜିଯିବାର ଏକ ସଫଳ ଅଭିନୟ ଅନ୍ତତଃ କରିବି । ତମେ ଯେ ଏକ ସୁନ୍ଦର ଓ ସୁସ୍ଥ ଜୀବନର ସ୍ୱପ୍ନ ଦେଖିଆସୁଛ, ଏକ ଚଳତ୍‌ଶକ୍ତିମାନ ସ୍ଥିତିର ବାସ୍ତବ ଭୂମିକା ନିର୍ଦ୍ଧାରଣ କରିପାରୁଛ, ଏହା ମୁଁ ସହାନୁଭୂତିର ସହ ଗ୍ରହଣ କରୁଛି । ତମେ ସବୁ ଦ୍ୱନ୍ଦ୍ୱର ଲକ୍ଷ୍ମଣରେଖା ଅତିକ୍ରମ କରିପାରୁଛ, ମୁଁ ପ୍ରଶଂସା କରୁଛି ।

ସମ୍ପର୍କର ସବୁ ପ୍ରଶ୍ନଗୁଡ଼ିକୁ ମୁଁ ଆଭିଧାନିକ ଦୃଷ୍ଟିରେ ଦେଖୁନାହିଁ; ଜୈବିକ ଓ ଜାନ୍ତବ ଆଭିମୁଖ୍ୟଗୁଡ଼ିକୁ ପ୍ରକୃତିଗତ ବୋଲି ମୋରି ଜୀବନସ୍ରୋତର ବାଲୁପଠା ଉପରେ ଅତି ଯତ୍ନରେ ଅଙ୍କୁରିତ ହେବାକୁ ପ୍ରଶ୍ରୟ ଦେଉଛି । ତଥାପି ମୁଁ କହିବି ଯେ ସମ୍ପର୍କ ଏକ ଉଦ୍‌ଭାସ, ଏକ ତୀବ୍ର ଯନ୍ତ୍ରଣାର ପରିଭାଷା । ସମ୍ପର୍କକୁ କେବଳ ସେହି ଭଙ୍ଗୀରେ ଯଦି ଆମେ ଆବିଷ୍କାର କରିପାରୁ ନାହେଁ, ଭଳିକି ଭଳି ରଙ୍ଗ ଓ ଭଙ୍ଗୀ ବଦଳାଉଥିବାର ଅପରୂପ ଦୃଶ୍ୟ ଦେଖିପାରୁନାହେଁ । ଏଇଠି ବରଂ ଆମେ ପରସ୍ପରକୁ ବିଦାୟ ଦେବା, ଏ ସମ୍ପର୍କରେ କଫିନ୍ ଉପରେ ଆମେ ଶେଷଥର ପାଇଁ ଫୁଲତୋଡ଼ାଟିଏ ରଖିଦେବା ।

କିଛି ଦିନ ତଳେ ଅରୁଣାକୁ 'ସ୍ଥିତି' ଏକ ଆର୍ଟିଷ୍ଟର masterpiece ବୋଲି ଲେଖିଥିଲି, ଯେଉଁଥିରେ ସମ୍ପର୍କର ବିନ୍ୟାସ ଏକ ସୂକ୍ଷ୍ମ ଓ ଉଜ୍ଜ୍ୱଳମୟ ଗାରଟିଏ ବୋଲି ପ୍ରତୀୟମାନ ହେଉଥାଏ; ସବୁବେଳେ ! ଆକାର ଓ ଆୟତନ ବି ବୋଧେ ଅର୍ଥହୀନ ହୋଇଯାଏ; ଭୁଲି ବି ଯିବାକୁ ପଡ଼େ । ଦିନ ବୋଧେ ଅଦୂରବର୍ତ୍ତୀ, ଯେତେବେଳେ ଆମର ପରିପକ୍ୱ ସମ୍ପର୍କଟି ସେଇ ଉଦ୍‌ଭ୍ରାନ୍ତ ମନର ଏକ ଖିଆଲୀ ସ୍ୱପ୍ନ ଭଳି ଧୂଳିସାତ୍ ହୋଇଯିବ । ଆମେ ବୋଧେ ଏଥିପାଇଁ ଦୁଃଖ କରିବା ନାହିଁ, ଆମେ ନିଜକୁ ପ୍ରସ୍ତୁତ କରିବା ।

× × × ×

କୌଣସି କାରଣରୁ ଏ ଚିଠି ଅପୂର୍ଣ୍ଣ ରହିଗଲା –

× × × ×

ତମେ ଏତେ ଦିନ ପରେ ବି 'Resistance, Rebellion and Death'ଟି ନପଢ଼ିପାରିବା ଦୁଃଖର କଥା । ଅବଶ୍ୟ ମୁଁ ତମର ସମୟର ପ୍ରାଥମିକତା ବୁଝିପାରୁଛି । ଏବେ ମୁଁ ସେଇ କଥାପଦକ "…..by effort of each one of us and union of all."କୁ ଭଜୁଛି; ନିଜ ଭିତରେ ସାହସ ସଞ୍ଚାର କରୁଛି ।

ତମକୁ କହିଥିଲି ବୋଧେ ଆଗାମୀ ପ୍ରଥମ ସପ୍ତାହରେ ତିଲୋନିଆ ଯାଉଛି ବୋଲି । ସେଠାରୁ ମୋର ଗୁଜୁରାଟ ଯିବାର କଥା; ମୋର ବନ୍ଧୁ ପ୍ରମୋଦ ଠାରୁ ଏପର୍ଯ୍ୟନ୍ତ ମୁଁ କିଛି ଉତ୍ତର ପାଇନାହିଁ । ଜୋ' ଅଗଷ୍ଟ ଶେଷ ସପ୍ତାହରେ ଏକ ସେମିନାର୍ ଆୟୋଜନ କରୁଛି । ସେତେବେଳକୁ ପୁଣି ଦେଖା ।

ତମେ ଲେଖିବ ବୋଲି ଆଶା ଓ ବିଶ୍ୱାସ ।

ଭାଉଜ ଭଲ ଥିବେ ନିଶ୍ଚୟ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମ ଠାରୁ ଚିଠି ମିଳିନାହିଁ !

ଏ ଭିତରେ ନୀଳଗିରିରୁ ପାର୍ସଲ୍‌ଟି ମିଳିଛି ଓ ମୁଁ ମଉସାଙ୍କୁ ଲେଖିସାରିଛି । ବିବାହ ଉତ୍ସବ ଭିତରେ ତାଙ୍କର ସାମାଜିକ ମୂଲ୍ୟବୋଧର ସାମାଜିକ ପରିବର୍ତ୍ତନ ପାଇଁ ପ୍ରଚେଷ୍ଟା ମୋର ସବୁଦିନ ପାଇଁ ମନେ ରହିଯିବ । ତମର ଏକ ମିଥ୍ୟା ସାଂସ୍କୃତିକ ପ୍ରଥାର ସ୍ୱୀକୃତି ମଧ ମୋ ପାଇଁ ଅଲିଭା ହୋଇରହିବ । ମୁଁ ତମର ସୁଖୀସଂସାରର ପରୋକ୍ଷ ଅଂଶୀଦାର ଭାବେ ଏସବୁ ଘଟଣାପ୍ରବାହକୁ ଗୁରୁତ୍ୱ ଦେଉଥିବି ।

ଏଥରର ପୂର୍ଣ୍ଣିମାରେ ତମ ଦୁହିଁଙ୍କ କଥା ଖୁବ୍ ମନେପଡୁଥିଲା । ତମେ ସମୁଦ୍ରବେଳାଭୂମିକୁ ଯାଇଥିଲକି ସେଦିନ ? ତମେ ସେଦିନର ଜୁଆରିଆ ଓ ଫେନାୟିତ ସମୁଦ୍ରରେ ତୋଫା ଜହ୍ନର ପ୍ରତିଫଳନ ଦେଖି ବିମୁଗ୍ଧ ହୋଇଥିଲ କି ? ଦୂର ପରିବେଶରେ ମୋର ଏକ ଅସ୍ପଷ୍ଟ ପ୍ରତିଛାୟା ତମେ ଆବିଷ୍କାର କରିଥିଲ କି ? ଆଜିକାଲିର ସବୁ ବିକ୍ଷିପ୍ତ ଭୂମିକାମାନଙ୍କୁ ଦେଖିବା ପରେ ଏଇଭଳି ଆଲୋକ ଅନ୍ଧାରର ଅଭିନବ ମିଳନ ଆମପାଇଁ ଅପରିହାର୍ଯ୍ୟ । ଆମେସବୁ ନିଜକୁ ଅନ୍ତର୍ଦୃଷ୍ଟିରେ ଦେଖିବାକୁ ଯେତେବେଳେ ଭୟାତୁର ହୋଇଯାଉଛୁ, ଏକ ବିଚିତ୍ରବର୍ଣ୍ଣା ପୃଥିବୀ ଭିତରେ ନିଖୋଜ ହୋଇଯିବାକୁ ପଡ଼ିବ, ମୁହୂର୍ତ୍ତକ ପାଇଁ ହେଲେ ବି !

ତମେ ଦୁହେଁ ଏବେ କ'ଣ ଭାବୁଛ ? ଦୁହିଁଙ୍କ ଯୋଗାଯୋଗ (ବୌଦ୍ଧିକ ଓ ଭାବାବେଗର) କେଉଁଭଳି ପ୍ରସାରିତ ଓ ପର୍ଯ୍ୟବେସିତ ହୋଇଛି ଲେଖୁଥିବ । ଆନନ୍ଦର ଅନୁଭବକୁ ତମେ ବ୍ୟକ୍ତିକୈନ୍ଦ୍ରିକ ବୋଲି ମନେକରୁଥିଲେ ମୋତେ ବିନା ଦ୍ୱିଧାରେ ଜଣାଇବ । ମୋର ଏକ କ୍ରମକ୍ଷୟିଷ୍ଣୁ ବିଶ୍ୱାସକୁ ତମେ ବେଳେବେଳେ ସୁଦୃଢ଼ କରୁଥିବ ।

ଏବେ ପଢ଼ାପଢ଼ି କରିବା ପୁଣି ମୋ ପକ୍ଷରେ ଜରୁରୀ ହୋଇଯାଇଛି । କିଛି ଦିନ ଧରି 'The sociobiology Debate' ପଢ଼ିବାକୁ ଚେଷ୍ଟା କରୁଥିଲି । Ashley Montagu ଙ୍କ 'Man And Aggression'ରୁ କେତୋଟି ପ୍ରବନ୍ଧ ପଢ଼ିସାରିଛି । Gore Vidalଙ୍କ 'Kalki' ପଢୁଛି । Ayn Randଙ୍କ 'The Fountain Head' ପାଖରେ ରଖିଛି । Between Man and Man କେବେଠୁ ସରିଯାଇଛି । ତମେ ପଢ଼ିବାକୁ ଅବସର ପାଉନଥିବ ବୋଧେ ।

ତମେ ଓ ଭାଉଜ ଉଭୟ ମୋର ଶୁଭେଚ୍ଛା ଗ୍ରହଣ କରିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆଜି ସନ୍ଧ୍ୟାରେ ଅମ୍ଳାନ ପାଖକୁ ଫେରିଲି । ହୋଲିର ଉତ୍କଟତାରୁ ରକ୍ଷା ପାଇବା ପାଇଁ ମୁଁ ଗତ ଅଠର ତାରିଖରୁ ତିଲୋନିଆରେ ନଥିଲି । ଅଶୋକ ଏଥର ଖୁବ୍ ସହଜ ମନେହେଉଥିଲା । ଏକାନ୍ତରେ ଆମେ ଅନେକ କିଛି କଥାବାର୍ତ୍ତା କରିଥିଲୁ । ଓଡ଼ିଶା ପ୍ରୋଜେକ୍ଟ ଉପରେ ସେ ଖୁବ୍ ଆଶା ରଖୁଥିଲା ଓ ତା'ର ଆଗାମୀ ବିବାହର ସବୁ ଉତ୍ତେଜନା ମୋତେ ସଂକ୍ରମିତ କରିଥିଲା ।

ତମେ ବସନ୍ତ ପବନ କଥା ଲେଖିଛ; ମୁଁ ଉଲ୍ଲସିତ ହେଉଥିଲି । ତମର ପରିବେଶର ଭାବାବେଗ ଏବଂ 'nostalogia' ମାନଙ୍କ ସହ ଭାଉଜ ଯେ ଏକାକାର ହେଉଛନ୍ତି, ମୁଁ ଆଶ୍ୱସ୍ତ ହେଉଛି । ବନ୍ଧୁତା ଓ ଭଲ ପାଇବା ନେଇ ଆମର ପୁରୁଣା ତର୍କମାନେ ତମର ମନେପଡୁଛନ୍ତି କି ? ଏବେ ତମେ ଆହୁରି ସ୍ୱଷ୍ଟ ଭାବେ ଅନୁଭବ କରିପାରୁଥିବ ସବୁକଥା । ଭଲ ପାଇପାରୁଥିବା ମଣିଷଟି ଯେ ନିଶ୍ଚିତ ଭାବେ ଭଲ ମଣିଷଟିଏ, ଏଥିରେ ମୁଁ ନିଃସନ୍ଦେହ । 'ସର୍ତ୍ତହୀନ ସମର୍ପଣ' ବିଷୟଟିକୁ ମୋତେ ତମର ପରିପ୍ରେକ୍ଷୀରେ ବୁଝାଇ ଲେଖିବ କି ?

ତମେ ବସନ୍ତ ପବନ କଥା ଲେଖିଛ; ମୁଁ ସଚେତନ ହେଉଥିଲି । ଏଇ ଶେଷ କେଇ ଦିନ ମତୁଆଲା ପବନ ମୋର ଝର୍କାର ସେ ପାଖରେ ଭଳିକିଭଳି ରାଗରଙ୍ଗ ତୋଳିବ; ଏଇଥିପାଇଁ ମୁଁ ନିଜକୁ ପ୍ରସ୍ତୁତ କରିବି । ଖରାର ପ୍ରକୋପ ବଢ଼ିବା ପୂର୍ବରୁ ମୁଁ ଏଠାକାର ଶୀତଳ ସ୍ପର୍ଶମାନଙ୍କୁ ନିବିଡ଼ ଭାବେ ଅନୁଭବ କରିବି । ଫିକା ଜହ୍ନଆଲୁଅରେ ମୁଁ ଘେରାଏ ବୁଲି ଆସିବି ଓ ଆପଣାର ଯନ୍ତ୍ରଣାମାନଙ୍କୁ ଅନ୍ଧକାରର ଗହ୍ୱର ଭିତରକୁ ଫିଙ୍ଗିଦେବି । ଯେତେବେଳେ ସକାଳର ନରମ ସୂର୍ଯ୍ୟ ମୋର ଲୋମକୂପରେ ବିସ୍ତୃତ ଶିହରଣ ସୃଷ୍ଟି କରିବ, ମୁଁ ଆପଣାର ସ୍ଥିତି ଓ ପ୍ରବୃତ୍ତିମାନଙ୍କୁ ଝଲସାଇଦେବି ।

× × × ×

ଓଡ଼ିଶା ଫେରିଯିବାର ବ୍ୟାକୁଳତା ତମେ ଜାଣିପାରୁଥିବ । କାଶୀପୁରରେ ମୋର ପ୍ରତ୍ୟେକ ଦିନର ମହତ୍ତ୍ୱ ରହିଛି । ଏବେ ଅରୁଣା ପୁଣି ଅଧିକ ଡେରିରେ ଆସିବା କଥା ଶୁଣିଲି । ଅନେକ ଦିନ ହେବ ସେ ଲେଖିନାହିଁ । ଟିଲେନିଆର ବୋଝ ଗ୍ରହଣ କରିବାକୁ ତା'ର ଦ୍ୱିଧା ମୁଁ ବୁଝିପାରୁଛି । ତମେ ଗୋକୁଳଙ୍କୁ ଲେଖିଥିବ ସବୁକଥା । ଏଠାରୁ ରାୟଗଡ଼ା ମୁଁ ସିଧାଯାଉଛି ଓ ସୁବିଧା ଦେଖି ତମ ପାଖକୁ ଆସିବି ।

ଅମ୍ଳାନ Richard Bachଙ୍କ 'A Gift of the Wing' କିଣିଛି । ମୁଁ କିଛି ପୃଷ୍ଠା ପଢୁଥିଲି । Saint Exuperyଙ୍କ ଶୈଳୀରେ ଲେଖାହୋଇଥିବା ବହିଟି ମଣିଷ ଓ a machine called aeroplane, ଦୁହିଁଙ୍କ ସମ୍ପର୍କକୁ ସ୍ପଷ୍ଟ ବୁଝାଇଛି । ଏହାଛଡ଼ା Larry Colins ଓ Dominique Lappierଙ୍କ 'The Fifth Horseman' ପଢ଼ିଛି । ଶସ୍ତା thriller ଭଙ୍ଗୀରେ ଲେଖାଯାଇଥିବାରୁ ମୁଁ ବହିଟିକୁ ଗୁରୁତ୍ୱ ଦେଉନାହିଁ । ତମ ପାଇଁ ଯଥାସମ୍ଭବ ମୁଁ ଗଲାବେଳକୁ ବହି ନେଇଯିବି ।

ତମେ ଲେଖିବ ଓ ଲେଖୁଥିବ । ଭାଉଜଙ୍କୁ ମୋର ନମସ୍କାର ଜଣାଇଦେବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଜି ଦିନସାରା ମୁଁ ଏଠାକାର ମଣିଷମାନଙ୍କୁ ନ ଭେଟିବାର ଦୃଢ଼ସଂକଳ୍ପ ରଖି ନିଜକୁ ଲୁଚାଇ ରଖିଥିଲି । ଏବେ କେତେ ଦିନ ଧରି ତିକ୍ତତାର ଚରମସୀମାରେ ମୁଁ ପହଞ୍ଚିଛି । ସବୁଠି କେବଳ ଘୃଣା ଓ ସ୍ୱାର୍ଥପରତା ଦେଖିଦେଖି ସହନଶକ୍ତି ଯେମିତି ଶେଷ ହୋଇଯାଇଛି । ଏତେ ଦିନ ପରେ ମଧ୍ୟ କିଛି ସ୍ପଷ୍ଟ ବୁଝି ହେଉନାହିଁ; କିଛି ଅନୁଭବ କରିହେଉନାହିଁ । ସମାଜ କାର୍ଯ୍ୟ ଗୋଟାଏ ଭିନ୍ନ ଦୃଷ୍ଟିରେ ଜଘନ୍ୟ ଛଡ଼ା ଆଉ କିଛି ନୁହେଁ ବୋଲି ହୃଦବୋଧ ହେଉଛି ! ଅନ୍ୟର ଅସହାୟତା ଉପରେ ପର୍ଯ୍ୟବେସିତ ସବୁ କାର୍ଯ୍ୟକଳାପକୁ ସମର୍ଥନ କରିବାକୁ ମୁଁ ମୋର ସଚେତନତାର ଅପମୃତ୍ୟୁ ବୋଲି ମନେକରୁଛି । ନିଜର ସ୍ୱାଭିମାନର କ୍ରମଶଃ ବିଲୋପସାଧନକୁ ମୁଁ ମୋର ପୌରୁଷର ବିପର୍ଯ୍ୟୟ ବୋଲି ମନେକରୁଛି ।

ଅରୁଣା ଅପ୍ରେଲ୍‌ରେ ଆସିବ ବୋଲି ତମକୁ ମୁଁ ବୋଧେ ଲେଖିଥିଲି । ଏଠାକୁ କେତେ ଶୀଘ୍ର ମୁକ୍ତି ମିଳିବ ମୁଁ ଜାଣିନାହିଁ । SWRC ସହ ସମ୍ବନ୍ଧ ରଖିବା ବୁଦ୍ଧିମାନର କାର୍ଯ୍ୟ ହେବ କି ନାହିଁ ମୁଁ ତାହା ଜାଣିପାରୁନାହିଁ । ଏଠାକାର ଜଟିଳ ବ୍ୟକ୍ତିତ୍ୱ ସହ ସାଲିସ୍ କରିବା କେବେହେଲେ ଠିକ୍ ହେବନାହିଁ । ଏବେ ମଧ୍ୟ HIVOS ଠାରୁ ଉତ୍ତର ମିଳିନାହିଁ । ବଙ୍କର୍ ଜାଣିଶୁଣି ମୋର Project proposal ପଠାଇ ନଥିବା କଥା ତମକୁ କହିଥିଲି

ବୋଧେ । ସେସବୁ ମୋର ଆତ୍ମଜୀବନୀରେ ମୁଁ କେବେହେଲେ ବି ଉଲ୍ଲେଖ କରିବି । ମୁଁ ଭାବୁଛି ସତ୍ତାହୀନ ଭାବେ ଆରମ୍ଭ କରିବା ଠିକ୍ ହେବ । ସବୁଦିନ ପାଇଁ ପ୍ରମାଣିତ ହୋଇଯିବ, ମୁଁ ଏ ଦିଗରେ କିଛି କରିପାରିବି କି ନାହିଁ !

× × × ×

ଆଜିର ମାନସିକ ଅଶାନ୍ତି ଏବେ ମଧ୍ୟ ଆନ୍ଦୋଳିତ ଅବସ୍ଥାରେ ରହିଛି । ରାତି ଗଭୀର ହେଉଛି । ତୋଫା ଜହ୍ନ ଆଲୁଅରେ ମୁଁ ନିଜକୁ ସ୍ଥିରଚିତ୍ତ କରିବି ବୋଲି ଘେରାଏ ବୁଲିଆସିଲିଣି ।

× × × ×

ପ୍ରତିମୁହୂର୍ତ୍ତର ଜଡ଼ତାକୁ ବିଷ ଭଳି ପିଇବାରେ ଗୋଟାଏ ଆମେଜ୍ ଅଛି ବୋଲି ତମେ କେବେ ଅନୁଭବ କରିଛ କି ? ସବୁ ନିଷ୍କ୍ରିୟତାକୁ ଏକାଠି ସାଉଁଟି ତା' ଉପରେ ଏକ ଚମତ୍କାର ପୃଥିବୀଟିଏ ଗଢ଼ିବାର ସ୍ୱପ୍ନ ତମେ ଦେଖିଛ କି ? ହୁଏତ 'ମୁଁ' ନିଷ୍କ୍ରିୟ ଅଥବା ମୋର ପୃଥିବୀ ନିଷ୍କ୍ରିୟ ? ହୁଏତ ମୁଁ ଅସତ୍ୟ ଅଥବା ମୋର ଚତୁପାର୍ଶ୍ୱର ପୃଥିବୀ ଅସତ୍ୟ । ହୁଏତ ମୁଁ ଧ୍ୱଂସ ହୋଇଯିବି ଅଥବା ମୋର ପୃଥିବୀ ଧ୍ୱଂସ ହୋଇଯିବ । ଏହାଛଡ଼ା ଆଉ କ'ଣ ଦୁର୍ଭାଗ୍ୟଜନକ କଥା ଘଟିପାରିବ ? ମୁଁ ଯେମିତି ଏଥିପାଇଁ ମୋର ପ୍ରତ୍ୟୟକୁ ପ୍ରସ୍ତୁତ କରିସାରିଛି ।

ତମ ପାଇଁ ମୁଁ ସ୍ୱୀକୃତି ଛଡ଼ା ଆଉ କିଛି ରଖିନାହିଁ । ମୁଁ ଚାହେଁ ନାହିଁ ତମର ପୃଥିବୀ ଓ ତମର ଆଙ୍ଗିକ ସ୍ଥିତି ଭିତରେ କିଛି ବି ଦ୍ୱନ୍ଦ୍ୱ ରହୁ । ମୁଁ କେବେହେଲେ ଆଶା କରୁନାହିଁ, ତମର ମୁହୂର୍ତ୍ତମାନେ ନିଷ୍କ୍ରିୟ ହୋଇଯାଆନ୍ତୁ । ମୁଁ କେବେହେଲେ ବି ଦୁଃସ୍ୱପ୍ନରେ ସୁଦ୍ଧା ଭାବିବି ନାହିଁ ଯେ ତମର ଅସ୍ତିତ୍ୱ ମୋ ଭଳି ବିକ୍ଷିପ୍ତ ଓ ବିକଳାଙ୍ଗ ହୋଇଯାଉ । ତମେ ଭଲ ମଣିଷ ରୂପେ ମୋ ପାଇଁ ସବୁବେଳେ ଏକ ବାସ୍ତବତାର ପ୍ରତୀକ ହେଉଥିବ ଓ କେବେକେମିତି ତମକୁ ମୁଁ ଭେଟୁଥିଲେ( ? ) ତମଠାରୁ ପ୍ରେରଣାର ଉତ୍ସ ମୁଁ ଆବିଷ୍କାର କରୁଥିବି ।

ବନ୍ଧୁ ! ତମକୁ ଅନେକ କିଛି ଲେଖିବାର ପ୍ରଚେଷ୍ଟା ଅଧିକାଂଶ ସମୟରେ ମଉଳିଯାଉଛି । ଆସୁଥିବା ଭାବାବେଗମାନେ କେଉଁ ଏକ ନିବୁଜ କକ୍ଷରେ ଲୁଚିଯାଉଛନ୍ତି । ଆଜିକାଲି ନିଃସଙ୍ଗତା ଭାରି ବାଧୁଛି । ଆଜିକାଲି ତଥାକଥିତ 'Religion of suffering' ଭଲ ଲାଗୁନାହିଁ । ବ୍ୟର୍ଥତାର ସୀମାରେଖାମାନଙ୍କୁ ତମେ ଯଦି ବୁଝିପାରୁଥିବ, ତେବେ ମୋତେ ତମେ ବୁଝି ପାରୁଥିବ । ଆଉ କ'ଣ ଅଧିକ ଲେଖିବି !

ଭାଉଜଙ୍କୁ ସମ୍ମାନ । ତମକୁ ଶୁଭେଚ୍ଛା ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ମୋର ଅନୁରୋଧ ପରେ ବି ତମେ ଏଠାକୁ ଲେଖିବାକୁ ସକ୍ଷମ ହୋଇପାରିନାହିଁ। ଅନେକ ଦ୍ୱିଧା ଓ ବାଧାପରେ ଦକ୍ଷିଣ ଭାରତ ଯିବା ରାସ୍ତାରେ ଏଠାରେ ମୁଁ ଦିନକ ପାଇଁ ଅଟକି ଯାଇଥିଲି। ସନ୍ଧ୍ୟା ଏକ୍ସପ୍ରେସ୍‌ରେ ଆଜି ମାଡ୍ରାସ୍ ଯାଉଛି। ସେଠାରୁ ସମୟ ଓ ଅର୍ଥ ଅନୁସାରେ ମୁଁ କର୍ଣ୍ଣାଟକ ଓ କେରଳ ଯିବା ଚିନ୍ତା କରିବି। କେତେଗୁଡ଼ିଏ ସ୍ୱୟଂସେବୀ ସଂସ୍ଥା ଦେଖିବା ଛଡ଼ା ମୁଁ ମୋର କାର୍ଯ୍ୟପଦ୍ଧତିର ଏକ ସମ୍ୟକ୍ ମୂଲ୍ୟାଙ୍କନ କରିବାକୁ ସୁଯୋଗ ପାଇବି। ତିଲୋନିଆର ପରିବେଶରୁ ମୁକ୍ତି ମିଳିଛି, ଏଥିରେ ମୁଁ ଖୁବ୍ ଆଶ୍ୱସ୍ତ ହୋଇଛି। project proposal ଲେଖି ବଙ୍କର୍‌କୁ ଦେଇଛି। କିନ୍ତୁ ଆଶାନୁଯାୟୀ ତା'ଠାରୁ ମୁଁ ପ୍ରେରଣା ପାଇନାହିଁ। ବିଷ୍ଣୁଶର୍ମାର ଅକସ୍ମାତ୍ ଇସ୍ତଫା ପରେ ଏବେ ମୋ ଉପରେ ସେ ନିର୍ଭର କରୁଥିବାରୁ ମୋତେ ଛାଡ଼ିବା ପାଇଁ ତା'ର ଘୋର ଅନିଚ୍ଛା। ଅରୁଣା ମୋତେ ବ୍ୟକ୍ତିଗତ ଭାବେ ଆଉ ଛ'ମାସ ରହିଯିବା ପାଇଁ ଅନୁରୋଧ କରିସାରିଛି।

ତିଲୋନିଆରୁ ବିଦାୟ ନେବା ପାଇଁ ମୁଁ ପ୍ରସ୍ତୁତ ହେଲାବେଳେ ଏ ପ୍ରକାରର ଅହେତୁକତା ମୋତେ ଘୋର କଷ୍ଟ ଦେଉଛି। ପ୍ରୋଜେକ୍ଟ୍‌ର ଭିତରବାହାର ତନ୍ନତନ୍ନ କରି ପରୀକ୍ଷା କଲାପରେ ମୁଁ ମୋର ପ୍ରଜ୍ଞା ଓ ଅନୁଭୂତିକୁ ନେଇ କିଛି ଲେଖିଛି। ପାଞ୍ଚବର୍ଷ ଭିତରେ କିଛି ନା କିଛି ପରିବର୍ତ୍ତନ ମୁଁ ଆଣିପାରିବି, ଏ ବିଶ୍ୱାସ ମୋର ସବୁଦିନେ ରହିଆସିଛି। ପ୍ରୋଜେକ୍ଟର ଉପଦେଷ୍ଟା କମିଟିରେ ତମର ଓ ଜୋ'ର ନାମ ମୁଁ ଦେଇଛି। କାଶୀପୁର ଯିବାକୁ ମଧ୍ୟ ମୁଁ ଭାବୁଛି।

ଓଡ଼ିଶାରେ ବନ୍ୟାକଥା ଖବରକାଗଜରୁ ଜାଣିଲି। କ୍ଷତିର ସବିଶେଷ ବିବରଣୀ ଯଦିଓ ମିଳୁ ନଥିଲା, ତଥାପି ଅନୁମାନ କରିହେଉଥିଲା। ତମ ଇଲାକାରେ ବଢ଼ି ହୋଇଛି କି? ଅମ୍ଳାନ ଯଦି ପୂଜା ଛୁଟିରେ ଓଡ଼ିଶା ଆସୁଥାଏ, ତେବେ ଆମ ତିନିଙ୍କର ଦେଖାସାକ୍ଷାତ ହୋଇପାରନ୍ତା। ସୁଧାକର ମଧ୍ୟ ମୋ ସହ ଦେଖା କରିବାକୁ ବ୍ୟଗ୍ର ହୋଇଛି। ତମେ କାହିଁକି ଲେଖୁନାହଁ, ବୁଝି ହେଉନାହିଁ। ଦୁର୍ଗା ପଠାଇଥିବା ପିଲା (ମଦନ ମିଶ୍ର) ଭାରି ଆଗ୍ରହୀ ବୋଲି ଜଣାପଡୁଛି। ତମ ଦୃଷ୍ଟିରେ କେହି ସେମିତି ପିଲାଥିଲେ କଥାବାର୍ତ୍ତା କରିଥିବ। ପ୍ରଫୁଲ୍ଲ ତମକୁ ଦେଖା କରିଥିଲା କି? ଅମ୍ଳାନ ଚିତ୍ତରଞ୍ଜନ ଦାସଙ୍କ କଥା କହୁଥିଲା। ମୋର ଓଡ଼ିଶା ପ୍ରୋଜେକ୍ଟ ସମ୍ପର୍କରେ ତାଙ୍କ ସହ ମତ ବିନିମୟ କରିବା କଥା ମୁଁ ଭାବୁଛି। ତମେ ତାଙ୍କ ସହ ଯୋଗାଯୋଗ ରଖିଥିବ।

ତମେ ଭଲ ଥିବ। ଏତେ ଲମ୍ୱାରାସ୍ତାରେ କିଛି କିଛି ଲେଖିବାର ମାନସିକ ପ୍ରସ୍ତୁତି ନେଇ ମୁଁ ଯାଉଛି। ଆରୁଣା ମଧ୍ୟ ଏଥିପାଇଁ ଯଥେଷ୍ଟ ଖୋରାକ୍ ଯୋଗାଇଛି। ସାଙ୍ଗରେ

Herseଙ୍କ Wanderings, Jack London ଏବଂ Saki ଙ୍କ କାହାଣୀ ନେଇଯାଉଛି । ତମକୁ ପୁଣି ମୁଁ ଲେଖୁଛି ।

ତମେ ଅମ୍ଳାନକୁ କାହିଁକି ଲେଖିନାହଁ ?

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ତାଳଚେରରୁ ଲେଖିଥିଲି । ଧନଞ୍ଜୟର ବିବାହରେ ଯୋଗଦାନ କରି ମୁଁ ଫେରିବା ରାସ୍ତାରେ ଅମ୍ଳାନ ପାଖରେ କିଛି ସମୟ କାଟିଥିଲି । ଏଠାରେ ଅନେକ କିଛି କାମ ବାକି ପଡ଼ିଥିବା ଯୋଗୁଁ ମୁଁ ବ୍ୟସ୍ତ ରହିଛି । ହଠାତ୍ ଯେମିତି ଲେଖିବାକୁ ମୁଁ ନିର୍ଦ୍ଦିଷ୍ଟଭାବେ ପ୍ରେରିତ କରିପାରୁନାହିଁ । ତମ ଜୀବନର ମଧୁରତମ ମୁହୂର୍ତ୍ତଗୁଡ଼ିକୁ ମୁଁ ବି ଜାଣିବାକୁ ବ୍ୟାକୁଳ ହେଉନାହିଁ । ହଠାତ୍ ତମର ଜଣେ ଅଜଣାଅଶୁଣା( ? ) ମଣିଷଟି ସହ ସଂଯୋଗ ରଖିବାର ମହାନ୍ ଚେଷ୍ଟାକୁ ମୁଁ ଅଧା ବୁଝିପାରୁଛି ଓ ବାକି ଅଧକ ଯେମିତି ଅସ୍ପଷ୍ଟ । ସତ କରି କୁହ, ମଣିଷ କ'ଣ ପ୍ରେମ ପାଇଁ ବଞ୍ଚିରହିଛି ? (କିଛି ଦିନ ତଳେ ଏଇ ମର୍ମରେ ପ୍ରଫୁଲ୍ଲ ଗୋଟାଏ ଚମତ୍କାର ଚିଠି ଲେଖିଛି) ସତ କରି ତମେ ଲେଖ, ପ୍ରେମ କ'ଣ ସବୁ ମଣିଷଙ୍କ ପାଇଁ ଏକ ମହାନୁଭବତା ! ମୁଁ ଯେମିତି କ୍ରମେ ସମଗ୍ର ବ୍ୟତିକ୍ରମ ଓ ଅସଂଲଗ୍ନତାର ଶିକାର ହୋଇଯାଇଛି । ଆଜି ଏଇ ମୁହୂର୍ତ୍ତରେ ମୁଁ ଭଲ ପାଇବା ଓ ବନ୍ଧୁତାର ଚରମପ୍ରଜ୍ଞାକୁ ସନ୍ଦେହ ଦୃଷ୍ଟିରେ ଦେଖୁଛି । ସତରେ ତମେ ଏବେ ମଧ୍ୟ ଆସ୍ଥା ରଖିଛ ଯେ ସତମିଛର ଏଇ ପୃଥିବୀରେ ସାଧାରଣ ମଣିଷଟିଏ ଭଲ ମଣିଷ ହୋଇପାରିବ ? ତମେ କ'ଣ ଭାବୁଛ ଯେ ଗୋଟାଏ ଅପୂର୍ବ ମୁହୂର୍ତ୍ତର ଅନୁଭବ ଓ ବୁଝାମଣାକୁ ସବୁ ସମୟ ପାଇଁ ସଞ୍ଚୟ କରିହେବ ଏବଂ ପ୍ରତିକ୍ଷଣରେ transcend କରି ହୋଇଯିବ ? ତମେ କ'ଣ ଭାବୁଛ ଯେ ସ୍ଥିତପ୍ରଜ୍ଞତା ଓ ମୁକ୍ତି ଜୀବନର ବାକି କାଳ ପାଇଁ ଏକାକାର ହୋଇଯିବେ ?

ମୁଁ କାହାକୁ transcendence of being କଥା କହୁଥିଲି । ସେହି ମଣିଷଟି ସହ ମୋ ଦେଖା ହେବନାହିଁ ବା ତା'ର ଝଲକାଏ ହସ ମୋର ଆବେଗ ଭିତରେ ଆଙ୍କି ହୋଇ ରହିବନାହିଁ । ତଥାପି ମୁଁ ପ୍ରଥମ ଥର ପାଇଁ ନିଜକୁ ପରୀକ୍ଷା କରୁଥିଲି ଓ transcendal relationship ଉପରେ କିଛି ନିର୍ଣ୍ଣୟ ନେବାକୁ ଚେଷ୍ଟା କରୁଥିଲି । ସବୁ ମିଛ ବନ୍ଧୁ, ସବୁ ଅସତ୍ୟ ! କାହାର ଏଠାରେ ପ୍ରବଞ୍ଚନା ବି ନାହିଁ ନିଜକୁ ସାମିଲ୍ କରିବାକୁ । ସବୁକୁ ନିଜ ଭିତରେ ଭରି ରଖିବାର ଦୁଃସାହସ ମଧ୍ୟ ନାହିଁ । ମୁଁ ସେ ମଣିଷଟିକୁ ବି ଭୁଲିଯାଇଛି ।

× × × ×

ଏଠାରେ ଗହମ କ୍ଷେତରେ କେଣ୍ଡା ପଡ଼ିଛି, ଫୁଲ ଧରିଛି । ତିଲୋନିଆର ସବୁ ନିମ୍ବଗଛରେ ପତ୍ରମାନେ ଫିକାହଳଦିଆ ହୋଇଗଲେଣି । 'ପତ୍ରଝଡ଼ି'ର ସମୟ ଆସିଗଲାଣି ବୋଲି ଲୋକମାନେ କୁହାକୁହି ହେଲେଣି । 'ହୋଲି' ବି ଆସୁଛି ବୋଲି ସେଦିନକୁ ଏବେଠୁ ଲୋକେ ସ୍ମରଣ କରୁଛନ୍ତି । ସୂର୍ଯ୍ୟାସ୍ତର ରଙ୍ଗ ଖୁବ୍ ବିପୁଳ ହୋଇଆସୁଛି । ଶୀତ କମୁଛି ଓ ବେଳେବେଳେ ବଢୁଛି । କିନ୍ତୁ ଏଠାରେ ମନ ଆଉ ଲାଗୁନାହିଁ ।

× × × ×

ଏ ଚିଠି ଅସମାପ୍ତ ରହିଥିଲା । ଅରୁଣା ଏଭିତରେ ଦୀର୍ଘ ଚିଠିଟିଏ ଲେଖିଛି । ସେ ମାର୍ଚ୍ଚ ଶେଷ ପର୍ଯ୍ୟନ୍ତ ୟୁରୋପ୍‌ରେ ରହୁଥିବାରୁ କ୍ଷମାମାଗିଛି । ମୋର ବ୍ୟକ୍ତିଗତ ସମସ୍ୟାକୁ ସେ ବୁଝୁଥିବା କଥା ଲେଖିଛି । ମୋର ପ୍ୟାଣ୍ଟ ପଠାଇଛ କି ? ଆଉସବୁ ପରେ ଲେଖିବି ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ମୋର ଚିଠି ପାଇଥିବ । ତମେ କିନ୍ତୁ ଲେଖିନାହଁ । ତାଳଚେର ସମ୍ପର୍କରେ ତମର ଭାବାନୁଭୂତିସବୁ ଜାଣିବାକୁ ମୁଁ ବିଶେଷ ଆଗ୍ରହୀ । ତମର ସଚେତନ ମନରେ କେଉଁଭଳି ପ୍ରତିକ୍ରିୟା ସୃଷ୍ଟି ହେଉଛି, ତମେ ମୋ ପାଖକୁ ଲେଖିବାକୁ ଅନୁରୋଧ ।

ମୁଁ ଏ ଭିତରେ 'କଦମ୍ପୁର' ଗାଁରେ ଦଶଦିନ କାଟି ତିଲୋନିଆ ଫେରିଛି । ବଙ୍କର ସହ 'Land Alottee Programmee' ବିଷୟରେ ଦୀର୍ଘ ସମୟ ଧରି କଥାବାର୍ତ୍ତା କରିଛି । କେଉଁ ଏକ ଜର୍ମାନ୍ ଅନୁଷ୍ଠାନ 'Bread for the World' ଏଥିପାଇଁ ଯଥେଷ୍ଟ ପରିମାଣର ଅର୍ଥ ଯୋଗାଇଦେଇଛି । ମୋର ସବ୍‌ସେଣ୍ଟର୍‌ରେ ମୁଁ ପ୍ରାୟ ୧୦୦ ପରିବାରଙ୍କ ଜମିରେ ଉତ୍ପାଦନ ବଢ଼ାଇବାରେ ସାହାଯ୍ୟ କରିବି । ଏଥିରେ ବ୍ୟାଙ୍କ ଋଣ ମଧ୍ୟ ବିଶେଷ ଭୂମିକା ଗ୍ରହଣ କରିବ । ୩ ବର୍ଷ ଭିତରେ ଅନ୍ତତଃ ଏ କାର୍ଯ୍ୟକ୍ରମ କିଛି କରିପାରିବ ଏଥିରେ ମୁଁ ବିଶ୍ୱାସ କରୁଛି ।

କିନ୍ତୁ ଏ ପ୍ରୋଗ୍ରାମ୍‌ରେ ସେମିତି କିଛି ବୈପ୍ଳବିକ ଚିନ୍ତାଧାରା ନାହିଁ । ଅର୍ଥନୈତିକ ସହଯୋଗ କେମିତି ଗରିବକୁ ନିଜଗୋଡ଼ରେ ଛିଡ଼ା କରିବାରେ ସାହାଯ୍ୟ କରିବ, ଏ ବିଷୟରେ ମୁଁ ସବୁବେଳେ ଚିନ୍ତା କରିଆସିଛି । କିନ୍ତୁ ବାସ୍ତବକ୍ଷେତ୍ରରେ ଏହାକୁ କିଛି କରି ପାରିବାରେ ମୁଁ ସକ୍ଷମ ହୋଇନାହିଁ । ଏଥିପାଇଁ ମିଳିତଭାବେ ସକ୍ରିୟ ରାଜନୀତିରେ ଭାଗ ନେବାକୁ ପଡ଼ିବ । କିନ୍ତୁ ବର୍ତ୍ତମାନର ପରିସ୍ଥିତିରେ ଏହା ସମ୍ଭବ ହେବନାହିଁ ।

'କଦମ୍ବପୁର' ଗାଁର ଅନୁଭୂତି ମୋ ପାଇଁ ମୂଲ୍ୟବାନ । ମୋର ଆଖି ଆଗରେ ସେଦିନ ହରିଜନ ପିଲାଟିର ଅବମାନନା କରାଗଲା ଓ ମୁଁ କେବଳ ନୀରବ ଦର୍ଶକ ହୋଇ ଛିଡ଼ା ହୋଇଥିଲି, ଏକଥା ଭାବିଲେ ମୁଁ ନିଜକୁ କ୍ଷମା ଦେଇପାରୁନାହିଁ । କୌଣସି ଏକ ମୂଲ୍ୟବୋଧକୁ ବୌଦ୍ଧିକସ୍ତରରେ ସମର୍ଥନ କରି ବାସ୍ତବକ୍ଷେତ୍ରରେ ଉଦାସୀନ ରହିବା ମସ୍ତବଡ଼ ପ୍ରତାରଣା । ଆମେସବୁ ଯେଉଁମାନେ ସଚେତନ, ସ୍ଥିତି ସମ୍ପର୍କରେ ଅନୁସନ୍ଧିତ୍ସୁ, ସେମାନଙ୍କୁ ନୀରବଦ୍ରଷ୍ଟା ହୋଇ ରହିବାକୁ ହେବନାହିଁ । ତମେ ଯଦି କ୍ରୀତଦାସତ୍ୱର ପଥ ବାଛିବା ଶ୍ରେୟସ୍କର ମନେକରୁଛ କେହି ମନା କରିବେ ନାହିଁ । କିନ୍ତୁ ଯଦି ମୁକ୍ତି ପାଇଁ ତମେ ଉଦ୍‌ବିଗ୍ନ, ତେବେ ଲଢ଼େଇ ପାଇଁ ପ୍ରସ୍ତୁତ ହୋଇଯାଅ । ଏହା ଗୋଟାଏ ଭିନ୍ନ ପ୍ରକାରର ଭାବାବେଗ, ଭିନ୍ନ ପ୍ରକାରର ଆଲୋଡ଼ନ । ଏଠାରେ ଆଦର୍ଶବାଦ ସଂସାରର ତଥା ଚଳାପଥର ଦାବୀଠାରୁ ଯଥେଷ୍ଟ ଶକ୍ତିଶାଳୀ । ଏଠାରେ ବ୍ୟକ୍ତିତ୍ୱ ଏବଂ ଅଭିମାନ ସବୁ ଗୌଣ ଏବଂ ଅର୍ଥହୀନ ।

ଆମକୁ ଅସତ୍ୟ ମନେହେଉଥିବା ପାଚେରୀକୁ ଭାଙ୍ଗିବାକୁ ପଡ଼ିବ । ଆମକୁ ପ୍ରହେଳିକା ମନେ ହେଉଥିବା ଦୃଶ୍ୟଠାରୁ ଦୂରେଇ ନେବାକୁ ହେବ । ସମୟ ଆସିବ ବନ୍ଧୁତା ଓ ଭଲ ପାଇବାର ଅର୍ଥ ବଦଳିଯିବ । ଏଠାରେ ବୁଝାମଣା କେବଳ ଆଦର୍ଶବାଦର ମାପକାଠିରେ ମପାଯିବ । ଅନ୍ତରଙ୍ଗତା ସାଧାରଣ ମାନବିକ ଦୁର୍ବଳତାରେ ଆଶ୍ରିତ ହେବନାହିଁ । ଆମକୁ ଗଢ଼ିବାକୁ ପଡ଼ିବ ।

× × × ×

ଏଠାରେ ବର୍ଷା ନାହିଁ; ଅଥଚ ଚାରିଆଡ଼େ ସବୁଜିମାର ପରିପ୍ରକାଶ 'ବାଜରା' ଗଛରେ କେଣ୍ଡା ପଡ଼ିଲାଣି । ମକା ଗଛ ବଢ଼ୁଛି, ବାଦାମ ଗଛରେ ଈଷତ୍ ହଳଦିଆ ରଙ୍ଗର ଫୁଲ ଧରିଛି । କୂଅ ପାଖରେ 'ଚରସ୍' ଚାଲିଛି ଏବଂ ଅତି ନିରୁଦ୍‌ବିଗ୍ନ ଭାବେ ଏଠାକାର କୃଷକ ଗୀତ ବୋଲୁଛି । ଏଠାକାର ସ୍ତ୍ରୀ ଓଢ଼ଣାଫାଙ୍କ ଦେଇ ମରିଚ ଗଛରେ ପାଣି ମଡ଼ାଉଛି । ଏଠାରେ ସ୍ୱାଧୀନତା ଅଛି !( ?) ଏଠାରେ ପ୍ରାଣଭରି ଜୀବନକୁ ଉପଭୋଗ କରିବାର ଚମତ୍କାର ସୁଯୋଗ ଅଛି । 'ଶରତ'ର ନାତିଶୀତୋଷ୍ଣ ପବନ ଦେହରେ ରୋମାଞ୍ଚର ଏକ ଲହରୀ ସୃଷ୍ଟି କରୁଛି । ଏଇଠି ସବୁଠି ଗତି ଅଛି, ଭୟଙ୍କର ମୋଡ଼ ଅଛି । ତଥାପି ମଣିଷ ଡରି ନାହିଁ । ଡରିବା କ'ଣ ଜାଣିନାହିଁ । ସେ ନିଜକୁ ଆସନ୍ତାକାଲି ପାଇଁ ପ୍ରସ୍ତୁତ କରୁଛି ।

× × × ×

ଏ ଭିତରେ ମୁଁ Graham Green ଙ୍କ 'The Heart of the Matter' ପଢୁଛି । ତମକୁ ବୋଧେ Turgenevଙ୍କ କଥା ଲେଖିଥିଲି । 'Fathers and Sons' ଭଳି 'LIZA' ଏବଂ 'SMOKE' ଦୁଇଟି ଚମତ୍କାର ଉପନ୍ୟାସ । ମୁଁ ଖୁବ୍ ଉପଭୋଗ କରିଛି । ଆହୁରି ମଧ Ho Chi Minnଙ୍କ 'Prison Diary' ପଢ଼ିସାରିଛି । ସେଥିରୁ ମୁଁ କିଛି ଲେଖୁଛି ।

*"Every morning the sun, emerging over the all,/ Beams on the gate, but the gate is not yet upon / Inside the prison liners a gloomy pall, / But we know outside the sun has risen."*

*"In jail there is neither flower nor wind / what could one do when the might is so exquiste? / To the window I go and look at the moonshine / Through the bars the moon gazes at the poet."*

*"My arms and legs are lightly bound / But in the hills birds sing and flowers blossom. / Who can prevent my enjoying such sweet scent & sound? / In my long trudge, I may feel a little less lonesome."*

*"Last year when autumn come I was free. / This year Autumn finds me into prison caste / with regard to services rendered, my country / This autumn is, let me say, equal to the last."*

କଳମଛୁଇଁ ଗାଁରେ ତମର କିଛି ଅସୁବିଧା ହେବନାହିଁ ବୋଧେ । ଆମ ଘରୁ ତମକୁ କେଉଁଭଳି ଅନୁରାଗ ମିଳିଛି ମୁଁ ଜାଣିନାହିଁ । ତମେ ବରଂ ଏ ବିଷୟରେ ନିସ୍ପୃହ ରହିବ । ତାଳଚେରରେ ମୋର ଅନୁପସ୍ଥିତି ତମକୁ ଆଦୌ କଷ୍ଟମୟ ହୋଇନଥିବ । ଆମେସବୁ ଯେଉଁମାନେ ସବୁବେଳେ ସ୍ନେହକାଙ୍ଗାଳ, ବେଳେବେଳେ ନିରାଶ ହୋଇଥାଉ । ଅବଶ୍ୟ ଏହା ଚରମ ବାସ୍ତବତା । ତମର ସମୟ କେମିତି କଟୁଛି ଲେଖିବ ।

ଅମ୍ଲାନ ଏ ଭିତରେ ଲେଖିଛି । ତା'ର ମାମୁଁଙ୍କ ମୃତ୍ୟୁ ଖବର ତମେ ପାଇଥିବ । ମୁଁ ବିଶେଷ ଭାବରେ ଦୁଃଖିତ । ସବୁ ମାମୁଁଙ୍କ ଭିତରେ ସେ ଆମ ମାନଙ୍କ ପ୍ରତି ବିଶେଷ ସ୍ନେହ ଦେଖାଇଥିଲେ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ ଲେଖିନାହଁ । ମେର ଚିଠି ପାଇଥିବ । ଅନେକ ବିଳମ୍ବ ଓ ଦ୍ୱିଧା ପରେ ୧୬ ତାରିଖକୁ ମୁଁ ଭାରତ ଭ୍ରମଣରେ ଯାଉଛି । ବମ୍ବେ ପର୍ଯ୍ୟନ୍ତ ଅରୁଣା ମୋ ସହିତ ଯିବ ଓ ତା'ପରେ ମୁଁ ଏକାକୀ ଯିବି । ଅନୁମାନରେ ମୁଁ ଦଶବାରଟି ସଂସ୍ଥା ଦେଖିବି । ଯେଉଁମାନେ ନିଜକୁ activist ବା radical ବୋଲି ମନେକରୁଛନ୍ତି, ସେମାନଙ୍କୁ ହିଁ ମୁଁ ମୋର ଦୃଷ୍ଟିକୋଣରୁ ମୂଲ୍ୟାଙ୍କନ କରିବି । ଏହାଛଡ଼ା ଓଡ଼ିଶା ପ୍ରୋଜେକ୍ଟ ପାଇଁ ଗୋଟାଏ suitale strategy ନିର୍ଣ୍ଣୟ କରିବାରେ ମୋତେ ସାହାଯ୍ୟ ମିଳିବ ।

ତମେ ବହୁତ କାର୍ଯ୍ୟବ୍ୟସ୍ତ ରହୁଥିବ । ଗୋଟାଏ ବ୍ୟବସାୟିକ ଢଙ୍ଗର ଆଜିକାଲିର ଶାସନକଳ ଚାଲୁଥିବାରୁ ତମେ ନିଶ୍ଚିତ ରୂପେ ଅଡୁଆରେ ପଡ଼ିଯାଉଥିବ । ମଣିଷକୁ ମଣିଷ

ଦୃଷ୍ଟିରେ ଦେଖିବା ପାଇଁ ଏବେ ମଧ୍ୟ ଏ ଶାସନ ଅକ୍ଷମ । ତମେ ଠିକ୍ କଥା ଲେଖିଥିଲ କାହାକୁ ବିଶ୍ୱାସ କରିବ ଓ କାହାକୁ କରିବ ନାହିଁ; ସବୁ ସମସ୍ୟାଗଡ଼ିକର ଏକ ନିର୍ଦ୍ଦିଷ୍ଟ ମୂଳ ରହିଆସିଛି । କିନ୍ତୁ ଶାସନ ସବୁବେଳେ ଉପରେ ଉପରେ ତାହାର ସମାଧାନ କରିବାର ବାହାନା କରୁଥାଏ । ତମେ ଯଦି କିଛି ପରିବର୍ତ୍ତନ ଆଣିବାକୁ ଚାହୁଁଥାଅ, ତେବେ ଏଇ ମୂଳଟିକୁ ଉପାଡ଼ିବାକୁ ଚେଷ୍ଟା କରିବ ।

ତମର ଆବେଗମୟ ଜୀବନ ଆଜିକାଲି କେମିତି ଚାଲିଛି ? ଲେଖାଲେଖି କରୁଛ କି ନାହିଁ ? ପଢୁଥିବ ନିଶ୍ଚୟ । ସବୁ କାମର ଚାପ ପରେ ବି ଏସବୁକୁ ତମେ ଗୁରୁତ୍ୱ ଦେଉଥିବ; ନହେଲେ ବୌଦ୍ଧିକ ଅଭିବୃଦ୍ଧିରେ ଘୋର ଆଞ୍ଚ ଆସିବ ।

ଆଉ କ'ଣ ଲେଖିବି । ଭିନ୍ନ ଭିନ୍ନ ଜାଗାରୁ ତମକୁ ଲେଖିବାକୁ ଚେଷ୍ଟା କରିବି । ଫେରିଲାବେଳକୁ ତମ ବାଟ ଦେଇ ଫେରିବାର ବହୁତ ସମ୍ଭାବନା ଅଛି । ଏହା ନିର୍ଦ୍ଦିଷ୍ଟ ଭାବେ ତମକୁ ଜଣାଇବି ।

ତମେ ଭଲ ଥିବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମର ଚିଠି ପାଇଛି । ଦୁର୍ଗା ପିଲାଟିଏ ପଠାଉଥିବାରୁ ତାକୁ ତିଲୋନିଆ ନେବାକୁ ଏଠାକୁ ଆସିଛି । ଅମ୍ଳାନ ସହ ଅନେକ ଦିନ ହେଲା ଦେଖା ହୋଇନଥିଲା । ବିଶେଷ ଜରୁରୀ କାମ ଥିବାରୁ ଆଜି ସନ୍ଧ୍ୟାକୁ ଫେରିଯାଉଛି । ଅମ୍ଳାନର ସାନଭାଇ ଅଛି ଏଠାରେ । ସେ ଷ୍ଟେସନକୁ ଯିବ । ପୁଣି ମୁଁ ୭ ତାରିଖ ବେଳକୁ ଆସିବି ।

ପ୍ରଶାସନିକ ଢାଞ୍ଚାକୁ ମୁଁ ଯେତିକି ଜାଣିଛି, ମୁଁ ସ୍ପଷ୍ଟ କରିପାରିବି ନାହିଁ ଯେ ତମେ ଭିତରେ କେତେମାତ୍ରାରେ ସଫଳ ହୋଇପାରିବ । ଆଜିକାଲିର ଦୁର୍ଗତି ଓ ଦୁର୍ବ୍ୟବସ୍ଥାମାନଙ୍କୁ ଅନୁଭବ କରିହୁଏ; କିନ୍ତୁ ବୁଝି ହୁଏ ନାହିଁ । ତମେ କେତେ ଶୀଘ୍ର ସନ୍ଧି କରିବ ବା ବିଦ୍ରୋହ କରିବ, ତମର ସଚେତନତା ଉପରେ ହିଁ ନିର୍ଭର କରିବ । ତଥାପି ଏକ ଆତ୍ମବିଶ୍ୱାସର ମଣିଷ ହିସାବରେ ତମେ ପରିସ୍ଥିତିର ମୁକାବିଲା ନିଶ୍ଚୟ କରିବ । ବିକାଶ କ୍ଷେତ୍ରରେ ପ୍ରଶାସନିକ ହସ୍ତକ୍ଷେପର ଆବଶ୍ୟକତା ରହିଛି ବୋଲି ତମେ ମୋ ସହ ନିଶ୍ଚୟ ଏକମତ ହେବ । ଗ୍ରାମାଞ୍ଚଳରେ ଅନେକ କିଛି ଘଟିବାର ସମ୍ଭାବନାକୁ ଏଡ଼ାଇ ଦେଇହେବ ନାହିଁ । ମୂଲ୍ୟବୋଧ ଯେତେ ବଦଳୁଥିଲେ ମଧ୍ୟ ଏହାର ଚରମ ଦିଗରେ ତମେ ନିଜକୁ ଉତ୍ସର୍ଗ କରିବ ।

ବ୍ରହ୍ମପୁରର ଅବହାୱା ମେଯିତି ସଂକ୍ରମିତ ହୋଇଯାଇଛି । ଏଥିପାଇଁ ରାଜନୈତିକ ନେତାମାନେ ଦୋଷୀ । ତମେ ସାଧାରଣ ଓ ଅସାଧାରଣ ମଣିଷମାନଙ୍କୁ ଗଭୀର ଦୃଷ୍ଟିରେ ଦେଖୁଥିବ ।

× × × ×

ଆଜି ଅମ୍ଳାନର ଛୁଟି ଥିବାରୁ ଆମେ ଦୁହେଁ କୁଆଡ଼େ ନଯାଇ ଅନେକ ବିଷୟ ଉପରେ ହିଁ ଭାବବିନିମୟ କରୁଥିଲୁ । ତମେ ତ ଜାଣ ଯେ ଏ ଜୀବନରେ ଯଦି excitement ମୁହୂର୍ତ୍ତକ ପାଇଁ କମିଯାଏ, ତେବେ ବଞ୍ଚିବା ଜଟିଳ ହୋଇପଡ଼ିବ । ଅମ୍ଳାନ ଅନୁଭବ କରୁଛି ଏ ଜୀବନର ବ୍ୟର୍ଥତା ତଥା ନିଜକୁ ପ୍ରୟୋଗାତ୍ମକ ଦୃଷ୍ଟିକୋଣରୁ ସେ ମୂଲ୍ୟାଙ୍କନ କରୁଛି । ଏଥିପାଇଁ ସେ ଲ' ପଢୁଛି ଓ ଭବିଷ୍ୟତ ତିଆରି କରୁଛି । ସଚେତନ ମଣିଷ ହିସାବରେ ସେ ଛାଞ୍ଚରେ ପଡ଼ିବାକୁ ଚାହୁଁନାହିଁ । ଏକ ରୁଟିନ୍‌ବନ୍ଧା ମଣିଷ ନହେବାକୁ ସେ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଛି । ଜୀବନରେ ଅନ୍ୟ ପରିସରମାନଙ୍କ ସହ ଓତଃପ୍ରୋତ ଭାବେ ଜଡ଼ିତ ହେବାକୁ ଏବେ ମଧ୍ୟ ସେ ଚେଷ୍ଟା କରୁଛି । ସେ କହୁଛି, ବୟସ ବଢ଼ିବା ସଙ୍ଗେସଙ୍ଗେ ଜୀବନର ଅର୍ଥହୀନତା ଆହୁରି ସ୍ୱଷ୍ଟଭାବେ ପ୍ରକଟିତ ହେଉଛି । ମଣିଷମାନଙ୍କ ସହ ସମ୍ପର୍କରେ ଭଙ୍ଗା ପଡିଯାଉଛି । ସେ ଚାହୁଁଛି ନିଜର ସୃଜନଶୀଳତା ସହ ଗୋଟାଏ ସ୍ୱଷ୍ଟ ସମୀକରଣ । ଜୀବନରେ ଏବେ ମଧ୍ୟ ଭାଙ୍ଗିପଡୁଥିବ; ସ୍ୱପ୍ନମାନଙ୍କୁ ସେ ତା'ର ନିଜ ଉପକରଣରେ ହିଁ ସଜାଡ଼ିବାର ପ୍ରୟାସ କରୁଛି । ତମେ ହୁଏତ ମୋର ଜନ୍ମଦିନ ମନେରଖିଥିବ । ମୁଁ ବୟସ ବଢ଼ିବାର ପ୍ରଭାବକୁ ହିଁ ମୋର ଦୃଷ୍ଟିକୋଣ ଜରିଆରେ ଅନୁଭବ କରୁଛି । ସବୁଆଡ଼େ ଯେମିତି ଗୋଟାଏ ପ୍ରକାଶ୍ୟ ଶିଥିଳତା; କିନ୍ତୁ ଜୀବନଗ୍ରନ୍ଥିରେ ଏକ ଅପ୍ରକାଶ୍ୟ ଉଦ୍‌ବେଳନ ! କିଛିଦିନ ଧରି Colin Wilsonଙ୍କ 'The Outsider' ପଢୁଅଛି । ଏବେ ବହିଟି ପଢ଼ିବାଜନିତ ଭାବାବେଗର ଅଭାବ ଲକ୍ଷ୍ୟ କରୁଛି । ନିଜକୁ ଭିନ୍ନଭିନ୍ନ ସ୍ତରରେ ବାହାରର ମଣିଷମାନଙ୍କ ସହ ମୁଁ ତୁଳନା ହିଁ କରୁଛି । ଏବେ ମଧ୍ୟ ନିଜ ପାଇଁ ମୁଁ ଅଚିହ୍ନା ମନେହେଉଛି । Colin Wilson Outsider ସମସ୍ୟାକୁ ଚୁମ୍ବକରେ କହିବାକୁ ଯାଇ ଲେଖିଛନ୍ତି, "Above all, he would like to know how to express himself, because that is the means by which he can get to know himself and his unknown possibilities."

ମୁଁ ଏବେ ମଧ୍ୟ ଗୁରୁତର ଭାବେ ଅସୁସ୍ଥ ମନେକରୁଛି ।

ତମେ ଭଲ ଥିବ । ଶୀଘ୍ର ଲେଖିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଗତକାଲି ଦିଲ୍ଲୀରୁ ଫେରିଲି । ଏଥର ମୋଟରସାଇକେଲ୍ ଆଦି ସାଥିରେ ଥିବାରୁ ବଡ଼ ଅସୁବିଧ ଭୋଗିବାକୁ ପଡ଼ିଥିଲା । ଅମ୍ଳାନର ସାହାଯ୍ୟ ଓ ସବୁଦିଗରେ ଆଗ୍ରହରେ ମୁଁ ଅଭିଭୂତ ହୋଇଯାଇଛି । ସବୁଥର ଭଳି ସେ ଓ ସୁନୀତା ଅନେକ ସ୍ନେହ ଅଜାଡ଼ି ଦେଇଛନ୍ତି; ସବୁ ଉଷ୍ଣତା ବି ।

ତମର ଉଲ୍ ଆଣିଛି । କିନ୍ତୁ ଭାଉଜଙ୍କର ବହି ଆଣି ହେଲାହିଁ; ଅବଶ୍ୟ ଏଥିରେ ଅମ୍ଳାନକୁ ଦୋଷ ଦେବାର ଅଛି । ଆମର ବହି କିଣିବାର ଯୋଜନାକୁ ସେ ଜାଣିଶୁଣି କାର୍ଯ୍ୟକାରୀ ହେବାକୁ ଦେଇନାହିଁ । ତେଣୁ ମୁଁ କିଛିହେଲେ ବହି ଏଥର ଆଣିପାରିନାହିଁ । ଭାଉଜଙ୍କ ପାଖରେ ମୁଁ ଆଗରୁ କ୍ଷମା ମାଗିନେଉଛି । "The Dancing Wu Li Master" ବହିଟି 'Zen & Art of Motorcycle Maintenance' ଭଳି ହୋଇଛି । 'To have or To be' ବହିଟି ମାନବୀୟ ଦ୍ୱନ୍ଦ୍ୱ ଉପରେ ଏକ ଅସ୍ତିତ୍ୱବାଦୀ ବିଶ୍ଳେଷଣ । ମୁଁ ଏଥର ଗଲାବେଳକୁ ତମ ପାଖକୁ ତାହା ନେଇଯିବି । ଅରୁଣାର ଆମ ସହ କିଛି ସମୟ କଟାଇବାରେ ତାହାର ଆଗ୍ରହ ଦେଖୁଥିଲି । ସେ ୨୭ତାରିଖରେ ଭୁବନେଶ୍ୱରରେ ପହଞ୍ଚିବ ଓ ୬ ତାରିଖରେ ଫେରିଯିବ । ମୁଁ ୨୯ ତାରିଖରେ ତାକୁ ଭେଟିବି । ୩୦ ଓ ୩୧ ତାରିଖ ଆମେ ବୋଧେ ପୁରୀ ଓ କୋଣାର୍କରେ କଟାଇବୁ । ନୂଆବର୍ଷରେ ଆମେ ତମ ସହ କାଟିବୁ; ଗୋପାଳପୁର ଓ ଚିଲିକା ଦେଖିବାର ଯୋଜନା ସେମାନେ ରଖିଛନ୍ତି । ଦୁଇ ତାରିଖରେ ସେ ଗ୍ରାମବିକାଶରେ ବୋଧେ ଦିନଟି କାଟିବ । ୩ ତାରିଖରେ ଆମେ କାଶୀପୁର ଯିବୁ ଓ ୫ ତାରିଖ ସୁଦ୍ଧା ସେ ଫେରିଆସିବ । ଏଥିପାଇଁ ଗାଡ଼ିଟି ଯୋଗାଡ଼ କରିବାକୁ ମୁଁ ଜୋ'କୁ ଆଜି ଲେଖୁଛି । ଦୁଇଦିନ ପାଇଁ ଅରୁଣା ଓ ତା'ର ଜଣେ ସାଙ୍ଗ ଶାରଦା ସହ ତମେ କିଛି ସମୟ କାଟିବା କଥା ତମେ ଆଜିଠୁ ଯୋଜନା କରିଥିବ; ଏହାଛଡ଼ା ଗୋପାଳପୁରରେ ରହିବାର ବ୍ୟବସ୍ଥା କରିଥିବ । ଭାଉଜ ସେତେବେଳକୁ ଥିଲେ ଆମର ବୋଝ ଅନେକ କମିଯିବ ବୋଧେ । ଜୋ' ସଙ୍ଗରେ ତମେ ଏ ବିଷୟରେ କଥାବାର୍ତ୍ତା କରିଥିବ ।

ଅମ୍ଳାନ ତମପାଖକୁ ଟେପ୍ କରି କିଛି ବାର୍ତ୍ତା ପଠାଇଛି । ମୁଁ ଦଶ ତାରିଖରେ ତମ ପାଖରେ ପହଞ୍ଚି ତାହା ଶୁଣାଇବି । ଏଥରର 'ଆନ୍ତର୍ଜାତିକ ସେମିନାର୍'ରେ ମୁଁ ଜଣେ ନୀରବ ଶ୍ରୋତା ହିସାବରେ ସବୁ ପର୍ଯ୍ୟବେକ୍ଷଣ କରିବି । ପ୍ରୋଜକ୍‌ଟ କାର୍ଯ୍ୟକ୍ରମ ଅନେକ ଧିମେଇ ଯାଇଛି । ଆମର ଆବଶ୍ୟକ ମୁତାବକ କର୍ମୀ ଏପର୍ଯ୍ୟନ୍ତ ମିଳୁନାହାନ୍ତି । ମୋର ଅନୁପସ୍ଥିତିରେ ସତ୍ୟବ୍ରତ ଭଡ଼ାପାଇଁ ଚିଠିଟିଏ ଲେଖିଥିଲା । ମୁଁ ତାହା ଆଜି ପଠାଉଛି । ତମେ ଦିଗ୍‌ପହଣ୍ଡି ଅଞ୍ଚଳରୁ ଜଣେ ଲୋକ, ଯିଏ ପନିପରିବା ଚାଷ ଆଦି ଜାଣେ,

ପଠାଇବାର କଥା । ତମେ ଶୀଘ୍ର ବିଚାରକୁ ନେବ । ଆମର କାଶୀପୁର ମାନଚିତ୍ରଟି ତରୁଣ ବାବୁଙ୍କ ପାଖରେ ରହିଯାଇଛି । ବ୍ରହ୍ମପୁରରେ cartographer ଥିଲେ ତାହାର ଏକ ଛୋଟସାଇଜ୍ ମ୍ୟାପ୍ କରିବା କଥା ବୁଝିବ । ଓଡ଼ିଶା କ୍ୟାଡରର ଶ୍ରୀ ଭୂପିନ୍ଦର ସିଂହ ଏବେ ଗୃହ ମନ୍ତ୍ରଣାଳୟରେ Joint Secretary ଅଛନ୍ତି ଯିଏ କୋରାପୁଟରେ କଲେକ୍ଟର୍ ଥିଲେ । ତାଙ୍କ ସହ ଦେଖା ହୋଇ ନ ପାରିଲେ ମଧ କାଶୀପୁର ପ୍ରୋଜେକ୍ଟ ପାଇଁ ଆର୍ଥିକ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ମୁଁ ଚଳିତ ବର୍ଷ ପାଇଁ proposal ଲେଖୁଛି । କଲ୍ୟାଣର ବିବାହରେ ମୁଁ ଯୋଗ ଦେଇ ପାରିଲି ନାହିଁ । ତମେ ମୋର ଶୁଭକାମନା ଟେଲିଗ୍ରାମ କରି ଜଣାଇଦେବ କି ? ଆଉ ସବୁ ଦେଖା ସାକ୍ଷାତକରେ । ଦଶ ତାରିଖକୁ ମୋତେ ଅପେକ୍ଷା କରିବ ।

ତମକୁ ଓ ଭାଉଜଙ୍କୁ ଅନେକ ସ୍ନେହ ଓ ସଦିଚ୍ଛା ।

ଅଚ୍ୟୁତ

**ବି.ଦ୍ର. :** ସୁଧାକରର 'ପ୍ରେମବିବାହ' ଜନିତ ଏକ ସମସ୍ୟା ନେଇ ସାମାନ୍ୟ ବିବ୍ରତ ହୋଇଛି । ବେଳେବେଳେ ଚେତନାର ସ୍ତରରେ ଯୌବନର ପ୍ରାକ୍‌କାଳର ରୋମାଞ୍ଚ ଓ ଉନ୍ମାଦନା କଥା ଭାବି ହସିବାକୁ ପଡ଼ିଥାଏ । ସୁଧାକର ଆଜି ଆମ ସମସ୍ତଙ୍କର ସମର୍ଥନ ଲୋଡୁଛି ।

ଆଜି ଜୟନ୍ତ ଭାଇଙ୍କ ପାଖକୁ ଚିଠିଲେଖୁଛି । ଜଣେ commerce graduate ପଠାଇବାକୁ ସେ କଥା ଦେଇଥିଲେ । ଅତି ଜରୁରୀ ଏହା । ତମେ ଫୋନ୍‌ରେ କଥାବାର୍ତ୍ତା କରି ତାଙ୍କୁ ମନେ ପକାଇଦେବ କି ?

କାଶୀପୁର ପୁଣି ଏକ ମଉଳାଫୁଲମାନଙ୍କର ସମାବେଶ; ସବୁ ଧୂସର ଓ ବିବର୍ଣ୍ଣ, ସ୍ୱପ୍ନମାନେ ମଧ ସମ୍ପର୍କମାନେ ବି !

□ □ □

ପ୍ରିୟ ବନ୍ଧୁ,

ମୋର ଚିଠି ପାଇଥିବ । ଏହା ତିଲୋନିଆରୁ ତମ ପାଖକୁ ଶେଷ ଚିଠି ହେବ ବୋଧେ ।

୯ ତାରିଖ ରାତିରେ ମୁଁ ଏଠାରୁ ଅମ୍ଳାନ ପାଖକୁ ଯିବି । ସେଠାରୁ ଖଜୁରାହୋ ଯିବାର ଯୋଜନା ଅଛି । ଫେରିଲାପରେ ପୁଣି ୧୬ ତାରିଖ ବେଳକୁ ହିମାଚଳ ପ୍ରଦେଶ ଯିବି ଓ ଓଡ଼ିଶା ଯାତ୍ରା କୋଡ଼ିଏ ତାରିଖ ବେଳକୁ ଆରମ୍ଭ କରିବି । ଅରୁଣା ଏପର୍ଯ୍ୟନ୍ତ

ଫେରିନାହିଁ । ତା'ଠାରୁ ଅନେକ ଦିନ ହେବ ମୁଁ ଚିଠି ପାଇନାହିଁ । ଶୁଣିଛି ଦଶ ତାରିଖ ବେଳକୁ ସେ ଫେରିବ । ଏଠାରେ ନିରର୍ଥକ ସମୟକୁ ମୁଁ ଅତି ଯନ୍ତ୍ରଣାଗ୍ରସ୍ତ ଭାବରେ କାଟୁଛି ।

ମୁଁ ଜୋ'କୁ ଲେଖିଥିଲି । ମୋ ସହ ଯେଉଁମାନେ କାମ କରିବେ, ସେମାନେ ଅନ୍ତତଃ 'ଗ୍ରାମ ବିକାଶ'ରେ ପନ୍ଦର ଦିନ ରହି କିଛି ଶିଖିବେ । ଏହା ମୋର ଅଭିପ୍ରାୟ । ଏହାର ସମସ୍ତ ଖର୍ଚ୍ଚ ମୁଁ ବହନ କରିବି ବୋଲି କହିଛି । ସେ ଏପର୍ଯ୍ୟନ୍ତ ଉତ୍ତର ଦେଇନାହିଁ । ତମେ କଥାବାର୍ତ୍ତା କରି ଲେଖିବ କି ? ଅମ୍ଳାନର ଭାଇ ମଧ ମୋ ସହ ଯୋଗଦେବ ବୋଲି ସମ୍ମତି ଦେଇଛି । ଗୋକୁଳ ମଧ ଉତ୍ତର ଦେଇନାହିଁ । ତମେ ତା'ପାଖକୁ ଲେଖିବ କି ? ଏଠାରେ ଅନେକ କିଛି ମୁଁ ଯୋଜନା କରୁଛି । ଦେଖାଯାଉ ବାସ୍ତବ ରୂପ କ'ଣ ହେବ ।

ଏ ଭିତରେ ଅମ୍ଳାନ ପାଖକୁ ଲେଖିଛି । ପ୍ରଥମେ ଦୁର୍ଗାର ଭଉଣୀ ସହ ବିବାହ ପ୍ରସ୍ତାବ ଭାଙ୍ଗି ଯିବା ଅବସ୍ଥାରେ ପହଞ୍ଚିଥିଲା । କିନ୍ତୁ ଦୁର୍ଗାର ବିଶେଷ ପ୍ରଚେଷ୍ଟା ଫଳରେ ଏ ଦିଗରେ ବିଶେଷ କିଛି ଅଗ୍ରଗତି ହେବା କଥା ମୁଁ ଲକ୍ଷ୍ୟ କରୁଛି । ବିବାହ ତିଥି ନିର୍ଦ୍ଧାରିତ ହୋଇ ଯାଇଥିବ ବୋଧେ । ମେ' ମାସରେ ଏହା ହେବାର ଆଶା ରହିଛି । ଗତ 'weekly'ରେ ସ୍ମିତାର କବିତା ବାହାରିଥିବା କଥା ତମେ ଦେଖିଥିବ । ମୁଁ ସାମାନ୍ୟ ସମ୍ବେଦନଶୀଳ ହୋଇଯାଇଛି ତା'ପ୍ରତି ।

ଅନେକ ଦିନ ହେବ, ମୁଁ ଘରୁ କିଛି ଚିଠି ପାଇନାହିଁ । ନିଜର ବଳିଷ୍ଠ ମତର ଯଥାର୍ଥତା ମୁଁ ମୋର ବାବାମାଆଙ୍କ ପାଖରେ ପ୍ରତିପାଦିତ କରିପାରିନାହିଁ । ବଡ଼ ଭୟାନକ ଭାବେ ସେମାନଙ୍କର ଜୀବନ ଶେଷ ହୋଇଆସୁଛି । ମୁଁ ମୁକ୍ତି ଓ ଦାସତ୍ୱର ବ୍ୟର୍ଥ ଯୁଦ୍ଧ ଯୁଝିଯୁଝି ଯେମିତି ପଙ୍ଗୁ ହୋଇଯାଇଛି । ତଥାପି ମୋର ଦର୍ଶନତତ୍ତ୍ୱ ମୋ ପାଇଁ ମହାର୍ଘ; ମୋ ସମସ୍ୟାର ଅବ୍ୟର୍ଥ ସମାଧାନ । ବିବେକର ତାଡ଼ନା ଓ ସାମାନ୍ୟ ମଣିଷସୁଲଭ ପ୍ରତିକ୍ରିୟା ମୋ ପାଇଁ ପୋଥିଗତ ହୋଇଯାଇଛି ।

ଏକ ମିଥ୍ୟା ମୂଲ୍ୟବୋଧର ଶିକାର ହୋଇଥିବା ପ୍ରଫୁଲ୍ଲ କେମିତି ଆପଣାକୁ ସୁଧାରିପାରିବ, ମୁଁ ଜାଣିପାରୁନାହିଁ । କିଛି ଦିନ ତଳେ ମୁଁ ଅପ୍ରିୟ ସତ୍ୟ କଥାଗୁଡ଼ିକୁ ତା'ପାଖକୁ ଲେଖିଥିଲି । ସେ ଆହତ ହୋଇ ଚିଠି ଲେଖିଛି ଓ ବ୍ୟର୍ଥତାର ବ୍ୟଞ୍ଜନ ସ୍ପଷ୍ଟ ପ୍ରକାଶିତ ହୋଇଛି ।

ତମେ ଭଲ ଥିବ । ଖୁବ୍ ଶୀଘ୍ର ଦେଖା ହେବ ତମମାନଙ୍କ ସାଙ୍ଗରେ । ଭାଉଜଙ୍କୁ ମୋର ସମ୍ମାନ ଓ ଶୁଭେଚ୍ଛା ଜଣାଇବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଅମ୍ଲାନ ପାଖରୁ ଲେଖୁଛି । ଗତ ୩/୪ ଦିନ ଧରି ଆମେ ଏକାଠି କିଛି ଦିନ କାଟିଛୁ । ଏ ଭିତରେ ଦିନକ ପାଇଁ 'ଖଜୁରାହୋ' ଯାଇଥିଲୁ । ସେଠାରେ କିଛି ଉଲ୍ଲେଖନୀୟ ଆମେ ଦେଖିବାକୁ ପାଇନଥିଲୁ । କୋଣାର୍କ ତୁଳନାରେ ଆମ ପାଇଁ ସବୁ କିଛି ନୈରାଶ୍ୟଜନକ ଥିଲା । ବୁଝି ହେଉ ନଥିଲା, କାହିଁକି ଏହାର ଏପ୍ରକାର ପ୍ରଚାର ଚାଲିଛି ।

ଅମ୍ଲାନର ବିବାହ ନିଷ୍ପତ୍ତି ହୋଇଯାଇଥିବା କଥା ତମକୁ ଲେଖିଥିଲି ବୋଧେ । ପ୍ରଥମରେ କିଛି କିଛି ବାଧା ଉଠିଥିଲା; ଏବେ ସବୁ ସୁଧୁରି ଯାଇଛି । ମେ'ମାସରେ ଯେକୌଣସି ଦିନ ଏହା ହୋଇପାରେ । ବିବାହର ପଦ୍ଧତି ଖୁବ୍ ସରଳ ଓ ନିରାଡ଼ମ୍ବର ହେବ ବୋଧେ । ତମେ ଏଥିରେ ଯୋଗଦାନ କରିବାରେ ଦ୍ୱିଧା ରଖିବ ନାହିଁ ବୋଲି ମୋର ବିଶ୍ୱାସ ।

ଅରୁଣା ଆଜି ମସ୍କୋରୁ ଫେରିଛି । ବିଦେଶୀ ହାଓ୍ୱାରେ ସେ କିଛି ବଦଳିଯାଇଛି ବୋଲି ମୁଁ ଲକ୍ଷ୍ୟ କରୁଥିଲି । ଜୀବନଦର୍ଶନ ଉପରେ ସେ ଆଲୋଚନା ଆରମ୍ଭ କରୁଥିଲା । ସମୟ ମିଳିଲା ନାହିଁ । ୧୬ ତାରିଖକୁ ସେ ଫେରିବ ବୋଧେ । ମୁଁ ମଧ୍ୟ ଡିଲୋନିଆ ଛାଡ଼ିବାର କଥା । ଏ ଭିତରେ ଓଡ଼ିଶା ପ୍ରୋଜେକ୍‌ଟରେ କାମ କରୁଥିବା ମଦନ ଓ କ୍ଷୀତିଶ୍ ଫେରିଯାଇଛନ୍ତି । ଜୋ'ର ପ୍ରୋଜେକ୍‌ଟରେ ସେମାନେ ପନ୍ଦର ଦିନ ରହିବାର କଥା । ଜୋ' କିଛି ଲେଖି ନଥିବାରୁ ମୁଁ ସାମାନ୍ୟ ବିଚଳିତ ହୋଇଯାଇଛି । ଏ ଦୁହେଁ ତମପାଖଖୁ ଗଲେ ତମେ ସେମାନଙ୍କୁ ନରସିଂହପୁର ପହଞ୍ଚାଇବାର ବନ୍ଦୋବସ୍ତ କରିବ । ଅମ୍ଲାନର ଭାଇ ମଧ୍ୟ ଆସୁଛି । କୋଡ଼ିଏ ତାରିଖ ପରେ ସେମାନେ ପହଞ୍ଚିବେ ।

ମୋର ଓଡ଼ିଶା ଫେରିବା ଏବେ ମଧ୍ୟ ନିଶ୍ଚିତ ହୋଇନାହିଁ । ମୋତେ ଏ ମାସର ଶେଷଭାଗରେ ବାଙ୍ଗାଲୋର୍ ଯିବାକୁ ପଡ଼ିପାରେ । ଏହାହେଲେ ମୁଁ ମେ' ପ୍ରଥମ ସପ୍ତାହରେ ତମ ପାଖରେ ପହଞ୍ଚିବି । ତମକୁ ଏ ବିଷୟରେ ପୁଣି ଲେଖିବି । ଗୋକୁଳ ମଧ୍ୟ କିଛି ଜବାବ୍ ଦେଇନାହିଁ । ମୁଁ ସାମାନ୍ୟ ଆଶ୍ଚର୍ଯ୍ୟ ହେଉଛି । ଏ ମାସର ସବୁ ସମ୍ବାଦ ମୋ ପାଇଁ ଭଲ ନୁହେଁ । ଜୋ' ଡିଲୋନିଆର କିଛି handicrafts ମାଗିଛି । ମୁଁ ପଠାଉଛି । ତମ ପାଇଁ ମଧ୍ୟ । କିନ୍ତୁ ତମର ଉପଯୋଗୀ ସାମଗ୍ରୀ କ'ଣ ଭାବି ଦେଖୁଛି ।

ତମେ ଭଲ ଥିବ ଓ ଭାଉଜ ବି । ଲେଖିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମକୁ କେଉଁଭଳି ଲେଖିବି ଜାଣିପାରୁନାହିଁ । ବ୍ରହ୍ମପୁରରୁ ଫେରିବା ପରଠାରୁ ସ୍ୱାସ୍ଥ୍ୟହାନୀ ହୋଇଛି । ଏପର୍ଯ୍ୟନ୍ତ ଏଥିରେ ଉନ୍ନତି ହୋଇନାହିଁ । ଏସବୁ କାରଣ ହେତୁ ଜୋ'ର ସେମିନାର୍‌ରେ ମୁଁ ଯୋଗଦେଇ ପାରିଲି ନାହିଁ । ମୁଁ ଜାଣେ ସେ ଏ ପ୍ରକାର ଦୁର୍ଘଟଣାରେ ଖୁସି ହେବନାହିଁ । ତମେ ବୁଝାଇ ଦେଖିବ । ତମ ସହ ମଧ୍ୟ ଆଉ କିଛି ସମୟ କାଟିବାର ସୁଯୋଗ ମିଳିଲା ନାହିଁ ।

ଏଥର ତମ ସହ ସମ୍ପର୍କକୁ ମୁଁ ବୌଦ୍ଧିକ ସ୍ତରରେ ଅନୁଧ୍ୟାନ କରିନାହିଁ । ତମର ଓ ଭାଉଜଙ୍କ ଉଚ୍ଛ୍ୱସିତ ଉଷ୍ଣତା ଏକ ନୈରାଶ୍ୟବାଦୀ ଜୀବନରେ କେତେ ମୂଲ୍ୟବାନ୍, ମୁଁ ପ୍ରକାଶ କରିପାରୁନାହିଁ । ମୁଁ ଚମତ୍କୃତ ହୁଏ ସବୁ ସମୟରେ । ବନ୍ଧୁତାର ଏକ ବାସ୍ତବ ପଟ୍ଟଭୂମି ମିଳିଯାଏ ଏବଂ ନିଜକୁ ପୁନର୍ବାର ଆବିଷ୍କାର କରିବା ସହଜତର ହୁଏ । ତମର ଯଦି କୋଲ୍ୟାର (Alyosha Karamazovର ଅନ୍ୟତମ ପ୍ରିୟ ବନ୍ଧୁ ହେଉଛି କୋଲ୍ୟା) କଥା ମନେପଡ଼ିଯାଏ । ସେ କହିଛି 'I want to suffer for all men' । ଆମ ବନ୍ଧୁତାରେ ଯନ୍ତ୍ରଣା ରହିଥାଉ; ପରସ୍ପର ପାଇଁ ଦୁଃଖଦ ଦରଦ ରହିଥାଉ ବୋଲି ମୁଁ ସବୁବେଳେ ଆଶା ରଖିବି ।

ଏଥରର ଜନ୍ମଦିନରେ ମୁଁ ପ୍ରାୟ ନୀରବ ଥିଲି । ଦିନସାରା ବର୍ଷା ଲାଗିରହିଥିଲା । ମୋର ସହକର୍ମୀମାନଙ୍କୁ ମଧ୍ୟ ଆଭାସ ଦେଇ ନଥିଲି । ତମର 'Between Man And Man' ବହିର କିୟଦଂଶ ପଢ଼ିଥିଲି । ଏଥର ବୟସ ଅନେକ ବଢ଼ିଯାଇଛି ବୋଲି ମୁଁ ଅନୁଭବ କରୁଥିଲି । ଆଜିକାଲି ଅନେକ ସମୟ ଏକ ଶୂନ୍ୟଚେତନାରେ କରିଯାଉଛି ବୋଲି ତମକୁ କହିଥିବି ନିଶ୍ଚୟ ।

ଭାଉଜ ନୟାଗଡ଼ ଚାଲିଯାଇଥିବେ ନିଶ୍ଚୟ । ଏକ ଐକାନ୍ତିକ ଜୀବନ କଥା ମୁଁ କଳ୍ପନା କରିପାରୁଛି । ଏଥର ତିଲୋନିଆରେ ସମ୍ପର୍କର ସୂଚକ ଓ ମାପଦଣ୍ଡ କଥା ମୁଁ ଓ ଅରୁଣା ଚର୍ଚ୍ଚା କରୁଥିଲୁ । ଆମ୍ଭ ମତରେ ଏହା ପରସ୍ପର ସହ ଯୋଗାଯୋଗ ଓ ପରିପ୍ରକାଶ ତଥା ସଚେତନତାର ସହ ତୀବ୍ର ଅନୁଭବ । ମୁଁ Pining କଥା କହୁଥିଲି ଏବଂ ଅରୁଣା ତାହା Longing ବୋଲି କହୁଥିଲା । ତମେ ଏ ବିଷୟରେ ଅବହିତ ଥିବ ନିଶ୍ଚିତ । ତେଣୁ ଏଇସବୁ ମୁହୂର୍ତ୍ତରେ Pining/ Longing ର ପରିଭାଷା ତମ ପାଖରେ ଅଛପା ନଥିବ । ଭାଉଜ ଏଥର ମୋ ପାଖରେ ଖୁବ୍ ସହଜ ଜଣାପଡୁଥିଲେ । ଅବଶ୍ୟ ଆମେ ତାଙ୍କଠାରୁ କ'ଣ ଆଶା କରୁ, ଏକ ବ୍ୟବହାରିକ ଛଳରେ ମୁଁ କହିଦେଇଥିବି । ଏହାଦ୍ୱାରା ସେ ବିଚଳିତ ନହୁଅନ୍ତୁ, ତମେ କହିଦେବ ।

'A Guide for the Perlexed' ବହିଟି ପଢ଼ିନେଇଥିବ ଏ ଭିତରେ "Biko" ବହିଟି ତମେ ନିଶ୍ଚିତ ପଢ଼ିବ ବୋଲି ମୁଁ ଆଶା ରଖୁଛି । ଟଙ୍କା ବ୍ୟାଙ୍କରୁ କାଢ଼ିବାରେ ସାମାନ୍ୟ ଅସୁବିଧା ଥିବାରୁ ମୁଁ ତମ ପାଇଁ EPW ମଗାଇପାରିନାହିଁ । ଭଲ ଥିବ ତମେ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଗତ ତିନି ଚାରି ଦିନ ହେବ, ଏଠାକାର ସନ୍ଧ୍ୟା ଅବର୍ଣ୍ଣନୀୟ ହୋଇଯାଉଥିବା କଥା ମୁଁ ଗୁରୁତର ଭାବେ ଅନୁଭବ କରିପାରୁଛି । କିଛି ସମୟ ପୂର୍ବରୁ କେଉଁ ଆଡୁ କେଜାଣି ବାଦଲ୍ ଘୋଟିଆସିବ, ପବନ ଥମିଯିବ ଓ ଫାଙ୍କ ଦେଇ ରକ୍ତିମ ସୂର୍ଯ୍ୟର ଚେନାଏ କିରଣ ଏଠାକାର ଅଧାସବୁଜ ଓ ଅଧା ସୁନାରଙ୍ଗର ଗହମ କ୍ଷେତରେ ବିଞ୍ଚି ହୋଇଯିବ । ମୁଁ ଜାଣେ ଏଇ ସମୟ ଉନ୍ମାଦ ହୋଇଯିବାର ସମୟ; ଆପଣାର ଆନ୍ତର୍ଦ୍ୱନ୍ଦ୍ୱସବୁ ଫୁଲି ଉଠି ପାଣିଫୋଟକା ଭଳି ଫାଟିବାର ବେଳ ।

ମୁଁ ଜାଣେନାହିଁ ତମେ ବିଥୋଭେନ୍, ବାକ୍, ମୋଜାର୍ଟ, ସ୍କ୍ୟୁବାର୍ଟଙ୍କର compositions ଶୁଣିଛି କି ନାହିଁ? ଗତ ସନ୍ଧ୍ୟାମାନଙ୍କରେ ମୁଁ ଯେତେବେଳେ ଏକାକୀ ହୋଇପଡ଼ିଛି, ଏମାନଙ୍କୁ ଶୁଣି ମୁଁ ନିଜକୁ ବୁଝାଇଛି । ବିଥୋଭେନ୍‌ଙ୍କ ପଞ୍ଚମ ଓ ଅଷ୍ଟମ ସିମ୍ଫୋନୀ ଶୁଣିବାକୁ ମୁଁ ବାରମ୍ବାର ଆଗ୍ରହ ପ୍ରକାଶ କରିଛି । ରାତ୍ରିର ଶେଷପ୍ରହର ପର୍ଯ୍ୟନ୍ତ ମୁଁ ସବୁ ଚେତନାସ୍ତରକୁ ଉଦ୍‌ଜୀବିତ କରି ନିଜକୁ ଏକ ଅପହରିହାର୍ଯ୍ୟ ସ୍ଥିତିସ୍ଥାପକତାରୁ ରକ୍ଷା କରିଛି । ପ୍ରତି crescendoରେ ମୁଁ ନିଜର ସଂବିତ୍ ହରାଇଛି ।

ତମକୁ ମୁଁ ଅନୁରୋଧ କରିବି ଏସବୁର କ୍ୟାସେଟ୍ କିଣିବା ପାଇଁ । ଯେତେବେଳେ ସବୁ ଆନ୍ଦୋଳନ ଓ ଉଦ୍‌ବେଳନ ତମକୁ ବିବ୍ରତ କରୁଥିବ ସେତେବେଳେ ତମେ ଚାହିଁବ ଭାବପ୍ରବଣତାର ଉପକଣ୍ଠରେ ଉଠୁଥିବା ଉତ୍ତାଳ ତରଙ୍ଗମାନେ ଆସି ମଥା ପିଟନ୍ତୁ ଓ ଶାନ୍ତ ହୋଇଯାଆନ୍ତୁ । ଠିକ୍ ବିଥୋଭେନ୍‌ଙ୍କ ସିମ୍ଫୋନୀମାନେ ଏଇଭଳି । ଯେମିତି ଢେଉଟିଏ ଆସୁଛି ଫଣାଟେକି ଓ ପୁଣି ବାଲିର ବେଳାଭୂମିରେ ବାଡ଼େଇ ହୋଇ ଫେରିଯାଉଛି; ପୁଣି ଧୀରେ ଆଉ ଥରେ ଆସୁଛି...... । ଚମତ୍କାର! ଅତୀବ ଚମତ୍କାର ବୋଲି ମୁଁ କହିବି; ସବୁ ଗମ୍ଭୀରତା, ସବୁ ବିସ୍ଫୋରିତ ଶବ୍ଦର ପ୍ରହେଳିକା!!

× × × ×

ଆଉ କେତୋଟି ଦିନ ରହିଗଲା ଏଇଠି, ଗଣି ଦେଖୁଛି । ସତର ତାରିଖ ସନ୍ଧ୍ୟାରେ ଅମ୍ଳାନ ପାଖକୁ ଯାଉଛି । ଅରୁଣା ଫେରି ଆସିଲାମାତ୍ରେ ମୁଁ ଚାଲିଲି । ଏଠାକାର

ମଣିଷମାନଙ୍କ ସହ ଗୋଟାଏ ଘୃଣା ଓ ଭଲ ପାଇବାର ସମ୍ପର୍କ ଗୋଟାଏ ଝଟ୍‌କାରେ ଖଣ୍ଡ ଖଣ୍ଡ ହୋଇଯାଇଛି । ପଳାତକ ଭଳି ଏଠାରେ ମୁଁ ଲୁଚିଯାଉଛି । ଜୋ'ଚିଠି ଲେଖିଥିଲା ଆସ୍ଥାସୂଚକ ଭଙ୍ଗୀରେ । ମୁଁ ଜବାବ୍ ଦେଇଛି । ଏବେ ଜୋସେଫ୍ କନ୍‌ରାଡ଼ଙ୍କ Nostromo ବହି ପଢୁଛି ଓ ସମ୍ଭବତଃ ତମକୁ ଲେଖିବି ଏ ବିଷୟରେ ।

କେମିତି ଅଛ ତମେ ? ଭାଉଜଙ୍କୁ ଶୁଭେଚ୍ଛା ଓ ସମ୍ମାନ । ତମେ ଲେଖିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଶା କରୁଛି ମୋର ଟେଲିଗ୍ରାମ ପାଇଥିବ । ହଠାତ୍ ଅରୁଣା 'How the Other Half Dies' ବହିଟି ଦରକାର କରୁଛି ଓ ଏବହି ଏବେ ଭାରତରେ ମିଳୁନାହିଁ । ତମେ ବହିଟି ପାର୍ସଲ୍‌ରେ ପଠାଇଥିବ ଆଶା କରୁଛି ।

ମୋର ଏ ଭିତରେ ଗୋଟାଏ ପ୍ରକାରର ବୌଦ୍ଧିକ ପତନ ହୋଇଛି । ଦକ୍ଷିଣ ଭାରତରୁ ଫେରିବା ପରେ ମୋର ସ୍ୱାସ୍ଥ୍ୟହାନୀ ସହ ଆବେଗ ଓ ମାନସିକ ସମସ୍ୟା ମୋର ସ୍ଥିତିକୁ ଟଳମଳ କରିଛି । ମୁଁ କିଛି ଭାବି ପାରୁନାହିଁ । ଅରୁଣା ବିଦେଶ ଯାଉଥିବାରୁ ତା' ଜାଗାରେ ଡିସେମ୍ବରରୁ ମାର୍ଚ୍ଚ ପର୍ଯ୍ୟନ୍ତ ରହିବାକୁ ପଡ଼ିବ । ଏହାର ଅର୍ଥ ମୁଁ ଓଡ଼ିଶାରେ ଏ ବର୍ଷର ଶୀତଦିନ ପୂର୍ବରୁ କାମ କରିପାରିବି ନାହିଁ । ବଙ୍କର୍ project proposal ପଠାଇଥିଲେ ମଧ୍ୟ ସେଥିରେ ଖୁବ୍ ଆଗ୍ରହ ଥିଲା ଭଳି ମନେହେଉନାହିଁ । ଏବେ ମୁଁ ଲକ୍ଷ୍ୟ କରୁଛି ସେ ମୋ ଉପରେ କାମର ବୋଝ ଲଦିଦେଉଛି । ମୁଁ ବିନା ପ୍ରତିବାଦରେ କାମ କରିପାରେ ବୋଲି ସେ ଆଜିକାଲି ଅର୍ଡ଼ର ଦେବା ଆରମ୍ଭ କରିଛି । ମୁଁ ଏହାକୁ ସୁସ୍ଥ ମନରେ ସ୍ୱୀକାର କରିପାରୁନାହିଁ ।

ମୋ ସହ ଆସିଥିବା ମଦନ ଓ ରବି ଏବେ ମଧ୍ୟ ଅନିଶ୍ଚିତ ଅବସ୍ଥାରେ ଏଠାରେ ଅଛନ୍ତି । ସେମାନେ ଗୋଟାଏ ସର୍ତ୍ତରେ ଏଠାକୁ ଆସିଥିଲେ ଯେ ଶୀଘ୍ର ଓଡ଼ିଶା ଫେରିଯାଇ କିଛି ଆରମ୍ଭ କରିବେ । ତାହା ନହେବା ହେତୁ ମୁଁ ଯେମିତି ବିଶ୍ୱାସ ହରାଇବସିଛି । ଏମାସ ଭିତରେ ଦୁହେଁ ଓଡ଼ିଶା ଫେରିଯିବେ ଓ ପୁନଶ୍ଚ ଫେରିଆସିବେ କି ନା କହିହେବ ନାହିଁ । ଉଭୟଙ୍କର ଯିବା ଆସିବା ଆଦି ଖର୍ଚ୍ଚରେ ମୁଁ ସାମାନ୍ୟ ଋଣଗ୍ରସ୍ତ ହୋଇପଡ଼ିଛି । ମୋର ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟ ମୋତେ ବିବ୍ରତ କରୁଛି ।

ତମକୁ କହୁଥିଲି ଯେ ବିକାଶ ଓ ସଂଗଠନର ସମନ୍ୱୟ ନେଇ ମୁଁ କେମିତି ଆନ୍ଦୋଳିତ ହୋଇଯାଇଛି । ସାଂଗଠନିକ ପଦ୍ଧତି ନେଇ ମୁଁ କେତେଗୁଡ଼ିଏ Macro

Model ଅନୁଧ୍ୟାନ କରିବା କଥା ଭାବୁଛି । ଏଇଥିପାଇଁ ପୁଣି ଲାଇବ୍ରେରୀକୁ ଫେରିଯିବାକୁ ମନ ଡାକୁଛି । ଯେଉଁ ସଂଜ୍ଞାଗୁଡ଼ିକ ଉପରେ ମୋର ଦାର୍ଶନିକ ଚିନ୍ତାମାନ ପ୍ରତିଷ୍ଠିତ, ସେଗୁଡ଼ିକୁ ପୁନର୍ବାର ପରୀକ୍ଷା କରି ଦେଖିବାକୁ ପଡ଼ିବ । ଏବେ ଏଠାକୁ ତୁନୁ ରାୟ ବୋଲି ଜଣେ ଆସିଥିଲେ, ଯିଏ ମୋତେ ଅକ୍‌ସଫାମ୍‌ରେ ଚାକିରି ଦେବାରେ ମୁଖ୍ୟଭୂମିକା ନେଇଥିଲେ । ସେ ମୋତେ କହୁଥିଲେ ଯେ ବିକାଶମୂଳକ କାମକୁ ଧୀରେ ଧୀରେ ରାଜନୈତିକ ଶିକ୍ଷା, ରାଜନୈତିକ ସଂଗଠନ ଓ ଲୋକବିପ୍ଳବର ଭିନ୍ନ ଭିନ୍ନ ପର୍ଯ୍ୟାୟଗୁଡ଼ିକୁ ଅଧ୍ୟୟନ କରିବାକୁ ହେବ । ମଧ୍ୟପ୍ରଦେଶର ଗୋଟାଏ ଜିଲ୍ଲାରେ ରାଜନୈତିକ ଢାଞ୍ଚାକୁଅତି ସତର୍କତାର ସହ ଅନୁସନ୍ଧାନ କରିଛନ୍ତି । ସେ ଇତିହାସର ମୂଳଭାଗକୁ conflictsର ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି । ତାଙ୍କ ମତରେ ସାଂଗଠନିକ କାମ ଏହି conflictsରୁ ଆରମ୍ଭ ହେବାର କଥା । ତମର ବିବାହ ବେଳକୁ ଓଡ଼ିଶା ଗଲେ ମୁଁ ତାଙ୍କ ପାଖରେ କିଛି ଦିନ କାଟିବା କଥା ଭାବୁଛି ।

ଏଠାରେ ଶୀତ ପଡ଼ିଆସିଲାଣି । ଦିନଗୁଡ଼ିକ ଭାରି ଛୋଟ ହୋଇଯାଇଛି । କ୍ରମେ କ୍ରମେ ମୁଁ ଏକ ସଂକ୍ଷିପ୍ତ ପରିସର ଭିତରକୁ ଓଟାରି ହୋଇଯାଉଛି । ନିଜକୁ ଶୃଙ୍ଖଳିତ କରିବାର ଅବକାଶ ମୁଁ ପାଉନାହିଁ ।

ତମକୁ ମୁଁ ଅତିନିକଟରୁ ଦେଖୁଥିଲି । ତମେ illusions ମାନଙ୍କୁ କେତେ ଶୀଘ୍ର ଗ୍ରହଣ କରିନେଉଛ । ତମେ ସ୍ପଷ୍ଟ ବୁଝିପାରୁଛ ଯେ ଯେଉଁ କ୍ଷମତା ସହ ତମେ ସଂଶ୍ଲିଷ୍ଟ ହୋଇଛ, ତାହା କେତେ ଆପେକ୍ଷିକ । ତମେ ଯେଉଁ ସାମାଜିକ ମୂଲ୍ୟବୋଧକୁ ଆପାତତଃ ଗୁରୁତ୍ୱ ଦେଉଛ ତାହା ତମେ ଅର୍ଥହୀନ ବୋଲି ଜାଣିଛ । ସଂସାରର ବୁଢ଼ିଆଣୀ ଜାଲ ଭିତରକୁ ସଚେତନତାର ସହ ପଶିପାରିବାଟା ବୀରତ୍ୱ ନୁହେଁ ତ ଆଉ କ'ଣ ? ମୁଁ ତମକୁ ସମର୍ଥନ କରୁଛି ।

ଅମ୍ଲାନ ମାର୍ଚ୍ଚ ମାସ ବେଳକୁ ପୁଣି ଏକ ବିବାହବନ୍ଧନରେ ଜଡ଼ିତ ହେବା ପ୍ରାୟ ନିଶ୍ଚିତ । ମୁଁ ଆଶ୍ଚର୍ଯ୍ୟ ହୋଇନାହିଁ । ତମେ ଲେଖିବ ।

ଅଚ୍ୟୁତ

*ବି.ଦ୍ର :* ଏ ଭିତରେ ମୁଁ କିଛି ପଢ଼ିବାର ସୁଯୋଗ ପାଇନାହିଁ । HAMMARSKJOLDଙ୍କ 'MARKINGS'କୁ କେବେ କେମିତି ପଢୁଛି । ଖୁବ୍ ଭଲ ଲାଗୁଛି । ଗୋଟାଏ ବିକ୍ଷିପ୍ତ ଓ ଅବିଶ୍ୱସ୍ତ ପୃଥିବୀରେ ବିଶ୍ୱାସ ଓ ଭଲ ପାଇବାର ଆସ୍ଥା ସେ ପ୍ରତି ଶବ୍ଦରେ ଲେଖିଛନ୍ତି । ଏ ବିଷୟରେ ପୁଣି ତମକୁ ଲେଖିବି ।

▯ ▯ ▯

*"It whispers: all is waiting here*
*Keep safe for thee, year after year.*
*Beautiful songs in thousands,*
*Where hast thou been, where, where?"*

*(Erik Axel Karlfeldt)*

ପ୍ରିୟ ବନ୍ଧୁ,

ତମର ଚିଠି ମିଳିଛି । ମୁଁ ସାମାନ୍ୟ ଆଶ୍ଚର୍ଯ୍ୟ ହେଉଥିଲି ଯେ ତୁମେ ଚିଠିର ଉତ୍ତର ଦେବାରେ ବାଧବାଧକତା ଅନୁଭବ କରୁଛ । କିଛିଦିନ ତଳେ ଅମ୍ଳାନ ସହ ମୋର ଏକ ଅନୌପଚାରିକ ତର୍କରେ ମୁଁ ଆମ ସମସ୍ତଙ୍କର ମୁଖ୍ୟ ବିଚାରଧାରା ବଦଳିବାକୁ ସମର୍ଥନ କରୁଥିଲି । ବିଗତ ମୁହୂର୍ତ୍ତର ଚରମ ପ୍ରଜ୍ଞାକୁ ଏକ ଅଟ୍ଟହାସ୍ୟରେ ଡଷ୍ଟବିନ୍ ଭିତରକୁ ଫୋପାଡ଼ି ଦେଇ ପାଇବା ସାହସିକତାର କାର୍ଯ୍ୟ । ଆମେ ବରଂ ଆହୁରି ସମସ୍ତଙ୍କୁ ଗଭୀର ଭାବେ ଭଲ ପାଇବା; ବୁଝାମଣାକୁ ସବୁବେଳେ ପ୍ରାଥମିକତା ଦେଇଆସିବା ।

ଅନେକ ଅନିଶ୍ଚିତତା ପରେ HIVOS ମୋର ପ୍ରୋଜେକ୍‌ଟକୁ ସ୍ୱୀକାର କରିଛି । ପରୀକ୍ଷାମୂଳକ ଭାବେ ଗୋଟାଏ ବର୍ଷ ପାଇଁ ଆର୍ଥିକ ସହାୟତା ଦେବାରେ ସେମାନେ ଆଗ୍ରହ ପ୍ରକାଶ କରିଛନ୍ତି । ଗତ ତିନି ଚାରିଦିନ ଧରି ୟାନ୍ ଏଠାରେ ଅଛି ଓ ଓଡ଼ିଶା ପରିଯୋଜନାର ବାସ୍ତବ ରୂପ ଦେଉଛି । ଆଶ୍ଚର୍ଯ୍ୟଜନକ ଭାବେ ମୋ ସହ ବନ୍ଧୁତା ରଖିଥିବା ଏ ମଣିଷଟି ମୋତେ ସ୍ପଷ୍ଟ ବୁଝିପାରୁଛି । ୟାନ୍‌କୁ ମୁଁ ଜଣେ ସ୍ଥିତିବାଦୀ ବୋଲି କହିବି । ମାନବବାଦୀ ସଂସ୍ଥାର ପ୍ରତିନିଧିରୂପେ ସେ ମଧ୍ୟ ଜଣେ ମାନବବାଦୀ ଓ ଭଗବାନରେ ସେ ବିଶ୍ୱାସ କରେନାହିଁ । ବିବାହ ନକରିବାକୁ ଦୃଢ଼ସଂକଳ୍ପ ନେଇଥିଲେ ମଧ୍ୟ ହଲାଣ୍ଡରେ ତା'ର ଚାରିଜଣ ଝିଅଙ୍କ ସହ ସବୁ ସ୍ତରରେ ସମ୍ପର୍କ ତା'କୁ ବଞ୍ଚିବାର ଖୋରକ୍ ଯୋଗାଉଛି । ଗତଥର ସେ ମୋତେ ଭାନ୍‌ଗଗ୍ କଥା କହୁଥିଲା । ଏଥର ସେ ଏଲ୍ ସାଲ୍‌ଭାଦୋର୍‌ରେ ଚାଲୁଥିବା ବିପ୍ଳବ କଥା ଆଲୋଚନା କରୁଥିଲା । ମୁଁ ଏଠାରୁ ଅପ୍ରେଲ୍ ପ୍ରଥମ ସପ୍ତାହରେ ସିଧା କାଶୀପୁର ଯିବି ଓ ସେଠାରୁ ତମ ପାଖକୁ ଆସିବି । ମେ' ଦିବସରେ ମୋର ସଂସ୍ଥାର ଶୁଭାବସର ହେବାର କଥା । ଜୋ'ସଙ୍ଗେ ଅନେକ କଥା ବିଚାର ବିମର୍ଷ କରିବାର ଅଛି ଶେଷପର୍ଯ୍ୟନ୍ତ ବଙ୍କର୍ ଏଠାରେ ଚେଷ୍ଟା କରୁଥିଲା ଆଉ କିଛି ଦିନ ଘୁଞ୍ଚାଇଦେବାକୁ । ମୁଁ ସହମତ ହୋଇନାହିଁ ପ୍ରଥମ ବର୍ଷର କାର୍ଯ୍ୟକଳାପ ପରେ ମୂଲ୍ୟାଙ୍କନ ହେବ ଓ ପରବର୍ତ୍ତୀ କାର୍ଯ୍ୟଯୋଜନା ନିର୍ଦ୍ଧାରଣ କରାଯିବ । ପ୍ରଥମେ ବିସ୍ତୃତ ସର୍ଭେ କାମ ପାଇଁ ମୁଁ ନିଜକୁ ପ୍ରସ୍ତୁତ କରୁଛି । ନୂଆ project proposal ମୁଁ ପଠାଇବି । ଓଡ଼ିଶାରୁ ଆସିଥିବା ମଦନକୁ ମୁଁ ବାରାଣସୀ ପଠାଉଛି । ସେ ଗୋପବନ୍ଧୁକୁ ଦେଖାକରିବ ଓ ଏଥିପାଇଁ ମୁଁ ଚିଠି ଲେଖୁଛି । ଅମ୍ଳାନ ଅନେକ ଦିନ ହେବ ଲେଖିନାହିଁ । ମୁଁ ରାଞ୍ଚିଯାଇ ନଥିବା କଥା ଲେଖିଥିଲି ବୋଧେ ।

କିଛି ଦିନ ଧରି ମୁଁ ପଢ଼ିନାହିଁ କିଛି । ତିଲୋନିଆ ସମ୍ପର୍କରେ କିଛି ଲେଖିବା କଥା ଭାବୁଥିଲି । ଏଠାକାର ସବୁ ଅନୁଭୂତିକୁ ସାଇତି ରଖିବାର କଥା ।

ତମେ କେମିତି ଅଛ ? ଭାଉଜ କେମିତି ଆମକୁ ଗ୍ରହଣ କରୁଛନ୍ତି ? 'ରାଜକୁମାର'ର ଡୋରି ବାନ୍ଧିବାରେ ସେ ବିଶ୍ୱାସ କରନ୍ତି କି ? ତମେ ସାରୋୟାନ୍‌ଙ୍କ 'The Human Comedy' ବି ତାଙ୍କୁ ପଢ଼ିବାକୁ ଦେବ । ତମେ ଚାହିଁଲେ ମୁଁ ଗଲାବେଳକୁ କିଛି ବହି ନେଇଯିବି ଦୁହିଁଙ୍କ ପାଇଁ । ଅବଶ୍ୟ ତମେ ସବୁବେଳେ ତାଙ୍କୁ କହୁଥିବ ଯେ ବହି ପଢ଼ିବା ଗୋଟାଏ illusion; ଗୋଟାଏ ଆବଶ୍ୟକୀୟ ଭ୍ରମ ।

ଅନେକ ଶୁଭେଚ୍ଛା ସହ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମକୁ ଅମ୍ଳାନ ପାଖରୁ ଲେଖିଥିଲି । ରାୟଗଡ଼ାରେ ଦୁଇଦିନ ରହିବା ପରେ ଆଜି ଏଠାକୁ ଆସିଛି । ବିଲ୍‌କୁଲ୍ ନୂଆ ନୂଆ ଲାଗୁଛି । ସବୁ ମଣିଷ ଅଚିହ୍ନା, ପରିବେଶ ସମ୍ପୂର୍ଣ୍ଣ ଅଲଗା । ନିଜକୁ ପରିଚିତ କରିବାକୁ ପଡୁଛି । କେଉଁ କାମ ପାଇଁ ଆସିଛି କହିଲା ବେଳକୁ ମୁଁ ସାମାନ୍ୟ ସଙ୍କୁଚିତ ହୋଇଯାଉଛି ।

କାଶୀପୁର ବଡ଼ ଗାଁଟିଏ । ଏଠାରେ ତହସିଲ୍ ଅଫିସ୍ ମଧ ଅଛି । ଅନ୍ୟାନ୍ୟ ବ୍ଲକସ୍ତରୀୟ ସବୁ କାର୍ଯ୍ୟାଳୟ ରହିଛି । ଏଠାକାର ସମସ୍ୟାଗୁଡ଼ିକୁ ଜାଣିବା ପାଇଁ ଅନେକ ଲୋକଙ୍କର ସାହାଯ୍ୟ ଲୋଡ଼ିବାକୁ ହେବ । ରାୟଗଡ଼ାରେ ଡି.ଏଫ୍.ଓ. ସୁରେଶବାବୁଙ୍କ ଅନୁଗ୍ରହରେ ଏଠାରେ ରେଞ୍ଜର ଆଦି ମୋର କାର୍ଯ୍ୟକ୍ରମରେ ସହଯୋଗ କରୁଛନ୍ତି । ଏପର୍ଯ୍ୟନ୍ତ ବିଜୟ ପଟ୍ଟନାୟକଙ୍କ ସହ ଦେଖା ହୋଇପାରିନାହିଁ । ତିଲୋନିଆରୁ କଲେକ୍‌ଟରଙ୍କୁ ଲେଖି ଆସିଥିଲେ ବୋଧେ ଆଉ କିଛିଟା ସୁବିଧା ମିଳିଥାଆନ୍ତା ।

ଏଥର ମୋତେ ଅନେକ କିଛି ନିଷ୍ପତ୍ତି ନେବାକୁ ପଡ଼ିବ । ପ୍ରଥମେ ମୋ ସହ କାମ କରିବାକୁ ପ୍ରସ୍ତୁତ ଥିବା କର୍ମୀ ବନ୍ଧୁମାନଙ୍କୁ ଖୋଜିବାକୁ ପଡ଼ିବ । ଦ୍ୱିତୀୟରେ ଯେଉଁ ଅଞ୍ଚଳରେ ମୁଁ କାମ କରିବି ସେଠାରେ ସଂସ୍ଥାର ଅବସ୍ଥିତି କେଉଁଠି ହେବ, ତାହା ମଧ ବାଛିବାକୁ ପଡ଼ିବ । ଲୋକମାନଙ୍କର ସମସ୍ୟାଗୁଡ଼ିକୁ ତନ୍ନତନ୍ନ କରି ଅନୁସନ୍ଧାନ କରିବାକୁ ହେବ । ଏହି ସମସ୍ୟାଗୁଡ଼ିକ ଉପରେ ଆଧାରିତ ଗୋଟାଏ ସମାଧାନ ବିଷୟରେ ମଧ ଚିନ୍ତା କରିବାକୁ ହେବ ।

ରାୟଗଡ଼ା ଓ ଗୁଣପୁର ସବ୍‌ଡିଭିଜନ୍‌ରେ କାମ କରୁଥିବା ସରକାରୀ ସଂସ୍ଥା ITDP (Integrated Tribal Development Project)ର ପ୍ରଶାସକଙ୍କ ସହ ମୁଁ ଆଲୋଚନା କରୁଥିଲି । ଅତି ଆଶ୍ଚର୍ଯ୍ୟର କଥା ଯେ ସେ ତିଲୋନିଆ ଉପରେ ଲେଖାଯାଇଥିବା Reader's Digest ର article ଟି ପଢ଼ିଛନ୍ତି । ସେ କହୁଥିଲେ ରାସ୍ତାଘାଟ ତିଆରି କରିବା, ଜଳସେଚନର ବ୍ୟବସ୍ଥା କରିବା ଉପରେ ତାଙ୍କର ସଂସ୍ଥା ବେଶୀ ଗୁରୁତ୍ୱ ଦେଉଛି ।

କାଶୀପୁରରେ SBI ସବୁଠାରୁ ବ୍ୟସ୍ତ । ସାହୁକାରର ପ୍ରଭାବ ଓ ପ୍ରତିଷ୍ଠାକୁ ଦୂରକରି କେତେଗୁଡ଼ିଏ ଗାଁରେ ବ୍ୟାଙ୍କ୍ ଖୁବ୍ ପ୍ରଶଂସନୀୟ କାର୍ଯ୍ୟ କରିଛି ବୋଲି ମୁଁ କହିବି । ଅବଶ୍ୟ ଗାଁ ଲୋକଙ୍କୁ ସଂଗଠିତ କରିବାରେ କେତେଜଣ ସ୍କୁଲ୍ ଶିକ୍ଷକ ସହଯୋଗ କରୁଛନ୍ତି । ବ୍ୟାଙ୍କ୍‌ରେ Rural Development Officer ଓ Manager ମଧ୍ୟ ଖୁବ୍ ଆଶାବାଦୀ । ସେମାନେ ସବୁଦିଗରେ ଦୃଷ୍ଟିଦେଇ ପଦକ୍ଷେପମାନ ନେଉଛନ୍ତି । ଏଠାରେ ପ୍ରାୟ ପ୍ରତ୍ୟେକ ଗାଁରେ ଚିରସ୍ରୋତା ଝରଣାମାନେ ବହୁଛନ୍ତି । ସେମାନଙ୍କର ପାଣିକୁ ସଦୁପଯୋଗ କରିବାରେ ଏଠାରେ ଲୋକମାନେ କାହିଁକି କୁଣ୍ଠାପ୍ରକାଶ କରୁଛନ୍ତି, ମୁଁ ଜାଣିପାରୁନାହିଁ । ଏ ଦିଗରେ ମୁଁ କାର୍ଯ୍ୟାନୁଷ୍ଠାନ ପାଇଁ ଚିନ୍ତା କରୁଛି ।

କାଶୀପୁର ଆସିବା ରାସ୍ତାରେ ଯାହାକିଛି ମୁଁ ଦେଖିଲି, ତାହା ସବୁ ସ୍ୱପ୍ନସମ୍ଭବ ବୋଲି ମନେହେଲା । ପାହାଡ଼ ଜଙ୍ଗଲ ଭିତରେ ସବୁଜ ଉପତ୍ୟକାମାନେ, ବଣଝରଣାମାନେ ପ୍ରଗଲ୍‌ଭା । ଉପରେ ଧଳାକଳା ବଉଦ । ମନେହେଉଥିଲା ଏଇ ମୁହୂର୍ତ୍ତରେ ବର୍ଷା ଅଜାଡ଼ି ହୋଇଯିବ । ମନେହେଉଥିଲା ଆକାଶକୁ ଯେମିତି ସାତୋଟି ପାହାଚରେ ଛୁଇଁ ହେବ ।

ଏଇଭଳି ଉଠାଣିଗଡ଼ାଣି ରାସ୍ତାରେ ଆପଣାର ଯାତ୍ରାପଥ ବାଛିନେଲେ ଜୀବନର ଅର୍ଥ ସହଜରେ ବୁଝିହୁଏ । ଅଙ୍କାବଙ୍କା ବାଟରେ ଗଲେ ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ ସିନା ଡେରି ହୁଏ; କିନ୍ତୁ ପହଞ୍ଚିବା ନିଶ୍ଚିତ । ଆଜିକାଲି ଯେତେବେଳେ ଜୀବନ ନିଷ୍ପାପ ନୁହେଁ, ଆପଣାର ସ୍ପର୍ଶଶକ୍ତି ଯେତେବେଳେ ଖୁବ୍ ଦୁର୍ବଳ ତଥା ନିଜର ଭାବାବେଗ ଯେତେବେଳେ ରୋଗଗ୍ରସ୍ତ, ସେତେବେଳେ ନିଜକୁ ଅପସାରିତ କରିନେଇ କାଶୀପୁରର ନିହାତି ଅପହଞ୍ଚ ଇଲାକାରେ ନିଜକୁ ଲୁଚାଇଦେବା ସବୁଠାରୁ ଅବ୍ୟର୍ଥ ଔଷଧ । ନିଜକୁ ହଜାଇ ଦେଇ ପାରିବାଟା ସହଜ । ବିଗତ ଜୀବନର ଭୁଲ୍‌ଭଟକା, ଅନ୍ଧଅତୀତ ସବୁକୁ ମଧ୍ୟ ବିଦାୟ ଦେବାଟା କଷ୍ଟ ନୁହେଁ ।

ମୁଁ ଏକ ଆହତ ପ୍ରାଣକୁ ଆଉ କେତେ ଦିନ ବଞ୍ଚାଇ ରଖିବି ଜାଣିନାହିଁ । ସବୁ ରାସ୍ତା, ସବୁ ଚେତନଶୀଳତା ବନ୍ଦ ହୋଇଯାଇଥିବା ବେଳେ ବି ମୁଁ କେବଳ ଏଇମିତି ପରିବେଶ ଭିତରେ ନିଜର ମୁକ୍ତି ଖୋଜୁଛି । ମୁଁ ନିଜକୁ ଆହୁରି ବେଶି ବେଶି ଚିହ୍ନୁଛି ।

ତମେ ଭଲ ଥିବ । ସମୟ କମ୍ ହେତୁ ତାଳଚେରରେ ମୁଁ ଦିନେରୁ ଅଧିକ ରହିପାରିବି ନାହିଁ । ଭୁବନେଶ୍ୱରରେ ନାନୀ ଆଦିଙ୍କୁ ନିଶ୍ଚୟ ଦେଖାକରିବି । ଫେରନ୍ତା ରାସ୍ତାରେ ତମ ପାଖକୁ ଯାଇହେବ ନାହିଁ । ଜୁଲାଇ ମଧ୍ୟଭାଗରେ ତମ ପାଖକୁ ଯିବା କଥା ଭାବୁଛି ।

ଅଚ୍ୟୁତ

▯ ▯ ▯

*"It is not the consciousness of men which determines their existence, but on the contrary it is their social existence which determines their consciousness."(Marx: The German Ideology)*

ପ୍ରିୟ ବନ୍ଧୁ,

ଏଇ ସ୍ତବ୍ଧ ଓ ନିଃସଙ୍ଗତାର ସବୁ ପ୍ରଶ୍ନଗୁଡ଼ିକୁ ଲେଖିଦେଇ ମୁଁ ତମକୁ ଚମକୃତ ଅଥବା ବିଚଳିତ କରିବାକୁ ଚାହୁଁନାହିଁ । ତମର ସ୍ଥିତପ୍ରଜ୍ଞତା ଦୋହଲିଯାଉ ମୁଁ ଆଶା କରୁନାହିଁ । ତଥାପି ସଂପ୍ରତି ଆମ ସମସ୍ତଙ୍କର ଇନ୍ଦ୍ରିୟାସକ୍ତି (Indulgence !) ଯେ ଏକ ଗୁରୁତର ସମସ୍ୟା ହୋଇଯାଇଛି ଆମେ ହୁଏତ ହୃଦୟଙ୍ଗମ କରିପାରୁନାହୁଁ । ଆମେ ଯେ ବୌଦ୍ଧିକ ପୃଷ୍ଠଭୂମିରୁ ଅବସର ଗ୍ରହଣ କରିବାକୁ ନିଷ୍ପତ୍ତି ନେଉଛେ, ହୁଏତ ତାହା ଧ୍ୟାନ ଦେଉନାହେଁ । ଶେଷ ଦୃଶ୍ୟ ପରେ ଯେ ପଟ୍ଟପତନ ହେବ, ତାହା ମଧ୍ୟ ଜାଣିପାରୁନାହେଁ ।

ଏଥରର ମୋର ନିସ୍ପୃହ ସ୍ୱାସ୍ଥ୍ୟ ସତ୍ତ୍ୱେ ମୁଁ ତମ ସହ ବ୍ୟବସ୍ଥାର ଅନୁଶୀଳନ ଓ ବିଶ୍ଳେଷଣ (system analysis) ବିଷୟରେ ତର୍କ କରିବା କଥା ଚିନ୍ତା କରୁଥିଲି । କିନ୍ତୁ ଶେଷ ମୁହୂର୍ତ୍ତରେ ତାହା କଲିନାହିଁ ଜାଣିଜାଣି । ଏଇ ବିଶ୍ଳେଷଣ ଯେ ଆମର ଚେତନାବୋଧକୁ ପ୍ରଭାବିତ କରିଥାଆନ୍ତା, ଏକଥା ମୁଁ ନିଶ୍ଚିତ ଭାବେ କହିପାରିବି ନାହିଁ । କିନ୍ତୁ ଏକ ବ୍ୟବସ୍ଥାରେ ବଞ୍ଚିବାର ପଦ୍ଧତି ଅତି ବିଚିତ୍ର, ତାହା ତମେ କେବେକେବେ ଭାବି ଦେଖିଥିବ । ଅତି ସାଧାରଣ ଭାବେ ବ୍ୟବସ୍ଥାର ନିବୁଜ ବନ୍ଦୀଶାଳାରେ ଚେତନଶୀଳ ମଣିଷ ଯେ ଜାଣିଶୁଣି ଆତ୍ମଗୋପନ କରିଥାଏ, ତାହାର କାରଣ ମୋ ପାଖରେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ମୋ ପାଖରେ ବ୍ୟବସ୍ଥାରୁ ଉଦ୍‌ଭବ ମୂଲ୍ୟବୋଧର ଯଥାର୍ଥତା ମୂଳପ୍ରଶ୍ନ । ସ୍ଥିତିର ସ୍ଥିତିସ୍ଥାପକତା ମୋ ପାଖରେ ଏବେ ଆଶ୍ଚର୍ଯ୍ୟର ବସ୍ତୁ ନୁହେଁ । ଅଥଚ ଅନ୍ୟପକ୍ଷରେ ଏଇ ସ୍ଥିତିସ୍ଥାପକତା ବିନା ଯେମିତି ସ୍ୱପ୍ନ ଓ ଉତ୍କଣ୍ଠାର ଶବ୍ଦବିନ୍ୟାସ ଅସମ୍ଭବ ।

ଅତି ନିଛକ ସତ କଥା କହିବାକୁ ଗଲେ ମୋ ଭଳି ତମେ ମଧ୍ୟ ବ୍ୟବସ୍ଥାର ଏକ ସାମଗ୍ରିକ ରୂପରେଖ ନିର୍ଣ୍ଣୟ ନକରି ଏକ ଅନିଶ୍ଚିତତାର ଅଙ୍କାବଙ୍କା ରାସ୍ତାରେ ଅଗ୍ରସର ହେଉଛ ।

କାଶୀପୁରର ପରିବେଶରେ ମୁଁ ଯେମିତି କ୍ରମେ ସନ୍ଦିଗ୍ଧ ଓ ଜ୍ୱାଳାଜର୍ଜରିତ ହୋଇଯାଉଛି । ଅଜାଣତରେ( ? ) ଏଠାକାର ଅମଲାତନ୍ତ୍ର ସହ ମୁଁ ଯେମିତି ସନ୍ଧି ସ୍ଥାପନ କରିସାରିଛି । ବଡ଼ ଭୟାନକ ଭାବେ ମୁଁ ମୋର ସମ୍ପୂର୍ଣ୍ଣ ବିଚାରଧାରା ମୌନ ହୋଇଯାଉଥିବା କଥା ଲକ୍ଷ୍ୟ କରୁଛି । ଆମେ ଏଇଠି କିଛି ଜମି କିଣି ନିଜକୁ ସୁଦୃଢ଼ ଭାବେ ସ୍ଥାପିତ କରିବୁ ବୋଲି ଯେଉଁ ଯୋଜନା କରୁଛୁ ତାହାକୁ ମୁଁ ଭାରି ପ୍ରଶ୍ନିଳ ଦୃଷ୍ଟିରେ ଦେଖୁଛି, ବଡ଼ ଜଟିଳ ନିଷ୍ପତ୍ତି ନେବାକୁ ପଡୁଛି । ପ୍ରଥମ ଥର ପାଇଁ କାଶୀପୁରକୁ କେହି ଦେଖିବାକୁ ଆସିବ ଜାଣି ମୁଁ ସାମାନ୍ୟ ସଚେତନ ହୋଇପଡ଼ିଛି । ବମ୍ବେ (ମୁମ୍ବାଇ)ସ୍ଥିତ Industrial Credit And Investment Corporation of India (ICICI) ରୁ Dr. P.H. Vaidy ଆସିବାକୁ ମନସ୍ଥ କରିଛନ୍ତି । ଅର୍ଥଲାଳସା ଯେମିତି ବିକାଶର ଛାଇ ଭଳି ଗୋଡ଼ାଇଛି ।

ଅନେକ ସମୟରେ ତମ ପ୍ରେରଣା ପାଖକୁ ଏଠାକାର ଝରିପଡୁଥିବା ଚମ୍ପାଫୁଲର ସ୍ତବକମାନଙ୍କ କଥା ଲେଖିବାକୁ ପ୍ରେରଣା ପାଇଛି । ଅନ୍ୟ ସମୟରେ ଏଠାକାର ଜଳବାୟୁ କଥା ମଧ୍ୟ । ତମେ କିନ୍ତୁ Creative Altruism କେତେ ବଡ଼ ବିଷମ ଆଉ ଗହନ କଥା ବୁଝିପାରୁଥିବ ଓ ମୋର ପର୍ଯ୍ୟାୟକ୍ରମେ ଶିଥିଳତାକୁ କ୍ଷମା ଦେଇଦେବ ।

ଅନେକ ଶୁଭେଚ୍ଛାର ସହ ।

ଅଚ୍ୟୁତ

□.□ □

ପ୍ରିୟ ବନ୍ଧୁ,

ଅତି ସଂକ୍ଷିପ୍ତ ଭାବେ ଲେଖୁଛି ।

ଆସନ୍ତାକାଲି ମୁଁ ତିଲୋନିଆ ଯାଉଛି ଓ ଶୀଘ୍ର ଫେରି ଆସିବାକୁ ଚେଷ୍ଟା କରିବି । ଏଠାରେ ଅନେକ କାମ ବାକି ରହିଯାଇଛି । ଗତଥର ଭଳି ଅଶୋକ ସହ ମୁଁ ବେଶୀ ସମୟ କାଟିପାରିବି ନାହିଁ ।

ଚିତ୍ତରଂଜନ ଦାସ ଚିଠିଟିଏ ଲେଖିଛନ୍ତି । ଆପଣାର ମନୋନୀତ ପୃଥିବୀ ଗଢ଼ିବାର ଯୋଜନାରେ ଆମେ କେମିତି ଦ୍ୱୀପ ପାଲଟି ଯାଇଥାଉ, ତାହା ସେ ଲେଖିବାକୁ ଭୁଲିନାହାନ୍ତି । ମୁଁ 'ଅନ୍ୱେଷ' କଥା ଲେଖିଛି ଓ ତମେ କପିଟିଏ ପଠାଇବ ବୋଲି ତାଙ୍କୁ ଆଶା ଦେଇଛି ।

ଆଜି ପୌଷପର୍ବ । ଗତ ରାତିଠାରୁ ଏଠାରେ ଆନନ୍ଦ ମଉଛବ ଚାଲିଛି । ମୁଁ କିନ୍ତୁ ଭାରି ଆଶ୍ୱସ୍ତି ଅନୁଭବ କରୁଥିଲି କାହିଁକି କେଜାଣି, ତୋଫା ଜହ୍ନ ଆଲୁଅରେ ମୁଁ ମତୁଆଲା ହୋଇ ପାରିନଥିଲି ।

କାଶୀପୁରରେ ଏବେ ଶୀତ କମିଯାଇଛି । ଆମ ଟ୍ରେନିଂର ନିର୍ଦ୍ଦିଷ୍ଟ ରୂପରେଖ ନଥିଲେ ମଧ୍ୟ ଆମେ ସମସ୍ତେ ଜଡ଼ିତ ହୋଇଯାଇଛୁ ଭିନ୍ନ ଭିନ୍ନ ଦିଗରେ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଏଠାକୁ ଆସିବାର ଠିକ୍ ପୂର୍ବରୁ 'ଶିରିପାଇ' ବୋଲି ଗୋଟିଏ ଆଦିବାସୀ ଗାଁରେ ଗୋଟାଏ ଦିନ ଓ ଗୋଟାଏ ରାତି ରହିଥିଲି । ଏବେ ମଧ୍ୟ ଘଞ୍ଚ ମନେହେଉଥିବା ଜଙ୍ଗଲର ଗର୍ଭଦେଶରେ ଏହାର ଅବସ୍ଥିତି । ମଥା ଉପରେ ଏ ଅଞ୍ଚଳର ସର୍ବୋଚ୍ଚ ପର୍ବତମାଳା ଓ ପାଦତଳେ ଚିରସ୍ରୋତା ଝରଣାଟିଏ । କାଶୀପୁରର ବ୍ୟାଙ୍କ୍ ମ୍ୟାନେଜର୍ ଓ 'ଗ୍ରାମ ବିକାଶ' ଅଫିସରଙ୍କ ଦ୍ୱାରା ଆୟୋଜିତ ଏ ଯାତ୍ରା ଓ ରହଣିକୁ ମୁଁ ମୋ ଜୀବନର କେତୋଟି ଉଜ୍ଜ୍ୱଳମୟ ମୁହୂର୍ତ୍ତମାନଙ୍କ ଭିତରେ ସ୍ଥାନ ଦେବି, ଯେଉଁଠି ମୁଁ ସ୍ଥିତିର 'ଚରମ ମୁକ୍ତି' (Absolute freedom)କୁ ପ୍ରତିଫଳିତ ହେବାର ଅନୁଭବ କରିପାରିଛି ।

'ଶିରିପାଇ' ଗାଁକୁ SBI ଆପଣାର କରିବା ପରେ ସେଠାରେ ଏବେ ଗୋଟାଏ ଛୋଟ ଜଳସେଚନ ଯୋଜନା ନେବାକୁ ସ୍ଥିର କରୁଛି । ମୁଁ ଏ ଯୋଜନାର ରୂପରେଖ ତଥା ସାମୂହିକ ସଂଗଠନ ଅବସ୍ଥା ଲକ୍ଷ୍ୟ କରିବା ପାଇଁ ଯାଇଥିଲି । ଉପରୋକ୍ତ ଝରଣାଟିକୁ ବନ୍ଧାଇ ପାହାଡ଼ ଉପରୁ ପାଣି ଆଣିପାରିଲେ ଚାରୋଟି ଗାଁ ଉପକୃତ ହେବେ । ଏବେ ଏଠାକାର ଜଳସେଚନ ପଦ୍ଧତି ଉନ୍ନତ ଉପାୟର ନୁହେଁ । ତଥାପି ପାହାଡ଼ର ଅନେକ ଉଚ୍ଚତାରୁ ପାଣି ଆଣି କେବେକେମିତି ଚାଷ କରିବା ଏ ଅଞ୍ଚଳର ଏକ ସାଧାରଣ କଥା । କେଉଁଠି ପଢ଼ିଥିଲି ଯେ ସିକିମ୍, ନାଗାଲାଣ୍ଡ ଅଞ୍ଚଳରେ ଏଇଭଳି ପଦ୍ଧତି ଅବଲମ୍ବନ କରାଯାଇଥାଏ । ଆଜିକାଲିର ଯନ୍ତ୍ରୀମାନେ କୁଆଡ଼େ ଆଶ୍ଚର୍ଯ୍ୟ ହୋଇଯାଇଥାଆନ୍ତି । ସେଦିନ ରାତିରେ ଚାରୋଟି ଗାଁର ଲୋକ ଆଲୋଚନା କରୁଥିଲେ ବନ୍ଧ ବାନ୍ଧିବା ବିଷୟରେ । ମୁଁ ଆପଣାର ଅନ୍ତର୍ନିହିତ ଶକ୍ତି କଥା କହୁଥିଲି । ଫଳସ୍ୱରୂପ ସେମାନେ ଶତକଡ଼ା ପଚିଶ ଭାଗ ଶ୍ରମଦାନ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ମୁଁ ଜରୁରୀ ହେଲେ ସବୁ ପ୍ରକାର ସମର୍ଥନ କରିବି ବୋଲି କଥା ଦେଇଛି । ଏ ପ୍ରୋଜେକ୍ଟରେ ବ୍ୟାଙ୍କ୍ ସମବାୟ ଭିତ୍ତିରେ ଋଣ ଦେଉଛି ।

× × × ×

ଧାଙ୍ଗ୍ଡା ଧାଙ୍ଗ୍ଡ଼ୀଙ୍କ ଗହଣରେ କାଟିଥିବା ରାତି କଥା ମୁଁ ଲେଖିପାରୁନାହିଁ । ସେ ସବୁର ଜ୍ୱଳନ୍ତ ଅନୁଭୂତିକୁ ଦେଖାହେଲେ ମୁଁ କହିବି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମେ ମୋର ଚିଠିକୁ ଆଶା କରିନଥିବ । ତଥାପି ତମକୁ ଲେଖିବାକୁ ପଡ଼ିବ ବୋଧେ । ଏଇଠି ପୁନଶ୍ଚ ଏକ ଜ୍ୟୋତ୍ସ୍ନାବିଧୌତ ମଧ୍ୟରାତ୍ରିର ଏକାନ୍ତ ମୁହୂର୍ତ୍ତଗୁଡ଼ିକୁ ମୁଁ ଗଭୀର ଭାବେ ଅନୁଭବ କରୁଥିଲି । ଗତ କେତେଦିନର ମର୍ମଦାହ ଓ ଅନେକ କିଛି ଅଶୁଭ ଇଙ୍ଗିତ ପରେ ମୁଁ କିଛିକ୍ଷଣ ପାଇଁ ଅର୍ନ୍ତପୃଥିବୀର ସେଇ ନୈତିକ ପ୍ରୋତ୍ସାହନ କଥା ପୁଣିଥରେ ମନଭିତରେ ଆନ୍ଦୋଳିତ ହେଉଥିବା କଥା ଜାଣିପାରୁଥିଲି । ମୁଁ ହୁଏତ ତମକୁ ଠିକ୍ ଜଣାଉନାହିଁ କେଇମିତି ମୁଁ ଭାଙ୍ଗିପଡୁଛି, କେମିତି ଅସ୍ଥିରମନା ହୋଇଯାଉଛି ଓ କେଉଁ ଭଙ୍ଗୀରେ ସ୍ଥିତପ୍ରଜ୍ଞତାକୁ ଫେନାୟିତ କରିପାରୁଛି । ମୁଁ ହୁଏତ ଏସବୁକୁ ପ୍ରକାଶ କରିବାକୁ ମୋର କୁଣ୍ଠାବୋଧ କଥା 'ତମକୁ ବି ଜଣାଉନାହିଁ ।

ଜୀବନର ଘଡ଼ିସନ୍ଧି ମୁହୂର୍ତ୍ତ ତମେ କାହାକୁ କହିବ ? କେଉଁ ଚୌମୁହାଣିରେ ତମେ ପହଞ୍ଚିଯାଇ ବାଟଟିଏ ପାଥେୟ କରିବାକୁ ଅଗଣିତ ଦ୍ୱନ୍ଦ୍ୱରେ ପଡ଼ିଯିବ ? କେଉଁ ସ୍ଥିତିରେ ପ୍ରବେଶ କରି ତମେ ଦେଖିବ ତମେ ସ୍ଥିତିହୀନ ହୋଇଯାଇଛ ? କେଉଁ ସମୟରେ ତମେ ନିଜସ୍ୱ ଆସ୍ଥା ଓ ବିଶ୍ୱାସର ଗତିଶୀଳତାରେ ଏକ ପୂର୍ଣ୍ଣଚ୍ଛେଦ ପଡ଼ିଯାଇଥିବା କଥା ଆବିଷ୍କାର କରିବ ? ଜୀବନର ରହସ୍ୟମୟତା ଆମେ ଭେଦ କରିବାରେ ଅପାରଗ ।

× × × ×

ଆଜିକାଲି ମୁଁ କାହାକୁ ଲେଖୁନାହିଁ । କିଛି ଦିନ ତଳେ ଅରୁଣା ସମ୍ବେଦନଶୀଳତାର ଚିଠିଟିଏ ଲେଖିଥିଲା । (ସେ ଭାବୁଛି କାଶୀପୁରରେ ନିଃସଙ୍ଗତା ମୋର ଯନ୍ତ୍ରଣାର ମୂଳ କାରଣ ।) ଗତଥର ମୁଁ କୃଷ୍ଣମୂର୍ତ୍ତିଙ୍କ 'Beyond Violence' ବୋଲି ବହିଟିଏ ତାକୁ ଉପହାର ଦେଇଥିଲି । ସେ ବହିଟି ଦ୍ୱାରା ପ୍ରଭାବିତ ହୋଇଥିବା କଥା ସେ ସ୍ୱୀକାର କରିଛି । ସେଥିରୁ ଉଦ୍ଧାର କରି ସେ ଲେଖିଛି । (ଅରୁଣାର ଚିଠି ମିଳୁନାହିଁ । ପୁଣି ସମ୍ଭବ ହେଲେ ଜଣାଇବି)

ଅତିଶୟ ସଚେତନତାର ସହ ଆଜିକାଲି ମୁଁ ସଙ୍କୁଚିତ ହୋଇଯାଇଛି । ତମେ ଅବଶ୍ୟ ଏଇଭଳି ଅବସ୍ଥାରେ ଆଶ୍ଚର୍ଯ୍ୟ ହେଉ ନଥିବ । ନିଜ ଭିତରେ ଚାଲୁଥିବା ରଣକୌଶଳରେ ଏଇଭଳି ହାରଜିତ୍ ତ ଲାଗିରହିଛି । ବେଳେବେଳେ ଦୁଃଖ ହେଉଛି ଯେ ଏକ ସୁନ୍ଦର ଜୀବନ ଗଢ଼ିବାର ମୋର ସ୍ୱପ୍ନ କେବେହେଲେ ସାର୍ଥକ ହେବନାହିଁ । ପ୍ରତିମୁହୂର୍ତ୍ତରେ ମୁଁ ଭୟଙ୍କର ଭାବେ ହିଂସ୍ର ଅନୁଭବ କରୁଛି । ପ୍ରତିମୁହୂର୍ତ୍ତରେ ମୁଁ ଏକ ଭିନ୍ନ ମଣିଷ ହେଉଛି । ନୈତିକ ପ୍ରୋତ୍ସାହନ ସମ୍ପର୍କରେ ନାତିଦୀର୍ଘ ପ୍ରବନ୍ଧଟିଏ ଲେଖିଦେଲେ ବୋଧେ ଭଲହୁଅନ୍ତା । ଅନ୍ତତଃ ତମର 'ଅନ୍ୱେଷ' ପାଇଁ । ମୁଁ ନିଜ ଭିତରର ସୃଜନୀଶକ୍ତି କେନ୍ଦ୍ରୀଭୂତ କରିପାରୁନାହିଁ ।

ମୁଁ ୧୬ ତାରିଖ ସକାଳେ ବ୍ରହ୍ମପୁର ପହଞ୍ଚିବି ବୋଲି ଆଶା ରଖୁଛି । ଜୋ' ସହ ମୋର କିଛି ଗୁରୁତର ଆଲୋଚନା କରିବାର ଅଛି । ୧୯-୨୦ରେ PUCL Meeting । ମାଆର ଦେହ ଅସୁସ୍ଥ ବୋଲି ବାବା ଲେଖିଛନ୍ତି ଓ ସେଥିପାଇଁ ଗୋଟାଏ ଦିନ ପାଇଁ ହେଉପଛକେ, ମୁଁ ତାଳଚେର ଯିବି ।

ଆଉସବୁ ଦେଖାସାକ୍ଷାତରେ ! ଭାଉଜ ଆଜିକାଲି କେଉଁଠି ଅଛନ୍ତି ? କେମିତି ଅଛନ୍ତି ? ଉଭୟଙ୍କୁ ଆନ୍ତରିକ ସ୍ନେହ ଓ ଶୁଭେଚ୍ଛା ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ଆମେ ପରସ୍ପର ପ୍ରତି କ୍ରମେ ଦୁର୍ବୋଧ ହୋଇଯାଉଛେ ବୋଲି ତମେ ଗତ ଚିଠିରେ ଲେଖିଥିଲ । ଏଥରର ସାକ୍ଷାତରେ ତାହା ମୁଁ ପଚାରିବାକୁ ନିଶ୍ଚିତ ଭାବେ ଚାହିଁଥିଲି; ଏହିସବୁ ସୂକ୍ଷ୍ମ ପ୍ରଶ୍ନମାନଙ୍କର ଉତ୍ତର ଆମକୁ ଖୋଜିବାକୁ ପଡ଼ିବ । ଏହାଛଡ଼ା ଆଉ କ'ଣ ଉପାୟ ଅଛି ଆମ ପାଇଁ । ତଥାପି ଏଥର ତମ ପାଇଁ ମୁଁ ସହଜ ମନେ ହୋଇଥିବି ଓ ମୋର ଚେତନା ପ୍ରବାହ ତମ ପ୍ରତି କିମ୍ଭୁତକିମାକାର ପ୍ରତୀୟମାନ ହୋଇନଥିବ । ମୁଁ ବିଶ୍ୱାସ କେବେହେଲେ ହରାଇନାହିଁ ।

କାଶୀପୁର କ୍ରମେ ଛବିଳ ହୋଇପଡ଼ୁଛି; ତିଲୋନିଆକୁ ପନ୍ଦର ଦିନ ପାଇଁ ଯାଉଥିବାରୁ ଏ ସମୟର ବର୍ଣ୍ଣବୈଭବକୁ ମୁଁ ମୋର ହୃଦୟର କାନ୍‌ଭାସ୍ ଉପରେ ଆଙ୍କି ପାରିବି ନାହିଁ । ସେଥିପାଇଁ ମୁଁ ଦୁଃଖ କରୁଛି । ଏଇଠି ସବୁ ଅପରୂପ, ଅନିର୍ବଚନୀୟ । ଅଳସୀ ଫୁଲ ଫୁଟିଛି ସବୁଆଡ଼େ । ତଳୁ ଦେଖିଲେ ତୁଙ୍ଗ ପାହାଡ଼ର ଶୀର୍ଷଦେଶରୁ ଯେମିତି ଗାଢ଼ ହଳଦିଆ ରଙ୍ଗର ସ୍ରୋତମାନେ ବହିଆସିଛନ୍ତି । ଉଚ୍ଚଦେଶରୁ ଦେଖିଲେ 'ଝୋଲା' ଓ ଉପତ୍ୟକାର ଗଭୀରତା ଭିତରେ ପୀତବର୍ଣ୍ଣର ପ୍ରାଚୁର୍ଯ୍ୟ ପ୍ରାଣକୁ ଅଭିଭୂତ କରିଦେଉଛି । ଅଳସୀ ଫୁଲକୁ ନେଇ ଏଠାରେ ସବୁ ରୋମାଞ୍ଚ ଓ ରହସ୍ୟର କଥା ଲେଖା ହୋଇଛି । ସବୁ ଛନ୍ଦ ରଚନା କରାଯାଇଛି (ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ The Hill Tribes of Jeypore ବହିରେ ଏହାର କିୟଦଂଶ ଲେଖାଯାଇଛି) । ପାହାଡ଼ର ଢାଲୁଦେଶରେ ସ୍ୱର୍ଣ୍ଣାଭ ଶସ୍ୟକ୍ଷେତ୍ର । ତା'ପାଖକୁ ଲାଗିଲାଗି କଟା ହୋଇଯିବା ମାଣ୍ଡିଆ ଖେତର ଧୂସରତା ଓ ଅଳସୀ ଫୁଲର ଏକ ସାମୁହିକ ଝଲକ, ମଥାନ ଉପରେ ନିର୍ମେଘ ନୀଳ ଆକାଶ ଓ ଦୂରଦୂରାନ୍ତର ସବୁଜିମା- ସବୁକୁ କେମିତି ମୁଁ ମୋ ଭିତରେ ସ୍ଥାନ ଦେଇପାରୁଛି ଜାଣିପାରୁନାହିଁ । ସବୁ patternକୁ ମୁଁ ମନେରଖିଛି ।

ପ୍ରଫୁଲ୍ଲ ଏଥର spiritiual altruism ଉପରେ ଲେଖିଛି ଓ ମୋର ସଚେତନତା ବଢ଼ିଛି । ସେ ବୋଧେ କାଶୀପୁର ଶୀଘ୍ର ଆସିବ, ପୁଣି ଏକ ଭିନ୍ନ ପରିପ୍ରେକ୍ଷୀରେ ତା'ସହ ମୁଁ ଯୋଗାଯୋଗ ରଖିବାକୁ ଚେଷ୍ଟା କରିବି । ମୁଁ ନିଜର ଏକ ସ୍ୱତଃ ମୂଲ୍ୟାଙ୍କନ କରି ବୋଧେ ଅବାକ୍ ହୋଇପାରିବି ।

ବଙ୍କର୍ ପ୍ରସନ୍ନତାର ସହ ଚିଠିଟିଏ ଲେଖିଛି । ଆନ୍ଧ୍ରରେ କେଉଁଠି ଗୋଟାଏ ପ୍ରୋଜେକ୍ଟ ନେବା ପାଇଁ ତାହାର ଉଦ୍ୟମ ଦେଖି ମୁଁ ବିସ୍ମିତ ହେଉଥିଲି । ସେଠାରେ କର୍ମୀ ନିର୍ବାଚନରେ ମୁଁ ମୁଖ୍ୟ ଭୂମିକା ନେବି । ଏଥର ମୁଁ SWRC ର ମେରୁଦଣ୍ଡ ଦୋହଲିଗଲା ଭଳି ପେପରଟିଏ ଲେଖିଛି । ଅରୁଣା ସହ ପୁଣି ବୌଦ୍ଧିକ କସରତ୍ କରିବାର ସୁଯୋଗ ମିଳୁଥିବାରୁ ମୁଁ ଉଚ୍ଛ୍ୱସିତ ଅନୁଭବ କରୁଛି ।

ବହୁ କଷ୍ଟରେ ପେପରଟିଏ ଲେଖି ପଠାଇଲି । ଗତ ୩୦ ବର୍ଷର ବୌଦ୍ଧିକ ବିଳାସର ଭ୍ରମାତ୍ମକ ଉପଲବ୍ଧି ଓ ଚରମ ଅସଂଲଗ୍ନତାର ଏହା କ ·ନମୁନା ହୋଇରହିବ । ମୁଁ ଏକାନିଃଶ୍ୱାସରେ ଲେଖି ଦେଇ ଦୀର୍ଘଶ୍ୱାସଟିଏ ମାରିଛି । ମୁଁ ଖବରକାଗଜରୁ ଏ ସେମିନାରର କାର୍ଯ୍ୟକଳାପ ସମ୍ପର୍କରେ ପଢୁଥିଲି । ଶେଷରେ ରାଜନୈତିକ ସମର୍ଥନ ବିନା ସବୁ ଯେ ଅର୍ଥହୀନ ପ୍ରମାଣିତ ହୋଇଛି । ମୁଁ ବୁଦ୍ଧିଜୀବୀମାନଙ୍କର ଅସହାୟତାକୁ ନିନ୍ଦା କରୁଛି । କେହି ଯେମିତି ନିର୍ଦ୍ଧାରିତ ସୀମାରେଖା ସେପାଖକୁ ଯିବା ପାଇଁ ଅନିଚ୍ଛୁକ ।

ପୁଣି ମୁଁ ଅଳସୀଫୁଲମାନଙ୍କର କଥା ଲେଖୁଛି ।

ଭାଉଜ ଓ ତମେ ମୋର ସ୍ନେହ ଓ ସଦିଚ୍ଛା ନେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

ତମେ ଛୁଟି ନେଇ ନୟାଗଡ଼ ଯାଇଥିବ ବୋଲି ଅନୁମାନ କରି ଲେଖିନାହିଁ । ଏବେ କଲିକତା ଯିବା ପାଇଁ ବ୍ରହ୍ମପୁରରୁ ଟିକଟ୍‌ଟିଏ ଦରକାର ବୋଲି ଜୋ'କୁ ଲେଖିଛି । ମୁଁ ୨୮ ତାରିଖ ସକାଳୁ ତମ ପାଖରେ ପହଞ୍ଚିବି ବୋଧେ ଓ ସେଦିନ ସନ୍ଧ୍ୟାରେ ମେଲ୍ ଧରିବି ।

ଅରୁଣା କାର୍ଯ୍ୟବ୍ୟସ୍ତତା ଯୋଗୁଁ ଆସିଲା ନାହିଁ; କିନ୍ତୁ 'ତାଓ'ଙ୍କୁ ଉଦ୍ଧାର କରି ସଂକ୍ଷିପ୍ତ ଚିଠିଟିଏ ଲେଖିଛି । ମୁଁ ତାହାର ନକଲ ପଠାଉଛି ।

*"Wherever the most beautiful is perceived, ugliness arises the least beautiful. Whenever good is perceived evil exists, its natural opposite.*

*Thus perception involves opposites, reality and fantasy are opposing thoughts: difficult and simple oppose in degree; long and short oppose in distance; high and low oppose in height; shrill and deep oppose in tone; before and after oppose in sequence.*

*The truly wise accept this and they work diligently without allegiance toward (woods). They teach in doing, not by saying; are genuinely helpful not discriminating; are positive not possessive, donot proclaim their accomplishments, and because they do not proclaim them, credit for them can never be taken away.*

*(Sutra 2- The Book of Tao)*

ଏଇଠି ମହୁଲ ଫୁଲମାନେ ଝରୁଛନ୍ତି । ନବପତ୍ରମାନେ ପଲ୍ଲବିତ ହେଉଛନ୍ତି । ମହୁଲି ଶୀତର ଶେଷଝଲକ ରୂପେ ଏବେ ମଧ ଶିଶିର ପଡୁଛି । ବନପୋଡ଼ି ସବୁଆଡ଼େ ବ୍ୟାପିଛି ଆଉ ତା' ସହିତ ମନପୋଡ଼ି ବି !

ଭାଉଜଙ୍କର ପରୀକ୍ଷାରେ ସଫଳତା ପାଇଁ ମୋ ଆଶା ଓ ଆକାଂକ୍ଷା ଜଣାଇଦେବ ।

ଅଚ୍ୟୁତ

▯ ▯ ▯

ପ୍ରିୟ ବନ୍ଧୁ,

କାଶୀପୁର ଫେରିବା ବାଟରେ ଏଠାରେ ଅମ୍ଲାନ ପାଖରେ ଅଟକିଯାଇଛି । ଏଥର ମୋଟର ସାଇକେଲ୍ କିଣିବା ଛଡ଼ା ଅନେକ କିଛି କାମ ତାଲିକା ଭିତରେ ଅଛି । ମୁଁ ଆଉ ଦିନେ ଦୁଇଦିନ ପରେ ଫେରିବି ।

ଅରୁଣା 'ବିପାସନା' ତାଲିମ୍ ପାଇଁ ଯାଇଥିଲା ଓ ସେଥିପାଇଁ ତା'ସହ ବି ବିଶେଷ କିଛି କଥାବାର୍ତ୍ତା ହୋଇପାରିଲା ନାହିଁ । କିନ୍ତୁ ମୋର ବୌଦ୍ଧିକ ତଥା ଆବେଗର ସମସ୍ୟାଗୁଡ଼ିକୁ ସେ ସହାନୁଭୂତିର ସହ ବୁଝୁଥିଲା । ଜୀବନର ସବୁ ଦ୍ୱନ୍ଦ୍ୱଗୁଡ଼ିକ ଯେ ସ୍ୱାଭିମାନ ଓ ଆତ୍ମଚିନ୍ତାରୁ ହିଁ ଜନ୍ମ ନେଇଥାନ୍ତି, ତାହା ସେ କହୁଥିଲା । ଗତ ଦୁଇବର୍ଷଧରି ମୁଁ ତାକୁ ସାହସ ଦେଇଆସୁଥିଲି । ମୋର ଜଟିଳ ଜୀବନରେ ସେ ତାହା ଏବେ ପରିଶୋଧ କରୁଛି ଯେମିତି ।

ଏଥର ତିଲୋନିଆ ଭଲ ଲାଗି ନଥିଲା । ମୁଁ ଉପସ୍ଥାପିତ କରିଥିବା ପେପର୍‌ଟି ଖୁବ୍ ସମାଲୋଚିତ ହୋଇଥିଲା ଓ ମୋତେ ଆହତ କରିବାକୁ ପ୍ରବଳ ଚେଷ୍ଟା ହୋଇଥିଲା । ଅବଶ୍ୟ ଏହା ମୋର ନିଜସ୍ୱ ଦୃଷ୍ଟିକୋଣ ଥିବାରୁ ମୁଁ ବିଶେଷ ଉତ୍‌କ୍ଷିପ୍ତ ହୋଇ ନଥିଲି ।

ଟିଲୋନିଆ ସହ ସମ୍ବନ୍ଧ କମିଯାଉଛି ବୋଲି ମନେହେଉଥିଲା । ବଙ୍କରର ଅନେକ ପ୍ରୋତ୍ସାହନ ପରେ ମୁଁ ଓଡ଼ିଶା କ୍ୟାଡରର ଶ୍ରୀ ଭୂପିନ୍ଦର ସିଂଙ୍କୁ ଭେଟିବାକୁ ଚେଷ୍ଟା କରୁଛି । ସହାବସ୍ଥାନ ପାଇଁ ମୁଁ ମୋର ଉଦ୍ୟମ ଅବ୍ୟାହତ ରଖିବାକୁ ଚାହୁଁଛି ।

ଅମ୍ଳାନ ଓ ସୁନୀତା ଉଭୟେ ମୋ ପ୍ରତି ସ୍ନେହ ଓ ଆଦର ଢାଳି ଦେଇଛନ୍ତି । ଅମ୍ଳାନର ଏବର୍ଷ ଶେଷଆଡ଼କୁ 'ଡାମନ୍' ବଦଳି ହେବାର ଆଶା ରହିଛି ଓ ସେ ନିଜକୁ ଏଥିପାଇଁ ପ୍ରସ୍ତୁତ କରୁଛି । ସେମାନେ ଦାମ୍ପତ୍ୟଜୀବନ ଆନନ୍ଦ ଓ ଆଶାର ସହ ଅତିବାହିତ କରୁଛନ୍ତି । ତମର ଦୁହିଁଙ୍କର ଏଇଭଳି ଏକ ପରିପ୍ରେକ୍ଷୀ ମୁଁ ବର୍ଣ୍ଣନା କରୁଥିଲି । ସବୁ ଦାମ୍ପତ୍ୟ ଜୀବନର ଆନନ୍ଦମୟ ଆଭିମୁଖ୍ୟ ମୁଁ ମୋର ବୌଦ୍ଧିକ ପରିସର ଭିତରେ ସାଇତି ରଖୁଛି ।

ଏଥର କିଛି ବହି କିଣି ନେବା କଥା ମୁଁ ଆଗରୁ ବିଚାରିଛି । ଅରୁଣା କିଛି ନୂଆ ବହି କଥା କହୁଥିଲା । Artist ଓ Creativity ଉପରେ ତା'ଠାରୁ ଏଥର 'Permanent Red' ବୋଲି ବହିଟିଏ ଆଣିଛି । 'The Dancing Wu Li Masters' ବୋଲି Physics ଓ Eastern Mysticism ଉପରେ ଆଧାରିତ ବହିଟିଏ କିଣିଛି ।

ଅରୁଣା ଡିସେମ୍ବର ଶେଷବେଳକୁ ଭୁବନେଶ୍ୱର ଆସୁଛି । ସେ କୋଣାର୍କ ଓ ପୁରୀ ଯିବାଛଡ଼ା ତମ ବାଟ ଦେଇ କାଶୀପୁର ଆସିବାର ଯୋଜନା ରଖିଛି । Joe ଠାରୁ ଧାରସୂତ୍ରରେ ଜିପ୍‌ଟି ଆଣିବା କଥା ମୁଁ ବିଚାର କରୁଛି । ତମେ Joe କୁ ଅରୁଣା ଆସିବା କଥା କହିଥିବ । ମୁଁ ତାକୁ ଲେଖୁଛି ।

ତମ ସହ ଡିସେମ୍ବର ୧୦ ତାରିଖ ବେଳକୁ ଦେଖାହେବ । ମୁଁ ଗଲାବେଳେ ଭାଉଜ କହିଥିବା ବହି ନେଇଯିବି । ତମେ ଭଲ ଥିବ ଓ କାଶୀପୁରକୁ ଲେଖିବ । ଅମ୍ଳାନ ଓ ସୁନୀତା ଭଲ ଅଛନ୍ତି ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ଆଶା ପୂଜାଛୁଟି ଭଲରେ କଟିଲା । ମୁଁ ଘରକୁ ଯାଇନାହିଁ ବୋଲି ତମେ ଜାଣିଥିବ । ଅରୁଣା ଅବଶେଷରେ Resolution ପଠାଇଥିବାରୁ ଏବେ ଆର୍ଥିକ ଅବସ୍ଥା ସୁଧୁରିଯାଇଛି । ପ୍ରଥମେ ଯାହା ଆବଶ୍ୟକ, ଆମେ ତାହା ଶୀଘ୍ର କରିବୁ । ଏବେ ଆମର କାର୍ଯ୍ୟର ଗତି ବଢ଼ିବ । ଆମ ଟିମ୍‌ରୁ କ୍ଷିତିଶ୍‌କୁ ବିଦାୟ ନେବାକୁ ପଡ଼ିଛି । ତାହାର ଦାୟିତ୍ୱ ନେବାର କ୍ଷମତା ନଥିବା କଥା ମୁଁ ମନେକଲି ଓ ବଡ଼ ଧରଣର ପରୀକ୍ଷାଟିଏ ବ୍ୟର୍ଥ ହୋଇଗଲା । ନୂଆ ପିଲାମାନଙ୍କୁ ପୁଣି ଅନୁସନ୍ଧାନ କରିବାକୁ ହେବ ।

ମୋଟର ସାଇକେଲ୍ କିଣିବା ଓ ଜୋ'ର ଟଙ୍କା ଫେରାଇବା ପାଇଁ ମୁଁ ବ୍ରହ୍ମପୁର ଯିବି । ଏ ଭିତରେ ତମେ Bullet ଓ Yezdi କେଉଁ ଦରରେ ମିଳୁଛି ଦୟାକରି ଜଣାଇବ । ମୁଁ ଯାଇ କିଣିନେବି । ତାହାଛଡ଼ା ମୋର କିଛି ଛପାଇବାର ଅଛି । ମୁଁ ଦିନେ ଦୁଇଦିନ କେବଳ ଦେଇପାରୁଥିବାରୁ ତମେ ମୋ ତରଫରୁ ସବୁ ବ୍ୟବସ୍ଥା କରିଥିବ । Yezdi ଦୋକାନରେ ମିଳୁଥିଲେ ରଖିନେବ ଓ ମୋତେ ଚିଠି ଲେଖିବ । ମୁଁ ସଙ୍ଗେ ସଙ୍ଗେ ବ୍ରହ୍ମପୁର ଯିବି ।

ଏଠାରେ ଏକାକୀ ଜୀବନର ଅନୁଭୂତି ଭଲ ଲାଗୁଛି । ଅବଶ୍ୟ ମୁଁ ଅଯଥାରେ ଯନ୍ତ୍ରଣାଗ୍ରସ୍ତ ହେଉନାହିଁ । ପଢ଼ାପଢ଼ି ଅନେକ ମାତ୍ରାରେ ହ୍ରାସ ପାଇଛି । ବହୁକଷ୍ଟରେ seminar ପାଇଁ synopsisଟିଏ ପଠାଇଲି । ମୂଳ ଓ ପୂର୍ଣ୍ଣ ଲେଖାଟି ପଠାଇବାକୁ ମୋତେ ପ୍ରଗାଢ଼ ଉଦ୍ୟମ କରିବାକୁ ହେବ । ନଭେମ୍ବର ମାସର ପ୍ରଥମ ସପ୍ତାହରେ ତିଲୋନିଆ ଯିବି । ଏଥର SWRCରେ ବ୍ୟବସ୍ଥା ଓ କାର୍ଯ୍ୟପଦ୍ଧତି ଉପରେ ମୁଁ ଲେଖାଟିଏ ଉପସ୍ଥାପିତ କରିବି । ବୌଦ୍ଧିକ ନିଷ୍କ୍ରିୟତା ଗ୍ରାସ କରିଥିବାରୁ ମୁଁ ନିଜକୁ ପୂର୍ଣ୍ଣ ବିନିଯୋଗ କରିପାରୁନାହିଁ ।

ଅମ୍ଳାନ ଛୁଟିରେ ଆସିଥିଲା କି ? ସେ ଆଜିକାଲି ଲେଖୁନାହିଁ । ବାବି ପୁଣି ଲେଖିଛି ଓ ଓଡ଼ିଶା ଫେରିଆସିବ ବୋଲି ଜଣାଇଛି । ବହି ପଢ଼ାପଢ଼ି କରୁଛି ବୋଲି ମୋତେ ଜଣାଇଛି । ଚିତ୍ତରଂଜନ ଦାସ ଅତି ସ୍ନେହ ଓ ସୌଜନ୍ୟର ଚିଠିଟିଏ ଲେଖିଛନ୍ତି । ମୋର କାଶୀପୁର ଅନୁଭୂତି ପ୍ରକାଶିତ ହେଉ ବୋଲି ସେ ଅଡ଼ି ବସିଛନ୍ତି । ମୁଁ ତାଙ୍କୁ କେବଳ ବୃଥା ପ୍ରତିଶ୍ରୁତି ଦେବା ଛଡ଼ା ଆଉ କିଛି କରିନାହିଁ । ଡଃ ସ୍ୱାଧୀନ ପଟ୍ଟନାୟକଙ୍କୁ ମୁଁ ଲେଖିଛି ଓ ଉତ୍ତର ପାଇନାହିଁ । ମୁଁ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କୁ ଏକତ୍ରିତ କରିବାର ଯୋଜନା ଆଜିଠାରୁ ହିଁ କରୁଛି ।

ତମେ 'Guide For the Perplexed' ବହିଟି କାହାକୁ ନଦେଇ ରଖିଥିବ । ମୁଁ ତାହା ଅରୁଣାକୁ ଫେରାଇଦେବି । ଧନଞ୍ଜୟ ମାଡ୍ରାସରୁ ଫେରିଲାବେଳେ ମୋର Socio biology ବହି ସହିତ ଅନ୍ୟକିଛି ଆଣିବାକୁ ଲେଖିଛି । ତା'ସହ ଖୁବ୍ କମ୍ ସମୟ ପାଇଁ ଷ୍ଟେସନ୍‌ରେ ଦେଖାହେବ ବୋଲି ମୁଁ ଆସନ୍ତାକାଲି ରାୟଗଡ଼ା ଯାଉଛି । ଅବଶ୍ୟ ଏଥର ମୁଁ କିଛି ଅଧିକ ବହି କିଣିବାରେ ସମର୍ଥ ହେବି ।

ଭାଉଜ କେମିତି ଅଛନ୍ତି ? ଆଉ ତରୁଣବାବୁ ? 'ଅନ୍ୱେଷ' ବାହାରିଲା କି ? ସମ୍ଭବତଃ 'ଅନ୍ୱେଷଣ' ବୋଲି ସଂସ୍ଥାଟିଏ ଜ୍ୟୋତିବିହାରରେ ବି ଅଛି, ଯାହା ତମମାନଙ୍କ ଭଳି ବୌଦ୍ଧିକ ବିଳାସରେ ଲିପ୍ତ ।

ମୋର ସବୁ ଶୁଭେଚ୍ଛା ସହ-

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମକୁ ହୁଏତ ଲେଖିବାର ଆବଶ୍ୟକତା ମୁଁ ଅନୁଭବ କରୁନାହିଁ । ଅଗତ୍ୟା ଭଞ୍ଜଠଶରୁ ଚିଠିଟିଏ ପାଇଲି, ଯାହାର ଅବିକଳ ନକଲ ତମ ପାଖକୁ ପଠାଇବା ମୋ ପକ୍ଷରେ ବୋଧେ ଠିକ୍ ହୋଇଥାଆନ୍ତା । ସେ ଲେଖିଛି : *"My hairs are greying too. I am not involved either in any romantic affair except that natural romanticism of experimentation of my life....... After my second attack of psychosis, I become terrible interested in madness. I now long to be in the company of deproved and the anxiety ridden.........."*

ଭଞ୍ଜ ଏବେ ଓଡ଼ିଶାରେ ଅଛି ଓ ନଅଦଶ ତାରିଖ ବେଳକୁ ଭୁବନେଶ୍ୱରରେ ଥିବ । ଜୁଲାଇ ପ୍ରଥମ ସପ୍ତାହରେ ଓଡ଼ିଶା ଫେରି ସେ ସମ୍ୱଲପୁରରେ ବର୍ଷକ ପାଇଁ ଅଧ୍ୟାପନା କରିପାରେ ଓ ତା'ପରେ ମନସ୍ତତ୍ତ୍ୱକୁ ସେ ପରିବର୍ତ୍ତନ କରିବ । ଅଗଷ୍ଟ ମାସରେ କାଶୀପୁର ଆସିବାକୁ ସେ ଚମତ୍କାର ଆଗ୍ରହ ଦେଖାଇଛି । ତମେ ତା'ପାଖକୁ ଲେଖିବାକୁ ଚାହିଁଲେ D-315/Hall IV IIT- Kanpur- 20801 ଠିକଣାରେ ଲେଖିପାର ।

× × × ×

ଗୋପବନ୍ଧୁ ମଧ ଖୁବ୍ ଭଲ ଚିଠିଟିଏ ଲେଖିଚି । ମୁଁ ସାମାନ୍ୟ ଆଶ୍ଚର୍ଯ୍ୟ ହେଲି । ଏବେ ପୁନାରେ ଥିବା ଅବସ୍ଥାରେ ବୋଧେ ଅତି ସନ୍ତର୍ପଣରେ ମୋ ପାଖକୁ ଲମ୍ୱା ଚିଠିଟିଏ ଲେଖିବାକୁ ସମୟ ପାଇଛି । ସେ ଲେଖିଛି : *"........There is something more serious and fundamental in my not writing to you after at least half a dozen letters from you! I am afraid, there is nothing on my part to communicate with you- I have become a dead man; 'a happily married man' who is concerned with his immediate world, family and job.To you- I cannot write one of those in sincere letters- exchange of small talks and pleasantries. I have to say something to you and I donot have anything to 'say' now. Of course, this self-inflicted limitations may seem like an exercise; but that is the way I feel it."*

ସେ ବି ବୋଧେ ଏଇ ସମୟରେ କଟକ ଆସିଯାଇଥିବ । ବିବାହ ପରର ଶିଥିଳତା ତଥା କର୍ମକ୍ଷେତ୍ରର ପରିସଂଖ୍ୟାନ କଥା ସେ ମଧ ଲେଖିଛି । ସେ ଅଗଷ୍ଟମାସରେ କାଶୀପୁର ଆସିବ କି ନାହିଁ ସଠିକ୍ ଲେଖିନାହିଁ । କିନ୍ତୁ ଅଗଷ୍ଟ ବାର ତାରିଖରୁ ପନ୍ଦର ତାରିଖକୁ ମୁଁ ଏହା ନିର୍ଦ୍ଧାରିତ କରିଛି । ମୁଁ ମେ' ଓ ଜୁନ୍ ମାସରେ କାଶୀପୁର ଛାଡ଼ି କେଉଁଠିକି ଯାଇ

ପାରିବି ନାହିଁ । HIVOS ତରଫରୁ Evaluation ପାଇଁ ତାଗିଦ୍ ଆସିଗଲାଣି ଓ ଆମେ ଏ ପର୍ଯ୍ୟନ୍ତ ନିଜକୁ ଆବଶ୍ୟକ ଅନୁଯାୟୀ ସଂଗଠିତ କରିପାରିନାହୁଁ । ତେଣୁ ବ୍ୟସ୍ତତା କଥା ତମେ ଅନୁମାନ କରିପାରୁଥିବ ।

ଭାଉଜ ଆସିଥିଲେ ମୋର ସମ୍ମାନ ତାଙ୍କୁ ଜଣାଇଦେବ । ଅନ୍ୟସବୁ ଖବର ପରେ । ତମେ ଭଲ ଥିବ ।

ଅଚ୍ୟୁତ

□ □ □

ପ୍ରିୟ ବନ୍ଧୁ,

ତମର ଚିଠି ପାଇ ଗତ କେତେ ମାସର ଗତାନୁଗତିକତା ଭଙ୍ଗ ହେଇଥିବା କଥା ଲକ୍ଷ୍ୟ କଲି । ତମେ ବୋଧେ ଜାଣିଥିବ ଯେ ଆମର ଦେଖାସାକ୍ଷାତ ବେଳେ ଆଲୋଚନାର ବିଷୟଗୁଡ଼ିକ ଖାପଛଡ଼ା ହୋଇଯାଆନ୍ତି । ମୁଁ ସବୁବେଳେ ଚେଷ୍ଟା କରୁଥାଏ ତମେ ଯୁକ୍ତିରେ ଜଡ଼ିତ ହେବାକୁ । ଜଣେ ଚିନ୍ତାଶୀଳ ବ୍ୟକ୍ତି ପାଇଁ ଯୁକ୍ତି ଓ ସଂଳାପ ଛଡ଼ା ଅନ୍ୟ କିଛି ମାଧ୍ୟମ ନାହିଁ । ଆତ୍ମପ୍ରକାଶର ବାଟମାନ ମଧ୍ୟ ପୂର୍ବନିର୍ଦ୍ଧାରିତ ।

ତମେ ଏତେ ଦିନ ପରେ ଆତ୍ମଚେତନରେ ଭାଗ ନେଉଛ, ଏକଥା ଆନନ୍ଦର କାହାଣୀ । In-growing ଏବଂ Out-growing ସମ୍ପର୍କରେ ପର୍ଯ୍ୟାୟମାନଙ୍କ ପାଇଁ କୌଣସି ନିୟମକାନୁନ୍ ନାହିଁ । ଏହା କେବଳ ସମୟ ଦ୍ୱାରା ପ୍ରଭାବିତ ଓ ପ୍ରତାରିତ । ତମେ ଆପଣାଛାଏଁ ନିଜର ଅନ୍ତରଙ୍ଗତା ସହ ଏହାକୁ ମାପିପାରିବ ଓ ଏହା ଉପରେ ଟିପ୍ପଣୀ ଦେଇପାରିବ । ସବୁ ବ୍ୟକ୍ତିବିଶେଷ ପାଇଁ ଗୋଟିଏ ସ୍ତର ପ୍ରଯୁଜ୍ୟ ନୁହେଁ ।

ତମେ ଲେଖିଛ, ପରିସ୍ଥିତି ଓ ବ୍ୟକ୍ତିତ୍ୱକୁ ନେଇ ସମ୍ପର୍କ ସୃଷ୍ଟି ହୁଏ ଏବଂ ଉଭୟ ସମ୍ପର୍କରେ ସର୍ତ୍ତହୀନ ଭଲ ପାଇବା ସମ୍ଭବ । ମୁଁ ଏଥିରେ ସହମତ ହେବିନାହିଁ । ସର୍ତ୍ତହୀନ ସମ୍ପର୍କ ପରିସ୍ଥିତି ଓ ବ୍ୟକ୍ତିତ୍ୱ ଉପରେ ଆଧାରିତ ହେଲେ ମୂଳ ସଂଜ୍ଞା ଯୁକ୍ତିଗତ ଦୃଷ୍ଟିରୁ ସ୍ୱେଚ୍ଛାରେ ବଦଳିଯାଏ । ତମେ ଯେଉଁ ଦୁଇଟି ଦୃଷ୍ଟାନ୍ତ ଦେଇଛ, ତାହା ଭୌତିକ ସ୍ତରରେ ସୀମିତ । ମୂଳପ୍ରଶ୍ନ ହେଉଛି ଭଲ ପାଇବା ଓ ସ୍ୱୀକାର କରିବା, ଯାହା ଗତିଶୀଳ । ଏହି କ୍ରିୟା ହିଁ ସର୍ବସ୍ୱ । ପରିସ୍ଥିତି ଅଥବା ବ୍ୟକ୍ତିତ୍ୱ ଗୌଣ ଓ ସମୟାବଦ୍ଧ ।

'ଅନ୍ୱେଷ'ଟି ବାହାରିବାର କଥା । ଏହ ଆମ ପାଇଁ ଇସ୍ତାହାର ବା ଚରମପତ୍ର ନହୋଇପାରେ; କିନ୍ତୁ ଆମର ଚିନ୍ତନ ପ୍ରକ୍ରିୟା ପ୍ରତି ଉଦାସୀନ ହୋଇଯିବା ଅପରାଧ ବୋଲି ମୁଁ ମନେକରେ । ତମେ ଓ ତରୁଣ ବାବୁ ଏ ଦିଗରେ ଏକ ନିଶ୍ଚିତ ଓ ନୈତିକ ପଦକ୍ଷେପ ନେବ ବୋଲି ମୁଁ ଆସ୍ଥା ରଖିଛି ।

ବାବି ଆସିବାକୁ ମୁଁ ତା' ଦୃଷ୍ଟିକୋଣରୁ ବିଚାରକୁ ନେଇଛି । ତାକୁ ୧୬ ତାରିଖ ସକାଳେ ମେଲ୍‌ରେ ପଠାଇଲେ ଭଲ ହୁଅନ୍ତା । ବିଜୟନଗରମ୍‌ରୁ ମାଡ୍ରାସ୍-ବୋକାରୋ ଟ୍ରେନ୍ ଧରି ରାୟଗଡ଼ା ଆସିଲେ ତା'ପାଇଁ ସୁବିଧା ହୁଅନ୍ତା । ସତ୍ୟବ୍ରତକୁ ମୁଁ ଏଠାରୁ ପଠାନ୍ତି ଗଣିଆ ଆସିଥିଲେ ସେ ଯାଆନ୍ତା । ରାତିବସ୍‌ରେ ଆସି ରାୟଗଡ଼ାରେ ପଡ଼ିରହିବା ଖୁବ୍ କଷ୍ଟଦାୟକ ।

ତମେ ଭଲ ଥିବ ।

ଅଚ୍ୟୁତ

***ବି.ଦ୍ର. :*** ଆଜି ଡଃ ୱାଲ୍‌ଟର୍ ଫର୍ଣ୍ଣାଣ୍ଡେସ୍ ବୋଲି ଆମର ପ୍ରଥମ visiter ଏଠାକୁ ଆସିଛନ୍ତି । କାଲି ରାୟଗଡ଼ାରୁ ଏଠିକି ଆସିବା ଖୁବ୍ କଠିନ ବ୍ୟାପାର ଥିଲା ।

▯ ▯ ▯

ପ୍ରିୟ ବନ୍ଧୁ,

ଆଶା କରୁଛି ତମେ ଏ ଚିଠି ପାଇବ ।

ଏହା ପୂର୍ବରୁ ମୁଁ ଏକ ଉଗ୍ରବାଦୀ ଚିନ୍ତା ସହ ତମକୁ ଲେଖିଥିଲି, ଯାହାକୁ ଆମ ବନ୍ଧୁତା ସମ୍ପର୍କରେ ତମେ ଏକ ଶ୍ୱେତପତ୍ର ବୋଲି ନେଇପାର । ତମେ ଏହିଭଳି ଅଭିବ୍ୟକ୍ତିମାନଙ୍କରେ ସାମୟିକ ଭାବେ ବିଚଳିତ ହୋଇପଡୁଥିବ; ଅବଶ୍ୟ ତମେ ଏ ପ୍ରକାରର ଅଯୌକ୍ତିକତାରେ ପ୍ରଭାବିତ ହେଉ ନଥିବ । ନହେବାଟା ପୌରୁଷର ଲକ୍ଷଣ । ତମର କ୍ରମକ୍ଷୟିଷ୍ଣୁ ସଚେତନତାରେ ଆଲୋଡ଼ନ ସୃଷ୍ଟି କରିବାର ଅର୍ଥରେ ମୁଁ ଏ ଚିଠି ଲେଖିଛି । ମୁଁ ତୀବ୍ର ତର୍କବିତର୍କର ଶିକାର ହେଉଥିଲି ଓ ତମ ପାଖରେ ହିଁ ତାହା ପ୍ରକାଶ କରିଦେଲି ।

× × × ×

ତଥାକଥିତ ଆଶ୍ୱିନର ନରମ ସକାଳମାନଙ୍କୁ ତମେ ଉପଲବ୍ଧି କରିପାରୁଛ କି ? ତମର କବିପ୍ରାଣ ଯେ ଚମକିତ ହେଉଥିବ, ମୁଁ ଆଶା କରୁଛି । ଏ ବିଷୟରେ ମୁଁ ଭାବବ୍ୟଞ୍ଜନା ଅଧିକ କରୁନାହିଁ ।

× × × ×

ଡିସେମ୍ବର ମାସରେ ଅନୁଷ୍ଠିତ ହେଉଥିବା ସେମିନାର୍‌ରେ ଓଡ଼ିଶାର ପରିଚିତ ବୁଦ୍ଧିଜୀବୀ ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ସହ ଯେ ଭେଟ ହୋଇଯିବ, ଏହା ମୁଁ ଆଶା

କରୁଛି । ଅବଶ୍ୟ ସମାଜ ପରିବର୍ତ୍ତନ ସମ୍ପର୍କରେ କେତେଜଣ ଗଭୀର ଚାଷ କରୁଛନ୍ତି କହିହେବ ନାହିଁ; କିନ୍ତୁ ଓଡ଼ିଶା ଭଳି ଏକ ନୈରାଶ୍ୟମୟ ବୌଦ୍ଧିକ ବାତାବରଣ ଭିତରେ ଏହାକୁ ଏକ ଅଭିନବ ପଦକ୍ଷେପ ବୋଲି ମୁଁ ସ୍ୱୀକାର କରିଛି । ମୁଁ ପ୍ରବନ୍ଧଟିଏ ଲେଖିବି ବୋଲି ଭାବିଆସୁଛି । ମୋର ସ୍ୱଳ୍ପ ଜ୍ଞାନ ଓ ଅନୁଭୂତିକୁ କିଛି ମାତ୍ରାରେ ସମ୍ବଳ କରି 'Social Change Through Development Actions: A Search For a Method' ଉପରେ ଆପାତତଃ କିଛି ଲେଖିବି ବୋଲି ମୁଁ ସ୍ଥିର କରିଛି । ମୋ ପାଖରେ କିଛି ସାମଗ୍ରୀ ନାହିଁ ସାହାଯ୍ୟ ନେବାକୁ । ଯଦି ସବୁକିଛିକୁ ଏକ hypothesis ବୋଲି ନିଆଯାଏ, ତେବେ ତାହାର Evaluative, Prescriptive and Historical ଦିଗଗୁଡ଼ିକୁ ମୁଁ ବିଚାରକୁ ନେବି । ନିଜର ଚିନ୍ତାର ସୂତାଖିଅମାନଙ୍କୁ ଏକତ୍ରିତ କରିବା କେତେ ଜଟିଳ, ତମେ ଜାଣିପାରୁଥିବ । ଦୟାକରି ମଦନ ହାତରେ 'A Guide For the Perplexed' ଓ 'Biko' ବହିଦୁଇଟି ପଠାଇଦେବ । ଏହାଛଡ଼ା seminar ପତ୍ରିକାଟି ମଧ୍ୟ । ମୁଁ ଜୋ'କୁ ଲେଖିଛି ଆଉ କିଛି ବହି ପଠାଇବା ପାଇଁ ।

ମଦନ ଜୋ' ଠାରୁ କିଛି ଅର୍ଥସାହାଯ୍ୟ ଆଣିବ ବୋଲି ଯାଉଛି । ଆମେ ସବୁ ବର୍ତ୍ତମାନ ଦୁର୍ଦ୍ଦିନ ଦେଇ ଗତି କରୁଛୁ । କାମର ଚାପ ବଢ଼ିଛି ।

ତମେ ଘରକୁ ଯିବା ବୋଧେ ନିଶ୍ଚିତ । ଆଜିକାଲି ଭାଉଜ କେଉଁଠି ଅଛନ୍ତି ? କିଛି ଦିନ ତଳେ ବାବି ମୋ ପାଖକୁ ଲେଖିଥିଲା ଓ ଅମ୍ଳାନ ତାହାକୁ ଯେ ଦେଖା କରିନାହିଁ ଏହା ମୁଁ ଜାଣି ଆଶ୍ଚର୍ଯ୍ୟ ହେଉଥିଲି । ଆଜିକାଲି ସବୁକିଛି ଆଶ୍ଚର୍ଯ୍ୟଜନକ ଭାବେ ବଦଳିଯାଉଛି ।

ତମେ ଭଲ ଥିବ ।

ଅଚ୍ୟୁତ

□ □ □

— ସମାପ୍ତ —